# ପ୍ରଗତି ପଥରେ

ରାଜନୈତିକ ଆଲୋଚନା

ନବଯୁଗ ଗ୍ରନ୍ଥାଳୟ
କଟକ-୨

## ସମ୍ପାଦନା ମଣ୍ଡଳୀ

ଏଲ୍. ଏଫ୍. ଇଲ୍ୟିଚେଭ (ମୁଖ୍ୟ ସମ୍ପାଦକ), ୟା. ଇ. କୁଗାଏଭ, ଭି: ଅଇ: ଇଭ୍ଦୋକିମୋଭ, ଏସ୍. ପି. ପ୍ରେଭ୍ରୁସିନ, ଭି. ଭି. ପ୍ଲାଟୋକୋଭସ୍କି, ଏନ. ଭି. ରୁଦାନ, ଭି. ଅଇ. ସ୍ନାସ୍ତନ, ଏନ. ପି. ଫିଲ୍ମୋନୋଭ, ଏମ. ଏ. ଖାରଲାମୋଭ ।


ପ୍ରକାଶକ—ନବଯୁଗ ଗ୍ରନ୍ଥାଳୟ

କଲୁକପାଟି ରୋଡ଼୍

କଟକ—୧

ପ୍ରଥମ ପ୍ରକାଶ—ନଭେମ୍ବର ୭, ୧୯୬୭

ମୂଲ୍ୟ—ଷୋହଳଟଙ୍କା ପଚିଶ ପଇସା

ମୁଦ୍ରଣ—ନବଯୁଗ ପ୍ରେସ

ଡାକ୍ତରପଡ଼ା

କଟକ—୨

# ସୂଚୀପତ୍ର

# ଦ୍ୱିତୀୟ ଅଧ୍ୟାୟ



# ତୃତୀୟ ଅଧ୍ୟାୟ

## ସୋଭିଏତ୍ ସମାଜବାଦୀ ସମାଜ

## ଚତୁର୍ଥ ଅଧ୍ୟାୟ

### ସମାଜବାଦରୁ—ସାମ୍ୟବାଦକୁ

# ପଞ୍ଚମ ଅଧ୍ୟାୟ

## ସାମ୍ୟବାଦ (କମ୍ୟୁନିଜମ୍) ମାନବ ସମାଜର ଭବିଷ୍ୟତ

# ମୁଖବନ୍ଧ

ଏଇ ବିଂଶ ଶତାବ୍ଦୀ ଆମ ପୃଥିବୀର ଇତିହାସରେ ମାନବସମାଜର ପୁଞ୍ଜିବାଦରୁ ସମାଜବାଦକୁ ଅନ୍ତଗତ କରିବାର ଯୁଗରୂପରେ, ବିଶ୍ୱ କମ୍ୟୁନିଜମ୍ ବା ସାମ୍ୟବାଦର ବିଜୟ ପ୍ରତିଷ୍ଠାର ସମୟ ଭାବରେ ସୁପରିଚିତ ହୋଇ ରହିବ ।

କମ୍ୟୁନିଜମ୍‌ର ବିଜୟ ଯେ ସାମାଜିକ ବ୍ୟବସ୍ଥାର ଏକ ଯୁକ୍ତିଯୁକ୍ତ ଅପରିବର୍ତ୍ତନୀୟ ବିକାଶ ଓ ତାର ଅଗ୍ରଗତିକୁ ଯେ ଜଗତର କୌଣସି ଶକ୍ତି ରୋଧ କରି ନ ପାରେ ସେ ବିଷୟରେ କମ୍ୟୁନିଷ୍ଟମାନେ ଦୃଢ଼ ନିଶ୍ଚିତ । ସେମାନଙ୍କ ପକ୍ଷରେ ଏପରି ଭାବିବାର କାରଣ କଣ ? କମ୍ୟୁନିଷ୍ଟମାନେ କାହିଁକି ବା ସାମାଜିକ ନିୟମ କଥା କହନ୍ତି ? ସେ ନିୟମଗୁଡ଼ିକର କଣ ପ୍ରକୃତରେ ଅସ୍ତିତ୍ୱ କିଛି ଅଛି ? ତେବେ ସେ ନିୟମ ସବୁ କଣ ? ସମାଜବାଦୀ ଓ ପୁଞ୍ଜିବାଦୀ ଦେଶମାନଙ୍କ ନୀତିକୁ ବା କିଏ ନିର୍ଦ୍ଧାରଣ କରେ ? ଐତିହାସିକ ସତ୍ୟ କାହା ପକ୍ଷରେ—କମ୍ୟୁନିଷ୍ଟଙ୍କ ପକ୍ଷରେ, ନା, ପୁଞ୍ଜିବାଦୀ ବ୍ୟବସ୍ଥାର ରକ୍ଷକମାନଙ୍କ ପକ୍ଷରେ ?

ଲକ୍ଷ ଲକ୍ଷ ଲୋକ ଏହି ବିଷୟଗୁଡ଼ିକ ଜାଣିବାକୁ ଆଗ୍ରହୀ ।

ଆମର ବର୍ତ୍ତମାନର ଏହି ଆଲୋଚନାରେ ମାର୍କସବାଦ-ଲେନିନବାଦ ଦୃଷ୍ଟିରୁ ମୌଳିକ ରାଜନୈତିକ ଜ୍ଞାନ ଓ ଧାରଣାଗୁଡ଼ିକ ଉପସ୍ଥାପିତ କରାଯାଉଛି । ଉଦ୍ଦେଶ୍ୟ ହେଲା, ଉପରୋକ୍ତ ପ୍ରଶ୍ନଗୁଡ଼ିକ ସମ୍ବନ୍ଧରେ ସଠିକ ଉତ୍ତର ପାଇବାରେ ଲୋକମାନଙ୍କୁ ସାହାଯ୍ୟ କରିବା ; ବିଶ୍ୱ-ଘଟଣାପ୍ରବାହ ମଧ୍ୟରେ ସେମାନଙ୍କର ସ୍ଥାନ କେଉଁଠି ଓ ବିଶ୍ୱର ଘଟଣାବଳୀ ପ୍ରତି ସେମାନଙ୍କର ପ୍ରତିକ୍ରିୟା କଣ ହେବା ଉଚିତ, ଏହା ସ୍ଥିର କରିବା ଦିଗରେ ସେମାନଙ୍କୁ ଶକ୍ତି ଯୋଗାଇବା । ଏଣୁ ଏହି ବହିଟିରେ ସାମାଜିକ ଜୀବନ ଓ ସାମାଜିକ ବିକାଶ, ସାମାଜିକ ପ୍ରଗତିର ପରିଚାଳିକା ଶକ୍ତି ଓ ତାର ଭାବଧାରା, ମନୁଷ୍ୟ ଜାତିର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ବିଷୟ ଆଲୋଚିତ ହୋଇଛି ।

ଆମେ ଇତିହାସରୁ ଜାଣୁ, ବହୁ ବହୁ ତତ୍ତ୍ୱ ସମାଜ ଜୀବନକୁ ବ୍ୟାଖ୍ୟା କରିବାରେ ଓ ସମାଜକୁ ପୁନର୍ଗଠନ କରିବା ଲାଗି ମାର୍ଗ ଦର୍ଶାଇବା ଦିଗରେ ଚେଷ୍ଟା କରି-

ଆସିଛନ୍ତି । ସେ ସବୁ ତତ୍ତ୍ୱଙ୍କୁ ଜନ୍ମ ଲୋକେ ଅନେକ ଦିନୁ ଭୁଲିଗଲେଣି ବା ସେଗୁଡ଼ିକର ପ୍ରଭାବ କ୍ରମଶଃ ଅଧିକରୁ ଅଧିକ ଲୋପ ପାଇବାରେ ଲାଗିଛି; ମାତ୍ର ମାର୍କସବାଦ ଲେନିନବାଦ ହେଉଛି ସର୍ବାଗ୍ରଣୀ ତତ୍ତ୍ୱ—ଯାହାର ପ୍ରଭାବ, ପ୍ରତିପତ୍ତି ଓ ଆବେଦନ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି ।

କାହିଁକି ? କାରଣ, କେବଳ ମାର୍କସବାଦ-ଲେନିନବାଦ ହିଁ ମାନବ ଜୀବନ ସଂପର୍କରେ ଏକ ବୈଜ୍ଞାନିକ ଜ୍ଞାନ ପ୍ରଦାନ କରେ; ଏକ ସୁଖମୟ, ଆନନ୍ଦମୟ ଭବିଷ୍ୟତ ଲାଗି ସଂଗ୍ରାମ ଦିଗରେ ଶ୍ରମଜୀବୀ ଲୋକମାନଙ୍କୁ ସଠିକ ମାର୍ଗର ନିର୍ଦ୍ଦେଶ ଦିଏ । ମାର୍କସବାଦ-ଲେନିନବାଦର ତତ୍ତ୍ୱ ହେଉଛି ସର୍ବଶକ୍ତିମାନ । କାରଣ, ତାହା ନିର୍ଭୁଲ; କାରଣ ତାହା ସାମାଜିକ ବିକାଶର ନିୟମ ଓ ଶ୍ରମଜୀବୀ ଜନସାଧାରଣଙ୍କ ମୁଖ୍ୟ ସ୍ୱାର୍ଥଗୁଡ଼ିକୁ ଯଥାର୍ଥ ଭାବରେ ପ୍ରତିଫଳିତ କରେ ।

ମାର୍କସବାଦ-ଲେନିନବାଦର ପ୍ରତିଷ୍ଠାତା ହେଉଛନ୍ତି ମହାମନୀଷୀ ଅତି ବିପ୍ଳବୀ କାର୍ଲ ମାର୍କସ, ଫେଡ୍ରିକ୍ ଏଙ୍ଗେଲସ୍ ଓ ଭ୍ଲାଦିମୀର ଇଲିଚ୍ ଲେନିନ । ପୃଥିବୀର ସବୁ ଦେଶର କମ୍ୟୁନିଷ୍ଟମାନେ ନୂତନ ନୂତନ ଐତିହାସିକ ଅବସ୍ଥା ମଧ୍ୟରେ ଏହି ମାର୍କସବାଦ-ଲେନିନବାଦକୁ ଆଗେଇ ନେଇ ଚାଲିଛନ୍ତି ଓ ସମୃଦ୍ଧ କରୁଛନ୍ତି ।

ମାର୍କସବାଦ-ଲେନିନବାଦ କାଳର କଠୋର ପରୀକ୍ଷାରେ ପ୍ରତିପାଦିତ ଓ ବାସ୍ତବତା ଦ୍ୱାରା ନିର୍ଭୁଲ ବୋଲି ପ୍ରମାଣିତ ।

ମାର୍କସବାଦ ଲେନିନବାଦ ପ୍ରତ୍ୟେକ ଦେଶରେ ଅଧିକ ଅଧିକ ସମର୍ଥନ ଲାଭ କରୁଛି । ଲୋକେ ଏବେ ଏହାକୁ ହିଁ ବିରାଟ ବୈପ୍ଳବିକ ଶକ୍ତି ଭାବରେ ଦେଖୁଛନ୍ତି । ଆପାତତଃ ଉପରକୁ ଗୁରୁତ୍ୱପୂର୍ଣ୍ଣ ମନେ ନ ହେଲେ ବି ଏହା ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଯେ ୧୯୮୭ ଅକ୍ଟୋବର ମାସରେ ପ୍ରଥମ ଥୋଉଏଡ଼ି ଅନ୍ତରୀକ୍ଷ ଯାନ ସ୍ପୁଟ୍‌ନିକ ପ୍ରେରଣର ଅଳ୍ପଦିନ ତଳୁ ଲଣ୍ଡନରେ ମାର୍କସଙ୍କ ସମାଧି ଉପରେ କେତେକ ଲୋକ ପୁଷ୍ପମାଲ୍ୟ ଅର୍ପଣ କରିଥିଲେ । ସେଥି ସହିତ ସେମାନେ ଏକ କାଗଜରେ ଲେଖିଥିଲେ ଯେ, ସେମାନେ ମାର୍କସଙ୍କ ସହିତ ଏକମତ, ଅତି ମାର୍କସଙ୍କ ଆସନ ଅଟଳ, ଅବିଚଳିତ । ସେମାନେ ମାର୍କସଙ୍କ କବର ପାଖରେ ଅଶ୍ରୁମୋଚନ କରିବାକୁ ଯାଇ ନ ଥିଲେ । କାରଣ ସେମାନେ ଲେଖିଥିଲେ, ମାର୍କସଙ୍କ ଶିକ୍ଷାହିଁ ଲୋକଙ୍କୁ ଏହି ପୃଥିବୀ, ଏହି ବିଶ୍ୱ ବ୍ରହ୍ମାଣ୍ଡକୁ ରୂପାନ୍ତରିତ କରିବା ଦିଗରେ ସକ୍ଷମ କରିଛି ।

ତେବେ ସେଇ ମାର୍କସବାଦ-ଲେନିନବାଦ କଣ ?

ତାହା ହେଉଛି ପ୍ରକୃତିର ଓ ସମାଜର ବିକାଶ-ବିଜ୍ଞାନ, ସମାଜବାଦୀ ବିପ୍ଳବ ଓ ସର୍ବହରା ଶ୍ରେଣୀର ଏକନାୟକତ୍ୱର ବିଜ୍ଞାନ, ସମାଜବାଦ ଓ କମ୍ୟୁନିଜମ୍ ବା ସାମ୍ୟବାଦ ସମାଜ ନିର୍ମାଣର ବିଜ୍ଞାନ, ଦାର୍ଶନିକ, ଅର୍ଥନୈତିକ, ସାମାଜିକ-ରାଜନୈତିକ ଦୃଷ୍ଟିକୋଣର ଏକ ଅଖଣ୍ଡ ସମନ୍ୱୟର ବ୍ୟବସ୍ଥା ।

ମାର୍କସବାଦ-ଲେନିନ୍‌ବାଦ ଦର୍ଶନ, ଅର୍ଥାତ୍ ଦ୍ୱନ୍ଦ୍ୱମୂଳକ ଓ ଐତିହାସିକ ବସ୍ତୁବାଦ ହେଉଛି ପ୍ରକୃତି, ସମାଜ ଓ ଚିନ୍ତାଧାରାଗତ ସାଧାରଣ ନିୟମଗୁଡ଼ିକର ବିଜ୍ଞାନ ।

ଏହାକୁ ବସ୍ତୁବାଦ କୁହାଯାଏ, କାରଣ ଯେଉଁ ତଥ୍ୟରୁ ଏହାର ସୂତ୍ରପାତ, ସେ ତଥ୍ୟଟି ହେଲା—ଏହି ଭୌତିକ ଜଗତ ମନୁଷ୍ୟର ଚେତନାର ବାହାରେ ବିଦ୍ୟମାନ; ଏହା ମନୁଷ୍ୟର ଚେତନାର ବାହାରେ ରହି ସ୍ୱାଧୀନ ବସ୍ତୁଗତ ନିୟମ ଅନୁଯାୟୀ ବିକାଶ ଲାଭ କରୁଛି । ଏହି ଭୌତିକ ବସ୍ତୁଗତ ଜଗତ ହେଉଛି ପ୍ରଥମ ଓ ମୌଳିକ । ଆଉ ମନୁଷ୍ୟର ଚେତନା ହେଲା ଭୌତିକ ଜଗତର ଏକ ପ୍ରତି-ଫଳନ ରୂପରେ ଦ୍ୱିତୀୟ ଓ ଗୌଣ । ମାର୍କସବାଦ-ଲେନିନବାଦ ଦର୍ଶନକୁ ଦ୍ୱନ୍ଦ୍ୱମୂଳକ କୁହାଯାଏ ; କାରଣ ଏହା ଭୌତିକ ଜଗତକୁ ଏକ କ୍ରମାଗତ ଗତିଶୀଳ, ବିକାଶମାନ ଓ ନବାୟମାନ ରୂପରେ ବିଚାର କରେ । ପ୍ରତ୍ୟେକଟି ବସ୍ତୁ ପ୍ରପଞ୍ଚ ଭିତରେ ନିହିତ ସ୍ୱାଭାବିକ ବୈପରୀତ୍ୟଗୁଡ଼ିକର ସଂଘର୍ଷ ଫଳରେ ଏ ସମସ୍ତ ଘଟେ ବୋଲି ଦର୍ଶାଏ ।

ଐତିହାସିକ ବସ୍ତୁବାଦ ମାର୍କସବାଦ-ଲେନିନ୍‌ବାଦ ଦର୍ଶନଠାରୁ ଅବିଚ୍ଛିନ୍ନ ଓ ଅଭିନ୍ନ । ଏହା ହେଉଛି ସାମାଜିକ ଜୀବନର ଜ୍ଞାନ ପ୍ରତି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପ୍ରୟୋଗର ଫଳ, ସାମାଜିକ ବିକାଶର ଅତି ସାଧାରଣ ନିୟମଗୁଡ଼ିକର ବିଜ୍ଞାନ ଏବଂ ସାମାଜକୁ ଅବଧାରଣା କରିବା ଓ ବୈପ୍ଳବିକ ଧାରାରେ ପୁନର୍ଗଠନ କରିବାର ପନ୍ଥା ।

ରାଜନୈତିକ ଅର୍ଥନୀତି ମାର୍କସବାଦ-ଲେନିନବାଦର ଅନ୍ୟ ଏକ ଅଙ୍ଗ । ଏହା ହେଉଛି ଲୋକମାନଙ୍କ ମଧ୍ୟରେ ଉତ୍ପାଦନ ସମ୍ପର୍କଗତ ବିକାଶର ବିଜ୍ଞାନ, ସାମାଜିକ ବିକାଶର ବିଭିନ୍ନ ସ୍ତରରେ ତାର ଭୌତିକ ସମ୍ପଦର ଉତ୍ପାଦନ ଓ ବଣ୍ଟନକୁ ପରିଚାଳିତ କରୁଥିବା ନିୟମଗୁଡ଼ିକର ବିଜ୍ଞାନ ।

ଉତ୍ପାଦନ ଉପକରଣଗୁଡ଼ିକ ଉପରେ କେଉଁକ ନିୟମ ଦ୍ୱାରା ନିୟନ୍ତ୍ରିତ ହୋଇ ବିକାଶ ଲାଭ କରୁଥିବା ମାଲିକାନାର ବିଭିନ୍ନ ରୂପ, ସେ ସବୁ ରୂପର ପରି-ବର୍ତ୍ତନର ଧାରା, ତାହା ମଧ୍ୟରେ ପୃଥିବୀ ବିଭିନ୍ନ ସାମାଜିକ ଗୋଷ୍ଠୀମାନଙ୍କର ସ୍ଥାନ. ଉତ୍ପାଦନ କ୍ଷେତ୍ରରେ ସେହି ଗୋଷ୍ଠୀଗୁଡ଼ିକର ପରସ୍ପର ସହିତ ସଂପର୍କ ଏବଂ ଭୌତିକ ସମ୍ପଦ ବଣ୍ଟନର ରୂପ ବିଷୟରେ ଏହା ଆଲୋଚନା କରେ ।

ରାଜନୈତିକ ଅର୍ଥନୀତି ସାମାଜିକ ସମ୍ପର୍କର ଚୂଡ଼ାନ୍ତ ବିଷୟକୁ ହିଁ ବିଚାରକୁ ନିଏ, ଅର୍ଥାତ୍, ଏହା ଲୋକମାନଙ୍କ ମଧ୍ୟରେ ଅର୍ଥନୈତିକ ବା ଉତ୍ପାଦନଗତ ସମ୍ପର୍କ, ଯାହାକି ସମାଜର ଅର୍ଥନୈତିକ ଭିତ୍ତି ଉତ୍ପାଦନ ପ୍ରଣାଳୀର ଏକ ଅତି ଗୁରୁତ୍ୱପୂର୍ଣ୍ଣ ଦିଗ, ତାହା ପ୍ରତି ଦୃଷ୍ଟି ଦିଏ ।

ବୈଜ୍ଞାନିକ ସାମ୍ୟବାଦ ହେଉଛି, ମାର୍କସବାଦ ଲେନିନବାଦର ତୃତୀୟ ଉପାଦାନ ସମାଜବାଦୀ ବିପ୍ଳବ ଓ ସର୍ବହରା ଏକନାୟକତ୍ୱର ବିଜ୍ଞାନ, ସମାଜବାଦ ଓ ସାମ୍ୟବାଦ ଗଠନ ବିଧିର ବୈଜ୍ଞାନିକ ପ୍ରଣାଳୀ । ଏହା ଶ୍ରମଜୀବୀ ଲୋକସାଧାରଣଙ୍କୁ ପୁଞ୍ଜିବାଦୀ ଶୋଷଣ କବଳରୁ ମୁକ୍ତ ଲାଭ ଲାଗି ଉଦ୍ଦିଷ୍ଟ ସଂଗ୍ରାମରେ ଏକ ସୁସ୍ପଷ୍ଟ ରଣନୀତି ଓ ରଣକୌଶଳ ଦ୍ୱାରା ସଜ୍ଜିତ କରେ ।

ଏହା ସାମାଜିକ ବିପ୍ଳବର ଯାବତୀୟ ନିୟମକୁ ପ୍ରକାଶ କରେ; ସମାଜବାଦ ଓ ସାମ୍ୟବାଦ ( କମ୍ୟୁନିଜ୍ମ ) ର ଦିଗରେ ସମାଜର ଅଗ୍ରଗତିର ପଥକୁ ଏକ ବୈଜ୍ଞାନିକ ଭିତ୍ତିରେ ଦେଖାଏ ।

ମାର୍କସବାଦ-ଲେନିନ୍‌ବାଦ ହେଉଛି ସର୍ବତ୍ର ସବୁ କମ୍ୟୁନିଷ୍ଟ ପାର୍ଟିମାନର ବୈଜ୍ଞାନିକ ଭିତ୍ତି ।

କମ୍ୟୁନିଷ୍ଟ ପାର୍ଟିଗୁଡ଼ିକର ନୀତିକୁ ଶାନ୍ତି, ଜାତୀୟ ସ୍ୱାଧୀନତା, ଗଣତନ୍ତ୍ର ଓ କମ୍ୟୁନିଜ୍ମ ଲାଗି ଅନୁଷ୍ଠିତ ସେହି ପାର୍ଟିଗୁଡ଼ିକର ସଂଗ୍ରାମକୁ ବ୍ୟାଖ୍ୟା କରାଯାଇପାରେ ଯେ ତାହାସବୁ ହେଉଛି ମାର୍କସବାଦ-ଲେନିନବାଦର ରୂପ ।

ଏହି ମାର୍କସବାଦ-ଲେନିନବାଦ, ପାଖରେ ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ନିଜର ବିଶ୍ୱବ୍ୟାପୀ ଗୁରୁତ୍ୱପୂର୍ଣ୍ଣ କୃତିତ୍ୱ ହାସଲ ଲାଗି ଋଣୀ । ସୋଭିଏତ ଇଉନିଅନର ଶ୍ରମଜୀବୀ ଜନସାଧାରଣ ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପରିଚାଳିତ ହୋଇ ପୃଥିବୀର ପ୍ରଥମ ସାମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠା କରିଛନ୍ତି; ପୁଞ୍ଜିପତି ଓ ବଡ଼ ବଡ଼ ଜମିମାଲିକଙ୍କ ଶାସନକୁ ଧ୍ୱଂସ କରିଛନ୍ତି; ଏକ ସମାଜବାଦୀ ସମାଜ ନିର୍ମାଣ କରି, ଏବେ କମ୍ୟୁନିଜ୍ମ ଦିଗରେ ଯାତ୍ରାପଥରେ ଅଗ୍ରଣୀ ହୋଇଛନ୍ତି, ପଥପ୍ରଦର୍ଶକ ହୋଇଛନ୍ତି ।

ସୋଭିଏତ୍ ଇଉନିଅନ କମ୍ୟୁନିଷ୍ଟ ପାର୍ଟିର ସମସ୍ତ ଅଭିଜ୍ଞତାର ବିରାଟ ଆନ୍ତର୍ଜାତୀୟ ତାତ୍ପର୍ଯ୍ୟ ରହିଛି ।

୧୯୬୦ ନଭେମ୍ବର ମାସରେ ମସ୍କୋଠାରେ ଅନୁଷ୍ଠିତ ୮୧ଟି କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟିର ସମ୍ମିଳନୀ ନିଜର ବିବୃତିରେ ଘୋଷଣା କରିଛି : "କମ୍ୟୁନିଷ୍ଟ ଓ ଶ୍ରମିକ ପାର୍ଟିମାନେ ସର୍ବସମ୍ମତିକ୍ରମେ ଘୋଷଣା କରନ୍ତି କି, ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଆନ୍ଦୋଳନର ସବୁଠାରୁ ବଳି ଅଧିକ ଅଭିଜ୍ଞ ଓ ଇସ୍‌ପାତି ବାହିନୀ ହୋଇଥିବାରୁ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନରେ ସର୍ବଜନସ୍ୱୀକୃତ ଅଗ୍ରଣୀ ହୋଇ ରହିଛି ଓ ରହିବ । ଶ୍ରମିକଶ୍ରେଣୀର ବିଜୟ ସଂଗ୍ରାମରେ, ସମାଜବାଦୀ ସମାଜ ଗଠନ ଓ ପୂର୍ଣ୍ଣାଙ୍ଗଭାବେ କମ୍ୟୁନିଜ୍ମ୍ ନିର୍ମାଣ କ୍ଷେତ୍ରରେ ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ଯେଉଁ ବିପୁଳ ଅଭିଜ୍ଞତା ଲାଭ କରିଛି, ତାହା ସମଗ୍ର ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନ ପକ୍ଷେ ଅତି ମୌଳିକ ଭାବେ ଗୁରୁତ୍ୱପୂର୍ଣ୍ଣ । ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ଆଦର୍ଶ ଓ ତାର ଭାତୃତ୍ୱମୂଳକ

ସଂହତ, ଶାନ୍ତି ଓ ସମାଜବାଦ ପ୍ରତିଷ୍ଠା ଲାଗି ସଂଗ୍ରାମ କ୍ଷେତ୍ରରେ ସମସ୍ତ କମ୍ୟୁନିଷ୍ଟ ପାର୍ଟିକୁ ଅନୁପ୍ରାଣିତ କରେ ଏବଂ ସର୍ବହାରା ଆନ୍ତର୍ଜାତୀୟତାବାଦର ବିପ୍ଳବୀ ନୀତି ଗୁଡ଼ିକର ବ୍ୟାବହାରିକ ପ୍ରୟୋଗକୁ ପ୍ରକାଶ କରେ ।

ଲେନିନଙ୍କ ଦ୍ୱାରା ପ୍ରତିଷ୍ଠିତ ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ୬୦ ବର୍ଷରୁ ଊର୍ଦ୍ଧ୍ୱ କାଳ ଧରି ଶ୍ରମଜୀବୀ ଲୋକଙ୍କର ସୁଖସମୃଦ୍ଧି ଲାଗି ଓ କମ୍ୟୁନିଜିମ ଲାଗି ବୀରତ୍ୱର ସହ ସଂଗ୍ରାମ କରିଆସୁଛି । ସୋଭିଏତର ଲୋକେ ଏହାର ନେତୃତ୍ୱ ବଳରେ ସାଧାରଣତଃ ଅଗ୍ରଣୀମାନେ ସମ୍ମୁଖୀନ ହେଉଥିବା କଠିନ ବାଧା ବିପତ୍ତିକୁ ଅତିକ୍ରମ କରିଛନ୍ତି, ସେମାନଙ୍କ ନିଜ ଦେଶରେ ସମାଜ-ବାଦର ସଂପୂର୍ଣ୍ଣ ଓ ଚରମ ବିଜୟ ହାସଲ କରି ସଫଳତାର ସହିତ କମ୍ୟୁନିଷ୍ଟ ସମାଜ ନିର୍ମାଣ କରି ଚାଲିଛନ୍ତି ।

ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ୨୨ଶ ଅଧିବେଶନରେ (ଅକ୍ଟୋବର ୧୯୬୧, ପାର୍ଟି ନୂତନ ପ୍ରୋଗ୍ରାମ, କମ୍ୟୁନିଜିମ ଗଠନର, ପୃଥିବୀରେ ସର୍ବଶ୍ରେଷ୍ଠ ସର୍ବାଧିକ ନ୍ୟାୟସଙ୍ଗତ ସମାଜ ପ୍ରତିଷ୍ଠାର କାର୍ଯ୍ୟକ୍ରମ ଗ୍ରହଣ କରିଛି ।

ସମଗ୍ର ସୋଭିଏତ ଲୋକେ ଏହି ପ୍ରୋଗ୍ରାମକୁ ତାଙ୍କ ନିଜର ମୁଖ୍ୟ ଆଦର୍ଶ, ସେମାନଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ ଭାବରେ ଗ୍ରହଣ କରିଛନ୍ତି ।

ସାରା ପୃଥିବୀରେ ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ପ୍ରୋଗ୍ରାମକୁ ଏ ଶତାବ୍ଦୀର କମ୍ୟୁନିଷ୍ଟ ଇସ୍ତାହାର ବୋଲି କୁହାଯାଉଛି ।

ବୈପ୍ଳବିକ ଧାରାରେ ପୃଥିବୀକୁ ପୁନର୍ଗଠିତ କରିବା ଏବଂ ସମାଜବାଦ ଓ ସାମ୍ୟବାଦ ପ୍ରତିଷ୍ଠା କରିବା ଦିଗରେ ମାର୍କସବାଦ-ଲେନିନବାଦ ହେଉଛି ଏକ ଶକ୍ତିଶାଳୀ ଅସ୍ତ୍ର । ଯେଉଁମାନେ ଏହି ଅସ୍ତ୍ରକୁ ଦକ୍ଷତାର ସହ ଚଳାଇ-ବାକୁ ଚାହାନ୍ତି ଓ ନିଜର କର୍ମକ୍ଷେତ୍ରରେ ତାକୁ ଫଳପ୍ରଦଭାବେ ପ୍ରୟୋଗ କରିବାକୁ ଇଚ୍ଛୁକ, ସେମାନେ ଏହାକୁ ଭଲ ଭାବରେ ଜାଣିବା ଉଚିତ । ସମାଜବାଦ ଓ କମ୍ୟୁନିଜିମ ଲାଗି ଶୋଷକମାନଙ୍କ ବିରୁଦ୍ଧରେ ସକ୍ରିୟ ଭାବେ ସଂଗ୍ରାମ କରିବାକୁ ହେଲେ ନୂତନ ସମାଜ ଗଠନର ମାର୍ଗ ପରିଷ୍କାର ଭାବେ ଦେଖିବା, ଆନ୍ତର୍ଜାତୀୟ ବିକାଶ ସଂପର୍କରେ ଯଥାର୍ଥ ଜ୍ଞାନ ଆହରଣ କରିବା ଏବଂ ପ୍ରତ୍ୟେକ କମ୍ୟୁନିଷ୍ଟ ପାର୍ଟିର ନୀତିକୁ ପୁରାପୁରି ଉପଲବ୍ଧି କରିବା ନିତାନ୍ତ ଆବଶ୍ୟକ । ଲୋକ କେବଳ ନିଜର ରାଜନୈତିକ ଜ୍ଞାନ ଦୃଢ଼ଭାବେ ବୃଦ୍ଧି କରାଇବା ଦ୍ୱାରା, ଅର୍ଥାତ ମାର୍କସବାଦ-ଲେନିନବାଦ ତତ୍ତ୍ୱ ଅଧ୍ୟୟନ କରିବା ଦ୍ୱାରା ଏହା ହାସଲ କରିପାରେ ।

ପ୍ରତ୍ୟେକ କମ୍ୟୁନିଷ୍ଟ, ପ୍ରତ୍ୟେକ ଶ୍ରମଜୀବୀ ଲୋକ କଣ ଏହି ତତ୍ତ୍ୱର ମୌଳିକ ବିଷୟଗୁଡ଼ିକୁ ଅନୁଧ୍ୟାନ କରିବାକୁ ସକ୍ଷମ ?

ହଁ, ସକ୍ଷମ ଏବଂ ସେ ତାହା ଅନୁଧ୍ୟାନ କରିବା ଉଚିତ । ଯେକୌଣସି

ବ୍ୟକ୍ତି ପ୍ରାଥମିକ ରାଜନୈତିକ ଜ୍ଞାନ ଆହରଣ କରିପାରିବ ଏବଂ ତା’ପରେ ମାର୍କସବାଦ-ଲେନିନବାଦକୁ ଆୟତ୍ତ କରିବା ମଧ୍ୟରେ ଧୀରେ ଧୀରେ ନିଜର ଜ୍ଞାନକୁ ପ୍ରସାରିତ କରିପାରିବ ।

ସମାଜବାଦ ଓ କମ୍ୟୁନିଜ୍‌ମର ବିଜୟ ଲାଗି ମହାନ ସଂଗ୍ରାମରେ ସକ୍ରିୟ ଭାଗ ଗ୍ରହଣ କରିବା ଦିଗରେ ପ୍ରତ୍ୟେକ କମ୍ୟୁନିଷ୍ଟର, ପ୍ରତ୍ୟେକ ଶ୍ରମଜୀବୀ ଲୋକର ଯେଉଁ ଜ୍ଞାନ ଥିବା ବାଞ୍ଛନୀୟ, ଏହି ପୁସ୍ତକଟି ସେହି ସର୍ବନିମ୍ନ ରାଜନୈତିକ ‘ଜ୍ଞାନ’ ବିଷୟ ଉପସ୍ଥାପିତ କରୁଛି ।



## ପ୍ରଥମ ଅଧ୍ୟାୟ

# ସମାଜର ବିକାଶ ସମ୍ବନ୍ଧରେ କଣ ଜାଣିବାକୁ ହେବ ?

## (୧) ଲୋକମାନେ ହିଁ ଇତିହାସର ପ୍ରକୃତ ସୃଷ୍ଟିକର୍ତ୍ତା

ଲୋକ ଯେଉଁ ସାମାଜିକ ବ୍ୟବସ୍ଥା ଭିତରେ ବାସ କରନ୍ତି, ସେ ବ୍ୟବସ୍ଥାକୁ କିଏ ସ୍ଥିର କରେ ? ତାକୁ ଅଧିକ ଉନ୍ନତ କରାଯାଇପାରେ କି ? ଏହି କଥା ଜାଣିବାପାଇଁ ଅତି ପ୍ରାଚୀନ କାଳରୁ ସେମାନେ ବିଶେଷ ଉଦ୍‌ବିଗ୍ନ ଓ ଆଗ୍ରହଶୀଳ । ସେମାନେ ଜାଣିବାକୁ ଚାହାନ୍ତି, କିପରି ଏମିତି ଏକ ଅବସ୍ଥା ସୃଷ୍ଟି ହୁଅନ୍ତା ଯେଉଁଥିରେ କେବଳ କେତେକ ମୁଷ୍ଟିମେୟ ଧନୀ ପରଶ୍ରମପୁଷ୍ଟ ଲୋକଙ୍କ ପରିବର୍ତ୍ତେ ସବୁ ଲୋକେ ସୁଖସ୍ୱାଚ୍ଛନ୍ଦ୍ୟରେ ଚଳିପାରନ୍ତେ; ନିଜର ଜୀବନକୁ ଉପଭୋଗ କରିପାରନ୍ତେ ।

## ସାମାଜିକ ଘଟଣାବଳୀ କଣ ଆକସ୍ମିକ ?

ବହୁଦିନ ଧରି ଲୋକେ ଏ ସବୁ ପ୍ରଶ୍ନର ସଠିକ ଉତ୍ତର ପାଇ ନ ଥିଲେ । ଏ ବିଷୟ ନେଇ ନାନା ପ୍ରକାରର ମତାମତ ଓ ଧାରଣାମାନ ଏବେ ମଧ୍ୟ ରହିଛି । ତେବେ ସବୁଠାରୁ ବିଶେଷଭାବେ ପ୍ରଚଳିତ ଧାରଣାଟି ହେଲା ଯେ, ସମାଜର ବିକାଶ, ମନୁଷ୍ୟ ସମାଜର ଭାଗ୍ୟ ମନୁଷ୍ୟ ହାତରେ ନାହିଁ; ତାହା ସବୁ ତା'ର ଶକ୍ତିର ବହିର୍ଭୂତ, ଐଶ୍ୱରିକ ଶକ୍ତି ଦ୍ୱାରା ନିୟନ୍ତ୍ରିତ ।

ଯେଉଁମାନେ ଅନ୍ୟ ଲୋକଙ୍କୁ ତାଙ୍କ ଶ୍ରମର ଫଳରୁ ବଞ୍ଚିତ କରି ମସସ୍ତ ସମ୍ପଦ ଓ ଶକ୍ତିକୁ ନିଜ ହାତମୁଠାରେ ରଖିଛନ୍ତି, ସେମାନେ ଉପରୋକ୍ତ ଧାରଣା ପୋଷଣ କରି ବେଶ୍ ଖୁସି ଓ ସନ୍ତୁଷ୍ଟ । ସେମାନେ ଲାଗିପଡ଼ି ଏହି ଧାରଣାକୁ ବଜାୟ ରଖନ୍ତି । ଶ୍ରମଜୀବୀ ଲୋକମାନଙ୍କୁ ଦୃଢ଼ଭାବେ କହନ୍ତି ଯେ, ଐଶ୍ୱରିକ ଶକ୍ତି ଆଗରେ ମନୁଷ୍ୟ ଶକ୍ତିହୀନ—ସେ ଏକ ଅତି କ୍ଷୁଦ୍ର ନଗଣ୍ୟ ଜୀବ ମାତ୍ର ।

ତେବେ ଏହି ଶୋଷକ ଶ୍ରେଣୀର ବୋଲକରା ଲୋକଙ୍କ କଥାକୁ ଯେ ପ୍ରତ୍ୟେକ ଲୋକ ବିଶ୍ୱାସ କରନ୍ତି, ତା ନୁହେଁ । ତାହା କହିବା ମଧ୍ୟ ଅନାବଶ୍ୟକ । ଲୋକ ଅଛନ୍ତି ଯେଉଁମାନେ କି ତାଙ୍କୁ ଘାରୁଥିବା ସମସ୍ୟାଗୁଡ଼ିକର ସମାଧାନ ଲାଗି ଈଶ୍ୱର ଭାଗ୍ୟକୁ ଅନାନ୍ତି ନାହିଁ; ଏହି ପୃଥିବୀ ପ୍ରତି ଦୃଷ୍ଟି ଦିଅନ୍ତି ।

ତେବେ ଏହି ଅତି ଜଟିଳ ସାମାଜିକ ଘଟଣାବଳୀ ଭିତରେ ସ୍ପଷ୍ଟଭାବେ କିଛି ଦେଖିପାରିବା ସହଜସାଧ୍ୟ ନୁହେଁ । ପ୍ରତ୍ୟେକ ଲୋକ କୌଣସି ଏକ ଲକ୍ଷ୍ୟ ଉପରେ ଧାଏଁ ଓ ତାକୁ ଲାଭ କରିବାପାଇଁ ଏକ ନିର୍ଦ୍ଦିଷ୍ଟ ପଦ୍ଧତି ବ୍ୟବହାର କରେ । ତେବେ ଅନ୍ୟ ଲକ୍ଷ୍ୟ ନ ଧରି ସେ କାହିଁକି ସେ ସେଇ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଗ୍ରହଣ କରେ ? ଅନ୍ୟ ଲୋକମାନଙ୍କର ଆଶା ଆକାଂକ୍ଷା ସହିତ ତାହା କେତେ ଦୂର ବା ସମାନ, କେତେଦୂର ମିଶେ ? ତା'ର କଣ ଉକ୍ତ ଲକ୍ଷ୍ୟ ହାସଲ କରିବା ଉଚିତ ? ତାହା କଣ ଅନ୍ୟ ଲୋକଙ୍କୁ ପ୍ରଭାବିତ କରିବ ? ସାମାଜିକ ବ୍ୟବସ୍ଥା ପରିବର୍ତ୍ତନ ଆଡ଼କୁ ନେଇଯିବ ?

ଆଗେ ଗୋଟିଏ ଏ ଭଳି ବିଷୟ ଆଲୋଚନା କରାଯାଉ, ଯାହା ହେଉଛି ପୁଞ୍ଜିବାଦର ବିଶେଷତ୍ୱ । ଧର, ଜଣେ ପୁଞ୍ଜିପତି ଅଧୀନରେ କାମ କରୁଥିବା ଶ୍ରମିକଟିଏ ଠିକ କଲା ଯେ ସେ ନିଜର କାମର ଭାର ଲାଘବ କରିବ ଓ ଅଧିକ ଉପାର୍ଜ୍ଜନ କରିବ । ସେ ଗୋଟାଏ ନୂଆ ଯନ୍ତ୍ର ବା କୌଶଳ ଉଦ୍ଭାବନ କଲା ; ତାହା ଯୋଗେ ସେ ଆଗ ଅପେକ୍ଷା ଦୁଇଗୁଣ ଉତ୍ପାଦନ କରିବାକୁ ସମର୍ଥ ହେଲା । ଏହାର ଫଳ କଣ ହେବ ? ପୁଞ୍ଜିପତି ଉକ୍ତ ଉଦ୍ଭାବନର ସୁଯୋଗ ନେବ । କେତେକ ଶ୍ରମିକଙ୍କୁ ସମ୍ଭବତଃ ସେହି ଉଦ୍ଭାବନକାରୀ ଶ୍ରମିକକୁ ମଧ୍ୟ କାମରୁ ବାହାର କରିଦେବ; ଅଳ୍ପସଂଖ୍ୟକ ଶ୍ରମିକ ଅତି ଦକ୍ଷ କେତୋଟି ଯୁବକ ଶ୍ରମିକଙ୍କୁ ରଖିବ । ତେଣୁ ଯେଉଁ ଶ୍ରମିକ ଜଣକେ ନିଜର ଓ ତାର ସଙ୍ଗୀ ଶ୍ରମିକମାନଙ୍କର କାମର ଭାର ଲାଘବ କରିବାକୁ ଓ ଅଧିକ ଉପାର୍ଜ୍ଜନ କରିବାକୁ ଚାହିଁଥିଲା ସେ ଏବେ ବହୁ ଲୋକଙ୍କ ଗୋଡ଼ରେ କୁରାଢ଼ୀ ହାଣିବ; ସେମାନଙ୍କୁ କାମରୁ ବାହାର କରିବାର କାରଣ ହେବ—ଫଳରେ ପୁଞ୍ଜିପତିର ଲାଭ ବୃଦ୍ଧି ପାଇବ ।

ଏହି ଦୁର୍ଗତିର ମୂଳ କେଉଁଠି ? ପୁଞ୍ଜିବାଦୀ ସମାଜରେ ଶ୍ରମିକ କଠୋର ପରିଶ୍ରମ କଲେ ମଧ୍ୟ ଦୁଃଖ ଦାରିଦ୍ର୍ୟରେ ସଢ଼େ କାହିଁକି ? ସେଥିଲାଗି କୌଣସିପ୍ରକାରେ କଣ ମେସିନ ଓ ଯନ୍ତ୍ରପାତିକୁ ଦୋଷ ଦିଆଯାଇ ପାରିବ ?

ବଳେ ଶ୍ରମିକମାନେ  ସେକଥା ଭାବୁଥିଲେ । ସେମାନେ ମେସିନ କଳକବଜାଙ୍କୁ ଭାଙ୍ଗି ଚୂରମାର କରିଦେଲେ । କିନ୍ତୁ ଫଳରେ ତାଙ୍କ ଅବସ୍ଥାରେ କୌଣସି ଉନ୍ନତି ଘଟିଲା ନାହିଁ । ଏଥିସହିତ ମେସିନର ଯେ କୌଣସି ସମ୍ପର୍କ ନାହିଁ ଏହା ଅତି ପରିଷ୍କାର ହେଲା । ଏହାର କାରଣଟି ଅତି ଗଭୀର; ତେଣୁ ଭିନ୍ନ ଉପାୟରେ ଏ ଅବସ୍ଥାର ସମାଧାନ ଦେଖିବା ଉଚିତ ହେବ । ମାର୍କସବାଦ ହିଁ ସର୍ବପ୍ରଥମେ ଏହି ମାର୍ଗର ସୂଚନା ଦେଇଛି ।

ମାର୍କସ ଓ ଏଙ୍ଗେଲ୍ସ ସମାଜ ବିକାଶର ନିୟମମାନ ଆବିଷ୍କାର କଲେ । ସେମାନେ ବୈଜ୍ଞାନିକ ଭାବରେ ପ୍ରମାଣ କଲେ ଯେ ଇତିହାସକୁ କୌଣସି ଏକ ପରମ ପ୍ରାକୃତିକ ଓ ରହସ୍ୟମୟ ଶକ୍ତି ସୃଷ୍ଟି କରିନାହିଁ; ତାହା ଲୋକମାନଙ୍କ ଦ୍ୱାରା, ଶ୍ରମଜୀବୀ ଜନସାଧାରଣଙ୍କ ଦ୍ୱାରା ହିଁ ସୃଷ୍ଟି ହୋଇଛି । ଏହା ଅବଶ୍ୟ ସତ ଯେ ପ୍ରତ୍ୟେକ ବ୍ୟକ୍ତି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଅନୁସରଣ କରି ନିଜର ଆଶା ଆକାଂକ୍ଷା ଦ୍ୱାରା ପରିଚାଳିତ ହୋଇ ବୁଦ୍ଧିମାନ ବ୍ୟକ୍ତିଭାବରେ କାର୍ଯ୍ୟ କରିଥାଏ; କିନ୍ତୁ ଲୋକମାନଙ୍କ କାର୍ଯ୍ୟର ସମଗ୍ରତା ବା ସବୁ ଲୋକଙ୍କର ସର୍ବମୋଟ କାର୍ଯ୍ୟ, ଏକ ନିର୍ଦ୍ଦିଷ୍ଟ ନିୟମାଧୀନ, ତାହା କୌଣସି ବ୍ୟକ୍ତିବିଶେଷର ଇଚ୍ଛା ଆକାଂକ୍ଷା ଉପରେ ନିର୍ଭର କରେ ନାହିଁ ।

ଯେତେଦିନ ଯାଏ ଲୋକେ ଏହିସବୁ ନିୟମ ବିଷୟରେ ଅଜ୍ଞ ଥିଲେ, ସେତେଦିନ ପର୍ଯ୍ୟନ୍ତ ସେମାନେ ଅନ୍ଧଭାବରେ ଅଣ୍ଡାଳି ହେଉଥିଲେ ; ସମାଜର ବିକାଶ ସ୍ୱତଃସ୍ଫୂର୍ତ୍ତି ଭାବେ ଗତି କରୁଥିଲା । କିନ୍ତୁ ପରେ ଯେତେବେଳେ ସେମାନେ ସାମାଜିକ ବିକାଶର ନିୟମଗୁଡ଼ିକ ଜାଣିବାକୁ ପାଇଲେ ସେତେବେଳେ ସେମାନେ ଆଉ ପୂର୍ବପରି ଶକ୍ତିହୀନ ହୋଇ ରହିଲେ ନାହିଁ । ଅଧିକନ୍ତୁ ସେମାନେ ନିଜର କଲ୍ୟାଣ ଲାଗି ଏହିସବୁ ନିୟମକୁ ବ୍ୟବହାର କରିପାରିଲେ ବା ସ୍ୱତଃସ୍ଫୂର୍ତ୍ତିତା ପରିବର୍ତ୍ତେ ବୁଦ୍ଧି ବିଚାରର ସହିତ ସମାଜିକ ଜୀବନରେ ଅଂଶ ଗ୍ରହଣ କରିବା ମାର୍ଗ ଉନ୍ମୁକ୍ତ ହୋଇଗଲା । ତେବେ, ସେହି ସାମାଜିକ ବିକାଶର ନିୟମ ସବୁ କଣ ?

ସମାଜର ସଙ୍ଗଠନ ଓ ବିକାଶ ସେ ତା'ର ଭୌତିକ ଜୀବନ ଦ୍ୱାରା ରୂପାୟିତ ହୁଏ, ଏହା ମାର୍କସ ଓ ଏଙ୍ଗେଲ୍ସ ପ୍ରତିପାଦିତ କରିଥିଲେ ।

## ସମାଜ ଜୀବନର ଭୌତିକ ଭିତ୍ତି

ଲୋକେ ଯଦି ଖାଦ୍ୟପେୟ, ଲୁଗାପଟା ଆଦି ଉତ୍ପାଦନ ନ କରନ୍ତି, ବସବାସ ନିର୍ମାଣ ନ କରନ୍ତି ଏବଂ ନିଜ ପାଇଁ ଅନ୍ୟାନ୍ୟ ଭୌତିକ ସୁବିଧା ସୁଯୋଗ ସୃଷ୍ଟି ନ କରନ୍ତି, ତାହାହେଲେ ସେମାନେ ବଞ୍ଚି ରହିପାରିବେ ନାହିଁ । ଏଇଟି ହେଲା ମୂଳ କଥା ।

ମନୁଷ୍ୟ ନିଜର ଜୀବନଧାରଣ ଲାଗି ଯାହା ଲୋଡ଼େ, ତାହା ପ୍ରକୃତିଠାରୁ ଅଣ୍ଟମିତ ନେଇ ସିଧାସଳଖ ବ୍ୟବହାର କରିପାରେ ନାହିଁ । ପ୍ରକୃତି ଯାହା ତାଙ୍କୁ

ଦାନ କରେ ଓ ତାକୁ ନେଇ ସେ ପରିମଣ୍ଡଳ ଭିତରେ ଓ ନିଜର ଉପଯୋଗ ଲାଗି ତାକୁ ଉପଯୁକ୍ତ କରି ଗଢେ । ଏଥିପାଇଁ ପ୍ରଥମେ ତାକୁ ନିଶ୍ଚୟ କାର୍ଯ୍ୟ କରିବାକୁ ପଡେ । ତେଣୁ ଶ୍ରମ ବା ଭୌତିକ ସମ୍ପଦର ଉତ୍ପାଦନ ହେଉଛି ପ୍ରତ୍ୟେକ ବ୍ୟକ୍ତିବିଶେଷର ଜୀବନ ପାଇଁ ଓ ସମଗ୍ରଭାବେ ସମାଜର ଜୀବନ ଲାଗି ଏକ ମୁଖ୍ୟ ମୌଳିକ ହେତୁ ବା ସର୍ତ୍ତ ।

ଭୌତିକ ସମ୍ପଦ ଉତ୍ପାଦନ କରିବାକୁ ମନୁଷ୍ୟ ଶ୍ରମର ବିଷୟବସ୍ତୁକୁ (object of labour) ଧରି ଯନ୍ତ୍ରପାତି ସାହାଯ୍ୟରେ କାମ କରେ । ଏହାକୁ ସବୁ ଶ୍ରମର ଯନ୍ତ୍ରପାତି କିମ୍ବା ଉତ୍ପାଦନ ଯନ୍ତ୍ରପାତି ବୋଲି ବୁଝାଯାଏ ।

ଶ୍ରମର ଯନ୍ତ୍ରପାତି ବୋଇଲେ ନାନାପ୍ରକାର ହାତ ହତିଆର, ମେସିନ୍, କଳକବଜା ଆଦିକୁ ବୁଝାଏ । ମାର୍କସ ଏଗୁଡ଼ିକୁ ଉତ୍ପାଦନର ହାଡ଼ ଓ ମାଂସପେଶୀ ବୋଲି ବର୍ଣ୍ଣନା କରିଛନ୍ତି । ଆଉ ଯେଉଁସବୁ ପଦାର୍ଥକୁ ନେଇ ଏହି ଯନ୍ତ୍ରପାତି ସାହାଯ୍ୟରେ କାମ କରି ମନୁଷ୍ୟ ଭୌତିକ ସମ୍ପଦ ଉତ୍ପାଦନ କରେ ତାକୁ "ଶ୍ରମର ବସ୍ତୁ" (object of labour) କହୁଛନ୍ତି । ଶ୍ରମର ଏହି ବିଷୟବସ୍ତୁ ଏବଂ ଉତ୍ପାଦନର ଯନ୍ତ୍ରପାତି, ତା ସହିତ ଉତ୍ପାଦନ ଲାଗି ଜମିଜମା, ଘରଦାଣ୍ଡ, ଇଲେକ୍‌ଟ୍ରିକ୍ ବ୍ୟବସ୍ଥା, କେନାଲ ଓ ଜିନିଷପତ୍ରର ପରିବହନ ଇତ୍ୟାଦି ଯାବତୀୟ ବିଷୟକୁ ଉତ୍ପାଦନର ଉପକରଣ ବୋଲି ବୁଝାଯାଏ ।

ଉତ୍ପାଦନର ଶକ୍ତି ଓ ଉତ୍ପାଦନର ସମ୍ପର୍କଗୁଡ଼ିକୁ ନେଇ ଭୌତିକ ସମ୍ପଦର ଉତ୍ପାଦନ ପ୍ରଣାଳୀ ଗଠିତ । ତାହାହିଁ ହେଉଛି ସମାଜର ଭୌତିକ ଜୀବନର ନିଷ୍ପତ୍ତିମୂଳକ ଉପାଦାନ ।

ଉତ୍ପାଦନ ଶକ୍ତି ହେଲା ସମାଜ ଦ୍ୱାରା ସୃଷ୍ଟି ହୋଇଥିବା ଉତ୍ପାଦନର ଉପକରଣ, ମୁଖ୍ୟତଃ ଶ୍ରମର ଯନ୍ତ୍ରପାତି ଓ ଭୌତିକ ସମ୍ପଦ ଉତ୍ପାଦନ କରୁଥିବା ଲୋକ ।

ଲୋକଙ୍କ ବିନା କୌଣସି ଉତ୍ପାଦନ ହୋଇ ନ ପାରେ । ଶ୍ରମିକ ବା ଶ୍ରମ କରୁଥିବା ଲୋକ ହେଉଛି ମନୁଷ୍ୟ ସମାଜର ମୁଖ୍ୟ ଉତ୍ପାଦିକା ଶକ୍ତି (productive force) । ଲୋକମାନେ ହିଁ ଯନ୍ତ୍ରପାତି ତିଆରି କରନ୍ତି; ସେମାନଙ୍କର ଯାହା ପ୍ରୟୋଜନ ତାହା ଉତ୍ପାଦନ କରିବା ଲାଗି ସେସବୁକୁ ବ୍ୟବହାର କରନ୍ତି ।

ତାହାହେଲେ ଉତ୍ପାଦନ କିପରି ହୁଏ ?

ଅତି ପ୍ରାଚୀନ କାଳରୁ ନିଜର ଜୀବନରକ୍ଷା ଲାଗି ପ୍ରକୃତି ବିରୁଦ୍ଧରେ ସଂଗ୍ରାମ କରିବାକୁ ଯାଇ ଲୋକମାନଙ୍କୁ ଏକଜୁଟ ହେବାକୁ ପଡ଼ିଛି । ଜଣେ ବ୍ୟକ୍ତିବିଶେଷ କେବେହେଲେ ଏକାକୀ ବଞ୍ଚିପାରେ ନାହିଁ । ତେଣୁ ଏହି ଭୌତିକ ସମ୍ପଦର ଉତ୍ପାଦନ ଏପରିକି ସୁଦୂର ଅତୀତରୁ ସାମାଜିକ ଚରିତ୍ର ବହନ କରିଆସୁଛି । ମନୁଷ୍ୟ ଯେତିକି ଯେତିକି ଶ୍ରମର ଯନ୍ତ୍ରପାତିର ଉନ୍ନତି ଆଣିଛି ଓ ପ୍ରତ୍ୟେକ ବ୍ୟକ୍ତିବିଶେଷ-

ସେତିକି ତା'ର ନିର୍ଦ୍ଦିଷ୍ଟ ଶ୍ରମକ୍ଷେତ୍ରରେ ବିଶେଷତ୍ୱ ହାସଲ କରୁଛି, ସେତିକି ଅନ୍ୟମାନଙ୍କ ଉପରେ ମନୁଷ୍ୟ ନିର୍ଭରଶୀଳ ହୋଇପଡ଼ୁଛି । ଦୃଷ୍ଟାନ୍ତସ୍ୱରୂପ, କୃଷକ କାରିଗରମାନଙ୍କ ତିଆରି ଜିନିଷ ଛଡ଼ା ଚଳିପାରିବ ନାହିଁ । ସେହିପରି କାରିଗରମାନେ କୃଷକର ଉତ୍ପାଦନ ଖାଦ୍ୟପଦାର୍ଥ ଛଡ଼ା ଚଳିପାରିବେ ନାହିଁ । ଆମର ଏ ଯୁଗରେ ମଟରକାର ତିଆରି କରୁଥିବା ଶ୍ରମିକ କେବେହେଲେ ତା'ର ମଟରକାର ତିଆରି କରି-ପାରିବ ନାହିଁ, ଯଦି ଅନ୍ୟ ଶ୍ରମିକମାନେ ତା ଲାଗି ମେସିନ, ଯନ୍ତ୍ରପାତି, କଳକବ୍ଜା ବଲ ବିୟରିଙ୍ଗ, ଟାୟାର ଆଦି ତିଆରି ନ କରନ୍ତି । ସମସ୍ତ ଶ୍ରମିକଙ୍କ ଲାଗି କୃଷିଜାତ ପଦାର୍ଥ ଆବଶ୍ୟକ, ଆଉ ସମସ୍ତ କୃଷକଙ୍କ ଲାଗି ଶିଳ୍ପଜାତ ଦ୍ରବ୍ୟ ଦରକାର ।

ଏହିପରି ଭାବରେ, ଯେଉଁମାନେ ଭୌତିକ ସମ୍ପଦ ଉତ୍ପାଦନରେ ଲାଗିଛନ୍ତି, ସେମାନେ ଆପଣା ଆପଣା ମଧ୍ୟରେ ସଂଯୁକ୍ତ ହୋଇ ରହିଥିବା ଦେଖାଯାଏ । ଏହି ସଂଯୋଗର ପ୍ରକୃତି, ଅର୍ଥାତ ସଂଯୁକ୍ତ ଲୋକମାନଙ୍କ ମଧ୍ୟରେ ଯେଉଁ ସମ୍ବନ୍ଧ ଦେଖାଯାଏ, ତାହା ନିର୍ଭର କରେ ଉତ୍ପାଦନର ଯନ୍ତ୍ରପାତି ଓ ଉତ୍ପାଦନର ଅନ୍ୟାନ୍ୟ ଉପକରଣ ଉପରେ; ନିର୍ଭର କରେ ବ୍ୟକ୍ତିବିଶେଷ ବା ସମସ୍ତ ସମାଜ, କିଏ ସେ ଉତ୍ପାଦନ ଉପକରଣର ମାଲିକ, ତାହା ଉପରେ । ଏହି ହିଁ ଉତ୍ପାଦନରେ ମନୁଷ୍ୟର ସ୍ଥାନ ଓ ସମାଜରେ ତା'ର ପ୍ରତିଷ୍ଠାକୁ ନିର୍ଣ୍ଣୟ କରେ ।

ଏକ ଉଦାହରଣ ଦେଖାଯାଉ । ପୁଞ୍ଜିବାଦୀ ସମାଜରେ ଏକ କାରଖାନା, ତା'ର ସମସ୍ତ ମେସିନ ଓ କଳକବ୍ଜା ଓ କଞ୍ଚାମାଲ, ଅର୍ଥାତ୍ ସମସ୍ତ ଉତ୍ପାଦନର ଉପକରଣ ସହିତ ପୁଞ୍ଜିପତିର ମାଲିକାନା ଅଧୀନରେ ଥାଏ । ଆଉ ସେ ପୁଞ୍ଜିପତି ନିଜେ କୌଣସି ଭୌତିକ ସମ୍ପଦ ଉତ୍ପାଦନ କରେ ନାହିଁ, ଅଥଚ ଶ୍ରମିକମାନେ ନିଜର ଶ୍ରମ ଦ୍ୱାରା ତାହା ଉତ୍ପାଦନ କରନ୍ତି । କିନ୍ତୁ ସେମାନେ ଉତ୍ପାଦନର ଯନ୍ତ୍ରପାତି, କଞ୍ଚାମାଲ କିମ୍ବା ସେମାନଙ୍କ ନିଜ ନିଜର ଶ୍ରମ ଫଳର ମାଲିକ ହୋଇ-ପାରନ୍ତି ନାହିଁ । ପୁଞ୍ଜିପତି ହୁଏ ସେ ସବୁର ଅଧିକାରୀ ।

ତାହାହେଲେ ପୁଞ୍ଜିପତି ଓ ଶ୍ରମିକ ମଧ୍ୟରେ କେଉଁ ପ୍ରକାରର ସଂପର୍କ ଗଢ଼ିଉଠେ ?

ଶ୍ରମିକମାନେ ଇଚ୍ଛା କରନ୍ତୁ, ବା ନ କରନ୍ତୁ ଯଦି ସେମାନେ ଭୋକ ଉପାସରେ ମରିବାକୁ ନ ଚାହାନ୍ତି ତେବେ ସେମାନଙ୍କୁ ପୁଞ୍ଜିପତିଙ୍କ ଲାଗି କାମ ନିଶ୍ଚୟ କରିବାକୁ ପଡ଼ିବ । ତେଣୁ ଶ୍ରମିକମାନେ ଯାହା ଉତ୍ପାଦନ କରନ୍ତି, ପୁଞ୍ଜିପତି ସେଥିରୁ ବେଶ୍ ମୋଟାଏ ବଡ଼ ଭାଗ ମାରିନିଏ । ଏହାର ଅର୍ଥ, ଉତ୍ପାଦନର ଉପକରଣ ଉପରେ ଏହି ଯେଉଁ ବ୍ୟକ୍ତିଗତ ମାଲିକାନା ରହିଛି ତାହା ଶ୍ରମିକ ଓ ପୁଞ୍ଜିପତି ମଧ୍ୟରେ ସଂପର୍କକୁ ନିର୍ଣ୍ଣୟ କରେ । ଶ୍ରମିକ କାମ କରେ, ପୁଞ୍ଜିପତି ସେମାନଙ୍କ ଶ୍ରମରୁ ଲାଭ ମାରେ ।




ଉପର ସ୍ଲୋଗାନ ହେଉଛି:—
ମାର୍କସ୍‌ବାଦ-ଲେନିନବାଦର ସାଜସ୍ତି ତତ୍ତ୍ୱ ଦୀର୍ଘଜୀବୀ ହେଉ ।

ଏହି ଭୌତିକ ସମ୍ପଦ ଉତ୍ପାଦନ କରିବାକୁ ଯାଇ ଲୋକମାନେ ଆପଣା ଆପଣା ମଧ୍ୟରେ ଯେଉଁ ସମ୍ପର୍କରେ ଆବଦ୍ଧ ହୁଅନ୍ତି, ତାକୁ ମାର୍କସ ଓ ଏଙ୍ଗେଲ୍‌ସ ଉତ୍ପାଦନର ସମ୍ପର୍କ ( Production relation ) ବୋଲି ବର୍ଣ୍ଣନା କରିଛନ୍ତି ।

ଏହି ଉତ୍ପାଦନ ସମ୍ପର୍କର ପ୍ରକୃତି ଲୋକମାନଙ୍କର ଇଚ୍ଛା ଉପରେ ନିର୍ଭର କରେ ନାହିଁ । ଏହା ନିର୍ଭର କରେ, ଉତ୍ପାଦନ ଶକ୍ତିମାନଙ୍କର ବିକାଶର ସ୍ତର ଉପରେ । ଅତି ପ୍ରାଚୀନ କାଳରେ ଯେତେବେଳେ ଲୋକେ ଅତି ଆଦିମ ଧରଣର ଯନ୍ତ୍ରପାତି ତିଆରି କରିବାକୁ ଆରମ୍ଭ କରିଥିଲେ, ସେତେବେଳେ ଜଣକୁ ଶୋଷି ଅନ୍ୟ ଜଣେ ବଞ୍ଚିବ, ଏପ୍ରକାର ଉତ୍ପାଦନ ସମ୍ପର୍କ ପୁରାପୁରି ଅସମ୍ଭବ ଥିଲା । ଶ୍ରମର ଉତ୍ପାଦିକା ଶକ୍ତି ଏତେ ନିମ୍ନ ସ୍ତରରେ ଥିଲା ଯେ ଲୋକେ ଯାହା ଉତ୍ପାଦନ କରୁଥିଲେ ସେ ସବୁକୁ ନିଜେ ନିଜେ ଖାଇଦେଉଥିଲେ ବା ଉପଭୋଗ କରୁଥିଲେ । ସେଭଳି କିଛି ଉଦ୍‌ବୃତ୍ତ ରହୁ ନ ଥିଲା ଯେ ଅନ୍ୟ ଜଣେ ତାହା ଶୋଷଣ କରିବା ସମ୍ଭବ ହେଉଥିଲା । ଅର୍ଥାତ୍ ଅନ୍ୟ ଜଣେ ଅପହରଣ କରିବାପାଇଁ କୌଣସି କ୍ଷେତ୍ରରେ କିଛି ଉଦ୍‌ବୃତ୍ତ ରହୁ ନ ଥିଲା ।

ଯେତେବେଳେ ଲୋକ ନିଜର ବଞ୍ଚିବା ଲାଗି ଯାହା ଆବଶ୍ୟକ କେବଳ ସେତିକି ବ୍ୟତୀତ ଆଉ କିଛି ଉଦ୍‌ବୃତ୍ତ ମଧ୍ୟ ଉତ୍ପାଦନ କଲା, ସେତେବେଳେ ପ୍ରଥମ ଶୋଷକଶ୍ରେଣୀ ଦାସ ମାଲିକ, ବେପାରୀ, ଧର୍ମଯାଜକ ଆଉ ପୁରୋହିତ ଇତ୍ୟାଦି ଦେଖାଦେଲେ । ସେମାନେ ନାନା ଉପାୟରେ ଉଦ୍‌ବୃତ୍ତକୁ ଅପହରଣ କଲେ । ଏହା ଫଳରେ ସେମାନେ କୌଣସି କାମଦାମ ନ କରି ବଞ୍ଚିବାକୁ ସକ୍ଷମ ହେଲେ । ପରେ ଉତ୍ପାଦିକା ଶକ୍ତିଗୁଡ଼ିକର ବିକାଶର ସ୍ତର ସହିତ ଅନ୍ୟ ଲୋକଙ୍କ ଶ୍ରମ ଅପହରଣ ଅର୍ଥାତ୍ ଶୋଷଣର ରୂପରେ ପରିବର୍ତ୍ତନ ଘଟିଲା; କିନ୍ତୁ ଶୋଷଣ ଅନବରତ ଲାଗି ରହିଲା ।

ଲକ୍ଷ୍ୟ କରିଯାଇପାରେ ଯେ ଉତ୍ପାଦନ ଶକ୍ତି ଓ ଉତ୍ପାଦନ ସମ୍ପର୍କଗୁଡ଼ିକ ଏକାଠି ହେବ ; ପରସ୍ପରଠାରୁ ପୃଥକ ହୋଇ ରହେ ନାହିଁ ।

ସମାଜର ଉତ୍ପାଦନ ଶକ୍ତି (productive force) ଲୋକମାନଙ୍କ ମଧ୍ୟରେ ଉତ୍ପାଦନ ସଂପର୍କ ସହିତ ଏକାଠି ମିଶି ଭୌତିକ ସମ୍ପଦ ଉତ୍ପାଦନ କରିବାର ପ୍ରଣାଳୀକୁ (mode of production) ନିର୍ଣ୍ଣୟ କରେ । ଏହି ଉତ୍ପାଦନ ପ୍ରଣାଳୀ ହିଁ ରାଜନୈତିକ ବ୍ୟବସ୍ଥା, ଆଇନ କାନୁନ, ବିଭିନ୍ନ ପ୍ରକାରର ଭାବଧାରା, ଧାରଣା ଓ ତତ୍ତ୍ୱକୁ ଏବଂ ସାମାଜିକ ଜୀବନର ଅନ୍ୟାନ୍ୟ ସମସ୍ତ ଦିଗଗୁଡ଼ିକୁ ସ୍ଥିର କରେ ।

ଆମେ ପାଞ୍ଚଟି ପ୍ରକାରର ଉତ୍ପାଦନ ପ୍ରଣାଳୀ ଦେଖିବାକୁ "ପାଉ ଆଦିମ ଗୋଷ୍ଠୀଗତ, ଦାସ ଅଧିକାରମୂଳକ, ସାମନ୍ତବାଦୀ, ପୁଞ୍ଜିବାଦୀ ଏବଂ କମ୍ୟୁନିଷ୍ଟ ଉତ୍ପାଦନ ପ୍ରଣାଳୀ ।

ମନୁଷ୍ୟର ସାମାଜିକ ବିକାଶର ଇତିହାସ ହେଲା କ୍ରମ-ଅନୁସରଣ; ଏକ ପରେ ଅନ୍ୟ ଏକ ଉତ୍ପାଦନ ପ୍ରଣାଳୀର ଆବିର୍ଭାବ ବା ଉତ୍ପାଦନ ପ୍ରଣାଳୀଗୁଡ଼ିକର କ୍ରମାନୁବୃତ୍ତି । ପୂର୍ବୁତ ପୂର୍ବୁଷ ଧରି ଲୋକେ ଶ୍ରମର ଯନ୍ତ୍ରପାତିର ଉନ୍ନତି ସାଧନରେ ଲାଗିଛନ୍ତି; ନିଜର ଉତ୍ପାଦନ, ଅଭ୍ୟାସ ଓ ଦକ୍ଷତାକୁ ବୃଦ୍ଧି କରିବାର ଚେଷ୍ଟା କରିଛନ୍ତି ଏବଂ ତଦ୍ଦ୍ୱାରା ସେମାନେ ସମାଜର ଉତ୍ପାଦନ ଶକ୍ତିକୁ ଦୃଢ଼ଭାବେ ବୃଦ୍ଧି କରିଛନ୍ତି । ସମସ୍ତ ଅପିଲ ଯେତେବେଳେ କି ପ୍ରଚଳିତ ଉତ୍ପାଦନ ସମ୍ପର୍କ ଉତ୍ପାଦନ ଶକ୍ତିମାନଙ୍କର ବିକାଶରେ ବାଧା ଦେବାକୁ ଆରମ୍ଭ କଲା, ସେତେବେଳେ ସମାଜ ସଙ୍କଟକ୍ଷଣ ବିକ୍ଷୋଭରେ ବିଦୀର୍ଣ୍ଣ ହୋଇଗଲା ଏବଂ ତାହା ବିପ୍ଳବ ଆଡ଼କୁ, ପ୍ରଚଳିତ ଉତ୍ପାଦନ ସମ୍ପର୍କ ସବୁର ଧ୍ୱଂସବିଧାନ ଓ ଆଉ ଏକ ନୂତନ ଉତ୍ପାଦନ ସମ୍ପର୍କର ପ୍ରତିଷ୍ଠା ଆଡ଼କୁ ଘେନିଗଲା । ସେଇ ଉତ୍ପାଦନ ପ୍ରଣାଳୀର ସମସ୍ତ ପୁରୁଣାଗଲା, ଅର୍ଥାତ୍ ଯାହା ଅଚଳନ୍ତି ହୋଇପଡ଼ିଲା ତାହା ବଦଳରେ ଏକ ନୂତନ ପ୍ରଗତିଶୀଳ ଉତ୍ପାଦନ ପ୍ରଣାଳୀ ତା'ର ସ୍ଥାନ ଅଧିକାର କଲା ।

## (୬) ଶ୍ରେଣୀ ଓ ଶ୍ରେଣୀସଂଗ୍ରାମ

ପୁରୁଣା ଓ ଗତାନୁ ଉତ୍ପାଦନ ପ୍ରଣାଳୀସବୁର ଯେଉଁ ପରିବର୍ତ୍ତନ ଘଟେ, ତାହା ସଦାସର୍ବଦା ନୂତନ ଓ ପ୍ରଗତିଶୀଳ ଶ୍ରେଣୀମାନଙ୍କ ସ୍ୱାର୍ଥ ଦ୍ୱାରା ପ୍ରଣୋଦିତ ହୋଇଥାଏ । ନିଜର ସ୍ୱାର୍ଥକୁ ସୁହାଉଥିବା ଯୋଗୁ ଯେଉଁସବୁ ଶ୍ରେଣୀ ପୁରୁଣା ଉତ୍ପାଦନ ପ୍ରଣାଳୀ ଓ ସମସ୍ତ ବ୍ୟବସ୍ଥାକୁ ସଂରକ୍ଷିତ କରିବାକୁ ଚେଷ୍ଟା କରନ୍ତି, ସେହି ଶ୍ରେଣୀର ସେ ପ୍ରତିରୋଧକୁ ଏହି ନୂତନ ଶ୍ରେଣୀମାନେ ଚୂର୍ଣ୍ଣ ବିଚୂର୍ଣ୍ଣ କରି-ଦିଅନ୍ତି । ଏହି କାରଣରୁ ଶ୍ରେଣୀ ସମାଜରେ ଶ୍ରେଣୀ ସଂଗ୍ରାମ ଦେଖାଦେଇଛି ଇତିହାସର ଚାଳିକା ଶକ୍ତି ଭାବରେ ।

## ଶ୍ରେଣୀମାନଙ୍କର ଉତ୍ପତ୍ତି ଓ ପ୍ରକୃତି

ଧନୀ ଆଉ ଦରିଦ୍ର, ଶୋଷକ ଆଉ ଶୋଷିତ, ସମାଜ କଣ ଏମିତି ଏହି ଶ୍ରେଣୀମାନଙ୍କରେ ସଦାସର୍ବଦା ଭାଗ ଭାଗ ହୋଇ ରହିଛି ? ନା, ସମାଜ ସବୁବେଳେ ଏମିତି ଭାଗ ଭାଗ ହୋଇ ରହିନାହିଁ ।

ତକ ଥିଲା ଯେତେବେଳେ ସମାଜରେ ଏଭଳି କୌଣସି ଭାଗ ବିଭାଗ ନ ଥିଲା । ଲୋକେ ସେମାନଙ୍କ ବିକାଶର ଆଦିମ ଅବସ୍ଥାରେ ଗୋଷ୍ଠୀମାନଙ୍କରେ ( Commune ) ବାସ କରୁଥିଲେ । ସେଠାରେ ଧନୀ ନ ଥିଲେ କି ଦରିଦ୍ର ନ ଥିଲେ; ଥିଲେ ସମସ୍ତେ ସମାନ । ଏହା ହେଲା ତଥାକଥିତ ଆଦିମ ଗୋଷ୍ଠୀବାସୀ ବ୍ୟବସ୍ଥା । ଏହା ହଜାର ହଜାର ବର୍ଷ ଧରି ଟିକି ରହିଥିଲା ।

ଏହି ଆଦିମ ସମାଜରେ କାର୍ଯ୍ୟପ୍ରଣାଳୀ ( Technique ) ଅତି ନିମ୍ନ ସ୍ତରରେ ଥିଲା । ମନୁଷ୍ୟ ଶ୍ରମର ଅତି ସରଳ ଯନ୍ତ୍ରପାତି, ପଥରର କୁଠାର, ହାତୁଡ଼ି ଓ ବର୍ଚ୍ଛା ଆଦି ବ୍ୟବହାର କରୁଥିଲା । ଲୋକମାନେ କେବଳ ମିଳିତ ଉଦ୍ୟମ ଦ୍ୱାରା ଖାଦ୍ୟ ସଂଗ୍ରହ କରୁଥିଲେ, ବନ୍ୟ ପଶୁମାନଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରୁଥିଲେ ଏବଂ ପ୍ରାକୃତିକ ଶକ୍ତିର ପ୍ରତିରୋଧ କରୁଥିଲେ । ସେମାନେ ଏକାଠି ଗୋଠରେ କାର୍ଯ୍ୟ କରୁଥିଲେ । ଯାହାସବୁ ଅର୍ଜନ କରୁଥିଲେ, ତାହା ହେଉଥିଲା ଗୋଠ ବା ସର୍ବସାଧାରଣ ସମ୍ପତ୍ତି ଓ ତାହା ସମାନ ଭାବରେ ବଣ୍ଟା ହେଉଥିଲା ସମସ୍ତଙ୍କ ମଧ୍ୟରେ । ସେ ଅବସ୍ଥାରେ ଜଣେ ଅନ୍ୟ ଜଣର ପରିଶ୍ରମ ଉପରେ ବଞ୍ଚିପାରେନ୍ତା କିପରି ? ଜଣେ ଅନ୍ୟ ଜଣକୁ ଶୋଷଣ କରିବା ସମ୍ଭବ ହୁଅନ୍ତା ବା କିପରି ? କିମ୍ବା ସେତେବେଳେ ପୁଣି ଶାସନକଳ ବା ଲୋକଙ୍କୁ ବାଧ୍ୟବାଧକତା ସୂତ୍ରରେ ଆବଦ୍ଧ କରି ବା ଜବତ କରି ରଖିବାର କୌଣସି ବ୍ୟବସ୍ଥାର ଆବଶ୍ୟକତା ନ ଥିଲା । ଗୋଷ୍ଠୀର ସାଧାରଣ ବିଷୟ ଏକତ୍ର ମିଳିତଭାବେ ସବୁ ସାବାଳକ ବ୍ୟକ୍ତିମାନଙ୍କ ଦ୍ୱାରା ନିଷ୍ପତ୍ତି ହେଉଥିଲା ବା ଗୋଷ୍ଠୀର ବୃଦ୍ଧ ବୟସ୍କ, ସବୁଠାରୁ ଅଭିଜ୍ଞ ବ୍ୟକ୍ତିମାନଙ୍କୁ ପଚରା-ଯାଇ ପରାମର୍ଶ ନିଆଯାଉଥିଲା । ମାତ୍ର ସେହି ବୟସ୍କ ଲୋକମାନଙ୍କ କର୍ତ୍ତୃତ୍ୱ ପଛରେ କୌଣସି ଜୋରଜବରଦସ୍ତି ବା ସମ୍ପଦର ବଳ ନ ଥିଲା । ସେମାନଙ୍କ କର୍ତ୍ତୃତ୍ୱ ଗୋଷ୍ଠୀର ପ୍ରତ୍ୟେକ ଲୋକର ଶ୍ରଦ୍ଧା ଓ ସମ୍ମାନ ଉପରେ ପ୍ରତିଷ୍ଠିତ ଥିଲା ।

### ସମାଜ କାହିଁକି ଓ କିପରି ବିଭିନ୍ନ ଶ୍ରେଣୀରେ ବିଭକ୍ତ ହେଲା ?

କେତେକ ବୁର୍ଜୁଆ ପଣ୍ଡିତ କହନ୍ତି ଯେ ହିଂସା, ଯୁଦ୍ଧ, ଲୁଣ୍ଠନ ଓ ଏକ ଉପଜାତି ଉପରେ ଅନ୍ୟ ଏକ ଉପଜାତିର ଅଧିକାର ପ୍ରତିଷ୍ଠା ଫଳରେ ଶ୍ରେଣୀ-ବିଭାଗ ସମ୍ଭବ ହୋଇଛି । ଅବଶ୍ୟ ହିଂସାକାଣ୍ଡ ଯେ ନ ଥିଲା, ତା ନୁହେଁ । କିନ୍ତୁ ସମାଜ ଯେ ଶୋଷକ ଓ ଶୋଷିତ ଶ୍ରେଣୀରେ ବିଭକ୍ତ ହେଲା, ଏହା ତା'ର ମୁଖ୍ୟ କାରଣ ନ ଥିଲା, କି ହୋଇ ନ ପାରେ । ଆଦିମ ଗୋଷ୍ଠୀ ବ୍ୟବସ୍ଥାରେ ମଧ୍ୟ ଉପଜାତି ଉପଜାତି ମଧ୍ୟରେ ସଂଘର୍ଷ ଘଟୁଥିଲା; କିନ୍ତୁ ତାହା କେବେହେଲେ ମନୁଷ୍ୟ ଯାଖରେ ମନୁଷ୍ୟର ଦାସତ୍ୱକୁ କାଏମ କରି ନ ଥିଲା—ଅର୍ଥାତ୍ ମନୁଷ୍ୟକୁ 'ଦାସତ୍ୱର' ପ୍ରତିଷ୍ଠା ଦିଗକୁ ନେଇ ଯାଇ ନ ଥିଲା । ତେଣୁ ଏଥିରୁ ଅନୁମାନ କରାଯାଇପାରେ ଯେ, ହିଂସାମୂଳକ କାର୍ଯ୍ୟ ଏକମାତ୍ର ବା ଏପରିକି ମୁଖ୍ୟ କାରଣ ନ ଥିଲା ।

ମାର୍କସବାଦ-ଲେନିନବାଦ କହେ, ଶ୍ରେଣୀମାନଙ୍କ ଦ୍ୱାରା ସମାଜ ଯେ ଭାଗ ଭାଗ ହୋଇଗଲା, ତାହା ଉତ୍ପାଦନର ଉପକରଣ ଅର୍ଥାତ୍ ଜମିଜମା, ବଣ ଜଙ୍ଗଲ, ପାଣି ପଥର ଏବଂ ଶ୍ରମର ଯନ୍ତ୍ରପାତି—ମୋଟ ଉପରେ ଭୌତିକ ସଂପଦ ଉତ୍ପାଦନ ଲାଗି ଯାହା କିଛି ମଣିଷର ଆବଶ୍ୟକ, ସେସବୁ ଉପରେ ବ୍ୟକ୍ତିଗତ ମାଲିକାନାର ଉଦ୍ଭବ ହେବାରୁ ଘଟିଛି ।

ବ୍ୟକ୍ତିଗତ ସମ୍ପତ୍ତିର, ତେଣୁ ବିଭିନ୍ନ ଶ୍ରେଣୀର ହଠାତ୍ ସମାଜ ମଧ୍ୟରେ ଉଦ୍ଭବ ଘଟିନାହିଁ । ଶ୍ରମର ଯନ୍ତ୍ରପାତିଗୁଡ଼ିକର ଉନ୍ନତିସାଧନ, ପଶୁପାଳନ, କୃଷି ଓ କାରିଗରି ବିଦ୍ୟାର ବିକାଶ ଏକ ଧୀର ମନ୍ଥର ପ୍ରକ୍ରିୟା । ଏହା ଫଳରେ ଶ୍ରମ ଅଧିକ ଅଧିକ ଉତ୍ପାଦନକ୍ଷମ ( productive ) ହେଲା । ଯେତେବେଳେ ଲୋକେ ତମ୍ବା, ବ୍ରୋଞ୍ଜ ଓ ତା'ପରେ ଲୁହା ପ୍ରଭୃତି ଠାରୁ ଦ୍ରବ୍ୟର ବ୍ୟବହାର ଜାଣିଲେ ସେତେବେଳେ ଉତ୍ପାଦନ ଦ୍ରୁତ ବେଗରେ ବୃଦ୍ଧି ପାଇବାକୁ ଲାଗିଲା, ସେମାନଙ୍କର ଚଳାଚଳ ବା ଜୀବନଧାରଣ ଲାଗି ଯାହା ଆବଶ୍ୟକ ତାହା ଅପେକ୍ଷା ଅଧିକ ଭୌତିକ ସମ୍ପଦ ଉତ୍ପାଦିତ ହେଲା. ସେତେବେଳେ ଉଦ୍ବୃତ୍ତ ବା ବଳକା ଉତ୍ପନ୍ନ ଜିନିଷ ଦେଖାଦେଲା ।

ଉତ୍ପାଦନ ଯନ୍ତ୍ରପାତିର ବିକାଶ ଫଳରେ ପ୍ରଥମ କରି ଶ୍ରମକ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ସାମାଜିକ ବିଭାଗ ପ୍ରକାଶ ପାଇଲା । କୃଷିଜୀବୀ ଉପଜାତିମାନଙ୍କ ସହିତ ପଶୁପାଳନଜୀବୀ ଉପଜାତି ଦେଖାଦେଲେ । ତା'ପରେ ଯେଉଁ ଉପଜାତିମାନେ କାରିଗରି ବା ହସ୍ତ-ଶିଳ୍ପରେ ଲିପ୍ତ ରହିଲେ ସେମାନେ ଗୋଷ୍ଠୀଠାରୁ ନିଜକୁ ଅଲଗା କରି ରଖିଲେ । ଶ୍ରମର ଏହି ସାମାଜିକ ବିଭାଗ ଫଳରେ ବିନିମୟର ବିକାଶ ସଂଘଟିତ ହେଲା । ପଶୁପାଳନଜୀବୀ ଓ କୃଷିଜୀବୀ ଉପଜାତିମାନେ ପରସ୍ପର ମଧ୍ୟରେ ସେମାନଙ୍କର ଉଦ୍ବୃତ୍ତ ଉତ୍ପନ୍ନ ଜିନିଷକୁ ବିନିମୟ ବା ଅଦଳବଦଳ କରୁଥିଲେ । ଏବେ ଏ ଦୁହେଁ ଯାକ କାରିଗରମାନଙ୍କ ସହିତ ମଧ୍ୟ ସେମାନଙ୍କ ଜିନିଷପତ୍ରର ବିନିମୟ ବା ଅଦଳବଦଳ ଚଳାଇଲେ ।

ଉତ୍ପାଦନ ଶକ୍ତିର ବିକାଶ ହେବା ସଙ୍ଗେ ସଙ୍ଗେ ଆଦିମ ଗୋଷ୍ଠୀର ସମଗ୍ର ଜୀବନ ପ୍ରଣାଳୀ ବଦଳିଗଲା । ସମୟ ଆସିଲା, ଯେତେବେଳେ କି ଗୋଟିଏ ପରିବାର ନିଜର ଉଦ୍ୟମ ଦ୍ୱାରା ଜୀବନଧାରଣରେ ପ୍ରୟୋଜନସ୍ଥ ଜିନିଷ ପାଇବାକୁ ସକ୍ଷମ ହେଲା । ତେଣୁ ଏକ ବ୍ୟକ୍ତିବିଶେଷର ପରିବାର ସମୂହକୁ ବା ଗୋଷ୍ଠୀକୁ ଏଡ଼ିଦେବାକୁ ଲାଗିଲେ । ଯନ୍ତ୍ରପାତି ଓ ଉତ୍ପନ୍ନ ଜିନିଷ, ଯାହା ପୂର୍ବେ ସମସ୍ତ ଗୋଷ୍ଠୀର ହୋଇ ରହିଥିଲା, ତାହା ଧୀରେ ଧୀରେ ଏକ ବ୍ୟକ୍ତିବିଶେଷର ପରିବାରର ହାତରେ ପଡ଼ିଲା ; ବ୍ୟକ୍ତିଗତ ସମ୍ପତ୍ତିରେ ପରିଣତ ହେଲା । ଦେଶ ଅଧିକାର ଲାଗି ଯୁଦ୍ଧ ଓ ବାଣିଜ୍ୟ ଆଦି ଫଳରେ ବ୍ୟକ୍ତିଗତ ସମ୍ପତ୍ତି ଅଧିକ ବିକାଶ ଲାଭ କଲା ଓ ସୁଦୃଢ଼ ହେଲା ।

ବ୍ୟକ୍ତିଗତ ସମ୍ପତ୍ତିର ଉଦ୍ଭବ ସହିତ ଭୌତିକ ସମ୍ପଦ ଉତ୍ପାଦନ କ୍ଷେତ୍ରରେ ଲୋକମାନଙ୍କ ମଧ୍ୟରେ ରହିଥିବା ସମ୍ପର୍କର ପରିବର୍ତ୍ତନ ଘଟିଲା ।

ସମ୍ପତ୍ତିରେ ଅସମତା ଦେଖାଦେଲା । କେତେକ ପରିବାର ଧନୀ ହୋଇ ଉଠିଲେ, ଆଉ ଅଧିକାଂଶ ଲୋକ ସେମାନଙ୍କ ଉପରେ ନିର୍ଭରଶୀଳ ହେଲେ । ମୁଖିଆ ମୁଖିଆ ଓ ସାମରିକ ନେତୃତ୍ୱ ନେଉଥିବା କେତେକ ଅନ୍ୟମାନଙ୍କ ତୁଳନାରେ ଅତି ଚଞ୍ଚଳ-

ଆପଣା ଆପଣାକୁ ବଳବଶାଳୀ କରିପାରିଲେ । ଯେତେଦୂର ପାରିଲେ, ଯୁଦ୍ଧର ଲୁଣ୍ଠିତ ଦ୍ରବ୍ୟ ନିଜେ ଅପହରଣ କରିବାକୁ ସବୁମତେ ଚେଷ୍ଟା କଲେ । ଗୋଷ୍ଠୀ ସହିତ ସଂଘର୍ଷ କାଳରେ ଯେଉଁମାନଙ୍କୁ ଯୁଦ୍ଧବନ୍ଦୀ କରିନେଲେ, ସେମାନଙ୍କୁ ନିଜର ଦାସରେ ପରିଣତ କଲେ ଏବଂ ସେମାନଙ୍କ ବନ୍ଦୀକାରୀ ବା ବନ୍ଧନକାରୀଙ୍କର ଅର୍ଥ ଓ ନିଜର ସେବାରେ ଓ ସମସ୍ତ କାମରେ ଖଟାଇଲେ । ଧୀରେ ଧୀରେ ପୂର୍ବରୁ ବଳୁ ବା ନିର୍ବାଚିତ ହେଉଥିବା ମୁଖିଆ ଓ ସାମରିକ ନେତାମାନଙ୍କର ପଦବୀଟା ବଂଶାନୁଗତ ସ୍ଵତ୍ଵାନୁକ୍ରମିକ ହୋଇଉଠିଲା । ସେତେବେଳେ ଦଳେ ଲୋକ ଦେଖାଦେଲେ ଯେଉଁମାନେ କି ଅନ୍ୟମାନଙ୍କୁ ଶୋଷଣ କରି ଚଳିଲେ । ଶେଷରେ ଆଦିମ ସମାଜ ଭାଗ ଭାଗ ବା ଖଣ୍ଡ ଖଣ୍ଡ ହୋଇଗଲା । ଗୋଟିଏ ଅଂଶରେ ଅତି ଅଳ୍ପସଂଖ୍ୟକ ଲୋକ ନିଜ ହାତରେ ସମସ୍ତ କ୍ଷମତା ଓ ଉତ୍ପାଦନର ଉପକରଣଗୁଡ଼ିକୁ ଠୁଳ କଲେ । ଅନ୍ୟ ଅଂଶଟିର ଯେଉଁମାନେ ଉତ୍ପାଦନର ଉପକରଣରୁ ବଞ୍ଚିତ ହେଲେ ସେମାନେ ଦାସତ୍ଵର ଶିକାର ହେଲେ ।

ତେଣୁ ସମାଜ, ଶୋଷକ ଓ ଶୋଷିତ—ଏହି ଦୁଇଟି ବିରୋଧୀ (ବୈରୀ) ଶ୍ରେଣୀରେ ବିଭକ୍ତ ହୋଇଗଲା ।

ପ୍ରଥମେ ଯେଉଁଦିନଠାରୁ ସମାଜ ଏହିଭଳି ଶ୍ରେଣୀରେ ବିଭକ୍ତ ହୋଇଛି, ସେହିଦିନଠାରୁ ସମାଜବାଦର ବିଜୟ ପର୍ଯ୍ୟନ୍ତ ମନୁଷ୍ୟ ସମାଜର ଇତିହାସ ହୋଇଛି, ଅତ୍ୟାଚାରିତ ଓ ଅତ୍ୟାଚାରୀ ମଧ୍ୟରେ ଏକ ଦ୍ୱନ୍ଦ୍ଵ ଓ ତିକ୍ତ ସଂଗ୍ରାମର ଇତିହାସ । ଅତ୍ୟାଚାରିତମାନେ ନିଜକୁ ମୁକ୍ତ କରିବା ଲାଗି ସଂଗ୍ରାମ କରିଛନ୍ତି । କିନ୍ତୁ ଶୋଷକମାନେ, ଯେଉଁମାନେ କି ନିଜର କ୍ଷମତା ଓ ସଂପତ୍ତି ଛାଡ଼ିବାକୁ ଅନିଚ୍ଛୁକ, ସେମାନେ ଶ୍ରମଜୀବୀ ଜନସାଧାରଣଙ୍କୁ ଆହୁରି ଅଧିକ ଦାସତ୍ଵ ଶୃଙ୍ଖଳରେ ଆବଦ୍ଧ କରିବା ଦିଗରେ ଉଦ୍ୟତ ହୋଇଛନ୍ତି ।

ଇତିହାସ ଦର୍ଶାଇଦେଇଛି, ଶୋଷକ ଓ ଶୋଷିତ ମଧ୍ୟରେ ବୈରିତା ହେଉଛି ସାଲିସହୀନ ବୈରିତା । ଏକ ପ୍ରଚଣ୍ଡ ଶ୍ରେଣୀସଂଗ୍ରାମ ଜରିଆରେ କେବଳ ତାକୁ ସମାଧାନ କରିବାକୁ ହେବ ।

## ଦାସ-ଅଧିକାର ବ୍ୟବସ୍ଥା

ଦାସ-ସମାଜ ହେଉଛି ପ୍ରଥମ ଶ୍ରେଣୀ-ସମାଜ । ଦାସ ଓ ଦାସମାଲିକମାନେ ହେଉଛନ୍ତି ପ୍ରଧାନ ବୈରିଭାବାପନ୍ନ ଶ୍ରେଣୀ । ଦାସତ୍ଵ ହେଲା ସବୁଠାରୁ ବଳି ଅତି ନୃଶଂସ ଆଉ ବର୍ବର ଶୋଷଣର ପ୍ରକାଶ୍ୟ ରୂପ । ଦାସମାନଙ୍କୁ ଚଳନ୍ତି ବା ଅସ୍ଥାବର ସଂପତ୍ତି ଏବଂ କଥାକୁହା ଯନ୍ତ୍ରରୂପେ ଗଣାଯାଉଥିଲା । ଦାସ ବ୍ୟକ୍ତି ନିଜେ କୌଣସି ସଂପତ୍ତିର ମାଲିକ ହେବା ଦୂରେ ଥାଉ, ତା'ର ମାଲିକର ସଂପତ୍ତି ହୋଇ ରହୁଥିଲା; ତା'ର ମାଲିକ ତା'କୁ ଅବାଧରେ ଖରିଦ ବିକ୍ରି, ଏପରିକି ହତ୍ୟା ମଧ୍ୟ କରିପାରୁଥିଲା ।

ଦାସ ଯାହା ଉତ୍ପାଦନ କରୁଥିଲା, ତା'ର ମାଲିକ ତାକୁ ସବୁ ଅପହରଣ କରୁଥିଲା ; ଖାଲି ବଞ୍ଚିରହିବାପାଇଁ ଆବଶ୍ୟକ ଯତ୍‌ସାମାନ୍ୟ ମାତ୍ର ତା ଭାଗ୍ୟରେ ପଡ଼ୁଥିଲା ।

ଏହା ଦାସମାନଙ୍କର ପ୍ରତିରୋଧକୁ ଦମନ କରିବାପାଇଁ ଦାସମାଲିକମାନେ ଜୋରଜବରଦସ୍ତି ବା ବଳପ୍ରୟୋଗର ଏକ କଳ-ରାଷ୍ଟ୍ର ଗଠନ କଲେ । ଏହି କଳ ବା 'ରାଷ୍ଟ୍ର' ବ୍ୟବସ୍ଥା, ଦାସମାଲିକମାନଙ୍କ ସ୍ୱାର୍ଥରକ୍ଷା ଲାଗି ନିୟମମାନ ପ୍ରଣୟନ କଲା । ସେହି ସବୁ ନିୟମ ଦାସମାନେ ଯେପରି ମାନନ୍ତି, ସେଥିଲାଗି ବଳପ୍ରୟୋଗ କଲା । ତଥାପି, ଏହି ସବୁ ଘୃଣ୍ୟ ବର୍ବର ଅତ୍ୟାଚାର ସତ୍ତ୍ୱେ ଉତ୍ପାଦନ ଶକ୍ତି ସବୁର ବିକାଶ ଦୃଷ୍ଟିରୁ ଆଦିମ ଗୋଷ୍ଠୀଗତ ବ୍ୟବସ୍ଥା ତୁଳନାରେ ଦାସପ୍ରଥା ବା ଦାସବ୍ୟବସ୍ଥା ଏକ ଆଗୁଆ ପଦକ୍ଷେପ । ପ୍ରଯୁକ୍ତି ବିଦ୍ୟା ବା କାରିଗରି କାର୍ଯ୍ୟପ୍ରଣାଳୀ ଦୃଷ୍ଟିରୁ ଦାସ-ମାଲିକ ରାଷ୍ଟ୍ରରେ କଳା ଓ ବିଜ୍ଞାନର ବିକାଶ ସାଧିତ ହେଲା, ଶ୍ରମର ଉତ୍ପାଦନ ଶକ୍ତି ବୃଦ୍ଧି ପାଇଲା ; ରାସ୍ତାଘାଟ, ଜଳସେଚନ ବ୍ୟବସ୍ଥା, ପ୍ରାସାଦ, ଅଟ୍ଟାଳିକା ଓ ଥିଏଟର ଆଦିର ବିରାଟ ନିର୍ମାଣ ଯୋଜନାମାନ କାର୍ଯ୍ୟକାରୀ ହେବାରେ ଦାସ-ଶ୍ରମର ବିନିଯୋଗ ଘଟିଲା ।

ଏହା ହେଲେ ମଧ୍ୟ ଶେଷରେ ଏହି ଦାସପ୍ରଥା ସାମାଜିକ ପ୍ରଗତି ପଥରେ ଏକ ପ୍ରତିବନ୍ଧକ ହୋଇଉଠିଲା । ଅଧିକ ଉତ୍ପାଦନ କରିବାରେ କିମ୍ବା ଶ୍ରମର ଯନ୍ତ୍ରପାତିର ଉନ୍ନତି ବିଧାନ କରିବାରେ ଦାସ ବ୍ୟକ୍ତିର କୌଣସି ଆଗ୍ରହ ନ ଥିଲା; କାରଣ ତା'ଦ୍ୱାରା ସେ ନିଜର ଶତ୍ରୁ ଦାସ-ମାଲିକମାନଙ୍କୁ ହିଁ କେବଳ ସାହାଯ୍ୟ କରିଥାନ୍ତା । ଦାସ ଓ ପ୍ରଥାର କାଳ ପରିଗଲା, ତାହା ଗତାନୁଗତିକ ଓ ଅଚଳ ହୋଇଉଠିଲା । ଦାସମାନଙ୍କର ବିଦ୍ରୋହ ଓ ଅଭ୍ୟୁତ୍ଥାନ ଦ୍ୱାରା ତାହା ଟଳମଳ ହୋଇ ଦୁର୍ବଳ ହେଇ-ପଡ଼ିଲା; ନିଜର ଅନିବାର୍ଯ୍ୟ ମୃତ୍ୟୁ ବା ଧ୍ୱଂସକୁ ହିଁ ବରଣ କଲା । ତାହା ପରିବର୍ତ୍ତିରେ ତା'ର ସ୍ଥାନରେ ଦେଖାଦେଲା ସାମନ୍ତବାଦୀ ପ୍ରଥା ।

## ସାମନ୍ତବାଦୀ ପ୍ରଥା ବା ବ୍ୟବସ୍ଥା

ସାମନ୍ତବାଦୀ ପ୍ରଥାରେ ମୁଖ୍ୟ ଶ୍ରେଣୀ ହେଲେ ସାମନ୍ତବାଦୀ ପ୍ରଭୁ (ଭୂସ୍ୱାମୀମାନେ) ଶ୍ରେଣୀ ଓ ଭୂଦାସ ଶ୍ରେଣୀ । ଭୂସ୍ୱାମୀମାନେ ଜମି, ଜଳ, ବନ ଜଙ୍ଗଲ ଓ ଅନ୍ୟ ସମସ୍ତ ପ୍ରାକୃତିକ ସମ୍ପଦର ମାଲିକ ହେଲେ । ଭୂଦାସମାନେ ହେଲେ ଦାସମାନଙ୍କ ଭଳି ଅତ୍ୟାଚାରିତ । ଦାସମାନଙ୍କଠାରୁ ଏମାନଙ୍କର ପାର୍ଥକ୍ୟ ହେଲା-ଦାସମାନଙ୍କର କୌଣସି ସମ୍ପତ୍ତି ନ ଥିଲା; ଭୂଦାସମାନଙ୍କର ଛୋଟ ଛୋଟ କ୍ଷେତ, ଛୋଟ ଛୋଟ ଯନ୍ତ୍ରପାତି ଓ କୃଷି ଲାଗି ଗୋରୁ ମହିଁଷି ଆଦି ଉପକରଣ ସବୁ ରହିଲା । ଶ୍ରମ କ୍ଷେତ୍ରରେ ସେମାନଙ୍କର ନିଜସ୍ୱ ବ୍ୟକ୍ତିଗତ ସ୍ୱାର୍ଥକୁ ଏହା କେତେକାଂଶରେ

ସ୍ଥିତ ନଥିଲା । ତେଣୁ ଦାସପ୍ରଥା ତୁଳନାରେ ଏହା କୃଷିର ଉନ୍ନତ ବିଧାନରେ ଓ ଶ୍ରମର ଉତ୍ପାଦନର ବିକାଶ ସାଧନରେ ଅଧିକ ସୁବିଧା ସୁଯୋଗ ଯୋଗାଇଲା ।

ସାମନ୍ତବାଦୀ ମାଲିକମାନେ ନିଜେ ନିଜେ ଉତ୍କୃଷ୍ଟ ଭୂମିଗୁଡ଼ିକ ମନଇଚ୍ଛା ଦଖଲ କରି ଗୃହସ୍ଥୀମାନଙ୍କୁ ଖରାପ ଜମି ବଣ୍ଟନ କରିଦେଲେ । ଭୂଦାସମାନେ ଗୃହ ଓ ଚଷୁଥିବା ଜମି ସମେତ ନିଜେ ନିଜେ ମଧ୍ୟ ଜମିମାଲିକମାନଙ୍କ ଅଧୀନସ୍ଥ ହୋଇ ରହିଲେ । ଚଳନ୍ତି ଓ ଅସ୍ଥାବର ସମ୍ପତ୍ତି ଭଳି ଜମିମାଲିକ ଗୃହସ୍ଥୀଙ୍କୁ ବିକି ଖରିଦ କରିପାରିଲା । ସାମାନ୍ୟ ସାମାନ୍ୟ ଅପରାଧ ଯୋଗୁଁ ଅତି ନୃଶଂସ ଭାବେ ଭୂଦାସଙ୍କୁ ପ୍ରହାର କରାଯିବା, ଚାବୁକ ମରାଯିବା, ହତ୍ୟା କରାଯିବା, ଏପରିକି ଶେଷରେ ଭୂଦାସ ନିଜେ ବାଧ୍ୟ ହୋଇ ଆତ୍ମହତ୍ୟା କରିବାର ଅସଂଖ୍ୟ ଘଟଣା ଭୂଦାସତ୍ୱର ଇତିହାସରେ ଲିପିବଦ୍ଧ ହୋଇଛି । ସ୍ପଷ୍ଟ ଦେଖିବାକୁ ମିଳିଛି— ଗୋଟାଏ କୁକୁର ଲାଗି ଜଣେ ଭୂଦାସଙ୍କୁ ବିକି ଦିଆଯାଇପାରିଲା, ବଦଳ ଦିଆଯାଇ ପାରିଲା । କିମ୍ବା ପଶା ଖେଳରେ ବାଜି ରଖି ତାଙ୍କୁ ହରାଇ ଦିଆଗଲା । ସାମନ୍ତବାଦୀ ମାଲିକମାନେ ଆଇନର ସୁବିଧା ନେଇ ନିଜ ନିଜ ଲାଗି ଭୂଦାସଙ୍କୁ ଯାବତୀୟ କାର୍ଯ୍ୟରେ ଖଟାଇବାରେ ଲାଗିଲେ ।

ଭୂଦାସ-ଶ୍ରମର ଉତ୍ପାଦନ ଶକ୍ତି ନିମ୍ନସ୍ତରର ଥିଲା । ଭୂଦାସ, ଅଦିମ ଯୁଗର କୃଷି ଉପକରଣ କାଠଲଙ୍ଗଳ ଓ ମଇ ଦ୍ୱାରା ଜମି ଚାଷ କରୁଥିଲା । ପରିବାରର ଭରଣ-ପୋଷଣ ଲାଗି ଓ ନିଜର ଦାସତ୍ୱମୂଳକ କର୍ତ୍ତବ୍ୟ ପୂରଣ ପାଇଁ ତାଙ୍କୁ ଅହୋରାତ୍ର ଖଟିବାକୁ ପଡ଼ୁଥିଲା । ଅଥଚ ସେ ମୂର୍ଖ, ଅନ୍ଧ ହୋଇ ରହୁଥିଲା; ସମାଜରେ ତା'ର କୌଣସି ଅଧିକାର ନ ଥିଲା । ବ୍ୟକ୍ତିଗତ ଭାବରେ ନିଜର ମାଲିକ ଉପରେହିଁ ସେ ନିର୍ଭର କରୁଥିଲା ।

ଏହା ସତ୍ତ୍ୱେ ଭୂଦାସ-ପ୍ରଥା ଅମଳରେ ଉତ୍ପାଦନ ଶକ୍ତିର ଅଧିକ ଅଗ୍ରଗତି ଘଟିଥିଲା । କଳ ଓ ମେସିନ୍ ଆଦି ଦେଖା ଦେଇଥିଲା; କାରଖାନାମାନ ଗଢ଼ି ଉଠିଥିଲା । କିନ୍ତୁ ସେହି ଅବସ୍ଥାରେ ଶିଳ୍ପର ଉପଯୁକ୍ତ ବିକାଶସାଧନ ସମ୍ଭବ ହୋଇ ନ ଥିଲା ।

କାରଣ, କଳକାରଖାନା ଗଠନ ଓ ଶିଳ୍ପର ପ୍ରସାର କରିବାକୁ ହେଲେ ସେହିଭଳି ଶ୍ରମିକର ଆବଶ୍ୟକ, ଯେଉଁମାନେ କି ଭୂଦାସତ୍ୱର ବନ୍ଧନରୁ ମୁକ୍ତ ଥିବେ, ମେସିନ୍ ବା କଳକବ୍ଜା କିପରି ଚଳାଇବାକୁ ହୁଏ ଭଲଭାବରେ ଜାଣିଥିବେ । ସାମନ୍ତବାଦୀ ପ୍ରଭୁମାନେ କିନ୍ତୁ ବିନାମୂଲ୍ୟରେ ପାଉଥିବା ଶ୍ରମଶକ୍ତି ବା ବେଠିରେ ମିଳୁଥିବା ଶ୍ରମଶକ୍ତିକୁ ଆଦୌ ହାତଛଡ଼ା କରିବାକୁ ନାରାଜ ଥିଲେ ।

ଶିଳ୍ପର ବିକାଶ ଲାଗି ବଜାର ଦରକାର । ସେତେବେଳେ ତାହାର ସେଭଳି କିଛି ଅସ୍ତିତ୍ୱ ନ ଥିଲା । କାରଣ, ଭୂଦାସ ଗୃହସ୍ଥୀଙ୍କର ସଂଖ୍ୟା ହେଲା ସବୁଠାରୁ ଅଧିକ । କଳକାରଖାନାରେ ପ୍ରସ୍ତୁତ ହୋଇଥିବା ଜିନିଷପତ୍ର କିଣିବା ଲାଗି ସେମାନଙ୍କ ହାତରେ ପଇସା ନ ଥିଲା ।

ଶେଷରେ ଦାସପ୍ରଥାର ସଙ୍ଗରେ ଯାହା ଘଟିଥିଲା, ସାମନ୍ତବାଦୀ ପ୍ରଥା ଭାଗ୍ୟରେ ତାହା ହିଁ ଘଟିଲା। ତାହା ଉତ୍ପାଦନ ଶକ୍ତିର ବିକାଶ ପଥରେ ପ୍ରତିବନ୍ଧକ ହୋଇ ଛିଡ଼ାହେଲା । ସାମନ୍ତବାଦୀ ମାଲିକମାନଙ୍କ ବିରୁଦ୍ଧରେ ବାରଂବାର କୃଷକବିଦ୍ରୋହମାନ ଦେଖା ଦେଲା ।

କୃଷକର ବା କୃଷୀର ସଂଗ୍ରାମ ଭୂଦାସ ବ୍ୟବସ୍ଥାକୁ ଦୁର୍ବଳ କରିଦେଲା । କାରିଗର ଶ୍ରେଣୀର ଲୋକେ ଓ ନୂଆ ହୋଇ ଜନ୍ମଲାଭ କରୁଥିବା ବୁର୍ଜୁଆମାନେ ମଧ୍ୟ ଭୂଦାସ ବ୍ୟବସ୍ଥା ବିରୁଦ୍ଧରେ ମାତି ଉଠିଲେ । ସାମନ୍ତବାଦୀ ପ୍ରଥା ସକାଶେ ମାଗ ଉନ୍ମୁକ୍ତ କରି-ଦେଇ ଯେପରି ଦାସପ୍ରଥାର ପତନ ଘଟିଥିଲା, ସେହିପରି ସାମନ୍ତବାଦୀ ପ୍ରଥାର ପତନ ଘଟି ତାହା ପରବର୍ତ୍ତୀରେ ଏକ ଅଧିକ ପ୍ରଗତିଶୀଳ ବ୍ୟବସ୍ଥା ପୁଞ୍ଜିବାଦୀ ପ୍ରଥା ପ୍ରତିଷ୍ଠିତ ହେଲା ।

ଆଫ୍ରିକା, ଏସିଆ ଓ ଦକ୍ଷିଣ ଆମେରିକାର କେତେକ ଦେଶରେ ଯଦିଓ ପୁଞ୍ଜିବାଦର ବିକାଶ ଘଟିଛି, ତେବେ ବି ସାମନ୍ତବାଦର ଅବଶେଷ ସେଠାରେ ଏବେ ଜୀବିତ ରହିଛି ।

## ପୁଞ୍ଜିବାଦ କ'ଣ ?

ଲେନିନ ଅତି ସ୍ପଷ୍ଟ ଭାବରେ ସଂକ୍ଷେପରେ ଏହାର ଉତ୍ତର ଦେଇଛନ୍ତି । ଲେନିନ କହିଛନ୍ତି, "ଯେଉଁ ପ୍ରଥାରେ ସାଧାରଣ ଲୋକଙ୍କର କୌଣସି ସମ୍ପତ୍ତି ନ ଥାଏ କିମ୍ବା ଅତି ସାମାନ୍ୟ ସମ୍ପତ୍ତି ଥାଏ ଏବଂ ଯେଉଁ ପ୍ରଥାରେ ସେମାନେ ନିଜକୁ ଶ୍ରମିକଭାବେ ଭଡ଼ା ଲଗାଇବାକୁ ବାଧ୍ୟ ହୁଅନ୍ତି, ଅଥଚ ମୁଷ୍ଟିମେୟ ଭୂମିମାଲିକ ଓ ପୁଞ୍ଜିପତିମାନଙ୍କ ହାତରେ ଜମିଜମା, କଳକାରଖାନା, ଯନ୍ତ୍ରପାତି ଆଦି ଠୁଳ ହୋଇ ରହିଥାଏ, ସେହି ପ୍ରଥାକୁ ପୁଞ୍ଜିବାଦ କହନ୍ତି ।"

ପୁଞ୍ଜିବାଦୀ ସମାଜରେ ଜମିଜମା, ସେଚସଂସ୍ଥାନ ସମ୍ବଳ, ବନ ଜଙ୍ଗଲ, ନଦୀନାଳ, କଳକାରଖାନା ଆଦି ଉତ୍ପାଦନର ଯାବତୀୟ ମୌଳିକ ଉପକରଣ ଶୋଷକ-ମାନଙ୍କ ହାତରେ ଥାଏ ।

ତେବେ ଶ୍ରମିକମାନଙ୍କ ପାଖରେ ଥାଏ କ'ଣ ? ଶ୍ରମିକମାନଙ୍କ ପାଖରେ ଥାଏ ସେମାନଙ୍କର ଶ୍ରମ ; ଏହା ଛଡ଼ା ଅନ୍ୟ କିଛି ସେମାନଙ୍କ ପାଖରେ ନ ଥାଏ । କୌଣସି-ମତେ ବଞ୍ଚିରହିବା ଲାଗି ସେମାନେ ପୁଞ୍ଜିପତିଙ୍କୁ ସେମାନଙ୍କର ଶ୍ରମ ବିକ୍ରୟ କରିବା-ପାଇଁ ଅର୍ଥାତ୍ ନିଜକୁ ସେମାନଙ୍କ ପାଖରେ ଭଡ଼ା ଲଗାଇବା ପାଇଁ ବାଧ୍ୟ ହୁଅନ୍ତି । ଫଳ ହୁଏ ଯେ, ପୁଞ୍ଜିବାଦ ଅମଳରେ କେବଳ ଶ୍ରମର ଉତ୍ପନ୍ନ ନୁହେଁ, ଶ୍ରମ ଶକ୍ତି ମଧ୍ୟ ବିକାକିଣାର ବସ୍ତୁ ହୁଏ ।

ସାମନ୍ତବାଦୀ ପ୍ରଭୁ ତା'ର ଭୂଦାସଙ୍କୁ ଯେପରି ବନ୍ଧନରେ ରଖିଥିଲା, ପୁଞ୍ଜିପତି ସେପରି ମଜୁରି ଶ୍ରମିକମାନଙ୍କୁ ବନ୍ଧନରେ ରଖେ ନାହିଁ । ଆଇନ ଆଗରେ




**ଶିଳ୍ପୀର ଦୃଷ୍ଟିରେ ପୁଞ୍ଜିବାଦୀ ସମାଜ—ଶ୍ରମିକଠାରୁ ଉଦ୍‌ବୃତ୍ତ ମୂଲ୍ୟ ବାହାର କରୁଛନ୍ତି ।**

ଶ୍ରମିକକୁ ସ୍ୱାଧୀନ ଲୋକ ବୋଲି ଧରାଯାଏ । ଆଜିପର୍ଯ୍ୟନ୍ତ ବୁର୍ଜୁଆ ମତାଦର୍ଶ-ବାଦୀମାନେ ଦାବୀ କରୁଛନ୍ତି ଯେ ପୁଞ୍ଜିବାଦ ଅଧୀନରେ ଶ୍ରମିକମାନେ ସ୍ୱାଧୀନ । କିନ୍ତୁ ଏହା ପୁରାପୁରି ମିଥ୍ୟା । ଦିନ ଦିନ ଧରି ଶ୍ରମିକ ପୁଞ୍ଜିପତି ପାଖରେ ଖଟିବାକୁ ବାଧ୍ୟ ହୁଏ କାହିଁକି ? କିଏ ବା ତାକୁ ବାଧ୍ୟ କରେ ? ବାଧ୍ୟ କରେ ଅନାହାର ଆଉ ମୃତ୍ୟୁର ଭୟ । ଏହି ମୃତ୍ୟୁର ଭୟ ଭୂଦାସର ବନ୍ଧନ ଭଳି ଶକ୍ତ, ଅତୀତର ଦାସ-ମାଲିକର ଚାବୁକ ଭଳି କଠୋର ।

ମାର୍କସ ଲେଖିଥିଲେ, "ରୋମ୍‌ର ଦାସମାନଙ୍କୁ ଶୃଙ୍ଖଳରେ ବାନ୍ଧି ରଖାଯାଉଥିଲା । କିନ୍ତୁ ମଜୁର-ଶ୍ରମିକ ତା'ର ମାଲିକ ସହିତ ଅଦୃଶ୍ୟ ରଜ୍ଜୁରେ ବନ୍ଧା ।"

ଶ୍ରମିକମାନଙ୍କ ଦିଗରୁ ବିଚାର କଲେ ପୁଞ୍ଜିବାଦୀ ପ୍ରଥା ହେଉଛି, ମଜୁରି-ଦାସତ୍ୱର ପ୍ରଥା ।

କହିବାକୁ ଗଲେ, ପୁଞ୍ଜିବାଦ ଅଧୀନରେ ଶୋଷଣ ଅଧିକ କୌଶଳର ସହିତ ସୁଚତୁର ଭାବେ ସଙ୍ଗଠିତ, ଅଧିକ ଦକ୍ଷତାର ସହିତ ଆବୃତ । ତାହା ସହଜରେ ଧରାପଡ଼େ ନାହିଁ, କମ୍ ଦୃଷ୍ଟିଗୋଚର ହୁଏ । ସାମନ୍ତବାଦ ଅଧୀନରେ ସମସ୍ତେ ଦେଖନ୍ତି ଯେ କୃଷୀ ତା'ର ସାମନ୍ତବାଦୀ ପ୍ରଭୁ ପାଖରେ ବେଠିରେ ବା ବିନା-ମୂଲ୍ୟରେ କାମ କରେ କିମ୍ବା ଟଙ୍କା ବା ଫସଲ ଆକାରରେ ଭାଗ ବା କର ଦିଏ । ପୁଞ୍ଜିପତି (କେତେକ ଉପନିବେଶରେ ଛାଡ଼ିଦେଲେ ଅନ୍ୟ କୌଣସିଠାରେ) ସାମନ୍ତବାଦୀଙ୍କ ଭଳି ଶ୍ରମିକମାନଙ୍କୁ ନିଜ ପାଇଁ କାମ କରିବାକୁ ବାଧ୍ୟ କରେ ନାହିଁ । ସେ ଶ୍ରମିକଙ୍କ ଭଡ଼ାରେ ଆଣିବା ଦ୍ୱାରା ତା'ର ଶ୍ରମକୁ କିଣେ, ଆଉ ତାକୁ ମଜୁରି ଦିଏ । ଘୋଷଣା ହୁଏ ଯେ ଶ୍ରମିକ ତା'ର ଶ୍ରମ ଲାଗି ପୁରା ପ୍ରାପ୍ୟ ପାଏ, ଆଉ ଶ୍ରମିକକୁ ତା'ର ଜୀବନ-

ଧାରଣ ବା ଭରଣପୋଷଣ ଲାଗି ଉପାର୍ଜ୍ଜନର ସୁଯୋଗ ଯୋଗାଇଦେଲେ ପୁଞ୍ଜିପତି ତା'ର ହିତାକାଂକ୍ଷୀ ଓ କଲ୍ୟାଣକାମୀ ହୁଏ ।

କିନ୍ତୁ ବାସ୍ତବରେ ପୁଞ୍ଜିପତି ବଳିଷ୍ଠ ଭାବେ ଶ୍ରମିକକୁ ଲୁଣ୍ଠନ କରେ, ତା'ର ଶ୍ରମ ଦ୍ୱାରା ନିଜକୁ ଧନୀ ଓ ସଂପତ୍ତିଶାଳୀ କରେ, ଶ୍ରମିକର ଜୀବନକୁ ଚରମ ଦୁଃଖ-ଦୁର୍ଦ୍ଦଶାର ପଙ୍କରେ ନିମଜ୍ଜିତ କରେ ।

ପୁଞ୍ଜିପତି ଶ୍ରମିକଙ୍କୁ ଶୋଷଣ କରେ କିପରି ? ଧରନ୍ତୁ, ଏକ ଶ୍ରମ-ଦିନର ସମୟ ହେଲା ଆଠ ଘଣ୍ଟା । ଏହି ସମୟ ଲାଗି ପୁଞ୍ଜିପତି ଶ୍ରମିକକୁ ଯେତେ ଦାମ ଦିଏ, ଚାରିଘଣ୍ଟା କାମ କରିବା ଦ୍ୱାରା ଶ୍ରମିକ ଯେତେ ପଣ୍ୟଦ୍ରବ୍ୟ ଉତ୍ପନ୍ନ କରେ ତାର ଦାମ ଦ୍ୱାରା ତାହା ଶୁଝି ହୋଇଯାଏ । କିନ୍ତୁ ଚୁକ୍ତି ଅନୁସାରେ ଶ୍ରମିକ ଆଉ ଅଧିକ ଚାରିଘଣ୍ଟା କାମ କରିବାକୁ ବାଧ୍ୟ ହୁଏ । ଏହି ସମୟ ଭିତରେ ଅର୍ଥାତ୍ ଶେଷ ଚାରି-ଘଣ୍ଟାରେ ସେ ଯେଉଁ ଭୌତିକ ସଂପଦ ଉତ୍ପନ୍ନ କରେ, ସେଇ ସଂପଦର ମୂଲ୍ୟକୁ ପୁଞ୍ଜିପତି କୌଣସି କ୍ଷତିପୂରଣ ନ ଦେଇ ବିନା ମୂଲ୍ୟରେ ବା ବିନା ପଇସାରେ ଅପହରଣ କରେ । କେତେକ କ୍ଷେତ୍ରରେ ଶ୍ରମିକ ପୁଞ୍ଜିପତିକୁ ତା'ର ଶ୍ରମ ଦିନକୁ ଅଧାରୁ ଅଧିକ ଦେଇଥାଏ । ଏହି ବିନା ପଇସାରେ କାମ କରୁଥିବା ସମୟ ଭିତରେ ଶ୍ରମିକ ଯେଉଁ ମୂଲ୍ୟ ଉତ୍ପନ୍ନ କରେ ଏବଂ ଯାହାକୁ କି ପୁଞ୍ଜିପତି ଅପହରଣ କରେ, ସେହି ଉତ୍ପନ୍ନ ମୂଲ୍ୟକୁ ଉଦ୍‌ବୃତ୍ତ ମୂଲ୍ୟ କହନ୍ତି ।

ଉଦ୍‌ବୃତ୍ତ ମୂଲ୍ୟର ଏହି ଅପହରଣ, ଏହା ହିଁ ହେଲା ପୁଞ୍ଜିବାଦୀ ଶୋଷଣର ସାରମର୍ମ ।

ପୁଞ୍ଜିବାଦୀ କାରବାର କ୍ଷେତ୍ରରେ ଏହି ଉଦ୍‌ବୃତ୍ତ ମୂଲ୍ୟ, ପୁଞ୍ଜି ଉପରେ ଲାଭ ରୂପରେ ଦେଖାଦିଏ । ଏହାକୁ ଭିତ୍ତିକରି ପୁଞ୍ଜିପତିମାନେ କହନ୍ତି ଯେ ଶ୍ରମିକମାନେ ତାଙ୍କର ଶ୍ରମ ଦ୍ୱାରା ସେମାନଙ୍କୁ ( ପୁଞ୍ଜିପତିଙ୍କୁ ) ଧନୀ କରନ୍ତି ନାହିଁ, ବରଂ ଓଲଟି ସେମାନେ ନିଜକୁ ହିଁ ଧନୀ କରନ୍ତି । ପୁଞ୍ଜିପତିଙ୍କ ମତରେ ପୁଞ୍ଜିର ଶକ୍ତି ଅଲୌକିକ । ସେଇ ଶକ୍ତି ବଳରେ ତାହା ନିଜେ ନିଜେ ବୃଦ୍ଧି ପାଏ, ଆଉ ଶ୍ରମିକଶ୍ରେଣୀକୁ କାମ ଅଉ ଭରଣପୋଷଣ ଯୋଗାଏ । କିନ୍ତୁ ଏହା ହେଉଛି ଏକ ବିରାଟ ମିଥ୍ୟା ।

ବାସ୍ତବରେ ପୁଞ୍ଜିପତିଙ୍କ ଲାଭର ଏକମାତ୍ର ଉତ୍ସ ବା ଉପାୟ ହେଉଛି ଶ୍ରମିକମାନଙ୍କର ପାରିଶ୍ରମିକହୀନ ଶ୍ରମ ବା ମାଗଣା ପରିଶ୍ରମ, ଅର୍ଥାତ ଉଦ୍‌ବୃତ୍ତ ମୂଲ୍ୟ । ଯେତେ ପାରେ ସେତେ ଲାଭ ଲୁଟିବା ହେଉଛି ପୁଞ୍ଜିପତିର ପ୍ରଧାନ ଲକ୍ଷ୍ୟ । ସେହି ଲାଭ ଉଠାଇବାପାଇଁ ଯେକୌଣସି ପ୍ରକାର ଅପରାଧ ଓ ଘୃଣ୍ୟ, କୁତ୍ସିତ କାମ କରିବାକୁ ସେ କୁଣ୍ଠାବୋଧ କରେ ନାହିଁ ।

ଗତ ଶତାବ୍ଦୀର ଜଣେ ଇଂରେଜ ଅର୍ଥନୀତିଜ୍ଞ ଟି, ଜେ, ଡନିଙ୍ଗ୍ ଲେଖିଥିଲେ "ପୁଞ୍ଜି କୌଣସି ଲାଭରୁ ବଞ୍ଚିତ ହୁଏ ନାହିଁ । ଶତକଡ଼ା ୧୦ ଲାଭ ମିଳିବା ନିଶ୍ଚ

ଥିଲେ ଯେକୌଣସିଠାରେ ତାହାର ବିନିଯୋଗ ଘଟିବା ଅବଧାର୍ଯ୍ୟ; ଶତକଡ଼ା ୨୦ ଲାଭ ମିଳିବାର ଥିଲେ ତାହା ଅଧିକ ଆଗ୍ରହ, ଅଧିକ ଉନ୍ମାଦନା ସୃଷ୍ଟି କରିବା ନିଶ୍ଚିତ; ଶତକଡ଼ା ୫୦ ମିଳିବାର ଥିଲେ ତାହା ଏକଦମ ଦୁଃସାହସିକ ହୋଇ ଉଠିବ; ଶତକଡ଼ା ୧୦୦ ଲାଭ ମିଳିବାର ହେଲେ ଏଭଳି କୌଣସି ମାନବିକ ଆଇନକାନୁନ ନାହିଁ ଯାହାକୁ ପାଦରେ ଦଳିଦେବାକୁ ତାହା ପ୍ରସ୍ତୁତ ହେବ ନାହିଁ; ଶତକଡ଼ା ୩୦୦ ଲାଭ ମିଳିବାର ହେଲେ ଏପରି କୌଣସି ଜଘନ୍ୟ ଅପରାଧ ନାହିଁ, ଯାହା କରିବା ଲାଗି ଟିକିଏ ହେଲେ ତାହା କୁଣ୍ଠାବୋଧ କରିବ, ଏଭଳି କୌଣସି ବିପଦ ନାହିଁ, ଏପରିକି ତା'ର ମାଲିକ ଫାଶିଖୁଣ୍ଟରେ ଝୁଲିବାର ସମ୍ଭାବନା ଥିଲେ ମଧ୍ୟ, ସେହି ବିପଦରେ ପଶିବା ଲାଗି ତାହା ପଶ୍ଚାତ୍‌ପଦ ହେବ ।"

ପୁଞ୍ଜିବାଦ ଲକ୍ଷ ଲକ୍ଷ ଶ୍ରମିକଙ୍କୁ କଳକାରଖାନାରେ ଏକତ୍ର କରି, ଶ୍ରମର ବିଭାଗରେ ବହୁ ଲୋକଙ୍କର ଉଦ୍ୟମକୁ ସମ୍ମିଳିତ କରି ଏବଂ ଶିଳ୍ପ ପ୍ରତିଷ୍ଠାନମାନଙ୍କ ମଧ୍ୟରେ ଯୋଗାଯୋଗ ସ୍ଥାପନ କରି ଉତ୍ପାଦନର ସାମାଜିକ ଚରିତ୍ରକୁ (ବା ସାମାଜିକ ଉତ୍ପାଦନ ଚରିତ୍ରକୁ) ସୁଦୃଢ଼ ଭାବରେ ଶକ୍ତିଶାଳୀ କରେ । କିନ୍ତୁ ସେହି ସାମାଜିକ ଶ୍ରମର ଫଳ ଏକ ଅତି କ୍ଷୁଦ୍ର ପୁଞ୍ଜିପତି ଶ୍ରେଣୀ ଦ୍ୱାରା ଅପହୃତ ହୁଏ । ଉତ୍ପାଦନର ଏହି ସାମାଜିକ ଚରିତ୍ର ଓ ଅପହରଣର ବ୍ୟକ୍ତିଗତ ପୁଞ୍ଜିବାଦୀ ରୂପ, ବା ବ୍ୟକ୍ତିଗତ ରୂପରେ ପୁଞ୍ଜିବାଦୀ ଅପହରଣ ହେଉଛି ପୁଞ୍ଜିବାଦର ମୌଳିକ ବିରୋଧିତା । ତାହା ଅନିବାର୍ଯ୍ୟ ଭାବେ ଉତ୍ପାଦନ କ୍ଷେତ୍ରରେ ଅରାଜକତା (ଯେକୌଣସି ପ୍ରକାର ଯୋଜନାତ୍ମକତା ବା କାର୍ଯ୍ୟକ୍ରମଶୀଳର ଅଭାବ) ଦିଗକୁ ନେଇଯାଏ; ଅତି ବିପର୍ଯ୍ୟୟପୂର୍ଣ୍ଣ ଅର୍ଥନୈତିକ ସଙ୍କଟ ସୃଷ୍ଟି କରେ ଓ ଶ୍ରମଜୀବୀ ଜନସାଧାରଣଙ୍କୁ ନିଃସ୍ୱ ଓ ଦୁଃସ୍ଥ କରିପକାଏ ।

ତେଣୁ ତୁଳନାତ୍ମକ ଭାବରେ ଏକ ଦିଗରେ ଏହି କ୍ଷୁଦ୍ର ପୁଞ୍ଜିପତି ଗୋଷ୍ଠୀର ଧନସମ୍ପଦର ବୃଦ୍ଧି ଓ ଅନ୍ୟ ଦିଗରେ ଅସଂଖ୍ୟ ଶ୍ରମଜୀବୀ ଜନତାର ଦୁଃସ୍ଥ ଅବସ୍ଥାର ପ୍ରସାର—ଏହା ହିଁ ହେଉଛି ପୁଞ୍ଜିବାଦୀ ସମାଜର ନିୟମ । ଏହି ନିୟମ ଅତୀତରେ କାର୍ଯ୍ୟ କରିଛି, ବର୍ତ୍ତମାନ ମଧ୍ୟ କାର୍ଯ୍ୟ କରୁଛି । ପୁଞ୍ଜିବାଦର ପ୍ରଚାରକମାନେ କହନ୍ତି ଯେ ଆଧୁନିକ ଏକଚାଟିଆ ପୁଞ୍ଜିପତି ଆଉ ଶ୍ରମିକମାନଙ୍କର ସ୍ୱାର୍ଥ ସମାନ ଏବଂ ସେମାନଙ୍କ ମଧ୍ୟରେ କୌଣସି ଶ୍ରେଣୀବୈରିତା ନାହିଁ ।

ଏପରିକି ଯୁକ୍ତରାଷ୍ଟ୍ର ଆମେରିକାରେ ସେମାନେ "ଜନତାର ପୁଞ୍ଜିବାଦ" କଥା କହିବାକୁ ଦ୍ୱିଧା ବୋଧ କରୁନାହାନ୍ତି । ଧର, ଏକଚାଟିଆ ପୁଞ୍ଜିପତିମାନେ ଜଣେ ଶ୍ରମିକକୁ ୨୦୦ ଡୋଲରର ଗୋଟାଏ 'ଅଂଶ' ବିକ୍ରି କଲେ । ସେହି "ଅଂଶୀଦାର" ଶ୍ରମିକଜଣକ ସମେତ ଅନ୍ୟ ଶ୍ରମିକମାନଙ୍କୁ ଶୋଷଣ କରି ବର୍ଷ ଶେଷରେ ତାଙ୍କୁ ୪।୫ ଡୋଲର ଲାଭ ଦେଲେ । ଏହାକୁ ସେମାନେ ବଢ଼େଇ କରି ଢିଣ୍ଡିମ ପିଟି କହୁହେଉଛନ୍ତି ଯେ ଶ୍ରମିକ ପୁଞ୍ଜିପତି ପରି ମଧ୍ୟ ଜଣେ ମାଲିକ, ସେ

ମାଲିକପକ୍ଷିଙ୍କରେ ପୁଞ୍ଜିପତିଠାରୁ ଊଣା ନୁହେ, ପୁଞ୍ଜିପତି ସହିତ ସମାନ । କାରଣ, ସେ ମଧ୍ୟ ଲାଭ ପାଉଛି । (ଅଥଚ କେତେ ଏକଗୁଣିଆ ପୁଞ୍ଜିପତିମାନେ ଲକ୍ଷେ କୋଟି କୋଟି ଲାଭ କରୁଛନ୍ତି ।) ଅବଶ୍ୟ ଏହା ଏକ ରୂପକଥା, ଅବୋଧ ଲୋକଙ୍କୁ ଭଳେଇ ବୋକା ବନେଇବା ଲାଗି ଗୋଟାଏ ମନ୍ତ୍ରବନ୍ଧ ଅଭିସନ୍ଧି ।

ପ୍ରକୃତରେ କାଲୁ ପୁଞ୍ଜିବାଦ ଜନ୍ମ ନେବା ଦିନଠାରୁ ଶ୍ରେଣୀବୈରିତା ଲାଗି ରହିଛି, ପୁଞ୍ଜିପତି ଓ ଶ୍ରମିକମାନଙ୍କ ମଧ୍ୟରେ ଅବିରାମ କଠୋର ସଂଗ୍ରାମ ଚାଲିଛି ।

ଶ୍ରମିକମାନଙ୍କ ପକ୍ଷରେ ନିଜର ଅଧିକାର ଲାଗି ସଂଗ୍ରାମ କରିବା ଏକ ସହଜ-ସାଧ୍ୟ ବ୍ୟାପାର ନୁହେଁ । ପୁଞ୍ଜିପତିଙ୍କ ପାଖରେ ଧନ ଅଛି ଓ କ୍ଷମତା ଅଛି । ସେମାନଙ୍କୁ ସାହାଯ୍ୟ କରିବାପାଇଁ ଆଇନକାନୁନ, ଅଦାଲତ କଚେରୀ, ପୁଲିସ ଓ ସୈନ୍ୟବାହିନୀ ରହିଛନ୍ତି । ସେମାନଙ୍କର ଧନସମ୍ପଦ ସୁରକ୍ଷିତ କରିବାପାଇଁ, ଲୋକମାନଙ୍କ ଉପରେ ସେମାନଙ୍କର କ୍ଷମତା ବଜାୟ ରଖିବା ପାଇଁ ସେମାନେ ଯେକୌଣସି ପ୍ରକାର ହିଂସ୍ର ଆକ୍ରମଣ ଓ ଘୃଣ୍ୟ ଅପରାଧର ଆଶ୍ରୟ ନେଇପାରନ୍ତି । ସେମାନେ ଶ୍ରମିକମାନଙ୍କୁ ଠକନ୍ତି, ପ୍ରତାରିତ କରନ୍ତି, ଶ୍ରମିକଶ୍ରେଣୀର ଏକତା ଓ ସଂହତି ନଷ୍ଟ କରିବା ଉଦ୍ଦେଶ୍ୟରେ ଶ୍ରମିକମାନଙ୍କ ଭିତରୁ କେତେକଙ୍କୁ ଲାଞ୍ଚ ଓ ଭିନ୍ନ ଲୋଭ ପ୍ରଦାନ କରନ୍ତି । ମାତ୍ର ଠିକ୍ ଯେପରି ଦୁନିଆର କୌଣସି ଶକ୍ତି ଦାସ ଓ ସାମନ୍ତବାଦୀ ପ୍ରଥାକୁ ଧ୍ୱଂସ ମୁହଁରୁ ରକ୍ଷା କରିପାରି ନାହିଁ, ସେହିପରି ଇତିହାସ ପୁଞ୍ଜିବାଦ ପ୍ରତି ଯେଉଁ ମୃତ୍ୟୁର ରାୟ ଲେଖିଛି ତାକୁ କେହି ବଦଳାଇ ପାରିବ ନାହିଁ, ଅନିବାର୍ଯ୍ୟ ଧ୍ୱଂସରୁ ପୁଞ୍ଜିବାଦକୁ ରକ୍ଷା କରିପାରିବ ନାହିଁ ।

## କମ୍ୟୁନିଜିମ୍ ଏକ ଶ୍ରେଣୀହୀନ ସମାଜ

ସର୍ବଶେଷ ଶୋଷଣ ପ୍ରଥା ହେଉଛି ପୁଞ୍ଜିବାଦ । ମନୁଷ୍ୟ ସମାଜ ଏହି ପ୍ରଥାକୁ କମ୍ୟୁନିଜମ୍ ବା ସାମ୍ୟବାଦର ପ୍ରଥମ ସ୍ତର ସମାଜବାଦକୁ ଗତି କରିବାକୁ ବାଧ୍ୟ, ଏବଂ ତା'ପରେ ପୂର୍ଣ୍ଣ କମ୍ୟୁନିଜମ୍ ବା ସାମ୍ୟବାଦ ଯିବା ସୁନିଶ୍ଚିତ ।

ଯେପରି ଅନିବାର୍ଯ୍ୟ ଭାବରେ ଏକ ଋତୁ ପରେ ଆଉ ଏକ ଋତୁ ଆସୁଛି, ଦିନ ପରେ ରାତି ଓ ରାତି ପରେ ଦିନ ଗତି କରୁଛି, ସେହିପରି ସମସ୍ତ ଦେଶ, ସମସ୍ତ ଲୋକ ପୃଥିବୀ ବକ୍ଷରେ ସର୍ବଶ୍ରେଷ୍ଠ ନ୍ୟାୟୋଚିତ ସମାଜ କମ୍ୟୁନିଜମ୍ ବା ସାମ୍ୟ-ବାଦକୁ ଶୀଘ୍ର ହେଉ ବା ବିଳମ୍ବରେ ହେଉ ଗତି କରିବେ, ଏହା ହିଁ ହେଉଛି ଜୀବନର ନିୟମ ।

ପରବର୍ତ୍ତୀ କଥନରେ ଆମେ ସାମ୍ୟବାଦୀ ବା କମ୍ୟୁନିଷ୍ଟ ସମାଜ ବିଷୟ ବିଶଦ ଭାବେ ଆଲୋଚନା କରିବୁ । ତେବେ ଏଠାରେ ଆମେ ଗୋଟିଏ ବିଷୟ କୋଇ ଦେଇ କହିବାକୁ ଚାହୁଁ ଯେ ପୂର୍ବର ସମସ୍ତ ଉତ୍ପାଦନ ପ୍ରଣାଳୀଠାରୁ ସାମ୍ୟବାଦ

ବା କମ୍ୟୁନିଜମ୍‌ର ପାର୍ଥକ୍ୟ ହେଉଛି—ତାହା ସବୁପାର୍ଥ ଓ ଉତ୍ପାଦନର ଉପକରଣରେ ସାମାଜିକ ମାଲିକାନା ଉପରେ ପ୍ରତିଷ୍ଠିତ । ଅର୍ଥାତ୍ ସମାଜବାଦରେ ସମସ୍ତ ସମ୍ପତ୍ତି ଓ ଉତ୍ପାଦନର ଉପକରଣ ଉପରେ ସମସ୍ତ ସମାଜର ମାଲିକାନା ରହେ । କମ୍ୟୁନିଷ୍ଟ ସମାଜରେ କୌଣସି ଶ୍ରେଣୀ ନାହିଁ, କି କୌଣସି ଶୋଷଣ ନାହିଁ । ଉତ୍ପାଦନର ସଂପର୍କ ହେଉଛି ପରସ୍ପର ସହିତ ସାହାଯ୍ୟ ସହଯୋଗର ସଂପର୍କ, ସମବାୟର ସଂପର୍କ, ସାଥୀତ୍ୱର ଓ ବନ୍ଧୁତ୍ୱର ସମ୍ପର୍କ ।

## (ଗ) ସାମ୍ରାଜ୍ୟବାଦ, ସମାଜବାଦୀ ବିପ୍ଳବର ପୂର୍ବାଭାଷ

ଶ୍ରେଣୀସଂଗ୍ରାମ ଫଳରେ ଉତ୍ପାଦନର ଗୋଟିଏ ପ୍ରଣାଳୀ ପରେ ଆଉ ଗୋଟିଏ ପ୍ରଣାଳୀ ଆସେ । ସର୍ବଶେଷ ଶୋଷଣ ବ୍ୟବସ୍ଥା ପୁଞ୍ଜିବାଦ ଯେତେବେଳେ ସମାଜବାଦୀ, ସାମ୍ୟବାଦୀ ବ୍ୟବସ୍ଥା ଦ୍ୱାରା ଅପସୃତ ହୁଏ, ଅର୍ଥାତ୍ ପୁଞ୍ଜିବାଦକୁ ହଟାଇ ତାହା ପଛେ ପଛେ ଯେତେବେଳେ ସମାଜବାଦୀ, ସାମ୍ୟବାଦୀ ବ୍ୟବସ୍ଥାର ଉଦୟ ହୁଏ ସେତେବେଳେ ଏହି ଶ୍ରେଣୀସଂଗ୍ରାମ ବିଶେଷ ଭାବରେ ଅନ୍ତ ହୋଇଥାଏ । ବୁର୍ଜୁଆମାନଙ୍କ ବିରୁଦ୍ଧରେ ଶ୍ରମିକଶ୍ରେଣୀର କେବଳ ଏକ ଭୀଷଣ ଓ କଠୋର ଶ୍ରେଣୀସଂଗ୍ରାମ କରିଆରେ, ସମାଜବାଦୀ ବିପ୍ଳବ କରିଥାଏ ପୁଞ୍ଜିବାଦରୁ ସମାଜବାଦକୁ ଗତି କରିବାର ରାସ୍ତା ଉନ୍ମୁକ୍ତ ହୋଇପାରେ ।

## ପୁଞ୍ଜିବାଦର ପତନ ଅନିବାର୍ଯ୍ୟ

ମାର୍କସ ଓ ଏଙ୍ଗେଲସଙ୍କ ପୂର୍ବରୁ ମଧ୍ୟ ଏଭଳି ଲୋକ ଥିଲେ, ଯେଉଁମାନେ କି ନିଜ ନିଜର ସ୍ୱତନ୍ତ୍ର ଦୃଷ୍ଟିରୁ ପ୍ରଗତିଶୀଳ ଥିଲେ । ସେମାନେ ପୁଣି ଏପରି ଏକ ସମାଜ ପ୍ରତିଷ୍ଠା କରିବାକୁ ଚେଷ୍ଟା କରୁଥିଲେ, ଯେଉଁଥିରେ କି ଶୋଷଣର ଚିହ୍ନ ରହିବ ନାହିଁ । କିନ୍ତୁ ଅଜ୍ଞାନତାରୁ ଶ୍ରମିକଶ୍ରେଣୀର ମୁକ୍ତିଲାଭ ଉପରେ ସେମାନେ ସଠିକ ମାର୍ଗ ପାଇବାକୁ ସକ୍ଷମ ହୋଇ ନ ଥିଲେ । ଫଳତଃ ସେମାନଙ୍କ ଭିତରୁ କେତେକ ଭୁଲ ଧାରଣାର ବଶବର୍ତ୍ତୀ ହୋଇ କହୁଥିଲେ ଯେ ଧନୀ ଓ ଶାସକମାନଙ୍କୁ ବୁଝାଇଦେଲେ ସେମାନେ (ଧନୀ ଶାସକମାନେ) ସ୍ୱଇଚ୍ଛାରେ ଏହି ଅନ୍ୟାୟ ବ୍ୟବସ୍ଥାକୁ ବଦଳାଇଦେବେ ଏବଂ ସମସ୍ତ ଅସମତାକୁ ଦୂର କରିଦେବେ । ସେମାନେ କଳ୍ପନା କରୁଥିଲେ ଯେ ଶୋଷକମାନଙ୍କ ବିରୁଦ୍ଧରେ ସଂଗ୍ରାମ ନ କରି ମଧ୍ୟ ସମାଜବାଦ ହାସଲ ହୋଇପାରିବ । ଏହା କେବଳ ସେମାନଙ୍କର ଏକ ସ୍ୱପ୍ନ, ଏକ କଳ୍ପନା ବ୍ୟତୀତ ଅନ୍ୟ କିଛି ନ ଥିଲା । ଏହା କେବେହେଲେ ସତ୍ୟରେ ପରିଣତ ହୋଇନାହିଁ କି ହୋଇ ନ ପାରେ । ଯେଉଁମାନେ ଏହିପରି ସ୍ୱପ୍ନ ଦେଖୁଥିଲେ, ସେମାନଙ୍କୁ ଏଣୁ 'କାଳ୍ପନିକ ସମାଜବାଦୀ' ବୋଲି କୁହାଯାଉଛି ।

ମାର୍କସ ଓ ଏଙ୍ଗେଲସ୍‌ଙ୍କର ମହାନ୍ କୃତିତ୍ୱ ହେଉଛି—ସେମାନେ ହିଁ ସମାଜବାଦ ଉପରେ ନିର୍ଭୁଲ ମାର୍ଗ ଆବିଷ୍କାର କଲେ, ସମାଜବାଦକୁ ଗୋଟାଏ 'କଳ୍ପନା' ବା 'ୟୁଟୋପିଆ'ରୁ ଏକ ବିଜ୍ଞାନରେ ରୂପାନ୍ତରିତ କଲେ । ଏହି କାରଣରୁ ସେମାନଙ୍କର ମତବାଦକୁ ବୈଜ୍ଞାନିକ ସମାଜବାଦ କୁହାଯାଏ ।

ବିଗତ ଶତାବ୍ଦୀର ପଞ୍ଚମ ଦଶକରେ ମାର୍କସ ଓ ଏଙ୍ଗେଲସ୍ ଜର୍ମାନୀରେ ତାଙ୍କର ବୈପ୍ଳବିକ କାର୍ଯ୍ୟକ୍ରମ ଆରମ୍ଭ କଲେ । ସେତେବେଳକୁ ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ ଓ ୟୁରୋପର ଆଉ କେତେକ ଦେଶରେ ପୁଞ୍ଜିବାଦ ବିକାଶ ଲାଭ କରିସାରିଥିଲା । ତାହାର ବୃଦ୍ଧି ଓ ବିକାଶ ଶିଳ୍ପକ୍ଷେତ୍ରରେ ସର୍ବହରାମାନଙ୍କ ବୃଦ୍ଧି ଓ ବିକାଶ ସହିତ ସାଙ୍ଗରେ ଘଟି କରୁଥିଲା । ମାର୍କସ ଓ ଏଙ୍ଗେଲସ ବୈଜ୍ଞାନିକ ପ୍ରମାଣ ଦ୍ୱାରା ପ୍ରତିପାଦନ କଲେ ଯେ ଯେଉଁ ଶ୍ରମଜୀବୀ ଜନସାଧାରଣ ସମସ୍ତ ଭୌତିକ ସମ୍ପଦ ଉତ୍ପନ୍ନ କରନ୍ତି, ସେହି ଶ୍ରମଜୀବୀ ଜନସାଧାରଣଙ୍କର ଶୋଷଣକାରୀମାନଙ୍କ ବିରୁଦ୍ଧରେ ସଂଗ୍ରାମ ହେଉଛି—ଦାସସମାଜଠାରୁ ଆରମ୍ଭ କରି ପୁଞ୍ଜିବାଦୀ ସମାଜ ପର୍ଯ୍ୟନ୍ତ—ସମସ୍ତ ଶ୍ରେଣୀସମାଜ ବିକାଶର ଚାଳନାକାରୀ ଶକ୍ତି ।

ମାର୍କସ ଓ ଏଙ୍ଗେଲସ୍ ବିଶେଷ ଭାବରେ ପୁଞ୍ଜିବାଦୀ ବ୍ୟବସ୍ଥାର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିଥିଲେ ଏବଂ ଯେଉଁ ବିରୋଧିତା ସବୁ ପୁଞ୍ଜିବାଦର ଧ୍ୱଂସସାଧନ କରେ, ତାକୁ ପ୍ରକାଶ କରିଦେଇଥିଲେ ।

ସେହି ବିରୋଧିତାଗୁଡ଼ିକ କ'ଣ ?

ଆମେ ପୂର୍ବରୁ କହିଛୁ ଯେ ଉତ୍ପାଦନର ସାମାଜିକ ଚରିତ୍ର ଓ ବ୍ୟକ୍ତିଗତ ପୁଞ୍ଜି-ବାଦୀ ଅପହରଣ ରୂପ ମଧ୍ୟର ବିରୋଧିତା ହେଲା ପୁଞ୍ଜିବାଦର ମୌଳିକ ବିରୋଧିତା, ପୁଞ୍ଜିବାଦର ବିକାଶ ସହିତ ଏହି ବିରୋଧିତା ବୃଦ୍ଧି ପାଏ । ଉତ୍ପା-ଦନର ପରିମାଣରେ ବୃଦ୍ଧି ସହିତ କୋଟି କୋଟି କୃଷକ ଓ ଶ୍ରମିକଙ୍କ ଶ୍ରମ ଦ୍ୱାରା ଉତ୍ପନ୍ନ ହେଉଥିବା ଭୌତିକ ସମ୍ପଦର ପରିମାଣ ମଧ୍ୟ ବୃଦ୍ଧି ପାଏ । କିନ୍ତୁ ଅଗଣିତ ଭଳି ଏହି ସମ୍ପଦ ଅଳ୍ପରୁ ଅଳ୍ପସଂଖ୍ୟକ ମୁଷ୍ଟିମେୟ ପୁଞ୍ଜିପତିଙ୍କ ଦ୍ୱାରା ଅପହୃତ ହେବାକୁ ଲାଗେ । ପୁଞ୍ଜିପତିମାନେ ଲୋକସାଧାରଣଙ୍କ ସ୍ୱାର୍ଥକୁ ଏଡ଼ିଦେଇ, ସେମାନେ ନିଜେ ଯେପରି ବିଚାରନ୍ତି ସେହିପରି ଉତ୍ପାଦନ ଓ ଉତ୍ପାଦନର ସୁବିଧା ସୁଯୋଗଗୁଡ଼ିକ ବ୍ୟବହାର କରନ୍ତି ।

ନିଜ ଲାଭର ବୃଦ୍ଧି ଲାଗି ପୁଞ୍ଜିପତିମାନେ ଉତ୍ପାଦନର ପ୍ରସାର କରନ୍ତି । ଶ୍ରମଜୀବୀ ଲୋକମାନଙ୍କର ଶୋଷଣକୁ ବୃଦ୍ଧି କରନ୍ତି ଓ ଆପଣା ଆପଣା ମଧ୍ୟରେ ଉତ୍କଟ ପ୍ରତିଦ୍ୱନ୍ଦିତା ଚଳାନ୍ତି । ଏହି ପ୍ରତିଦ୍ୱନ୍ଦିତା ବଡ଼ ବଡ଼ ମାଲିକମାନଙ୍କର ସମ୍ପଦ ବୃଦ୍ଧି କରିଦେଲେ, ଛୋଟଛୋଟ ମାଲିକମାନଙ୍କୁ ସର୍ବସ୍ୱାନ୍ତ କରିଦିଏ । ପୁଞ୍ଜିପତିମାନେ ଦେଶ ଅଧିକାର ଲାଗି ସମର ଅଭିଯାନ ଚଳାନ୍ତି । ତାହା ଲୋକ-

ମାନଙ୍କ ପରି ଘୋର ଷଡ଼ଯନ୍ତ୍ର ଓ କପଟପୂର୍ଣ୍ଣ ହୁଏ; କିନ୍ତୁ ପୁଞ୍ଜିପତିଙ୍କ ଲାଗି ଅଧିକ ଲାଭ ସୃଷ୍ଟି କରେ।

ପ୍ରତ୍ୟେକ ପୁଞ୍ଜିପତି କମ୍ପାନୀ ପୁଞ୍ଜିପତିସଂଘ ଓ ସମିତି, ସଂଗଠନ ନିଜ ନିଜର ସ୍ୱାର୍ଥରେ ପରିଚାଳିତ। ତେଣୁ ପୁଞ୍ଜିବାଦୀ ଦେଶମାନଙ୍କର ଅର୍ଥନୀତି କୌଣସି ଗୋଟାଏ ଯୋଜନା ଅନୁଯାୟୀ ସଙ୍ଗଠିତ ହୋଇପାରେ ନାହିଁ। କିଛି ସମୟ ଅନ୍ତରରେ ତୀବ୍ର ଅର୍ଥନୈତିକ ସଂକଟ ପୁଞ୍ଜିବାଦୀ ଅର୍ଥନୀତିକୁ ଦୋହଲାଇଦିଏ। ସେହି ସଂକଟ ସମୟରେ ପଣ୍ୟଦ୍ରବ୍ୟର କାଟତି ଲାଗି ବଜାର ମିଳେ ନାହିଁ। ଏହାର କାରଣ, ଲୋକେ ସେ ପଣ୍ୟଦ୍ରବ୍ୟ ଚାହାନ୍ତି ନାହିଁ ତା ନୁହେଁ। ପ୍ରଧାନ ଖଣ୍ଡଦାର ହେଉଛି ଶ୍ରମିକ ଶ୍ରେଣୀ; ତା'ର କିଣିବା ଲାଗି ସାମର୍ଥ୍ୟ ନ ଥାଏ। ତେଣୁ ସେହି ସଙ୍କଟ କାଳରେ ବହୁ ଶିଳ୍ପ ପ୍ରତିଷ୍ଠାନ ଆଂଶିକ ଭାବରେ ବା ସମ୍ପୂର୍ଣ୍ଣ ବନ୍ଦ ହୋଇଯାଏ, ଉତ୍ପାଦନ କମାଇ ଦିଆଯାଏ, ଶ୍ରମିକମାନଙ୍କୁ କାମରୁ ହଟେଇ ଦିଆ ହୋଇଥାଏ, ଚାଷୀ ଓ କାରିଗର ଶ୍ରେଣୀର ଲୋକେ ସର୍ବସ୍ୱ ହରାନ୍ତି ଏବଂ ଶେଷରେ ଯାଇ ବେକାର ଦଳରେ ଯୋଗ ଦିଅନ୍ତି।

ସେ ଭିତରର ଜଣେ ଲେଖକ ଏମ୍. ଇଲିନ୍‌ଙ୍କ ପୁସ୍ତକ "ଷ୍ଟୋରି ଅଫ ଏ ଗ୍ରେଟ ପ୍ଲାନ" ବା "ଏକ ବୃହତ ଯୋଜନାର କାହାଣୀ" ଅନ୍ତର୍ଭୁକ୍ତ ଉଲ୍ଲିଖିତ ବିଷୟରୁ ଉତ୍ପାଦନ କ୍ଷେତ୍ରରେ ପୁଞ୍ଜିବାଦୀ ଅରାଜକତା'ର ଫଳାଫଳ ବିଷୟ ବେଶ୍ ଧାରଣା ଜନ୍ମିବ।

"ଶ୍ରୀ ଫକସ କାରୁ ଅଛି, ଠିକ୍ ଜଣ କହନ୍ତି ୧୦ ଲକ୍ଷ ଡଲାରର କମେଇଲେ। କିନ୍ତୁ ଟଙ୍କାକୁ ତ ଖାଲି ପକାଇ ରଖି ହେବ ନାହିଁ। ତେଣୁ ଶ୍ରୀ ଫକସ ଖବରକାଗଜ ଦେଖିଲେ; ନିଜର ବନ୍ଧୁମାନଙ୍କ ସହ ପରାମର୍ଶ କଲେ; ନିଜର ଦଲାଲ ବା ଏଜେଣ୍ଟମାନଙ୍କୁ ଲଗାଇଲେ। ତାଙ୍କର ଏଜେଣ୍ଟମାନେ ସକାଳୁ ସନ୍ଧ୍ୟାଯାଏ ସହରରେ ଘୂରିଲେ, ନାନା ପ୍ରକାର ଟଙ୍କା-ଲଗାଣ ବିଷୟରେ ଖବର-ଅନ୍ତର ସଂଗ୍ରହ କଲେ। ଶ୍ରୀ ଫକସଙ୍କ ପକ୍ଷରେ କେଉଁଠି ଟଙ୍କା ଖଟାଇବା ଉଚିତ ହେବ ତାହା ବୁଝିବା ହେଲା ସେମାନଙ୍କର ଉଦ୍ଦେଶ୍ୟ।

"ଶେଷରେ ସେମାନେ ବୁଝିଲେ, ଟୋପି ତିଆରି କରିବା ଠିକ୍ ହେବ। ବଜାରରେ ଟୋପିର କାଟତି ଅଛି। ସେଥିରୁ ବେଶ ଭଲ ଦୁ' ପଇସା ମିଳିପାରିବ।

"ଶ୍ରୀ ଫକସଙ୍କ ଆଉ ଦେରି କରିବାକୁ ହେଲା ନାହିଁ। ସେ ଗୋଟିଏ ଟୋପି ତିଆରି କାରଖାନା ଖୋଲିଲେ। କିନ୍ତୁ ଠିକ ସେଇ ଏକା ସମୟରେ ସେହି କଥାଟା କେବଳ ଶ୍ରୀ ଫକସଙ୍କ କେବଳ ନୁହେଁ, ଶ୍ରୀ ବକସ୍ ଓ ଶ୍ରୀ ନକ୍‌ସଙ୍କ ମନକୁ ବି ଛୁଇଁଥିଲା। ତେଣୁ ସେମାନେ ସଂପୃକ୍ତ ଏକା ସମୟରେ ଟୋପି କାରଖାନା ତିଆରି କଲେ।

"ଛଅ ମାସ ପରେ ଦେଖାଗଲା, ଦେଶଭିତରେ ବହୁ ନୂଆ ନୂଆ ଟୋପି-କାରଖାନା ଗଢ଼ି ଉଠିଛି । ଦୋକାନରେ ସ୍ତରର ଉପରଭାବେ ଟୋପିସବୁ ସଂଘାମସ୍ତ ହୋଇଛି । ଗୋଦାମ ଘରସବୁ ଟୋପିରେ ଭର୍ତ୍ତି ହୋଇଯାଇଛି । ତୁମେ ଯେଉଁଠିକି ଅନାଇଲ, ଦେଖିଲ ଟୋପି, ଖାଲି ଟୋପି । ଏହି ସମୟରେ ସବୁ ଟୋପିକାରଖାନା-ମାନ ପୂରା ଦମ୍‌ରେ ଚାଲିଛି ।

"ତା'ପରେ ଏପରି ଏକ ଅବସ୍ଥା ଆସିଲା ଯାହାକି ଶ୍ରୀ ଫକ୍ସ, ଶ୍ରୀ ଜକ୍ସ କିମ୍ବା ଶ୍ରୀ ନକ୍ସ କେହି କେବେ ଅଟକଳ କରି ନ ଥିଲେ । ଲୋକେ ଟୋପି କିଣିବା ବନ୍ଦ କରିଦେଲେ । ଶ୍ରୀ ନକ୍ସ ଟୋପିର ଦାମ ୧୦ ପଇସା କମାଇଦେଲେ, ଶ୍ରୀ ଜକ୍ସ ଆହୁରି ୪୦ ପଇସା କମାଇଦେଲେ, ଆଉ ଶ୍ରୀ ଫକ୍ସ ମାଲ ଖଲାସ କରିବା ଲାଗି ଅଧା ଦାମ୍‌ରେ ଟୋପି ବିକିବାକୁ ଲାଗିଲେ ।

"କିନ୍ତୁ ବ୍ୟବସାୟ ମାନ୍ଦା ଚାଲିବାକୁ ଲାଗିଲା । ଶ୍ରୀ ଫକ୍ସ ତାଙ୍କର ଟୋପିକୁ ୩ ବର୍ଷିଆ କିସ୍ତିଓ୍ୱାରୀରେ ଦେବା ପାଇଁ ଡାକ ଦେଲେ । ଶ୍ରୀ ନକ୍ସ ଏକାବେଳକେ ଗୋଦାମ-ସାଫ୍ ବିକ୍ରି ଘୋଷଣା କଲେ ।

"ଯଥାପି ଏହା କାହାରିକୁ ହେଲେ ସାହାଯ୍ୟକାରୀ ହେଲା ନାହିଁ । ତେଣୁ ଶ୍ରୀ ଫକ୍ସ ସାପ୍ତାହିକ ମଜୁରିରୁ ଏକ ଟଙ୍କା କାଟିଲେ । ଶ୍ରୀ ଜକ୍ସ ସପ୍ତାହକୁ ଦୁଇ ଟଙ୍କା କାଟିଲେ । ଏହା ସତ୍ତ୍ୱେ ଅବସ୍ଥା ଖରାପରୁ ଖରାପ ହେଲା ।

"ତା'ପରେ ହଠାତ୍ ଶ୍ରୀ ଫକ୍ସ ତାଙ୍କର କାରଖାନାକୁ ବନ୍ଦ କରିଦେଲେ । ଦୁଇ ହଜାର ଶ୍ରମିକ ଛଟେଇ ହେଲେ । ସେମାନେ ଏବେ ଯୁଆଡ଼େ ଇଚ୍ଛା ତେଣେ ଯାଇପାରିଲେ । ତହିଁ ଆରଦିନ ଶ୍ରୀ ନକ୍ସ ତାଙ୍କର କାରଖାନା ବନ୍ଦ କରିଦେଲେ ଏବଂ ଏକ ସପ୍ତାହ ପରେ ପ୍ରାୟ ସବୁ ଟୋପିକାରଖାନା ଅଚଳ ହୋଇଗଲା । ହଜାର ହଜାର ଶ୍ରମିକ ବେକାର ହେଲେ । ନୂଆ ମେସିନ ସବୁ କଳଙ୍କି ଲାଗିବାକୁ ଆରମ୍ଭ କଲା । କାରଖାନା ଘରବାଡ଼ିସବୁ ବିକାଗଲା ଭଙ୍ଗା ହେବାପାଇଁ ।

"ବର୍ଷେ ଦୁଇବର୍ଷ ବିତିଲା । ଶ୍ରୀ ନକ୍ସ, ଶ୍ରୀ ଫକ୍ସ ଓ ଶ୍ରୀ ଜକ୍ସଙ୍କଠାରୁ ଯେଉଁ ସବୁ ଟୋପି କିଣାଯାଇଥିଲା, ତାହା ଛିଣ୍ଡି ଗୁଣ୍ଡି ଗଲା । ଲୋକେ ପୁଣି ଟୋପି କିଣିବାକୁ ବାହାରିଲେ । ଟୋପି ଦୋକାନମାନ ଖାଲି ହୋଇଗଲା । ଧୂଳି ଜମି ମଇଳା ଧରିଥିବା ଟୋପିକୁ ସବୁ ଉପର ଥାକରୁ ତଳକୁ ବାହାର କରାଗଲା । ଟୋପିର ଅଭାବ ପଡ଼ିଲା, ଦାମ ବଢ଼ିଲା ।

"ସେତେବେଳକୁ ଆଉ ଶ୍ରୀ ଫକ୍ସ ନ ଥିଲେ । ଶ୍ରୀ ଓଡ୍‌ଲ ଏକ ଟୋପି-କାରଖାନା ଖୋଲି ଲାଭଜନକ ବ୍ୟବସାୟ ଆରମ୍ଭ କଲେ । କିନ୍ତୁ ଠିକ୍ ସେହି ସମୟରେ ଶ୍ରୀ ବୁଡ୍‌ଲ ବା ଶ୍ରୀ ଫୁଡ୍‌ଲ ବା ଶ୍ରୀ ନୁଡ୍‌ଲଙ୍କ ଭଳି ଚାଲାକ ଚତୁର ବ୍ୟବସାୟୀମାନଙ୍କ ମନକୁ ଏହି ବୁଦ୍ଧି ଛୁଇଁଲା । ଏବେ ସେହି ସମସ୍ତ ଚକ୍ରଟି ପୁଣି ଥରେ ଘୂରିବାକୁ ଲାଗିଲା ।"

ପୁଞ୍ଜିବାଦ ଅଧୀନରେ ସମାଜର ସଂପଦ ବୃଦ୍ଧି ପାଏ । କିନ୍ତୁ ମୁଷ୍ଟିମେୟ ପୁଞ୍ଜିପତି ଅଧିକ ଧନୀ ହୋଇ ଉଠନ୍ତି, ଆଉ ଶ୍ରମିକମାନଙ୍କ ଦୁର୍ଦ୍ଦଶା ଯେମିତି ଥାଏ ସେମିତି ରହେ କିମ୍ବା ଅଧିକ ଶୋଚନୀୟ ହୁଏ ।

ଶ୍ରମିକ ଓ କୃଷକ, ଯେଉଁମାନେ କି ସମସ୍ତ ସଂପଦ ଉତ୍ପାଦନ କରନ୍ତି, ସେମାନେ କଣ ଚିରଦିନ ଅଭାବ ଅନାଟନ, ଶୋଷଣ ଆଉ ଦାରିଦ୍ର୍ୟ ମଧ୍ୟରେ ସଢ଼ୁଥିବେ ? ନା, ତାହା ହୋଇ ନ ପାରେ । ସେମାନେ ତାଙ୍କର ନିଜର ଅଭିଜ୍ଞତାରୁ ଶିକ୍ଷା କରନ୍ତି ଯେ, ଯେଉଁ ବ୍ୟବସ୍ଥା ଲୋକମାନଙ୍କ ପକ୍ଷରେ ଏତେ ଦୂର ଘୃଣ୍ୟ ଓ କ୍ଷତିକାରକ, ତାକୁ ବଦଳାଇ ଦିଆଯାଇପାରେ । ପୁଞ୍ଜିବାଦକୁ ଧ୍ୱଂସ କରି, ଯେଉଁଥିରେ ଶୋଷଣ ନାହିଁ ସେପରି ଏକ ନୂତନ ସମାଜ ନିର୍ମାଣ କରାଯାଇପାରେ ଆଉ ତାହାରି ଦ୍ୱାରା ହିଁ ସେହି ଘୃଣ୍ୟ ବ୍ୟବସ୍ଥାର ପରିବର୍ତ୍ତନ ସମ୍ଭବ ହୋଇପାରେ ।

ଶତାଧିକ ବର୍ଷ ପୂର୍ବେ ମାର୍କସ ଓ ଏଙ୍ଗେଲସ ଭବିଷ୍ୟତବାଣୀ କରିଥିଲେ ଯେ ପୁଞ୍ଜିବାଦର ପତନ ଅପରିହାର୍ଯ୍ୟ । ତାହା ଏକ ନୂତନ ସାମାଜିକ ବ୍ୟବସ୍ଥା କମ୍ୟୁନିଜମ୍ ବା ସାମ୍ୟବାଦକୁ ସ୍ଥାନ ଛାଡ଼ିଦେଇ ଅନ୍ତର୍ହିତ ହୋଇଯିବା ସୁନିଶ୍ଚିତ । ଯେଉଁ ଶକ୍ତି ପୁଞ୍ଜିବାଦକୁ ଧ୍ୱଂସ କରି ସମାଜବାଦ ନିର୍ମାଣ କରିବାର ଐତିହାସିକ କର୍ତ୍ତବ୍ୟ ସମ୍ପାଦନ କରିବ, ସେହି ଶକ୍ତିର ସ୍ପଷ୍ଟ ନିରୂପଣ କରି ଘୋଷଣା କରିଥିଲେ ଯେ ତାହା ହେଉଛି ପୁଞ୍ଜିବାଦର କବରଖୋଳାଳି ସର୍ବହରା ଶକ୍ତି ।

୧୮୪୮ରେ ମାର୍କସ ଓ ଏଙ୍ଗେଲସ କମ୍ୟୁନିଷ୍ଟ ଇସ୍ତାହାର ରଚନା କରିଥିଲେ । ସେଥିରେ ସର୍ବହରା ବୈପ୍ଳବିକ ତତ୍ତ୍ୱ ପ୍ରାଞ୍ଜଳ ଭାବରେ ଆଲୋଚନା କରିଥିଲେ । ତାହାର ବିଶଦ ବ୍ୟାଖ୍ୟା ଦେବାକୁ ଯାଇ ଇସ୍ତାହାରର ଶେଷରେ କହିଥିଲେ ।:

"କମ୍ୟୁନିଷ୍ଟ ବିପ୍ଳବର ଆତଙ୍କରେ କମ୍ପି ଉଠୁ ଶାସକ-ଶ୍ରେଣୀ । ଶୃଙ୍ଖଳ ବ୍ୟତୀତ ଅନ୍ୟ କିଛି ହରାଇବାର ନାହିଁ, ସର୍ବହରାଙ୍କର । ଗୋଟାଏ ବିଶ୍ୱ ରହିଛି, ଜୟ ହାସଲ ପାଇଁ ତା'ର । ସମସ୍ତ ଦେଶର ମେହନତକାରୀ ଜନସାଧାରଣ ଏକଜୁଟ ହୁଅ ।"

ମାର୍କସ ଓ ଏଙ୍ଗେଲସ ଦୁନିଆର ଶ୍ରମିକଶ୍ରେଣୀକୁ ଆହ୍ୱାନ ଦେଇଥିଲେ ପୁଞ୍ଜିବାଦ ବିରୁଦ୍ଧରେ ଏକତାବଦ୍ଧ ହେବାପାଇଁ । ୧୮୬୪ରେ ସେମାନେ ଗଠନ କରିଥିଲେ, "ୱ୍ୟାର୍କିଙ୍ଗ ମେନସ ଇଣ୍ଟରନ୍ୟାସନାଲ ଆସୋସିଏସନ ।" ତାହା ହିଁ ହୋଇଥିଲା ଫାଷ୍ଟ ଇଣ୍ଟରନ୍ୟାସନାଲ ବା ପ୍ରଥମ ଆନ୍ତର୍ଜାତୀୟ ।

ମାର୍କସ ଓ ଏଙ୍ଗେଲସଙ୍କ ଜୀବନକାଳ ଭିତରେ ଶ୍ରମିକଶ୍ରେଣୀ ପ୍ରଥମେ ରାଜନୈତିକ କ୍ଷମତା ଦଖଲ କରିବାପାଇଁ ଓ ପୁଞ୍ଜିବାଦୀ ପ୍ରଥାକୁ ଧ୍ୱଂସ କରିବାପାଇଁ

ଉଦ୍ୟମ ଆରମ୍ଭ କରିଥିଲା । ସେହି ଉଦ୍ୟମ ପ୍ରକାଶ ପାଇଥିଲା 'ପାରିସ କମ୍ୟୁନ୍' ପ୍ରତିଷ୍ଠାରେ । ପାରିସ ନଗରୀର ଶ୍ରମିକମାନଙ୍କ ଅଭ୍ୟୁତ୍ଥାନ ଫଳରେ ୧୮୭୧ରେ ଏହା ସମ୍ଭବ ହୋଇଥିଲା; ବଞ୍ଚିଥିଲା ଦୁଇମାସ ଦଶଦିନ ମାତ୍ର । ଫ୍ରାନ୍ସର ପ୍ରତିବିପ୍ଳବୀ ବୁର୍ଜୁଆମାନେ ସେତେବେଳେ ଅତି ନୃଶଂସ ଭାବରେ ସାରା କମ୍ୟୁନ୍ ଯୋଦ୍ଧାମାନଙ୍କୁ ଦମନ କରିଥିଲେ ।

ତା' ସତ୍ତ୍ୱେ, ଶ୍ରମିକଶ୍ରେଣୀର ଆନ୍ଦୋଳନକୁ ଦମନ କରି ମୁକ୍ତି ଓ ସ୍ୱାଧୀନତା ଲାଗି ଶ୍ରମିକମାନଙ୍କ ଆକାଂକ୍ଷାର କଣ୍ଠରୋଧ କରିବା ଦିଗରେ ବୁର୍ଜୁଆମାନେ ସମର୍ଥ ହୋଇ ନ ଥିଲେ, କି କେବେହେଲେ ସମର୍ଥ ହେବେ ନାହିଁ । ସମସ୍ତ ପୁଞ୍ଜିବାଦୀ ଦେଶର କୋଟି କୋଟି ଶ୍ରମିକ, ମାର୍କ୍ସବାଦର ପତାକା ତଳେ ସମବେତ ହେବାକୁ ଲାଗିଲେ । ଶ୍ରମଜୀବୀ ଲୋକମାନଙ୍କର ମୁକ୍ତିସଂଗ୍ରାମ ସାମ୍ରାଜ୍ୟବାଦୀ କାଳରେ ତୀବ୍ର ଓ ପ୍ରଚଣ୍ଡ ହୋଇଉଠିଲା ।

## ସାମ୍ରାଜ୍ୟବାଦ, ପୁଞ୍ଜିବାଦର ସର୍ବୋଚ୍ଚ ଓ ସର୍ବଶେଷ ସ୍ତର

ପ୍ରତ୍ୟେକ ପୁଞ୍ଜିପତି ସେତେ ଧନୀ ହେଉ ପଛେ ଅଧିକରୁ ଅଧିକ ମାତ୍ରାରେ ଧନୀ ହେବାକୁ ଚାହେଁ । ପୁଞ୍ଜିପତିମାନଙ୍କ ମଧ୍ୟରୁ ପ୍ରତ୍ୟେକେ ପୁଣି ଯେତେଦୂର ସମ୍ଭବ ସବୁଠାରୁ ବଳି ଅଧିକ ଲାଭ ପାଇବା ଆଶାରେ ଧାଉଁଥିବାରୁ, ସେମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଲାଗିରହେ । ଜଣେ ପୁଞ୍ଜିପତି ଅନ୍ୟ ଜଣକୁ ସର୍ବସ୍ୱାନ୍ତ କରି, ତା'ର ବ୍ୟବସାୟକୁ ଦଖଲ କରିବାକୁ ଚେଷ୍ଟା କରେ । କ୍ଷୁଦ୍ର କ୍ଷୁଦ୍ର ମାଲିକମାନେ ଶକ୍ତିଶାଳୀ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିପାରନ୍ତି ନାହିଁ । ଶେଷରେ ଦୁଆଳିଆ ହୋଇଯାଆନ୍ତି । ଫଳରେ, ଶହ ଶହ ହଜାର ହଜାର ସଂଖ୍ୟାରେ କ୍ଷୁଦ୍ର କ୍ଷୁଦ୍ର ଓ ମଧ୍ୟମ ଧରଣର ବ୍ୟବସାୟ ପ୍ରତିଷ୍ଠାନ ଗୁଡ଼ିକୁ ଧୀରେ ଧୀରେ କେତେକ ବଡ଼ ବଡ଼ ପ୍ରତିଷ୍ଠାନ ମାଡ଼ିବସେ ।

ଯେତେବେଳେ ଅଳ୍ପ କେତେକ ମୁଷ୍ଟିମେୟ ବଡ଼ ବଡ଼ ପୁଞ୍ଜିପତିଙ୍କ ହାତରେ ପଣ୍ୟ ଦ୍ରବ୍ୟର ଉତ୍ପାଦନ ଠୁଳ ହେବାକୁ ଲାଗେ, ସେତେବେଳେ ଘଟେ କ'ଣ ?

ଯେତେଦୂର ସମ୍ଭବ ଲାଭ ମାରିବା ଆଶାରେ ନିଜର ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ହଟାଇବା ଲାଗି ପୁଞ୍ଜିପତିମାନେ ବିଭିନ୍ନ ପ୍ରକାର ସଂଘ ଓ ଇଉନିଅନ ଗଢ଼ନ୍ତି । ବଡ଼ ବଡ଼ ପୁଞ୍ଜିପତିମାନଙ୍କର ଏହି ସଂଘ, ଇଉନିଅନ ଓ ଆସୋସିଏସନକୁ ସବୁ ଏକଚାଟିଆ ପୁଞ୍ଜି ବ୍ୟବସ୍ଥା ଓ ଏକଚାଟିଆ ପୁଞ୍ଜିର ମାଲିକମାନଙ୍କୁ ଏକଚାଟିଆ ପୁଞ୍ଜିପତି କୁହାଯାଏ । କେତେ ପରିମାଣରେ ପଣ୍ୟଦ୍ରବ୍ୟ ତିଆରି ହେବ, ତାହା ଏକଚାଟିଆ ପୁଞ୍ଜିପତିମାନେ ଠିକ କରନ୍ତି, ବର୍ଗ ଓ ଦର ଧାର୍ଯ୍ୟ କରିଥାନ୍ତି ଏବଂ ଆପଣା ଆପଣା ମଧ୍ୟରେ ବଜାର ଓ କଞ୍ଚାମାଲ ଉତ୍ପନ୍ନ ସ୍ଥାନକୁ ସବୁ ବାଣ୍ଟି

ଛଅନ୍ତି । ଏକ ବା କେତେଗୁଡ଼ିଏ ଶିଳ୍ପର ବେଶ ଗୋଟାଏ ବଡ ଅଂଶରେ ଜିନିଷପତ୍ର ଉତ୍ପାଦନ ଓ ତା'ହାର ବଣ୍ଟନ ବ୍ୟବସ୍ଥାକୁ ଏହି ଏକଚାଟିଆ ପୁଞ୍ଜି କଣ୍ଟ୍ରୋଲ କରେ । ଏହା ଫଳରେ ସେମାନେ ଦରଦାମ ବୃଦ୍ଧି କରେଇ ପ୍ରଚୁର ଲାଭ ମାରିବାକୁ ସମର୍ଥ ହୁଅନ୍ତି ।

ଶତାବ୍ଦୀର ପରିବର୍ତ୍ତନ ବେଳକୁ ପୁଞ୍ଜିବାଦୀ ଅର୍ଥନୀତିରେ ଏକଚାଟିଆ ପୁଞ୍ଜି ଏକ ଅତି ପ୍ରଧାନ ସ୍ଥାନ ବା ଶକ୍ତିଶାଳୀ କ୍ଷମତା ହାସଲ କରିଥିଲା । ଦୃଷ୍ଟାନ୍ତସ୍ୱରୂପ, ଯୁକ୍ତରାଷ୍ଟ୍ର ଆମେରିକାରେ ବଡ଼ ବଡ଼ ପୁଞ୍ଜିପତିଙ୍କ ଭିତରୁ ଶତକଡ଼ା ଏକ ଭାଗ ଲୋକ ଏହି ଶତାବ୍ଦୀର ଆରମ୍ଭ ବେଳକୁ ସେଠାର ସର୍ବମୋଟ ଉତ୍ପାଦନର ପ୍ରାୟ ଅର୍ଦ୍ଧେକ ଭାଗ ନିଜ ଦଖଲରେ ରଖିପାରିଥିଲେ ।

ସେହିଦିନଠାରୁ କେତେକ ବୃହତ୍ ବୃହତ୍ ପୁଞ୍ଜିପତି ସଂଘ ବା ଇଉନିଅନ ହାତରେ ଉତ୍ପାଦନର ମୌଳିକ ଉପାଦାନଗୁଡ଼ିକ ଅଧିକରୁ ଅଧିକ ଠୁଳ ହେଉଛି । ତଦ୍ୱାରା ସେଠାରେ ପୁଞ୍ଜିବାଦ ବିକଶିତ ଲାଭ କରିବାରେ ଲାଗିଛି । ଯୁକ୍ତରାଷ୍ଟ୍ର ଆମେରିକାରେ ୧୬ ଜଣ କୋଟିପତିଙ୍କ ନେତୃତ୍ୱରେ ଗଠିତ ପ୍ରକାଣ୍ଡ ପ୍ରକାଣ୍ଡ କେତେକ କରପୋରେସନ ହାତରେ ସେଠାର ମୋଟ ଉତ୍ପାଦନର ଏକ ବୃହତ୍ ଅଂଶ ରହିଛି । ସେହି ଯୁକ୍ତରାଷ୍ଟ୍ର ଆମେରିକାର ବଡ ବଡ ୩ ଜଣ ଏକଚାଟିଆ ପୁଞ୍ଜିପତିଙ୍କ ହାତରେ ସେଠାରେ ତିଆରି ହେଉଥିବା ସମସ୍ତ ମଟରକାର୍ ଓ ବିଦ୍ୟୁତ ଇଂଜିନର (turbogenerators) ଶତକଡ଼ା ୯୫ ଭାଗ ରହିଛି । ବ୍ରିଟିଶ କମ୍ପାନୀ ଶତକଡ଼ା ୮୭ ଭାଗ ତମ୍ବାଶୋଧନ କାରଖାନା ଓ ଆଉ ତିନୋଟି କମ୍ପାନୀ ୯୬ ଭାଗ ଆଲୁମିନିୟମ ଶିଳ୍ପର ମାଲିକ ହୋଇ ବସିଛନ୍ତି । ବଡ଼ ବଡ଼ ଏକଚାଟିଆ ପୁଞ୍ଜିପତିମାନେ ହିଁ ବାଣିଜ୍ୟ ବେପାରରେ, ଅର୍ଥବଜାରରେ (finance) ଏବଂ କୃଷିଜାତ ପଦାର୍ଥର ବିକ୍ରୟ ଓ ଉତ୍ପାଦନ କ୍ଷେତ୍ରରେ ମଧ୍ୟ ଆପଣାର ଆଧିପତ୍ୟ ବିସ୍ତାର କରିଛନ୍ତି ।

ଏକଚାଟିଆ ପୁଞ୍ଜିପତିମାନେ ଉତ୍ପାଦନର ପ୍ରସାର କରନ୍ତି,(technology) ପ୍ରଯୁକ୍ତିବିଦ୍ୟାର ଉନ୍ନତିସାଧନ କରନ୍ତି, ପୁରୁଣା ମେସିନ ଓ ଯନ୍ତ୍ରପାତି ପରିବର୍ତ୍ତେ ନୂଆ ନୂଆ ଯନ୍ତ୍ରପାତି ବସାନ୍ତି । ଏହା କଲାବେଳେ ସେମାନେ କେବଳ ଲାଭର ମାତ୍ରା ନିଶ୍ଚିତ ରୂପେ ବୃଦ୍ଧି ପାଇବା ଉପରେ ଦୃଷ୍ଟି ରଖନ୍ତି । ଏହା କରିବା ଦ୍ୱାରା ଯଦି ଦେଖନ୍ତି,ତାଙ୍କ ଲାଭର ମାତ୍ରା ବୃଦ୍ଧି ପାଉଛି ତେବେ ସେମାନେ ଏହି ଉନ୍ନତିସାଧନରେ ଲାଗନ୍ତି । ଯଦି ଲାଭର ମାତ୍ରା ଊଣା ହୁଏ, ତେବେ ସେମାନେ ଉତ୍ପାଦନର ଅଗ୍ରଗତି ଓ ପ୍ରଯୁକ୍ତିବିଦ୍ୟାର ଉନ୍ନତିକୁ ଜାଣିଶୁଣି ରୋକିଦିଅନ୍ତି, ତା'ର ବିକାଶର ପଥରେ ଅନ୍ତରାୟ ହୁଅନ୍ତି । ସେମାନେ ଅନେକ ସମୟରେ ନୂଆ ନୂଆ ଉଦ୍ଭାବନଗୁଡ଼ିକୁ କିଣିନିଅନ୍ତି ମାତ୍ର ତାକୁ ସବୁ ଉତ୍ପାଦନ କ୍ଷେତ୍ରରେ ଲଗାଇବାପାଇଁ ଦିଅନ୍ତି ନାହିଁ, ଦିଅନ୍ତି ତାକୁ,

ସବୁ ପୁରୁଷପୁରୁଷ ସୃଷ୍ଟି ହେଉ, ତା'ର ବ୍ୟବହାର ବନ୍ଦ କରିଦେବା ସକାଶେ; ସେମିତକ ତାଙ୍କର ପ୍ରତିଦ୍ୱନ୍ଦୀମାନେ ଆଉ ତାକୁ ବ୍ୟବହାର କରିପାରିବେ ନାହିଁ । ଏଭଳି କରିବା ଦ୍ୱାରା ସେମାନେ ଚଢ଼ା ଏକଚାଟିଆ ଦରକୁ ଜାହିର ରଖନ୍ତି, ତା'ର ହ୍ରାସକୁ ରୋକିଦିଅନ୍ତି ।

ବୁର୍ଜୁଆ ସମାଜରେ ଏକଚାଟିଆ ପୁଞ୍ଜି, ଉତ୍ପାଦନ ବୃଦ୍ଧିର ବେଗକୁ ଅତି ମନ୍ଥର କରିଦିଏ । ଉତ୍ପାଦନ କ୍ଷମତା (capacities)ର ବେଶ୍ ଗୋଟାଏ ଅଂଶ ବ୍ୟବହୃତ ନ ହୋଇ ପଡ଼ିରହେ । କୃଷି ଉତ୍ପାଦନକୁ କୃତ୍ରିମ ଉପାୟରେ ସଙ୍କୁଚିତ କରାଯାଏ । ତେଣୁ ଲକ୍ଷ ଲକ୍ଷ ବେକାର ଲୋକଙ୍କ ପକ୍ଷରେ ଉତ୍ପାଦନଶୀଳ (produtcive) ଶ୍ରମରେ ଅଂଶ ଗ୍ରହଣର କୌଣସି ସୁଯୋଗ ରହେ ନାହିଁ । ଯୁଦ୍ଧ ପ୍ରସ୍ତୁତିରେ ବହୁଳ ମାନବୀୟ ଶକ୍ତିର ଓ ବୈଷୟିକ ସମ୍ପଦର ଅପବ୍ୟୟ ଘଟେ । ସମାଜର ଶରୀରରେ ଏକଚାଟିଆ ବୁର୍ଜୁଆ ଏକ ଅନାବଶ୍ୟକ ସ୍ଫୀତ ବା ଆବୁ ଭଳି । ତାହା ପରପୁଷ୍ଟ ହୋଇ ଜୀବନଧାରଣ କରେ; ଶ୍ରମିକ କୃଷକମାନେ ଯେଉଁ ସମ୍ପଦ, ଯେଉଁ ଜାତୀୟ ଆୟ ସୃଷ୍ଟି କରନ୍ତି ସେଥିରୁ ଗୋଟାଏ ଅଧିକାଂଶିଆ ଭାଗ ଉଦରସ୍ଥ କରେ; ନିଜ ବୋଲିକରିବାକୁ କିଛି ରହେ ନାହିଁ ।

ତେଣୁ ଉତ୍ପାଦନ ଶକ୍ତିର ଅଭିବୃଦ୍ଧିରେ, ସାମାଜିକ ଅଗ୍ରଗତିରେ ପୁଞ୍ଜିବାଦ ଏକ ବିରାଟ ପ୍ରତିବନ୍ଧକ ହୋଇ ଠିଆ ହୁଏ ।

ଏକଚାଟିଆ ପୁଞ୍ଜିପତିମାନେ ନିଜ ନିଜ ଦେଶର ଘରୋଇ ବଜାରରେ ସନ୍ତୁଷ୍ଟ ରହନ୍ତି ନାହିଁ । ସେମାନେ ବାହାରକୁ ନିଜର ଯାବତୀୟ ଉତ୍ପନ୍ନ ପଦାର୍ଥ ଆଉ ପୁଞ୍ଜି ମଧ୍ୟ ରପ୍ତାନି କରନ୍ତି । ସେମାନେ ଅନ୍ୟ ଦେଶମାନଙ୍କୁ ଅତି ଚଢ଼ାଚଢ଼ା ସୁଧ ହାରରେ ଋଣ ଦିଅନ୍ତି; ସେଠାରେ ସବୁ ନିଜ ନିଜର ବ୍ୟାଙ୍କ ଖୋଲନ୍ତି କମ୍ପା ସ୍ଥାନୀୟ ବ୍ୟାଙ୍କ ସହିତ ମିଶି ଏକାଠି ମାଲିକ ପାଲଟନ୍ତି । ରେଲବାଇ ଓ ଶିଳ୍ପ ଗଠନ ଯୋଜନାମାନଙ୍କରେ, ସର୍ବୋପରି ମୂଳ କଞ୍ଚାମାଲ ବିଶୋଧନ ପ୍ରତିଷ୍ଠାନମାନଙ୍କରେ ପୁଞ୍ଜି ଖଟାନ୍ତି ।

କମ ଉନ୍ନତ ବା ଅନୁନ୍ନତ ଦେଶରେ, ଯେଉଁଠି ମଜୁରି ହାର ଊଣା, କଞ୍ଚାମାଲ ଶସ୍ତା, ଜମିର ମୂଲ୍ୟ କମ, ସେଠାରେ ପୁଞ୍ଜିପତିମାନେ ଟଙ୍କା ବା ଅର୍ଥ ଖଟାଇବା ଅଧିକ ଲାଭଜନକ ବୋଲି ବିଚାରନ୍ତି । ସେମାନେ ଦାବୀ କରନ୍ତି ଯେ ପୁଞ୍ଜି ରପ୍ତାନି ଫଳରେ ଉକ୍ତ ଦେଶମାନେ ଲାଭବାନ ହୁଅନ୍ତି । କିନ୍ତୁ ପ୍ରକୃତ ଘଟଣା ହେଲା ଯେ ଏକଚାଟିଆ ପୁଞ୍ଜିପତିମାନେ ପୁଞ୍ଜି ରପ୍ତାନି କରିବା ଦ୍ୱାରା କମ ଉନ୍ନତ ଦେଶମାନଙ୍କର ଅର୍ଥନୀତିକୁ ନିଜର ଆୟତ୍ତକୁ ଆଣନ୍ତି, କଣ୍ଟ୍ରୋଲ କରନ୍ତି ଏବଂ ତାକୁ ଏକପାଖିଆ ଭାବେ ଅସ୍ୱାଭାବିକ କରିଦିଅନ୍ତି । ତା ଫଳରେ ଉକ୍ତ ଦେଶମାନଙ୍କର ଅର୍ଥନୀତି ଅତି ଧୀର ମନ୍ଥର ଭାବେ ଅଗ୍ରସର ହୁଏ । ଶ୍ରମିକଶ୍ରେଣୀ ତା'ର 'ନିଜ'

ଦେଶର ବୁର୍ଜୁଆ ଓ ଜମିଦାରମାନେ ବି ବିଦେଶୀ ଏକଚାଟିଆ ପୁଞ୍ଜିପତିଙ୍କ ଦ୍ୱାରା ଦୋହନର ସ୍ତରରେ ଅତ୍ୟାଚାରିତ ହୁଏ । ବିଦେଶୀ ପୁଞ୍ଜିପତିମାନେ ବିପୁଳ ଲାଭ ମାରନ୍ତି ।

ଯୁକ୍ତରାଷ୍ଟ୍ର ଆମେରିକାର ଏକଚାଟିଆ ପୁଞ୍ଜିପତିମାନେ ଲାଟିନ ଆମେରିକାରେ ଖଟାଇଥିବା ପ୍ରତ୍ୟେକ ଡଲାରରେ ତିନି ଡଲାରରୁ ଅଧିକ ଲାଭ କରୁଛନ୍ତି । ଲାଟିନ ଆମେରିକା ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ । ମାତ୍ର ସେଠାରେ ଶିଳ୍ପ ବ୍ୟବସ୍ଥା ଆଦୌ ଯଥେଷ୍ଟ ନୁହେଁ; ଅତି ନଗଣ୍ୟ । ଲାଟିନ ଆମେରିକାର ଖଣିଗୁଡ଼ିକ ପୁଞ୍ଜିବାଦୀ ଜଗତରେ ଉତ୍ପାଦନ ହେଉଥିବା ରୂପାର ଶତକଡ଼ା ୪୦ ଭାଗ, ତମ୍ବାର ୧୦ ଭାଗ, ଟିଣର ୧୬ ଭାଗ ଓ ସୀସାର ୧୪ ଭାଗ ଯୋଗାଇଥାଏ; ଅଥଚ ନିଜେ କେବଳ ଶତକଡ଼ା ୩ ଭାଗ ତମ୍ବା, ୪ ଭାଗ ସୀସା ଓ ୩ ଭାଗ ଟିଣ ବ୍ୟବହାର କରେ । ପୁଞ୍ଜିବାଦୀ ଦୁନିଆ ଭିତରେ ତା'ର ମୋଟ ଶିଳ୍ପ ଉତ୍ପାଦନର ପରିମାଣ ହେଉଛି ଶତକଡ଼ା ୫ ଭାଗ ମାତ୍ର ।

ଏହାହିଁ ହେଲା ବିଦେଶୀ ପୁଞ୍ଜିର, ବିଶେଷ କରି ଆମେରିକା ପୁଞ୍ଜିର ଆଧିପତ୍ୟର ଫଳ ।

ଏହି ଅନୁନ୍ନତ ଦେଶମାନଙ୍କରେ ନିଜର ଲାଭକୁ ସୁରକ୍ଷିତ କରିବା ଲାଗି ସାମ୍ରାଜ୍ୟବାଦୀମାନେ ସେହିସବୁ ଦେଶକୁ ଆପଣାର ରାଜନୈତିକ ପ୍ରଭାବ ଅଧୀନକୁ ଆଣିବାକୁ ଚେଷ୍ଟା କରନ୍ତି; ଏହି ଦେଶଗୁଡ଼ିକ ଉପରେ ଯେକୌଣସି ରୂପରେ ଔପନିବେଶିକ ଶୋଷଣ ଲୁଣ୍ଠନକୁ ବଜାୟ ରଖନ୍ତି । ଏଥିପାଇଁ ଔପନିବେଶିକ ଯୁଦ୍ଧଠାରୁ ଆରମ୍ଭ କରି ସାମରିକ ମେଣ୍ଟ ଗଠନ, ହତ୍ୟା, ଷଡ଼ଯନ୍ତ୍ର ଓ ଆତଙ୍କର ପ୍ରସାର, ଜାତି ଓ ସମ୍ପ୍ରଦାୟମାନଙ୍କ ମଧ୍ୟରେ ସଂଘର୍ଷ ସୃଷ୍ଟି, ଅର୍ଥନୈତିକ ଚାପ ଆଉ ସ୍ଥାନୀୟ ପ୍ରତିକ୍ରିୟାଶୀଳମାନଙ୍କୁ ଉତ୍କୋଚ ବା ଲାଞ୍ଚ ପ୍ରଦାନ ପରେ ହାତ କରିବାପାଇଁ ସମସ୍ତ ପ୍ରକାର ଦମନମୂଳକ ପନ୍ଥା ବା ଉପାୟ ପ୍ରୟୋଗ କରନ୍ତି ।

ଏହି ବଡ଼ ବଡ଼ ଏକଚାଟିଆ ପୁଞ୍ଜିପତିମାନେ ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କୁ ମଧ୍ୟ ପୁଞ୍ଜି ରପ୍ତାନି କରନ୍ତି । ସେମାନେ ପ୍ରତ୍ୟେକ କ୍ଷେତ୍ରରେ ପୁଞ୍ଜିକୁ କେବଳ ମୁନାଫା ଲୁଣ୍ଠନର ଉପାୟ ରୂପେ ବ୍ୟବହାର କରନ୍ତି ନାହିଁ; ଅନ୍ୟ ଦେଶ ଓ ଜାତିମାନଙ୍କୁ ଅର୍ଥନୈତିକ-ରାଜନୈତିକ ପରାଧୀନତା ଶୃଙ୍ଖଳରେ ବାନ୍ଧିବାର ଏକ କୌଶଳ-ରୂପେ ମଧ୍ୟ ବ୍ୟବହାର କରନ୍ତି ।

ପୃଥିବୀର ପୁଞ୍ଜିବାଦୀ ବଜାର ଉପରେ ଏହି ଅତିବଡ଼ ବଣିକମାନଙ୍କର ଅଧିପତ୍ୟ ପୁଞ୍ଜି-ରପ୍ତାନିର ବୃଦ୍ଧି ସହିତ ସମାନ ପଦକ୍ଷେପରେ ବୃଦ୍ଧି ପାଏ । ମୁଷ୍ଟିମେୟ କେତେକ ପ୍ରକାଣ୍ଡ ପୁଞ୍ଜିନିବେଶକାରୀ ଗୋଷ୍ଠୀ ସମଗ୍ର ପୁଞ୍ଜିବାଦୀ ଦୁନିଆର ଅର୍ଥନୀତିକୁ ନିୟନ୍ତ୍ରଣ କରନ୍ତି ଏବଂ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ନୀତି ନିର୍ଦ୍ଧାରଣ କରନ୍ତି ।

ଫଳରେ ପ୍ରକାଣ୍ଡ ପ୍ରକାଣ୍ଡ ଅନ୍ତର୍ଜାତୀୟ ଏକଚାଟିଆ ପୁଞ୍ଜିବାଦୀ ଗୋଷ୍ଠୀ ଗଢ଼ିଉଠେ, ଅର୍ଥାତ୍ ବିଭିନ୍ନ ଦେଶର ପୁଞ୍ଜିପତି ମିଳିମିଶି ସଂଘ ଦେଖାଦିଏ। ସେହିମାନେ ପୃଥିବୀରେ ରହିଥିବା ପୁଞ୍ଜିବାଦୀ ଉପନିବେଶର ଏକ ବିରାଟ ଅଂଶକୁ ଦଖଲ କରନ୍ତି; ନିଜର ଅଧିକାରରେ ରଖନ୍ତି। ଉଦାହରଣ ସ୍ୱରୂପ, ବ୍ରିଟେନ ଓ ଯୁକ୍ତରାଷ୍ଟ୍ର ଆମେରିକାର ତୈଳ କମ୍ପାନୀମାନଙ୍କୁ ଦେଖାଯାଉ। ସେମାନେ ମଧ୍ୟପ୍ରାଚ୍ୟ ଓ ଲାଟିନ ଆମେରିକାର ତୈଳକ୍ଷେତ୍ରଗୁଡ଼ିକୁ ନିୟନ୍ତ୍ରଣ କରୁଛନ୍ତି। ଯୁକ୍ତରାଷ୍ଟ୍ର ଆମେରିକା, ପଶ୍ଚିମ ଜର୍ମାନୀ ଓ ବ୍ରିଟେନରେ ସ୍ଥାପିତ ଦ୍ୱାରା ଏକଚାଟିଆ ପୁଞ୍ଜିପତିମାନେ ଅନ୍ୟ ଦେଶର ପୁଞ୍ଜିପତିମାନଙ୍କୁ ହୁକୁମ ଦେଇ ନିଜର କାର୍ଯ୍ୟ ହାସଲ କରୁଛନ୍ତି।

ତେବେ ବିଭିନ୍ନ ଦେଶର ପୁଞ୍ଜିପତିମାନଙ୍କ ମଧ୍ୟରେ କୌଣସି ଚୁକ୍ତି ଓ ବୁଝାମଣା ସ୍ଥାୟୀ ହୋଇ ରହିପାରେ ନାହିଁ। ଯାହା ତାହା ସବୁ ବଡ଼ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଓ ସଂଘର୍ଷ ସୃଷ୍ଟି କରେ। କାରଣ ଅନ୍ତର୍ଜାତୀୟ ଏକଚାଟିଆ ପୁଞ୍ଜିବାଦୀ ସଂସ୍ଥାଗୁଡ଼ିକ କଞ୍ଚାମାଲ ଓ ବଜାର ଲାଗି, ସସ୍ତାରେ ଶ୍ରମ (ଶ୍ରମିକ) ପାଇବାପାଇଁ ଏବଂ ଅଧିକ ଲାଭ ହାସଲ ସକାଶେ ଲଢ଼େଇ କରନ୍ତି। ସେମାନେ ନିଜର ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ଦୁର୍ବଳ ଓ ପରାସ୍ତ କରିବାକୁ ଯାଇ ସାମ୍ରାଜ୍ୟବାଦୀ ଯୁଦ୍ଧ ଓ ଉତ୍ତେଜନା ସୃଷ୍ଟି କରିବାରେ ଅଗ୍ରସର ହୁଅନ୍ତି।

ପୁଞ୍ଜିବାଦର ବିକାଶ ଭିତରେ, ଯେଉଁ ଅବସ୍ଥାରେ ବା ସ୍ତରରେ ବୁର୍ଜୁଆ ଦେଶମାନଙ୍କ ଅର୍ଥନୀତିର ଓ ସାଧାରଣ ନୀତିର ନିର୍ଦ୍ଧାରଣ ଓ ନିୟନ୍ତ୍ରଣ ଏକଚାଟିଆ ପୁଞ୍ଜିପତି-ମାନଙ୍କ ହାତକୁ ଚାଲିଯାଏ, ପୁଞ୍ଜିବାଦ ବିକାଶର ସେହି ଅବସ୍ଥା ବା ସ୍ତରକୁ ଲେନିନ ସାମ୍ରାଜ୍ୟବାଦ ବୋଲି ଅଭିହିତ କରିଛନ୍ତି।

ନିର୍ଦ୍ଦିଷ୍ଟ ସ୍ତରରେ ଏହି ସାମ୍ରାଜ୍ୟବାଦୀ କାଳରେ ହିଁ ରାଷ୍ଟ୍ର-ଏକଚାଟିଆ ପୁଞ୍ଜିବାଦ ବିକାଶ ଲାଭ କରିଥାଏ।

ଏକଚାଟିଆ ପୁଞ୍ଜି ଉତ୍ପାଦନ ସାଧନ ପୁଞ୍ଜିନିଯୋଗ ଓ ଜୈବିକ ସମ୍ପଦ-ଗୁଡ଼ିକୁ ହସ୍ତଗତ କରି, ଅନ୍ୟ ଲୋକଙ୍କୁ ପ୍ରତିଯୋଗିତାରେ ସ୍ଥାନ ଦିଏ ନାହିଁ; ସମାଜରେ ନିଜର ଏକଚ୍ଛତ୍ର ଶାସନ (Dictatorship) ପ୍ରତିଷ୍ଠା କରେ। ଏକଚାଟିଆ ପୁଞ୍ଜିପତି-ମାନେ ରାଷ୍ଟ୍ର ଶାସନ ସହିତ ମିଶି ସେଥିରେ ସାମିଲ ହୋଇଥାନ୍ତି। ତାଙ୍କର ପ୍ରତିନିଧିମାନେ ବଡ଼ ବଡ଼ ମନ୍ତ୍ରୀ ପଦବୀ ଓ ପ୍ରଶାସନ ଦଖଲ କରନ୍ତି। ଏକଚାଟିଆ ପୁଞ୍ଜିପତିମାନଙ୍କର ସମସ୍ତ ବ୍ୟବସ୍ଥା ସୁରକ୍ଷିତ କରି ପରିଚାଳନା କରିବା ଲାଗି ରାଷ୍ଟ୍ର ଏକ କମିଟିରେ ପରିଣତ ହୁଏ; ଆର୍ଥିକ ପୁଞ୍ଜିର (Financial)

ଏକଚାଟିଆ ମାଲିକମାନଙ୍କ ସ୍ୱାର୍ଥ ଦୃଷ୍ଟିରୁ ଉତ୍ପାଦନ କ୍ଷେତ୍ରରେ ହସ୍ତକ୍ଷେପ କରେ; ଏକଚାଟିଆ ପୁଞ୍ଜିପତିଙ୍କ ସ୍ୱାର୍ଥକୁ ବୃଦ୍ଧି କରିବା ଲାଗି ବଜେଟ ବିଶେଷ ଅର୍ଥଗତ ବନ୍ଧନଗୁଡ଼ିକୁ ସ୍ୱତନ୍ତ୍ର ଅଞ୍ଚଳ ବୋଲି ଘୋଷଣା କରେ; ପ୍ରତିଯୋଗିତା ଚାପରୁ ସବୁ ରକ୍ଷା କରିବା ଉଦ୍ଦେଶ୍ୟରେ ଉତ୍ପାଦନକୁ ନିୟନ୍ତ୍ରଣ କରିବା ଲାଗି ଚେଷ୍ଟା କରେ।

ଏକଚାଟିଆ ପୁଞ୍ଜିପତିମାନଙ୍କୁ ଅଧିକ ଧନୀ କରିବା ଅଭିପ୍ରାୟରେ ରାଷ୍ଟ୍ରୀୟ ଏକଚାଟିଆ ପୁଞ୍ଜିବାଦ, 'ଏକଚାଟିଆ ପୁଞ୍ଜିର ଶକ୍ତି' ଓ 'ରାଷ୍ଟ୍ରୀୟ ଶକ୍ତି'କୁ ଏକତ୍ର କରି ଶୋଷଣ ଏବଂ, ଶ୍ରମିକଶ୍ରେଣୀ ଓ ଜାତୀୟ ମୁକ୍ତିଆନ୍ଦୋଳନକୁ ଦମନ କରେ ଏବଂ ପୁଞ୍ଜିବାଦର ରକ୍ଷକ ହୁଏ।

କିନ୍ତୁ ରାଷ୍ଟ୍ରୀୟ ଏକଚାଟିଆ ପୁଞ୍ଜିବାଦ, ବୁର୍ଜୁଆ ସମାଜ ମଧ୍ୟରେ ନୂତନ ବଳ ସଞ୍ଚାର କରି ତାକୁ ଅନିବାର୍ଯ୍ୟ ଧ୍ୱଂସ ମୁହଁରୁ ରକ୍ଷା କରିପାରେ ନାହିଁ। ବରଂ ଏହି ତାହା ପୁଞ୍ଜିବାଦର ବିରୋଧଗୁଡ଼ିକୁ ଉତ୍କଟ କରେ, ଶ୍ରମ ଓ ପୁଞ୍ଜି ମଧ୍ୟରେ ଥିବା ପାର୍ଥକ୍ୟକୁ ପ୍ରସାରିତ କରେ ଏବଂ ଉତ୍ପାଦନ କ୍ଷେତ୍ରରେ ଅରାଜକତାକୁ ବ୍ୟାପକ କରେ। କାରଣ, ତାହାର ମୂଳ ଭିତ୍ତିଭୂମି ହୋଇ ରହିଛି ପୁଞ୍ଜିବାଦୀ ସମ୍ପତ୍ତି ଓ ମଜୁରି ଶ୍ରମର ଶୋଷଣ।

ଲେନିନ ୧୯୧୬ରେ "ସାମ୍ରାଜ୍ୟବାଦ—ପୁଞ୍ଜିବାଦର ସର୍ବୋଚ୍ଚ ସ୍ତର" ବୋଲି ଯେଉଁ ପୁସ୍ତକ ପ୍ରଣୟନ କରିଥିଲେ, ସେଥିରେ ସେ ବୈଜ୍ଞାନିକଭାବେ ପ୍ରମାଣ କରିଥିଲେ ଯେ ସାମ୍ରାଜ୍ୟବାଦ, ପୁଞ୍ଜିବାଦ ବିକାଶର କେବଳ ସର୍ବୋଚ୍ଚ ସ୍ତର ନୁହେଁ, ତା'ର ଶେଷରେ ଅନ୍ତିମ ସ୍ତର ମଧ୍ୟ।

ସାମ୍ରାଜ୍ୟବାଦୀ ଯୁଗରେ ପୁଞ୍ଜିବାଦର ଗୁରୁତ୍ୱପୂର୍ଣ୍ଣ ନିୟମଗୁଡ଼ିକ ମଧ୍ୟରେ ଅନ୍ୟ ଗୁରୁତ୍ୱପୂର୍ଣ୍ଣ ନିୟମ ହେଉଛି—ପୁଞ୍ଜିବାଦର ଅସମାନ ଓ ଅନିୟମିତ ବିକାଶର ନିୟମ। ଯେଉଁ କେତେକ ଦେଶ ପୁଞ୍ଜିବାଦୀ ଉତ୍ପାଦନ କ୍ଷେତ୍ରରେ ଏକଦା ଆଗୁଆ ହୋଇ ରହିଥାନ୍ତି, ସେହି କେତେକ ଦେଶ ପଛରେ ପଡ଼ିଯାଆନ୍ତି। ଅଥଚ ଯେଉଁଗୁଡ଼ିକ ଏକଦା ପଛରେ ପଡ଼ିଥାନ୍ତି, ସେଗୁଡ଼ିକ ତେଜେ ନିଜର ବିକାଶକୁ ଅଧିକ ତ୍ୱରାନ୍ୱିତ କରନ୍ତି ଓ ତାଙ୍କର ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ଟପିଯାଆନ୍ତି।

ଦିନେ ଇଂଲଣ୍ଡ ପୃଥିବୀର ଅନ୍ୟାନ୍ୟ ଦେଶଠାରୁ ଆଗରେ ରହିଥିଲା। ଇଂଲଣ୍ଡର ବୁର୍ଜୁଆମାନେ ଗର୍ବ କରୁଥିଲେ, 'ଇଂଲଣ୍ଡ ହେଉଛି ଦୁନିଆର କାରଖାନା', ଏବଂ 'ସାତ ସାଗରର ସମ୍ରାଜ୍ଞୀ।' କିନ୍ତୁ ଏହି ଶତାବ୍ଦୀର ଆରମ୍ଭରେ ଇଂଲଣ୍ଡ ଶିଳ୍ପକ୍ଷେତ୍ରରେ ତା'ର ଅଧିକାଂଶ ହରାଇବସିଲା; ପୃଥିବୀ ବଜାରରେ ତା'ର ନେତୃତ୍ୱର ଅବସାନ ଘଟିଲା। ଅନ୍ୟ ଦେଶର ଯେଉଁ 'ଦେଶମାନେ ତା'ର

ପଛରେ ପଡ଼ିଥିଲେ ସେମାନେ ଆଗକୁ ମାଡ଼ିଗଲେ । ପୃଥିବୀର ଶିଳ୍ପ-ଉତ୍ପାଦନ କ୍ଷେତ୍ରରେ ଯୁକ୍ତରାଷ୍ଟ୍ର-ଆମେରିକା ପ୍ରଥମ ସ୍ଥାନ ଅଧିକାର କଲା । ୟୁରୋପରେ ଜର୍ମାନୀ ପ୍ରଥମ ହେଲା ।

ପୁଞ୍ଜିପତି ଦେଶମାନଙ୍କର ଅର୍ଥନୈତିକ ଓ ରାଜନୈତିକ ବିକାଶର ଅସମାନ ଚରିତ୍ର ଯୋଗୁଁ ସାମ୍ରାଜ୍ୟବାଦୀମାନଙ୍କ ମଧ୍ୟରେ ଶକ୍ତିର ଭାରସାମ୍ୟ ଅନବରତ ଅସମା-ଗତ ଭାବରେ ବଦଳେ । ତାହା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ବୈରଭାବ ବୃଦ୍ଧି କରେ । ଯେଉଁ ଦେଶଗୁଡ଼ିକ ଆଗୁଆ ହୋଇ ରହିଥାନ୍ତି ସେମାନେ ତାଙ୍କର ଆସ୍ଥାନକୁ ଦୃଢ଼ କରିବାପାଇଁ ଚେଷ୍ଟା କରନ୍ତି; ଆଉ ଯେଉଁ ଦେଶମାନେ ପଛରେ ପଡ଼ିଥାନ୍ତି, ସେମାନେ ଅତି ଶୀଘ୍ର ଆଗେଇବାପାଇଁ ଆଗୁଆ ସ୍ଥାନ ଅଧିକାର କରିବା-ପାଇଁ ପ୍ରାଣପଣେ ଚେଷ୍ଟା କରନ୍ତି । ପୃଥିବୀକୁ ପୁନର୍ବାର ସ୍ୱତନ୍ତ୍ର କରି ବାଣ୍ଟିବା ସକାଶେ, ବଜାର ଆଉ କଞ୍ଚାମାଲର ମୂଳକେନ୍ଦ୍ରଗୁଡ଼ିକୁ ଦଖଲ କରିବାପାଇଁ ସଂଗ୍ରାମ ଘଟେଇଥାଏ ।

ଏହା ଅତୀତରେ ଘଟିଥିଲା, ବର୍ତ୍ତମାନ ମଧ୍ୟ ଘଟୁଛି ।

ପୃଥିବୀକୁ ପୁନର୍ବାର ସ୍ୱତନ୍ତ୍ର କରି ବାଣ୍ଟିବାଲାଗି ସଂଗ୍ରାମ କରିବା ହେଲା ସାମ୍ରାଜ୍ୟବାଦର ଏକ ବିଶେଷ ଗୁଣ । ଏହି ସଂଗ୍ରାମ ହିଁ, ସାମ୍ରାଜ୍ୟବାଦୀ ଯୁଦ୍ଧ ସୃଷ୍ଟି କରେ ।

ପ୍ରଥମ ବିଶ୍ୱଯୁଦ୍ଧ ଥିଲା ଠିକ୍ ଏହି ପ୍ରକାରର ଏକ ଯୁଦ୍ଧ । ଜର୍ମାନୀର ସାମ୍ରାଜ୍ୟବାଦୀ-ମାନେ ନିଜର ପ୍ରତିଦ୍ୱନ୍ଦ୍ୱୀ ବ୍ରିଟିଶ ସାମ୍ରାଜ୍ୟବାଦୀମାନଙ୍କ ପ୍ରତି ଅତ୍ୟନ୍ତ ଈର୍ଷାନ୍ୱିତ ହୋଇ ଉଠିଥିଲେ, କାରଣ ବ୍ରିଟିଶ ସାମ୍ରାଜ୍ୟବାଦୀମାନେ ନିଜ ଉପନିବେଶ-ଗୁଡ଼ିକର କୋଟି କୋଟି ପରାଧୀନ ଲୋକଙ୍କୁ ଶୋଷଣ କରି ପ୍ରଚୁର ଧନସଂପତ୍ତି ଠୁଳ କରୁଥିଲେ । ଜର୍ମାନ ସାମ୍ରାଜ୍ୟବାଦୀମାନେ, ଏଣୁ, ଏହାଦ୍ୱାରା ନିଜର ଶୋଷଣ ଅଂଶରୁ ବଞ୍ଚିତ ହେଉଥିବାରୁ ବ୍ରିଟେନ ଇଂଲଣ୍ଡ, ଫ୍ରାନସ ଓ ଅନ୍ୟ ଦେଶମାନଙ୍କର ଉପନିବେଶମାନ ଦଖଲ କରିବା ଉଦ୍ଦେଶ୍ୟରେ ଯୁଦ୍ଧ ପ୍ରସ୍ତୁତିରେ ଲାଗିପଡ଼ିଲେ । ଜେତେ ଇଂଲଣ୍ଡ ଓ ଫ୍ରାନ୍ସର ସାମ୍ରାଜ୍ୟବାଦୀମାନେ ଚାହିଁଲେ, ଯୁଦ୍ଧ କରି ଅଧିକୃତ ଉପନିବେଶଗୁଡ଼ିକ ରକ୍ଷା କରିବେ ଏବଂ ତାଙ୍କର ଶକ୍ତିଶାଳୀ ପ୍ରତିଦ୍ୱନ୍ଦ୍ୱୀ ଜର୍ମାନୀକୁ ଦଳି-ଦେବେ । ରୁଷର ପୁଞ୍ଜିପତିମାନେ ମଧ୍ୟ ଯୁଦ୍ଧରେ ତାଙ୍କର ଲୁଣ୍ଠନ ନୀତି ଅନୁସରଣ କଲେ ।

ପ୍ରଥମ ବିଶ୍ୱଯୁଦ୍ଧରେ ଜର୍ମାନୀ ପରାସ୍ତ ହେଲା । ତା ପରେ ତା'ର ସମର-ଶକ୍ତିକୁ ପୁନର୍ଗଠିତ କରିବାଲାଗି ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା ଓ ଫ୍ରାନ୍ସର ଏକଚେଟିଆ ପୁଞ୍ଜିପତିମାନେ ଅର୍ଥ ଯୋଗାଇଦେଲେ । ତାକୁ ବ୍ୟବହାର କରି ଅଳ୍ପ ସମୟ ମଧ୍ୟରେ ଜର୍ମାନୀ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲା ; ଜାପାନ ସହିତ ମିଶି ମାତ୍ର କୋଡ଼ିଏ ବର୍ଷ ଭିତରେ ପୁଣି ଏକ ନୂଆ ବିଶ୍ୱଯୁଦ୍ଧ ଆରମ୍ଭ କରିଦେଲା ।

ବୃଟିଶ ପୁଞ୍ଜିପତିଙ୍କର ଶୋଷଣକୁ ଅନ୍ତ କରପାରୁ କରନ୍ତି ନାହିଁ । ସେମାନେ ନିଜର ସ୍ୱାଧୀନତା ଲାଗି ଲଢ଼ିବାପାଇଁ ସଜାଗ ହୋଇଉଠନ୍ତି । ଉପନିବେଶଗୁଡ଼ିକରେ ସାମ୍ରାଜ୍ୟବାଦୀମାନଙ୍କ ଅସ୍ଥାନ ଧୀରେ ଧୀରେ ଭିତରୁ କ୍ଷୀଣ ଓ ଦୁର୍ବଳ ହେବାକୁ ଲାଗେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଜାତୀୟ ମୁକ୍ତି ଆନ୍ଦୋଳନ ପୂର୍ବ ଅପେକ୍ଷା ଅଧିକ ପ୍ରବଳ ହୋଇଉଠିଛି: ପ୍ରସାର ଲାଭ କରିଛି । ଏସିଆ ଓ ଆଫ୍ରିକାର ବହୁ ଦେଶରେ ଔପନିବେଶିକ ବ୍ୟବସ୍ଥାକୁ ଏହା ଏକାବେଳକେ ମୂଳପୋଛ କରିଦେଇଛି । ଏହି ସମୟରେ ଉପନିବେଶ ହୋଇ ପଡ଼ିରହିଥିବା ଦେଶମାନଙ୍କ ମଧ୍ୟରୁ ଅଧିକ ସଂଖ୍ୟାରେ ସ୍ୱାଧୀନ ହୋଇଛନ୍ତି । ଅବଶ୍ୟ ଏହାର କାରଣ ନୁହେଁ ଯେ ସାମ୍ରାଜ୍ୟବାଦୀମାନେ ସ୍ୱଇଚ୍ଛାରେ ସେଇଠାରୁ ଦେଶ ଛାଡ଼ି ଚାଲିଯାଉଛନ୍ତି—ଉପନିବେଶମାନଙ୍କୁ ମୁକ୍ତି ଦେଉଛନ୍ତି । ଜାତୀୟ ମୁକ୍ତି ଆନ୍ଦୋଳନ ହେତୁ ହିଁ ସେମାନେ ତାହା କରିବାକୁ ବାଧ୍ୟ ହେଉଛନ୍ତି । ସେଠାରୁ ସବୁ ଗଣ୍ଠିଲିପନ୍ତରା ବାନ୍ଧି ବିଦା ହେଉଛନ୍ତି ।

ନିମ୍ନଲିଖିତ ତଥ୍ୟାବଳୀରୁ ଏ ବିଷୟରେ ଟିକିଏ ଧାରଣା ଜଣାଯାଏ :

ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଉପନିବେଶ ଓ ପରାଧୀନ ଦେଶର ଲୋକମାନଙ୍କର ସଂଖ୍ୟା ୧୫୦ କୋଟି ଥିଲା; ବର୍ତ୍ତମାନ ତାହା ପ୍ରାୟ ୫ କୋଟି ହେବ । ଏପରିକି ସେହି ଅବଶିଷ୍ଟ ପରାଧୀନ ଦେଶଗୁଡ଼ିକରେ ମଧ୍ୟ ଲୋକେ ଆଉ ସାମ୍ରାଜ୍ୟବାଦୀଙ୍କ ଔପନିବେଶିକ ଶାସନ ତଳେ ରହିବାକୁ ଚାହାନ୍ତି ନାହିଁ । ସେମାନେ ନିଜର ମୁକ୍ତି ଓ ସ୍ୱାଧୀନତା ଲାଗି ସଶସ୍ତ୍ର ସଂଗ୍ରାମ ଚଳାଇଛନ୍ତି ।

ଅନ୍ତର୍ଜାତୀୟ ବିପ୍ଳବୀ ଶ୍ରମିକ ଆନ୍ଦୋଳନ ଏବଂ ଏସିଆ, ଆଫ୍ରିକା ଆଉ ଲାଟିନ୍ ଆମେରିକାର ଲୋକମାନଙ୍କ ଜାତୀୟ ମୁକ୍ତି ଆନ୍ଦୋଳନ ଏକ ବିରାଟ ଶକ୍ତି ହୋଇଉଠିଛି । ସେମାନେ ସମସ୍ତେ ଏକ ବିଶାଳ ପ୍ରବାହରେ ମିଳିତ ହୋଇ ସାମ୍ରାଜ୍ୟବାଦକୁ ଦୁର୍ବଳ ଓ ଧ୍ୱଂସ କରିବାରେ ଲାଗିଛନ୍ତି । ମତାନ୍ତରବାଦୀମାନେ ଭିନ୍ନ ମତ ପୋଷଣ କରୁଥିଲେ ବି ସାମ୍ରାଜ୍ୟବାଦର ବୈପ୍ଳବିକ ଧ୍ୱଂସ ସକାଶେ ସେମାନଙ୍କର ଏହି ମିତ୍ରତା ଓ ମିଳନ ପ୍ରଧାନ ଶକ୍ତି ହୋଇଉଠିଛି ।

ପୃଥିବୀର ଦୁଇ ସାମାଜିକ ବ୍ୟବସ୍ଥା—ପୁଞ୍ଜିବାଦ ଓ ସାମ୍ୟବାଦ ମଧ୍ୟରେ ସଂଗ୍ରାମ ହେଉଛି, ବର୍ତ୍ତମାନ ଯୁଗରେ—ବିଶ୍ୱବ୍ୟାପୀ ସମାଜବାଦ ଓ ସାମ୍ୟବାଦର ଏହି ବିଜୟ ସମୟରେ ମୌଳିକ ବିରୋଧର ଲକ୍ଷ୍ୟଣୀୟ କେନ୍ଦ୍ରବିନ୍ଦୁ ।

ବର୍ତ୍ତମାନ ଅବସ୍ଥାରେ ପ୍ରଧାନ ବିରୋଧିତା ରହିଛି ସାମ୍ରାଜ୍ୟବାଦ ଏବଂ ଜାତୀୟ ମୁକ୍ତି ଆନ୍ଦୋଳନ ଭିତରେ,—ଏହା ଦାବୀ କରିବା ଅର୍ଥ ଏ ଯୁଗର ମୌଳିକ ବିରୋଧୀ-ମତକୁ ଘୋଡ଼ାଇ ଅସ୍ପଷ୍ଟ ଓ ବୁଦ୍ଧିଭ୍ରମ କରିଦେବ, ମାର୍କସବାଦ-ଲେନିନବାଦକୁ ବର୍ଜିତ ହେବା, ଲେନିନ୍‌ବାଦର ପ୍ରଧାନ ଆବଶ୍ୟକତା ଅର୍ଥାତ୍ ସାମାଜିକ ଜୀବନ ପ୍ରତି ଶ୍ରେଣୀଗତ

ଦୃଷ୍ଟିକୋଣ ପ୍ରତି ବିଶ୍ୱାସଘାତକତା କରିବା । ଆନ୍ତର୍ଜାତୀୟ ଶ୍ରମିକଶ୍ରେଣୀ ଏବେ ନିଜ ବଳ ଓ ସାମର୍ଥ୍ୟ ଲାଗି ସର୍ବୋପରି ପୃଥିବୀର ସମାଜବାଦୀ ବ୍ୟବସ୍ଥାର ପ୍ରଧାନ ଶକ୍ତି ପାଖରେ ଋଣୀ । ଏଣୁ ଏହି ଦୁଇ ସାମାଜିକ ବ୍ୟବସ୍ଥା ମଧ୍ୟରେ ବିରୋଧିତା ହେଉଛି, ବର୍ତ୍ତମାନ ଯୁଗର ପ୍ରଧାନ ବିରୋଧିତା ।

ପୃଥିବୀର ଏକାଶୀଟି କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟିର ପ୍ରତିନିଧିମାନଙ୍କ ସମ୍ମିଳନୀର ଘୋଷଣା ପତ୍ର ଦ୍ୱାରା ପ୍ରକାଶ ପାଇଥିଲା, ସେଥିରେ କୁହାଯାଇଛି, "ବର୍ତ୍ତମାନ ସମୟରେ ଆମର ଆନ୍ତର୍ଜାତୀୟ ସଂପର୍କଗୁଡ଼ିକର ବିକାଶ ଦୁଇଟି ସାମାଜିକ ବ୍ୟବସ୍ଥା ମଧ୍ୟରେ ସଂଗ୍ରାମ—ଏକ ଦିଗରେ ସମାଜବାଦ, ଶାନ୍ତି ଓ ଗଣତନ୍ତ୍ରର ଶକ୍ତି, ଅନ୍ୟ ଦିଗରେ ସାମ୍ରାଜ୍ୟବାଦ, ପ୍ରତିକ୍ରିୟା ଓ ଆକ୍ରମଣର ଶକ୍ତି—ଏହି ଦୁଇ ଶକ୍ତି ମଧ୍ୟରେ ସଂଗ୍ରାମ ଦ୍ୱାରା ନିର୍ଣ୍ଣିତ ହେଉଛି ।"

ଏହି ସବୁ ହେଉଛି ମୌଳିକ ବିରୋଧିତା, ଯାହା ସାମ୍ରାଜ୍ୟବାଦର ଧ୍ୱଂସକୁ ଡାକି ଆଣୁଛି । ଏଣୁ ଲେନିନ୍ ସାମ୍ରାଜ୍ୟବାଦକୁ "ମୁମୂର୍ଷୁ (moribund) ପୁଞ୍ଜିବାଦ" ବୋଲି ବର୍ଣ୍ଣନା କରିଛନ୍ତି ।

## ସାମ୍ରାଜ୍ୟବାଦ ହେଉଛି, ସର୍ବହରା ବିପ୍ଳବର ପୂର୍ବକ୍ଷଣ । ସାମ୍ରାଜ୍ୟବାଦୀ ଯୁଗରେ ସର୍ବହରା ବିପ୍ଳବ ଅନିବାର୍ଯ୍ୟ ।

ଉନବିଂଶ ଶତାବ୍ଦୀ ପୁଞ୍ଜିବାଦର ଉତ୍‌ଥାନର ସମୟ; ସେତେବେଳେ କିନ୍ତୁ ମାର୍କସବାଦୀମାନେ ବିଶ୍ୱାସ କରୁଥିଲେ ଯେ ସମାଜବାଦ ସବୁ ଦେଶରେ କିମ୍ବା ଅଧିକାଂଶ ଦେଶରେ କେବଳ ଏକାବେଳକେ ହିଁ ବିଜୟଲାଭ କରିପାରେ । ମାତ୍ର ଲେନିନ ଦର୍ଶାଇଛନ୍ତି, ପୂର୍ବର ପ୍ରାରମ୍ଭିକ ଅବସ୍ଥାରେ ଏହି ମତ ନିର୍ଭୁଲ ଥିଲା; କିନ୍ତୁ ଯେତେବେଳେ ପୁଞ୍ଜିବାଦ ତାର ଶେଷ ଅବସ୍ଥା, ସାମ୍ରାଜ୍ୟବାଦ ସ୍ତରରେ ପହଞ୍ଚିଲା ସେତେବେଳର ନୂତନ ଅବସ୍ଥାରେ ଏହି ମତର ସମୟ ଅତୀତ ହୋଇଯାଇଛି । ତାହା ଆଉ ନିର୍ଭୁଲ ହୋଇ ରହିନାହିଁ । ଏହି ଅବସ୍ଥାରେ ବା ସାମ୍ରାଜ୍ୟବାଦ ସ୍ତରରେ ପୁଞ୍ଜିବାଦର ଅର୍ଥନୈତିକ ଓ ରାଜନୈତିକ ବିକାଶ ଅସମାନ ଭାବରେ ଗତି କରୁଛି । ସେଥିଯୋଗୁଁ ହିଁ ବିପ୍ଳବ ଲାଗି ଅବସ୍ଥା ସବୁଠାରେ ଏକ ଢଂଗରେ ଏକ ସମୟରେ ପାଚିପକ୍ୱ ହେଉନାହିଁ ।

ଏ ସବୁର ଏକ ଗୁରୁତ୍ୱପୂର୍ଣ୍ଣ ଉପସଂହାର ହେଉଛି—ସମାଜବାଦୀ ବିପ୍ଳବ ସବୁ ଦେଶରେ ଏକ ସମୟରେ ବିଜୟଲାଭ କରେ ନାହିଁ; ସମାଜବାଦ ପ୍ରଥମେ କେତେକ ଦେଶରେ ବା ଏମିତିକି ଗୋଟିଏ ଦେଶରେ ମଧ୍ୟ ବିଜୟୀ ହୋଇପାରେ ।

ଲେନିନଙ୍କର ଉପରୋକ୍ତ ସିଦ୍ଧାନ୍ତ ସମାଜବାଦୀ ବିପ୍ଳବର ତତ୍ତ୍ୱ ପ୍ରତି ଏକ ମୂଲ୍ୟବାନ ଅବଦାନ, ସାମ୍ରାଜ୍ୟବାଦ ସ୍ତରରେ ଶ୍ରମିକଶ୍ରେଣୀର ବିଜୟ ଦିଗରେ ଏକ ମୂଲ୍ୟବାନ

ନିର୍ଦ୍ଦେଶ । ଲେନିନଙ୍କ ଦ୍ୱାରା ପ୍ରଦତ୍ତ ଏହି ତତ୍ତ୍ୱର ଅର୍ଥ ହେଲା ଯେ, ସବୁ ଦେଶରେ ଏକାବେଳକେ ବିପ୍ଳବ ବିଜୟ ଲାଭ କରିବ, ଏହି ଅପେକ୍ଷାରେ କୌଣସି ଦେଶର ଶ୍ରମିକଶ୍ରେଣୀ ନୀରବ ନିଷ୍କ୍ରିୟ ହୋଇ ବସିବା ଅନୁଚିତ । ଯେଉଁଠାରେ ବୈପ୍ଳବିକ ପରିସ୍ଥିତି ବିଦ୍ୟମାନ, ସେଠାରେ ଶ୍ରମିକଶ୍ରେଣୀକୁ ରାଷ୍ଟ୍ରକ୍ଷମତା ଦଖଲ ଦିଗରେ ପ୍ରତ୍ୟେକ ସୁବିଧା ସୁଯୋଗର ସଦ୍‌ବ୍ୟବହାର କରିବାକୁ ହେବ ଓ ସେଠାରେ ସଂଯୁକ୍ତ ବେଗରେ ସମାଜବାଦ ଦିଗକୁ ଘେନିଯିବାକୁ ହେବ ।

ଲେନିନଙ୍କର ତତ୍ତ୍ୱ ସମାଜବାଦୀ ବିପ୍ଳବର ବିଜୟ ପ୍ରତି ଶ୍ରମିକଶ୍ରେଣୀର ବିଶ୍ୱାସକୁ ଅଧିକ ଦୃଢ଼ୀଭୂତ କଲା । ଘଟଣାର ବିକାଶ ଦ୍ୱାରା ପ୍ରମାଣିତ ହେଲା ଯେ ଏ ତତ୍ତ୍ୱ ସଂପୂର୍ଣ୍ଣ ନିର୍ଭୁଲ ।

ସମାଜବାଦୀ ବିପ୍ଳବ ଓ ପୂର୍ବର ଅନ୍ୟ ସବୁ ବିପ୍ଳବ ମଧ୍ୟରେ ପ୍ରଭେଦ କ'ଣ ?

ଇତିହାସରେ ବହୁ ବିପ୍ଳବ ଘଟିଛି । କିନ୍ତୁ ୧୯୧୭ ଅକ୍‌ଟୋବରରେ ରୁଷ ଦେଶରେ ସମାଜବାଦୀ ବିପ୍ଳବର ବିଜୟ ପୂର୍ବରୁ, ଅନ୍ୟ ସମସ୍ତ ବିପ୍ଳବ ଉତ୍ପାଦନ ଉପକରଣମାନଙ୍କରେ ବ୍ୟକ୍ତିଗତ ମାଲିକାନାକୁ ସେମିତି ରକ୍ଷଣ କରି ରଖିଥିଲେ; କେବଳ ମାତ୍ର ମାଲିକ ପରିବର୍ତ୍ତନ କରିଥିଲେ । ଯେପର୍ଯ୍ୟନ୍ତ ସମାଜରେ ଏକ ଶ୍ରେଣୀ ରହିଛି, ଯିଏ କି ଉତ୍ପାଦନ ଉପକରଣଗୁଡ଼ିକର ମାଲିକ ଏବଂ ଅନ୍ୟ ଏକ ଶ୍ରେଣୀ ରହିଛି ଯିଏ କି ସେସବୁର ମାଲିକ ନୁହେଁ, ସେପର୍ଯ୍ୟନ୍ତ ମନୁଷ୍ୟ ଦ୍ୱାରା ମନୁଷ୍ୟର ଶୋଷଣ ବଳବତ୍ତର ରହିଛି ।

ପୂର୍ବରୁ ସଂଘଟିତ ହୋଇଥିବା ଅନ୍ୟସବୁ ବିପ୍ଳବଠାରୁ ସମାଜବାଦୀ ବିପ୍ଳବର ପାର୍ଥକ୍ୟ ହେଲା ଯେ, ତାହା ଧନୀ ଦରିଦ୍ର, ଅତ୍ୟାଚାରୀ ଅତ୍ୟାଚାରିତ, ଶୋଷକ ଶୋଷିତ ଏହିଭଳି ଭାବରେ ମନୁଷ୍ୟ ଜାତିର ସମାଜକୁ ଭାଗ ଭାଗ କରିବାର ମୂଳ କାରଣକୁ ଦୂର କରିଦିଏ, ଅର୍ଥାତ୍ ଉତ୍ପାଦନର ଉପକରଣ ଉପରେ ବ୍ୟକ୍ତିଗତ ମାଲିକାନାକୁ ଲୋପ କରେ । ସମାଜବାଦୀ ବିପ୍ଳବ ଫଳରେ ଜମିଜମା, କଳକାରଖାନା, ବ୍ୟାଙ୍କ, ରେଲ୍‌ବାଇ, ବଡ଼ ବଡ଼ ଦୋକାନ ଓ ବ୍ୟବସାୟ ଆଦି, ଯାହା ଏକଦା ପୁଞ୍ଜିପତି ଓ ଜମିଦାରମାନଙ୍କର ସଂପତ୍ତି ହୋଇ ରହିଥାଏ, ତାହା ସବୁ ସମଗ୍ର ଲୋକସମାଜର ସଂପତ୍ତିରେ ପରିଣତ ହୁଏ ।

ଅନ୍ୟ କଥାରେ କହିଲେ, ଶ୍ରମଜୀବୀ ଲୋକେ ନିଜେ ହିଁ ନିଜ ଭାଗ୍ୟର ନିୟନ୍ତା ହୁଅନ୍ତି ।

(୪) ଯେଉଁସବୁ ଶକ୍ତି ସମାଜବାଦୀ ବିପ୍ଳବ ସଂପାଦନ କରନ୍ତି

ବୈପ୍ଳବିକ ପରିବର୍ତ୍ତନ ଆପେ ଆପେ ଘଟେ ନାହିଁ । କାରଣ ଶାସକଶ୍ରେଣୀସବୁ କେବେହେଲେ ସ୍ୱଇଚ୍ଛାରେ ନିଜ ନିଜର ଅଧିକାର ଛାଡ଼ନ୍ତି ନାହିଁ । ଏହା ହିଁ ଯଦି ହୁଏ, ତେବେ ସେହି 'ଶକ୍ତି' କ'ଣ, ଯାହା ପୁଞ୍ଜିବାଦକୁ ପରାସ୍ତ କରିପାରେ ଓ ସମାଜବାଦୀ ବିପ୍ଳବ ଆଣିପାରେ, ତାକୁ ସାର୍ଥକ କରିପାରେ ?

## ଶ୍ରମିକଶ୍ରେଣୀ ପୁଞ୍ଜିବାଦର କବରଖୋଳାଳି

ସେହିଶ୍ରେଣୀ ହେଉଛି ଶ୍ରମିକଶ୍ରେଣୀ । ମାର୍କସ ଓ ଏଙ୍ଗେଲସ ସମାଜ ବିକାଶର ନିୟମ ଓ ଶ୍ରେଣୀସଂଗ୍ରାମର ଇତିହାସକୁ ଅଧ୍ୟୟନ କରି ପ୍ରମାଣ କରିଛନ୍ତି, ପୁଞ୍ଜିବାଦ ତା'ର ନିଜର କବରଖୋଳାଳି,— ସର୍ବହରାମାନଙ୍କୁ ସୃଷ୍ଟି କରେ ।

କାହିଁକି ଶ୍ରମିକଶ୍ରେଣୀ ହିଁ ଏକମାତ୍ର ଶ୍ରେଣୀ ଯାହା ପୁଞ୍ଜିପତି ଓ ଜମିମାଲିକମାନଙ୍କୁ ଧ୍ୱଂସ କରିବା ସଂଗ୍ରାମରେ ନେତୃତ୍ୱ ନେଇପାରେ ? କାହିଁକି ବା ତାହା ସମସ୍ତ ଶ୍ରମଜୀବୀ ଲୋକଙ୍କୁ ଅତ୍ୟାଚାରରୁ ମୁକ୍ତ କରିପାରେ ?

ଏହାର ସର୍ବପ୍ରଥମ କାରଣ ହେଲା, ପୁଞ୍ଜିବାଦୀ ସମାଜରେ ଯେ ହେତୁରୁ ଶ୍ରମିକଶ୍ରେଣୀ ହେଉଛି ସବୁଠାରୁ ଶୋଷିତ ଶ୍ରେଣୀ, ଠିକ ସେହି ହେତୁରୁ ହିଁ ତାହା ହେଉଛି ପୁଞ୍ଜିବାଦର ସବୁଠାରୁ ବଳିଷ୍ଠ ଓ ଅଟଳ ଶତ୍ରୁ । ପୁଞ୍ଜିବାଦୀ ବ୍ୟବସ୍ଥାକୁ ଲୋପ କରିବାରେ ହିଁ ତା'ର ପ୍ରଧାନ ସ୍ୱାର୍ଥ ନିହିତ । ଉତ୍ପାଦନ ଯନ୍ତ୍ରଗୁଡ଼ିକୁ ପୂର୍ଣ୍ଣ ସୁଯୋଗ ଦେବାଲାଗି ଉତ୍ପାଦନର ଉପକରଣସବୁ ଉପରୁ ବ୍ୟକ୍ତିଗତ ମାଲିକାନା ସମୂଳେ ଲୋପ ହେବା ଆବଶ୍ୟକ । ଅନ୍ୟାନ୍ୟ ଶ୍ରେଣୀ ତୁଳନାରେ ଶ୍ରମିକଶ୍ରେଣୀ ଏହି ସମସ୍ୟାର ସମାଧାନ ଦିଗରେ ଅଧିକ ଉଦ୍‌ବିଗ୍ନ, କାରଣ ସେହି ବ୍ୟକ୍ତିଗତ ସମ୍ପତ୍ତି ହିଁ ଶ୍ରମିକମାନଙ୍କର ଶୋଷଣକୁ ସୁନିଶ୍ଚିତ କରେ । ପୁଞ୍ଜିପତି ସମାଜରେ ଶ୍ରମିକଙ୍କର ଶ୍ରମ କରିବାର ବଳ ଓ ସାମର୍ଥ୍ୟ ଛଡ଼ା ଅନ୍ୟ କିଛି ନାହିଁ । ବିପ୍ଳବ ଦ୍ୱାରା ତାଙ୍କ ପକ୍ଷରେ ହରାଇବାର କିଛି ନାହିଁ । କିନ୍ତୁ, ବାସ୍ତବରେ ସେହି ବିପ୍ଳବ ହିଁ ତାଙ୍କ ସମସ୍ତ ଶକ୍ତି ଏବଂ ଉତ୍ପାଦନର ଉପକରଣଗୁଡ଼ିକୁ ସେ ସମାଜର ସମ୍ପତ୍ତିରେ ପରିଣତ କରେ, ସାଂସ୍କୃତିକ ସୁବିଧା ଯୋଗାଏ, ଜୀବନ ଧାରଣ ମାନର ଉନ୍ନତି ଏବଂ ଶିକ୍ଷା ସଂସ୍କୃତିର ସମସ୍ତ ଅବଦାନକୁ ଉପଭୋଗ କରିବାଲାଗି ସୁଯୋଗ ସୃଷ୍ଟି କରେ ।

ଦ୍ୱିତୀୟରେ, ସଂଖ୍ୟାଗରିଷ୍ଠ ଲୋକମାନଙ୍କ ସ୍ୱାର୍ଥ ସହିତ ଶ୍ରମିକଶ୍ରେଣୀର ସ୍ୱାର୍ଥ ମିଶେ ଏବଂ ସମାଜର ପ୍ରଗତିଶୀଳ ବିକାଶ ସହିତ ସମତାଳରେ ଗତି କରେ । ଶ୍ରମିକଶ୍ରେଣୀର ଲକ୍ଷ୍ୟ ହୁଏ ଶୋଷଣର ଲୋପ, ଏକ ଶ୍ରେଣୀହୀନ କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମାଜ ପ୍ରତିଷ୍ଠା । ଏହି ଲକ୍ଷ୍ୟ ସମସ୍ତ ଶ୍ରମଜୀବୀ ଲୋକଙ୍କର ସ୍ୱାର୍ଥ ପୂରଣ କରେ ।

ତୃତୀୟରେ, ସମାଜରେ ଶ୍ରମିକଶ୍ରେଣୀର ସ୍ୱତନ୍ତ୍ର ଏକ ଅବସ୍ଥା ରହିଛି । ଯେଣୁ ତାହା ହିଁ ଏକମାତ୍ର ଶ୍ରେଣୀ, ଯାହାର ଏଭଳି କେତେକ ଗୁଣ ଅଛି ସେଥିପାଇଁ ତାହା ଶୋଷଣ ବ୍ୟବସ୍ଥା ଲୋପ କରିବାର ଐତିହାସିକ କର୍ତ୍ତବ୍ୟ ସମ୍ପାଦନ କରିବାକୁ ସମର୍ଥ ହୁଏ । ବୃହତ୍ ଧରଣର ଶିଳ୍ପ ଅନୁଷ୍ଠାନର ବିକାଶ ଫଳରେ ଶ୍ରମିକଶ୍ରେଣୀ ଦୁର୍ବଳ ହୁଏ ନାହିଁ କି ତାହା ଯୋଗୁଁ ସମାଜରେ ଏହି

ଶ୍ରେଣୀର ପ୍ରତିଷ୍ଠା କ୍ଷୁଣ୍ଣ ହୁଏ ନାହିଁ, ବରଂ ଅନ୍ୟ ବର୍ଗରୁ ଓହ୍ଲାଇ ଏହା ଶ୍ରମିକ-ଶ୍ରେଣୀର ସଂଖ୍ୟା ବୃଦ୍ଧି କରେ, ତାକୁ ତା'ର ଶକ୍ତି ଓ ପ୍ରଭାବ ବୃଦ୍ଧି କରିବା ଦିଗରେ ନେଇଯାଏ । ବହୁଳସଂଖ୍ୟକ ଶ୍ରମିକ ବଡ଼ ବଡ଼ କଳକାରଖାନାମାନଙ୍କରେ, ଶିଳ୍ପୋନ୍ନତ ସହରମାନଙ୍କରେ କେନ୍ଦ୍ରିତ ହୁଅନ୍ତି । ସେମାନଙ୍କର ସମ୍ମିଳିତ କାର୍ଯ୍ୟ ସେମାନଙ୍କୁ ଶୃଙ୍ଖଳା ଓ ପାରସ୍ପରିକ ସାହାଯ୍ୟ ସଂପର୍କରେ ଶିକ୍ଷା ଦିଏ । କହିବାକୁ ଗଲେ କୃଷକମାନେ, ଯିଏ କି ପ୍ରତ୍ୟେକେ ଆପଣା ଆପଣାର ଜମି ଚାଷ କରନ୍ତି କିମ୍ବା କାରିଗରମାନେ, ଯେଉଁମାନେ କି ଛୋଟ ଛୋଟ କାରଖାନା ଓ କର୍ମଶାଳାମାନଙ୍କରେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ରହିଥାନ୍ତି, ସେ ସମସ୍ତଙ୍କ ତୁଳନାରେ ଶ୍ରମିକମାନଙ୍କ ପକ୍ଷରେ ସମ୍ମିଳିତ, ସାମୂହିକ ଓ ସଂଗଠିତ ସ୍ୱରୂପରେ କାର୍ଯ୍ୟ ସଂପାଦନ ଅତ୍ୟନ୍ତ ସହଜ । ଯେଉଁଥିପାଇଁ ଅନ୍ୟାନ୍ୟ ଶ୍ରେଣୀ ତୁଳନାରେ ଶ୍ରମିକ-ଶ୍ରେଣୀ ଅଧିକ ରାଜନୈତିକ ସଚେତନଶୀଳ ହୋଇଥାଆନ୍ତି । ଶୋଷଣ ପ୍ରଥା ବା ବ୍ୟବସ୍ଥାକୁ ଯେ ସଂପୂର୍ଣ୍ଣ ଲୋପ କରିବାକୁ ଚାହେଁ ଓ ତା ପରିବର୍ତ୍ତେ ଯେ ଏକ ସମାଜବାଦୀ ସମାଜ ନିର୍ମାଣ କରିବାକୁ ଚାହେଁ ସେ ଦିଗରେ ଶ୍ରମିକଶ୍ରେଣୀ ନିଜ ଭିତରେ ଅଧିକରୁ ଅଧିକ ପ୍ରତ୍ୟୟ ସୃଷ୍ଟି କରେ ।

ଅଭିଜ୍ଞ ଓ ସଂଗଠିତ ବ୍ୟକ୍ତିମାନଙ୍କ ଭଳି ଶତ୍ରୁ ବିରୁଦ୍ଧରେ ସଂଗ୍ରାମ କରିବା ଲାଗି ରାଜନୈତିକ ଶିକ୍ଷା ଆବଶ୍ୟକ ହୁଏ । ଶ୍ରମିକଶ୍ରେଣୀ ନିଜର ଶ୍ରମ ଓ ସଂଗ୍ରାମରୁ ଶିକ୍ଷା କରେ ଯେ ସଂଗଠନ ହିଁ ତାର ଶକ୍ତି, ଆଉ ଶ୍ରମିକମାନେ ଯେତେ ଏକତାବଦ୍ଧ ହୁଅନ୍ତି, ସେତେବେଳେ ସବୁ କିଛି ଲାଭ କରିପାରନ୍ତି ଏବଂ ଯେତେ ଏକତାବଦ୍ଧ ନ ହୁଅନ୍ତି, ସେତେ ସବୁଥିରୁ ବଞ୍ଚିତ ହୁଅନ୍ତି । ତେଣୁ ଶ୍ରମିକଶ୍ରେଣୀ ସଂଗଠିତ ହୁଏ, ଏକତାବଦ୍ଧ ହୁଏ ; ରାଜନୈତିକ ସ୍ତରରେ ସଂଗ୍ରାମ ପଥରେ ଗତି କରେ ।

## ଶ୍ରମିକଶ୍ରେଣୀକୁ ବିନଷ୍ଟ କରେ କ'ଣ

ସଂଗଠିତ କାର୍ଯ୍ୟ କେତେଦୂର ଫଳପ୍ରଦ ହୋଇପାରେ, ଏହା କେବଳ ଶ୍ରମିକମାନେ ଯେ ବୁଝନ୍ତି ତା ନୁହେଁ, ତାଙ୍କର ଶ୍ରେଣୀଶତ୍ରୁ ସବୁ ମଧ୍ୟ ଏହା ଭଲ ରୂପେ ବୁଝନ୍ତି । ଏହି କାରଣରୁ ପୁଞ୍ଜିପତିମାନେ ଶ୍ରମିକମାନଙ୍କ ନିଜର ସଂଗଠନ ଗଢ଼ିବା ଦିଗରେ ସବୁପ୍ରକାର ବାଧା ଦିଅନ୍ତି କିମ୍ବା ତାଙ୍କର ପ୍ରତିଷ୍ଠିତ ସ୍ୱାଧୀନ ସଂଗଠନକୁ ଭାଙ୍ଗିଦେବାକୁ ଓ ତାକୁ ପଙ୍ଗୁ କରିବାକୁ ଚେଷ୍ଟା କରନ୍ତି । ଶ୍ରମିକଶ୍ରେଣୀ ଭିତରେ ବିଭେଦ ଆଣି ତାକୁ ଦୁର୍ବଳ କରିବା ପାଇଁ ପୁଞ୍ଜିପତି ଓ ତାଙ୍କର ସାହାଯ୍ୟକାରୀମାନେ ଲକ୍ଷମିଛର ଅସ୍ତ୍ର ମଧ୍ୟ ପ୍ରୟୋଗ କରନ୍ତି । ସେମାନେ ଆତଙ୍କ ସୃଷ୍ଟି କରନ୍ତି ; ଶ୍ରମିକ ସଂଗଠନ ମଧ୍ୟରେ ଗୁଣ୍ଡା ଓ ଦଲାଲ ଭର୍ତ୍ତି କରାଇବାଠାରୁ ଆରମ୍ଭ କରି ସବୁପ୍ରକାର ଲାଞ୍ଛନା, ଦମନ ପର୍ଯ୍ୟନ୍ତ କରନ୍ତି । ବହୁ ସମୟରେ ସେମାନେ ଏଥିରେ ବି ସଫଳ ହୁଅନ୍ତି । କିନ୍ତୁ ଶେଷରେ ଶ୍ରମିକଶ୍ରେଣୀ ଏ ସମସ୍ତ ବାଧା

ପ୍ରତିବନ୍ଧକକୁ ଅତିକ୍ରମ କରେ । କାରଣ ଯୋଉ ବସ୍ତୁବଳ ଆଜି ଶ୍ରମିକଶ୍ରେଣୀର ପ୍ରଧାନ ସ୍ୱାର୍ଥ ଲାଗି ସଂଗ୍ରାମ ହିଁ ଏକତା ଓ ସଂଗଠନକୁ ଅପରିହାର୍ଯ୍ୟ କରେ ।

ଶ୍ରମିକଶ୍ରେଣୀ ତା'ର ଇତିହାସରେ ବହୁ ପ୍ରକାରର ବିଭିନ୍ନ ସଂଗଠନ ଗଢ଼ିଛି । ପ୍ରତ୍ୟେକ ସଂଗଠନ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପୂରଣ କରିଆସିଛି । ପ୍ରଥମ ଅବସ୍ଥାରେ ଶ୍ରମିକ ସଂଗଠନଗୁଡ଼ିକ ଥିଲା ପରସ୍ପର ସାହାଯ୍ୟକାରୀ ଜୀବନବୀମା ଫଣ୍ଡ ଓ କୋଅପରେଟିଭ ବା ସମବାୟ-ଅନୁଷ୍ଠାନ ।

ତା ପରେ ଆସିଲା ଟ୍ରେଡ୍ ୟୁନିଅନ । ଅଧିକ ମଜୁରି, ଶ୍ରମ ସମୟର ହ୍ରାସ ଓ ଉତ୍ତମ କାର୍ଯ୍ୟ-ଅବସ୍ଥା ହାସଲ କରିବା ସକାଶେ ଅର୍ଥାତ୍ ଶ୍ରମିକମାନଙ୍କ ନଗଦ ଅର୍ଥନୈତିକ ସ୍ୱାର୍ଥକୁ ସାବ୍ୟସ୍ତ କରି ଦୃଢ଼ଭାବରେ ପ୍ରତିଷ୍ଠିତ କରିବା ସକାଶେ ତାହା ଶ୍ରମିକମାନଙ୍କୁ ମାଲିକମାନଙ୍କ ବିରୁଦ୍ଧରେ ଏକ ମିଳିତ ସାମ୍ମୁଖ୍ୟ ଗଠନରେ ସାହାଯ୍ୟ କଲା ।

ଏହା ହେଲେ ମଧ୍ୟ ଶ୍ରମିକମାନେ ଆପଣାର ଅଭିଜ୍ଞତା ଦ୍ୱାରା ଧୀରେ ଧୀରେ ଉପଲବ୍ଧି କରିଥିଲେ ଯେ ସେମାନଙ୍କର ସଂଗ୍ରାମ କେବଳ ଅଳ୍ପ ସମୟ ପାଇଁ ବା ଶୋଷଣକୁ ଟିକିଏ କୋହଳ କରିଦେଇପାରେ; ତାକୁ ପୂରାପୂରି ଲୋପ କରିପାରିବ ନାହିଁ । ତେବେ ସେମାନଙ୍କର ଅର୍ଥନୈତିକ ଲଢ଼େଇ ଫଳରେ ପୁଞ୍ଜିପତିମାନେ କେତେକ ସୁବିଧା ଦେବାକୁ ଯେ ବାଧ୍ୟ ହେଉ ନ ଥିଲେ, ତା ନୁହେଁ । କିନ୍ତୁ ଅବସ୍ଥାର ସୁଯୋଗ ପାଇଲାକ୍ଷଣି ପୁଞ୍ଜିପତିମାନେ ସେସବୁ ସୁବିଧା ପ୍ରତ୍ୟାହାର କରିନେଉଥିଲେ । ଏପରିକି ଶ୍ରମିକମାନଙ୍କ ଅବସ୍ଥାକୁ ଅଧିକ ଶୋଚନୀୟ କରିଦେଉଥିଲେ ।

ଇତିହାସର ଅଭିଜ୍ଞତା ଦର୍ଶାଇଦେଉଛି ଯେ, ବୁର୍ଜୁଆମାନଙ୍କର ଶାସନକୁ ଧ୍ୱଂସ ନ କରି ଶ୍ରମିକଶ୍ରେଣୀ ସ୍ୱାଧୀନତା ଲାଭ କରିବା ଦୂରର ଆଉ, ନିଜ ଅବସ୍ଥାର ମୌଳିକ ଉନ୍ନତିବିଧାନ ବି କରିପାରିବ ନାହିଁ ।

ବସ୍ତୁବଳ ଶ୍ରମିକ ଶ୍ରେଣୀକୁ ଏପରି ଭାବେ ସଂଗଠିତ ହେବାକୁ ବାଧ୍ୟ କରେ, ଯେଉଁଥି ଯୋଗୁଁ ଏ ସେ ତା'ର ନିଜ ସ୍ୱାର୍ଥକୁ ସାବ୍ୟସ୍ତ କରିବା ସଙ୍ଗେ ସଙ୍ଗେ ସମସ୍ତ ଶୋଷଣକୁ ଲୋପ କରିବା ଓ ନୂତନ ଏକ ଉନ୍ନତ ଶାସନ ପ୍ରତିଷ୍ଠା କରିବା ଲାଗି ତତ୍ପର ହୁଏ, ଅର୍ଥାତ୍ ପୁଞ୍ଜିବାଦୀ ବ୍ୟବସ୍ଥା ବିରୁଦ୍ଧରେ ରାଜନୈତିକ ଅଭିଯାନ ଚଳାଇବାକୁ ସଂଗଠିତ ହେବାପାଇଁ ବସ୍ତୁବଳ ତାକୁ ପ୍ରକୃଷ୍ଟ ଶିକ୍ଷା ଦିଏ । ଏଣୁ ତା'ର ସଂଗ୍ରାମ ଯେତେବେଳେ ସୁସଂଗଠିତ ଓ ସୁସଂଯୁକ୍ତ ଭାବେ କେନ୍ଦ୍ରୀକୃତ ହେବ, ଏହାକୁ ନିଶ୍ଚିତ କରିବାପାଇଁ ଶ୍ରମିକଶ୍ରେଣୀ ନିଜର ଓ ସାଧାରଣ ଭାବେ ଶ୍ରମଜୀବୀ ଲୋକମାନଙ୍କର ସ୍ୱାର୍ଥକୁ ପ୍ରକାଶ କରୁଥିବା ଏକ ରାଜନୈତିକ ପାର୍ଟି ଗଠନ କରେ ।

ଉକ୍ତ ପାର୍ଟି ଅର୍ଥନୈତିକ ଓ ରାଜନୈତିକ ଉଭୟ ଲକ୍ଷ୍ୟ ହାସଲ ଦିଗରେ ଶ୍ରମିକଶ୍ରେଣୀର ସଂଗ୍ରାମକୁ ପରିଚାଳିତ କରେ। ତାହା ଶ୍ରମିକମାନଙ୍କର ସମାଜବାଦୀ ଚେତନାକୁ ଜାଗ୍ରତ କରାଏ ଓ ବୁର୍ଜୁଆ ମତାଦର୍ଶ ବିରୁଦ୍ଧରେ ଲଢ଼େ।

ଏହା ଠିକ୍ ଯେ, ଶ୍ରମିକଶ୍ରେଣୀ ପାର୍ଟି ଏକାଭଳି ବା ସମାନ ରୂପଗୁଣର ନୁହନ୍ତି।

ପୁଞ୍ଜିବାଦୀ ଦେଶମାନଙ୍କରେ ଆଧୁନିକ ଦକ୍ଷିଣ-ସମାଜବାଦୀ (ସୋସାଲ ଡେମୋକ୍ରାଟ, ସୋସାଲିଷ୍ଟ, ଲେବର) ପାର୍ଟିଗୁଡ଼ିକ କଥା ବିଚାର କରାଯାଉ। ସେମାନେ ମଧ୍ୟ ନିଜ ନିଜକୁ ଶ୍ରମିକ ପାର୍ଟି ବୋଲନ୍ତି; ଅଥଚ ସେମାନଙ୍କର ସୁବିଧାବାଦୀ ନେତୃତ୍ୱ ବୁର୍ଜୁଆମାନଙ୍କ ବିରୁଦ୍ଧରେ ନ ଲଢ଼ି ବୁର୍ଜୁଆମାନଙ୍କ ସହିତ ଆପୋସ କରିବାପାଇଁ ଶ୍ରମିକମାନଙ୍କୁ ଆହ୍ୱାନ କରେ। ସେହି ନେତୃତ୍ୱ ଶ୍ରମିକମାନଙ୍କୁ ଦୃଢ଼ତାର ସହିତ ପ୍ରତିଶ୍ରୁତି ଦେଇ କହେ ଯେ ବିନା ବିପ୍ଳବରେ, ବୁର୍ଜୁଆ ଶାସନକୁ ଧ୍ୱଂସ ନ କରି ସମାଜବାଦୀ ସମାଜ ଗଠନ ସମ୍ଭବପର; ଏବଂ ବୁର୍ଜୁଆ ସମାଜର ପରିସର ମଧ୍ୟରେ ନାନା ପ୍ରକାରର ସଂସ୍କାର ଦ୍ୱାରା ଧୀରେ ଧୀରେ ଉକ୍ତ ଲକ୍ଷ୍ୟ ହାସଲ କରାଯାଇପାରେ। ଏବେ ନିକଟରେ ଅନେକ ଦକ୍ଷିଣପନ୍ଥୀ ସୋସାଲିଷ୍ଟ ପାର୍ଟି, ଉଦାହରଣସ୍ୱରୂପ, ପଶ୍ଚିମ ଜର୍ମାନୀ ଓ ଅଷ୍ଟ୍ରିଆର ସୋସାଲିଷ୍ଟ ପାର୍ଟିମାନେ ନିଜ ନିଜର କାର୍ଯ୍ୟକ୍ରମରୁ "ସମାଜବାଦ"ର ନାଆଁକୁ ମଧ୍ୟ ହଟାଇଦେଇ ସାରିଲେଣି। ଧୀରେ ଧୀରେ ବିବର୍ତ୍ତନ ଫଳରେ ପୁଞ୍ଜିବାଦ ଜନଗଣଙ୍କ କଲ୍ୟାଣରେ ପରିଣତ ହେବ, ଏହିଭଳି ଭ୍ରମ ପ୍ରଚାର କରି ଶ୍ରମିକମାନଙ୍କୁ ସେହି ଦକ୍ଷିଣପନ୍ଥୀ ସୋସାଲିଷ୍ଟ ପାର୍ଟିଗୁଡ଼ିକ ବିପଥଗାମୀ କରୁଛନ୍ତି। ସେମାନଙ୍କ ମତରେ ପୁଞ୍ଜିବାଦ ଅଧୀନରେ ଶ୍ରମିକ ଓ ପୁଞ୍ଜିପତି ପାଖାପାଖି ଏକାଠି ଶାନ୍ତିରେ ବସବାସ କରିବାକୁ ସମର୍ଥ। ଏହି କାରଣରୁ ଅର୍ଥାତ୍ ସେମାନଙ୍କର ଏହି ନୀତି ଯୋଗୁଁ ବୁର୍ଜୁଆମାନେ ସେହି ପାର୍ଟିମାନଙ୍କୁ ଦମନ ଓ ଆକ୍ରମଣ କରୁନାହାନ୍ତି, ବରଂ ସେମାନଙ୍କୁ ସମର୍ଥନ ଦେଉଛନ୍ତି।

କେତେକ ଦେଶରେ ଦକ୍ଷିଣପନ୍ଥୀ ସୋସାଲିଷ୍ଟ ପାର୍ଟିମାନେ ବହୁବର୍ଷ ଧରି କ୍ଷମତାରେ ରହିଛନ୍ତି।

କିନ୍ତୁ ଫଳ ହୋଇଛି କ'ଣ? ବୁର୍ଜୁଆମାନଙ୍କର କିଛି ହେଲେ କ୍ଷତି ହୋଇନାହିଁ, କି ଶ୍ରମିକଶ୍ରେଣୀର କୌଣସି ପ୍ରକାର ଲାଭ ହୋଇନାହିଁ। ପୁଞ୍ଜିବାଦ ଅପରିବର୍ତ୍ତିତ ହୋଇ ରହିଛି। ବରଂ ବୁର୍ଜୁଆମାନଙ୍କର ହିଁ ଲାଭ ହୋଇଛି ବୋଲି ହିଁ କୁହାଯାଇପାରେ। କାରଣ, ବୁର୍ଜୁଆଙ୍କ ତୁଳନାରେ ଯେଉଁ ଲୋକେ ଶ୍ରମିକମାନଙ୍କର ଅଧିକ ବିଶ୍ୱାସଭାଜନ ହୋଇଥିବାରୁ ଆପଣାକୁ ସୋସାଲିଷ୍ଟ ବୋଲି କହନ୍ତି, ବୁର୍ଜୁଆମାନେ ସେହିମାନଙ୍କ ସହାୟତାରେ ଶ୍ରମିକମାନଙ୍କୁ ଅଧିକ ସହଜରେ ଠକନ୍ତି।

ତା ସତ୍ତ୍ୱେ ଶ୍ରମିକମାନେ ସେମାନଙ୍କ ନିଜ ଅଭିଜ୍ଞତାରୁ ଶିକ୍ଷା କରନ୍ତି ଯେ ଯଦି ଶ୍ରମିକଶ୍ରେଣୀ ଆନ୍ଦୋଳନ ଏହି ସୁବିଧାବାଦୀମାନଙ୍କ ଦ୍ୱାରା ପରିଚାଳିତ ହୁଏ, ତେବେ ସେମାନେ ବିଜୟଲାଭ କରିପାରିବେ ନାହିଁ । ତେଣୁ ଶ୍ରମିକଶ୍ରେଣୀ ପ୍ରକୃତରେ ବିପ୍ଳବୀ ପାର୍ଟିମାନ ଗଠନ କରେ । ସେହି ପାର୍ଟିରୁ ବିପ୍ଳବର ବୈଜ୍ଞାନିକ ତତ୍ତ୍ୱରୁ ଜାତ ନିର୍ଦ୍ଦେଶ ଗ୍ରହଣ କରେ ଓ ତା'ର ବିପ୍ଳବୀ ସଂଗ୍ରାମକୁ ବାସ୍ତବରେ ପରିଚାଳିତ ଓ ସଂଗଠିତ କରେ ।

ସେହିଭଳି ଏକ ପାର୍ଟିର ଗଠିତ ପ୍ରତିରୂପ (prototype) ହେଉଛି ପ୍ରକାଶ ପାଇଥିବା ମାର୍କସ୍ ଏଙ୍ଗେଲସଙ୍କ ଦ୍ୱାରା ପ୍ରତିଷ୍ଠିତ "ଲିଗ ଅଫ୍ କମ୍ୟୁନିଷ୍ଟସ" ବା "କମ୍ୟୁନିଷ୍ଟ ସଂଘ" । ଲେନିନ, ମାର୍କସ-ଏଙ୍ଗେଲସଙ୍କ ଦେହାନ୍ତ ପରେ ଶ୍ରମିକଶ୍ରେଣୀ ପାର୍ଟିକୁ ସୁବିଧାବାଦୀ ନେତାମାନଙ୍କ ହାତରେ ପଡ଼ିଥିଲା । ସେହି ନେତାମାନେ ଶ୍ରମିକ ଆନ୍ଦୋଳନକୁ ଭୁଲ ମାର୍ଗରେ ମୋଡ଼ି ନେଉଥିଲେ ।

ପ୍ରକୃତରେ ଶ୍ରମିକଶ୍ରେଣୀର ସେହି ବିପ୍ଳବୀ ପାର୍ଟି ଏହି ସୁବିଧାବାଦୀମାନଙ୍କ କବଳରୁ ସଂଗ୍ରାମ କରି ଲେନିନ ଆଣିଲେ ତାହା ହେଉଛି ରୁଷରେ ପ୍ରତିଷ୍ଠିତ ପାର୍ଟି ବା ଲେନିନଙ୍କ ଦ୍ୱାରା ପ୍ରତିଷ୍ଠିତ ବଲଶେଭିକ୍ ବା କମ୍ୟୁନିଷ୍ଟ ପାର୍ଟି ।

## ଶ୍ରମିକଶ୍ରେଣୀ ତା'ର ସଂଗ୍ରାମରେ ଏକାକୀ ନୁହେଁ

ଶ୍ରମିକଶ୍ରେଣୀ ହେଉଛି ବୁର୍ଜୁଆ ସମାଜରେ ସବୁଠାରୁ ଅଧିକ ବିପ୍ଳବୀ ଶ୍ରେଣୀ । କିନ୍ତୁ ପୁଞ୍ଜିବାଦୀ ଅତ୍ୟାଚାରର କୋପ ଭାଜନ ତଳରେ ଏକମାତ୍ର ଏହି ଶ୍ରେଣୀ ଜଡ଼ିତ ନୁହେଁ ବା ସଂପୃକ୍ତ ନୁହେଁ । ବୁର୍ଜୁଆ ସମାଜରେ ଅନ୍ୟ ଶ୍ରେଣୀ ଓ ଅନ୍ୟ ଶ୍ରମଜୀବୀ ଜନସାଧାରଣ ଅଛନ୍ତି ଯେଉଁମାନେ କି ଶୋଷକମାନଙ୍କ ଦ୍ୱାରା ପ୍ରପୀଡ଼ିତ ଓ ଅତ୍ୟାଚାରିତ ହୁଅନ୍ତି । ଏମାନଙ୍କର ପ୍ରଧାନ ସ୍ୱାର୍ଥ ଶ୍ରମିକଶ୍ରେଣୀର ସ୍ୱାର୍ଥ ସହିତ ସମାନ । ଏମାନେ ନିଜେ ନିଜେ ଅତ୍ୟାଚାରର ହଟାଇପାରନ୍ତି ନାହିଁ କିନ୍ତୁ ଶ୍ରମିକଶ୍ରେଣୀର ବିପ୍ଳବ ମୁକ୍ତି ସଂଗ୍ରାମରେ ଏମାନେ ମିତ୍ର ଓ ସାହାଯ୍ୟକାରୀ ହୋଇପାରନ୍ତି । ଅଭିଜ୍ଞତାରୁ ଦେଖାଯାଏ ଯେ ଏପରିକି ଯେଉଁ ଦେଶରେ ଜନସଂଖ୍ୟା ତୁଳନାରେ ଶ୍ରମିକଶ୍ରେଣୀର ଅନୁପାତ ଅତି କମ୍ କମ୍, ସେପରି ଦେଶରେ ମଧ୍ୟ ଶ୍ରମିକଶ୍ରେଣୀ ସମାଜବାଦୀ ବିପ୍ଳବରେ ବିଜୟଲାଭ କରିପାରେ । ମାତ୍ର ଏହା ସମ୍ଭବ ହୋଇପାରେ, ଯଦି ଶ୍ରମିକଶ୍ରେଣୀ ପୁଞ୍ଜିବାଦୀ ଅତ୍ୟାଚାରରେ ପୀଡ଼ିତ ଶ୍ରମଜୀବୀ ଜନସାଧାରଣଙ୍କ ସହିତ ମିତ୍ରତା ସ୍ଥାପନ କରେ ଏବଂ ସେମାନଙ୍କୁ ନିଜ ପଛରେ ସମବେତ କରାଏ ।

ପୁଞ୍ଜିବାଦୀ ଦେଶମାନଙ୍କରେ କେଉଁ ଶ୍ରେଣୀ ଓ ସମ୍ପ୍ରଦାୟ ଶ୍ରମିକଶ୍ରେଣୀର ପ୍ରକୃତ ମିତ୍ର ?

ପ୍ରଥମରେ ସେଭଳି ମିତ୍ର ହେଲେ ଶ୍ରମଜୀବୀ କୃଷକ । ସେମାନେ ହେଉଛନ୍ତି ବହୁ ଦେଶର ଲୋକଙ୍କ ଭିତରୁ ସଂଖ୍ୟାରେ ଅଧିକ । ଯେଉଁସବୁ ଦେଶରେ ସମାଜ-

ଶ୍ରମିକଶ୍ରେଣୀ ନିଜକୁ ପୁଞ୍ଜିବାଦୀ ଦାସତ୍ୱରୁ ମୁକ୍ତ କରିବା ଦ୍ୱାରା ସମଗ୍ରଭାବେ ସମାଜକୁ ସବୁ ଅନ୍ୟାୟରୁ ମୁକ୍ତ କରେ; ସମାଜର ଅନ୍ୟାନ୍ୟ ଶ୍ରେଣୀସଂପ୍ରଦାୟଠାରୁ ନିଜ ଲାଗି କୌଣସି ବିଶେଷ ସୁବିଧା ଦାବୀ କରେ ନାହିଁ ଏବଂ ସମସ୍ତ ଶ୍ରମଜୀବୀ ଲୋକସାଧାରଣଙ୍କୁ ଶୋଷଣରୁ ମୁକ୍ତ କରିବା ଦିଗରେ ସହାୟ ହେବାଲାଗି ଦାୟିତ୍ୱ ନିଏ ।

ଶ୍ରମିକଶ୍ରେଣୀର ବର୍ତ୍ତମାନ ପ୍ରଧାନ ଶତ୍ରୁ ହେଉଛନ୍ତି ଏକଚାଟିଆ ପୁଞ୍ଜିପତି । ସେହି ଏକଚାଟିଆ ପୁଞ୍ଜିପତି ମଧ୍ୟ ଶତ୍ରୁ ହେଉଛନ୍ତି କୃଷକ, ହସ୍ତଶିଳ୍ପୀ, କାରିଗର, ସହରର ଅଧିକାଂଶ ଅନ୍ୟାନ୍ୟ ଛୋଟ ଛୋଟ ମାଲିକଙ୍କର, ଅଫିସ କର୍ମଚାରୀ ଓ ବୃତ୍ତିଗତ ବ୍ୟବସାୟୀ ଲୋକଙ୍କର, ଏପରିକି ଅନେକ ମଧ୍ୟବର୍ଗୀୟ ବୁର୍ଜୁଆ-ମାନଙ୍କର ।

ଶ୍ରମିକଶ୍ରେଣୀ ଯେକୌଣସି ପୁଞ୍ଜିବାଦୀ ଦେଶର ହେଉପଛେ, ତା'ର ମିତ୍ର ପ୍ରତ୍ୟେକ ଦେଶରେ ଅଛନ୍ତି । ତା'ର ସେଭଳି ସର୍ବାଧିକ ଓ ସର୍ବଶ୍ରେଷ୍ଠ ମିତ୍ର ହେଉଛନ୍ତି ସମାଜବାଦୀ ଦେଶର ଲୋକସାଧାରଣ, ପୃଥିବୀର ଅନ୍ୟାନ୍ୟ ଦେଶର ଶ୍ରମିକ ଏବଂ ସାମ୍ରାଜ୍ୟବାଦୀଙ୍କ ଦ୍ୱାରା ଅଧିକୃତ ହୋଇ ଦାସତ୍ୱ ବନ୍ଧନରେ ନିଷ୍ପେଷିତ ସାଧାରଣ ଶ୍ରମଜୀବୀ ଜନତା । ଶ୍ରମିକଶ୍ରେଣୀ ସାମ୍ରାଜ୍ୟବାଦର ପତନ ଲୋଡ଼େ, ତା'ର ସମର୍ଥନରେ ବାହାରେ, ତାହାର ଅନ୍ୟାୟର ସମେତ ସମସ୍ତ ଅତ୍ୟାଚାର, ନିର୍ଯାତନା ବିରୁଦ୍ଧରେ ସଂଗ୍ରାମ ଚଳାଏ ।

ଶ୍ରମିକଶ୍ରେଣୀ ଲୋକମାନଙ୍କ ମଧ୍ୟରେ ପୂର୍ଣ୍ଣ ସାମ୍ୟ ଓ ବନ୍ଧୁତ୍ୱର ପ୍ରତିଷ୍ଠା ଲାଗି ଦୃଢ଼ପ୍ରୟାସୀ । ସେହି କାରଣରୁ ସାମ୍ରାଜ୍ୟବାଦ ବିରୁଦ୍ଧରେ ଶ୍ରମିକଶ୍ରେଣୀ ଆଉ ଉପନିବେଶ ଓ ପରାଧୀନ ଦେଶର ଲୋକମାନଙ୍କ ମଧ୍ୟରେ ଏକ ପ୍ରାକୃତିକ ମିତ୍ରତା ଗଢ଼ିଉଠେ । ଏହି ମିତ୍ରତା ଫଳରେ ଉପନିବେଶ ଓ ଅର୍ଦ୍ଧ ଉପନିବେଶର ଶ୍ରମଜୀବୀ ଲୋକେ ପୁଞ୍ଜିବାଦୀ ସ୍ତରକୁ ଡେଇଁ ସମାଜବାଦ ଲାଗି ସାର୍ଥକ ଭାବରେ ଲଢେଇ କରିବା ଦିଗରେ ସମର୍ଥ ହୁଅନ୍ତି ।

ଶହ ଶହ ବର୍ଷ ଧରି ବ୍ରିଟେନ, ଫ୍ରାନ୍ସ, ନେଦରଲ୍ୟାଣ୍ଡସ ଓ ଅନ୍ୟ ଶକ୍ତିମାନେ ଯେଉଁ ଉପନିବେଶ, ଯେଉଁ ସାମ୍ରାଜ୍ୟ ଗଠନ କରିଥିଲେ ଏବେ ନିକଟରେ ସେ ସମସ୍ତ ଦ୍ରୁତ ବେଗରେ ଖଣ୍ଡ ଖଣ୍ଡ ହୋଇଯିବା ଫଳରେ ପ୍ରମାଣିତ ହୋଇଛି ଯେ ଜାତୀୟ ମୁକ୍ତି ଆନ୍ଦୋଳନ ଓ ଶ୍ରମିକଶ୍ରେଣୀର ଶ୍ରେଣୀ-ସଂଗ୍ରାମର ମିତ୍ରତାର କେତେ ଗୁରୁତ୍ୱପୂର୍ଣ୍ଣ କରେ । ଏହି ଯୋଡ଼ି ଅନେକ ଶକ୍ତିର ଆଘାତରେ ଉପନିବେଶବାଦୀଙ୍କର ଗୋଟାଏ ପରେ ଗୋଟାଏ ଘାଟିର ପତନ ଘଟୁଛି, ସେହି ଶକ୍ତିର ଉଦ୍ଭବ ହେଉଛି ଜାତୀୟ ସ୍ୱାଧୀନତା ଲାଗି ଲଢ଼ୁଥିବା ଜନସାଧାରଣ, ଅନ୍ତର୍ଜାତୀୟ ଶ୍ରମିକଶ୍ରେଣୀ ଏବଂ ତା'ର ପ୍ରଧାନ ସୃଷ୍ଟି ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ମିତ୍ରତା ଓ ସହଯୋଗିତା ମଧ୍ୟରୁ ।

ଯେଉଁମାନେ ଜାତୀୟ ମୁକ୍ତି ଆନ୍ଦୋଳନକୁ ସମାଜବାଦୀ ଦେଶ ଓ ଅନ୍ତର୍ଜାତୀୟ ଶ୍ରମିକଶ୍ରେଣୀଠାରୁ ବିଚ୍ଛିନ୍ନ କରିବାକୁ ଚେଷ୍ଟା କରନ୍ତି, ସେହିମାନେ ଜାତୀୟ ଓ ଉପଜାତିଗତ ଅନ୍ଧ ମନୋଭାବ ଓ କୁସଂସ୍କାର (Prejudice) ଉଦ୍ରେକ କରନ୍ତି ସେମାନେ ଜାତୀୟ ମୁକ୍ତି ଆନ୍ଦୋଳନକୁ ଷଡ଼ଯନ୍ତ୍ର କରନ୍ତି, ତା'ର ବିକାଶରେ ବାଧା ସୃଷ୍ଟି କରନ୍ତି ଏବଂ କାର୍ଯ୍ୟତଃ ଏକ ପ୍ରତିକ୍ରିୟାର ଭୂମିକା ଗ୍ରହଣ କରନ୍ତି ।

ଯେଉଁମାନେ ଶ୍ରମିକଶ୍ରେଣୀର ଶ୍ରେଣୀସଂଗ୍ରାମରୁ ଜାତୀୟ ମୁକ୍ତି ଆନ୍ଦୋଳନକୁ ବିଚ୍ଛିନ୍ନ କରନ୍ତି ଏବଂ ଶ୍ରେଣୀ ଦୃଷ୍ଟିଭଙ୍ଗୀ ପରିବର୍ତ୍ତେ ଏକ ଆଞ୍ଚଳିକ, ଉପଜାତିଗତ (racialism) ଦୃଷ୍ଟିଭଙ୍ଗୀ ଉପସ୍ଥାପିତ କରନ୍ତି, ସେମାନେ ସାମ୍ରାଜ୍ୟବାଦୀ ବୁର୍ଜୁଆମାନଙ୍କ ହାତରେ ଭଲ କାମ କରନ୍ତି । ସେମାନଙ୍କର ଏହି କାର୍ଯ୍ୟ ଲୋକମାନଙ୍କର ଲକ୍ଷ୍ୟ, ଉଦ୍ଦେଶ୍ୟ ଓ କର୍ତ୍ତବ୍ୟ, ସାମାଜିକ ସ୍ଥିତି ବା ଶ୍ରେଣୀଗତ ସମ୍ବନ୍ଧ ଦ୍ୱାରା ସ୍ଥିର ନ ହୋଇ ଶରୀରର ରଙ୍ଗ ଅନୁସାରେ ନିର୍ଣ୍ଣୀତ ହୁଏ—ଏହିଭଳି ପ୍ରତାରଣା ବା ଛଳନା କରିବାପାଇଁ ସାମ୍ରାଜ୍ୟବାଦୀମାନଙ୍କୁ କେବଳ ଅଳ ଯୋଗାଏ, ସୁହାଏ । ଲେନିନ୍‌ବାଦବିରୋଧୀ ଏହି ଧାରଣା ଅନୁସାରେ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର କଳା ବା ହଳଦିଆ ଦେହୀ ଶ୍ରମଜୀବୀ ଲୋକଙ୍କର ୟୁରୋପ ବା ଉତ୍ତର ଆମେରିକାର ଗୋରା ଶ୍ରମଜୀବୀ ଲୋକଙ୍କ ଅପେକ୍ଷା ତାଙ୍କ ନିଜ ଦେଶର ପୁଞ୍ଜିପତି ଓ ଜମିମାଲିକମାନଙ୍କ ସ୍ୱାର୍ଥ ସହିତ ସମାନ ସ୍ୱାର୍ଥ ରହିଛି, ଏହା ବୁଝାଯିବାର ମତଲବ୍ ହେଉଛି—ଜାପାନର ବଡ଼ ବଡ଼ ଶିଳ୍ପପତି ଓ ବ୍ୟାଙ୍କ-ମାଲିକମାନେ ସୋଭିଏତ୍ ଇଉନିଅନ, ପୋଲାଣ୍ଡ, ଫ୍ରାନ୍ସ, ଇଟାଲି ଓ ଅନ୍ୟ ସମାଜବାଦୀ ବା ପୁଞ୍ଜିବାଦୀ ଦେଶର ଶ୍ରମିକମାନଙ୍କ ଅପେକ୍ଷା ବର୍ମା, ଭାରତ, ଇଣ୍ଡୋନେସିଆ, ଆଫ୍ରିକା ଓ ଆମେରିକାର ଶ୍ରମିକ ଓ ଗରିବ କୃଷକମାନଙ୍କ ସହିତ ଅଧିକ ଘନିଷ୍ଠ ।

ଏହି ଦୃଷ୍ଟିକୋଣରୁ ବଳି ଅନ୍ୟ କିଛି ଅଧିକ କ୍ଷତିକାରକ ହୋଇ ନ ପାରେ !

## ୫ । କ୍ଷମତାର ପ୍ରଶ୍ନ—ବିପ୍ଳବର ମୁଖ୍ୟ ପ୍ରଶ୍ନ

ଏକ ସମାଜବାଦୀ ସମାଜ ଗଠନ କରିବାପାଇଁ ସମର୍ଥ ହେବାକୁ ହେଲେ ଶ୍ରମିକଶ୍ରେଣୀକୁ ପୁଞ୍ଜିପତି ଓ ଜମିମାଲିକମାନଙ୍କ ହାତରୁ ରାଷ୍ଟ୍ର କ୍ଷମତା ବଳପୂର୍ବକ ଛଡ଼ାଇ ଆଣିବାକୁ ହେବ ।

ଯେକୌଣସି ବିପ୍ଳବର ମୁଖ୍ୟ ସମସ୍ୟା ହେଲା କ୍ଷମତାର ପ୍ରଶ୍ନ । ଯେଉଁସବୁ ଦେଶରେ ବୁର୍ଜୁଆ ବିପ୍ଳବ ଘଟିଛି, ସେଠାରେ ତାହା ସାମନ୍ତବାଦୀଙ୍କଠାରୁ ନେଇ ବୁର୍ଜୁଆଙ୍କୁ କ୍ଷମତା ହସ୍ତାନ୍ତରିତ କରିଦେଇଛି । ସମାଜବାଦୀ ବିପ୍ଳବର ପ୍ରଧାନ

କର୍ତ୍ତବ୍ୟ ହେଉଛି, ବୁର୍ଜୁଆ ଶାସନକୁ ଧ୍ୱଂସ କରିବା ଏବଂ ଶ୍ରମିକଶ୍ରେଣୀ ଓ ତା'ର ମିତ୍ରମାନଙ୍କ ଦ୍ୱାରା କ୍ଷମତା ହସ୍ତାନ୍ତରିତ କରିବା ।

## ଶ୍ରମିକଶ୍ରେଣୀ ଦ୍ୱାରା କ୍ଷମତାଲାଭ

କିନ୍ତୁ ଶ୍ରମିକଶ୍ରେଣୀ ଏହି ବିରାଟ କର୍ତ୍ତବ୍ୟ ସଂପାଦନ କରିବ କିପରି ? ଯେଉଁ ଅବସ୍ଥାରେ ବିପ୍ଳବ ସଂଘଟିତ ହୁଏ, ତାହା ଉପରେ ବହୁ ବିଷୟ ନିର୍ଭର କରିଥାଏ ।

ଗୃହଯୁଦ୍ଧ, ରକ୍ତପାତ ଓ ଧନ ଜୀବନ କ୍ଷୟ ବିନା ଶାନ୍ତିପୂର୍ଣ୍ଣ ଭାବେ ସମାଜବାଦୀ ବିପ୍ଳବ ସଂଘଟିତ ହେବାରେ ଶ୍ରମିକଶ୍ରେଣୀ ଓ ତା'ର ଅଗ୍ରଣୀ ମାର୍କସବାଦୀ-ଲେନିନ୍‌ବାଦୀ ପାର୍ଟି ଯଥାର୍ଥରେ ଆଗ୍ରହଶୀଳ । ଲେନିନ୍ ଜୋର ସହିତ କହିଥିଲେ—"ଶ୍ରମିକଶ୍ରେଣୀ ଅବଶ୍ୟ ଶାନ୍ତିପୂର୍ଣ୍ଣ ଭାବେ କ୍ଷମତା ଦଖଲ କରିବାକୁ ପସନ୍ଦ କରିବ ।" କିନ୍ତୁ ଶ୍ରମିକଶ୍ରେଣୀ ଓ କମ୍ୟୁନିଷ୍ଟ ପାର୍ଟିମାନଙ୍କୁ ଅନ୍ୟ ବିକଳ୍ପ ମାର୍ଗ—ସମାଜବାଦକୁ ଗତିକରିବାର ଅସ୍ଥାୟୀ ମଧ୍ୟବର୍ତ୍ତୀକାଳୀନ ଅ-ଶାନ୍ତିପୂର୍ଣ୍ଣ ମାର୍ଗ ବିଷୟ ସଦାସର୍ବଦା ଧ୍ୟାନରେ ରଖିବାକୁ ହେବ । ଯେତେବେଳେ ଶୋଷକ ଶ୍ରେଣୀସବୁ ଲୋକମାନଙ୍କ ବିରୁଦ୍ଧରେ ହିଂସାର ଅସ୍ତ୍ର ନିଅନ୍ତି, ଅସ୍ତ୍ରବଳରେ ସେମାନଙ୍କର ବିଶେଷ ସୁବିଧା ସୁଯୋଗ ବା ପ୍ରଭାବମାନ ରକ୍ଷା କରନ୍ତି, ସେତେବେଳେ ଶ୍ରମିକଶ୍ରେଣୀକୁ ସଶସ୍ତ୍ର ସଂଗ୍ରାମ ଦ୍ୱାରା ବିପ୍ଳବ ସଂପାଦନ କରିବାକୁ ପଡ଼େ ।

ଶକ୍ତିକୁ କେବଳ ଶକ୍ତି ଦ୍ୱାରା ହିଁ ପ୍ରତିହତ କରାଯାଇପାରେ । କ୍ଷମତା ଦଖଲ ଦିଗରେ ସଂଗ୍ରାମ ଲାଗି ପ୍ରସ୍ତୁତ ହେବାକୁ ଯାଇ, ନିଜର ସମସ୍ତ ଶକ୍ତିକୁ ସଙ୍ଗଠିତ ଓ ମିତ୍ରମାନଙ୍କୁ ସମବେତ କରିବାକୁ ଶାନ୍ତିପୂର୍ଣ୍ଣ ଓ ଅଶାନ୍ତିପୂର୍ଣ୍ଣ ସମସ୍ତ ପ୍ରକାର ସଂଗ୍ରାମର ରୂପ ଓ ପଦ୍ଧତିକୁ ଆୟତ୍ତ କରିବାକୁ କମ୍ୟୁନିଷ୍ଟମାନେ ଶ୍ରମିକଶ୍ରେଣୀକୁ ଶିକ୍ଷା ଦିଅନ୍ତି ।

ପୁଞ୍ଜିବାଦୀ ଶାସନକୁ ଧ୍ୱଂସ କରିବା ଲାଗି ଅପରିହାର୍ଯ୍ୟ ହେଉଥିବା ସଶସ୍ତ୍ର ଅଭ୍ୟୁତ୍ଥାନମାନ କିପରି ପ୍ରସ୍ତୁତ କରିବାକୁ ହେବ ଓ ତାହାକୁ ସବୁ କିପରି କାର୍ଯ୍ୟକାରୀ କରିବାକୁ ପଡ଼ିବ, ସେ ସମ୍ବନ୍ଧରେ ଲେନିନ୍ ବିପ୍ଳବୀମାନଙ୍କୁ ବିଶଦ ପରାମର୍ଶ ଦେଇଥିଲେ । ବଲ୍‌ସେଭିକ୍‌ମାନେ ଅତି ଯତ୍ନର ସହିତ ଲେନିନଙ୍କର ପରାମର୍ଶକୁ ପାଳନ କରିବା ଯୋଗୁ ହିଁ ରୁଷର ୧୯୧୭ ଅକ୍‌ଟୋବରର ସଶସ୍ତ୍ର ଅଭ୍ୟୁତ୍ଥାନ, କହିବାକୁ ଗଲେ ପ୍ରାୟ ବିନା ପ୍ରଣହାନିରେ ଏତେ ଶୀଘ୍ର ଓ ଏଭଳି ଦକ୍ଷତାର ସହିତ କାର୍ଯ୍ୟକାରୀ ହୋଇପାରିଥିଲା ।

ପୁଞ୍ଜିବାଦରୁ ସମାଜବାଦକୁ ଗତି କରିବାର ମାର୍ଗ ଶାନ୍ତିପୂର୍ଣ୍ଣ ବା ଅ-ଶାନ୍ତିପୂର୍ଣ୍ଣ ଯାହା ହେଉ ପଛେ ତାହା ସଂଘଟିତ ହୋଇପାରେ କେବଳ ଏକ ଶ୍ରେଣୀସଂଗ୍ରାମ ଏକ ସମାଜବାଦୀ ବିପ୍ଳବ ଜରିଆରେ ।

## ସର୍ବହରାର ଏକଛତ୍ର ଶାସନ :

ସମାଜବାଦୀ ବିପ୍ଳବ, ପୁଞ୍ଜିପତି ଓ ଜମିମାଲିକ ପ୍ରଭୃତି ଶୋଷକଶ୍ରେଣୀମାନଙ୍କଠାରୁ ରାଜନୈତିକ କ୍ଷମତା ଛଡ଼ାଇଆଣି ଶ୍ରମିକଶ୍ରେଣୀ ନେତୃତ୍ୱରେ ପରିଚାଳିତ ଶ୍ରମଜୀବୀ ଲୋକମାନଙ୍କ ହାତରେ ହସ୍ତାନ୍ତରିତ କରିଦିଏ । ଏହାବୋଲି ପୁଞ୍ଜିପତି, ଜମିମାଲିକ ଓ ତାଙ୍କର କିଙ୍କର ବୋଲକରାମାନେ ରାତାରାତି ଉଭେଇଯାଆନ୍ତି ନାହିଁ । ବିପ୍ଳବ ପରେ ଏପରି ଗୋଟାଏ ସମୟ ଆସେ, ଯେତେବେଳେ ପୁଞ୍ଜିବାଦର ପତନ ଘଟିଥାଏ ସତ, କିନ୍ତୁ ଚିରଦିନ ଲାଗି ତାହା ନିର୍ମୂଳ ହୋଇ ନ ଥାଏ । ଶୋଷକଶ୍ରେଣୀ କ୍ଷମତାରୁ ବିତାଡ଼ିତ ହୋଇଥାନ୍ତି, ଅଥଚ ଲଢ଼ାଇ କରିବାରେ ବ୍ୟାପୃତ ଥାଆନ୍ତି । ସେହି ଅବସ୍ଥାରେ ସମାଜବାଦୀ ପରିବର୍ତ୍ତନମାନ କାର୍ଯ୍ୟକାରୀ ହେଉଥାଏ, ଅଥଚ ସମାଜବାଦ ସେପର୍ଯ୍ୟନ୍ତ ନିର୍ମିତ ହୋଇ ନ ଥାଏ । ସେହି ସମୟକୁ ପୁଞ୍ଜିବାଦରୁ ସମାଜବାଦକୁ ଗତି କରିବାର ଅସ୍ଥାୟୀ ମଧ୍ୟବର୍ତ୍ତୀ କାଳ ବା ଯାତ୍ରାପଥ (Transition) ସମୟ ବୋଲି କୁହାଯାଏ ।

ଏହି ସମାଜବାଦୀ ନିର୍ମାଣ କାଳରେ ରାଷ୍ଟ୍ରକ୍ଷମତା ସର୍ବହରା ହାତରେ ରହିବା ଉଚିତ, ଆଉ ସେହି କ୍ଷମତା ସର୍ବହରାର ଏକଛତ୍ର ଶାସନ ଦ୍ୱାରା ପରିଚାଳିତ ହେବା କର୍ତ୍ତବ୍ୟ ।

ସର୍ବହରାର ସେହି 'ଏକଛତ୍ର ଶାସନ' କ'ଣ ?

**ସର୍ବହରାର ସେହି ଏକଛତ୍ର ଶାସନ ହେଉଛି ସର୍ବହରା ନେତୃତ୍ୱରେ ପରିଚାଳିତ ଏବଂ ଏକ ସମାଜବାଦୀ ସମାଜ ନିର୍ମାଣ ଦିଗରେ ଉଦ୍ଦିଷ୍ଟ, ଶ୍ରମଜୀବୀ ଲୋକମାନଙ୍କର 'ଶକ୍ତି'।**

ଶ୍ରମିକଶ୍ରେଣୀ କ'ଣ ଏକଛତ୍ର ଶାସନ ପ୍ରତିଷ୍ଠା ନ କରି ବୁର୍ଜୁଆମାନଙ୍କୁ ସଂପୂର୍ଣ୍ଣ ପରାସ୍ତ କରିପାରେ, ଓ ସମାଜବାଦ ଗଠନ କରିପାରେ ? ଅଭିଜ୍ଞତା କହେ ଯେ ତାହା ହୋଇ ନ ପାରେ । ଯେତେବେଳେ ଶ୍ରମିକଶ୍ରେଣୀ ହାତକୁ କ୍ଷମତା ନିଏ, ସେତେବେଳେ ଶୋଷକଶ୍ରେଣୀ ନିଜର ଧନସଂପଦ ଓ କ୍ଷମତା ପ୍ରତିପତ୍ତି ହରାଇ, ପୁନର୍ବାର ତାହା ଫେରି ପାଇବା ଲାଗି କଠୋର ସଂଗ୍ରାମ ଆରମ୍ଭ କରିଦିଏ ; ପୂର୍ବ ବ୍ୟବସ୍ଥାକୁ ପୁନରାୟ ପ୍ରତିଷ୍ଠା କରିବା'ର ଆଶା ତ୍ୟାଗ କରେ ନାହିଁ । କାରଣ ବହୁଦିନ ଯାଏ ତା'ର ବେଶ ବଳ ଓ ଶକ୍ତି ରହିଥାଏ । ତେବେ ତା'ର ଏ ଶକ୍ତିଟି କଣ ?

ପ୍ରଥମରେ, ଯେତେବେଳେ ଶୋଷକଶ୍ରେଣୀ ଗୋଟାଏ ଦେଶରେ ପରାସ୍ତ ହୁଏ, ସେତେବେଳେ ଅନ୍ୟ ଦେଶମାନଙ୍କରେ ରାଷ୍ଟ୍ରକ୍ଷମତାରେ ଥିବା ଶୋଷକଶ୍ରେଣୀମାନଙ୍କର ଆଉ ଆନ୍ତର୍ଜାତୀୟ ପୁଞ୍ଜିର ସାହାଯ୍ୟ ଉପରେ ଭରସା ରଖେ ।

ଏହା ଅତି ଜଣାଶୁଣା କଥା ଯେ, ଭୁତପୂର୍ବ ବିଜୟୀ ଶ୍ରମିକ ଓ କୃଷକମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାପାଇଁ ସେଠାର ଜମିମାଲିକ ଓ ପୁଞ୍ଜିପତିମାନଙ୍କୁ ୧୪ ଟି ଦେଶ ସାହାଯ୍ୟ ଦେଇଥିଲେ ।

ଦ୍ୱିତୀୟରେ, ସମାଜବାଦୀ ବିପ୍ଳବର ବିଜୟର ଅର୍ଥ ନୁହେଁ ଯେ, ଶୋଷକମାନେ ହଠାତ୍ ସଙ୍ଗେ ସଙ୍ଗେ ସେମାନଙ୍କର ସମସ୍ତ ଧନସଂପଦରୁ ବଞ୍ଚିତ ହୁଅନ୍ତି । ସେମାନଙ୍କ ହାତରେ ଟଙ୍କାପଇସା ଓ କେତେକ ଧନସଂପତ୍ତି ଥାଏ । ଅଧିକନ୍ତୁ ଯେଉଁ ପୁରୁଣା ମତାମତ, ଦୃଷ୍ଟିକୋଣ, ଅଭ୍ୟାସ ପରଂପରା ଏବଂ ନୈତିକ ମତ ଓ ଧାରଣା ସାଧାରଣ ଲୋକଙ୍କର ମନକୁ କବଳିତ କରିଥାଏ, ସେମାନେ ତାହା ଉପରେ ନିର୍ଭର କରନ୍ତି ; ତା'ର ଅଭାବ ନଥାନ୍ତି । ସେମାନେ କୃଷକ, କାରିଗର, ହସ୍ତଶିଳ୍ପୀ ପ୍ରଭୃତି କ୍ଷୁଦ୍ର ସଂପତ୍ତିମାଲିକମାନଙ୍କର ସମର୍ଥନ ଲାଭ କରିବାକୁ ଉଦ୍ୟମ କରନ୍ତି, ସମାଜର ନିମ୍ନତମ, ହୀନତମ ଲୋକଙ୍କୁ ଲାଞ୍ଚ ଓ ପ୍ରଲୋଭନ ଦ୍ୱାରା ହାତ କରିବାର ଚେଷ୍ଟା କରନ୍ତି, ଆଉ ଅର୍ଥନୈତିକ ଅଗ୍ରଗତିକୁ ବାଧା ଦେବା ଆଦି ଯାବତୀୟ ବିରୋଧୀ ଚକ୍ରାନ୍ତ କରନ୍ତି ।

ଶେଷରେ, ଶୋଷକଶ୍ରେଣୀର ଲୋକମାନେ ଭଲଭାବେ ଶିକ୍ଷିତ । ଯୁଦ୍ଧରେ ଏବଂ ଉତ୍ପାଦନର ସଂଗଠନ ଓ ପରିଚାଳନାରେ ସେମାନଙ୍କର ଅଭିଜ୍ଞତା ଥାଏ । ଇଞ୍ଜିନିଅର, ଲେଖକ, ବା ସମ୍ପାଦକ ଆଦି ବୁଦ୍ଧିଜୀବୀମାନଙ୍କ ସହିତ ସେମାନେ ଯୋଗାଯୋଗ ରଖନ୍ତି ଏବଂ ସେମାନଙ୍କ ଜରିଆରେ ରାଜନୈତିକଭାବେ ସାଧାରଣ ଲୋକଙ୍କୁ ପ୍ରଭାବିତ କରନ୍ତି ।

ଏହିସବୁ ଯୋଗେ ଶ୍ରମିକଶ୍ରେଣୀ ବାଧ୍ୟ ହୁଏ ନିଜର ଇଚ୍ଛାକୁ କାଏମ କରିବାକୁ ଦୃଢ଼ କର୍ତ୍ତୃତ୍ୱ ଜାରି କରିବାକୁ ଏବଂ ଆବଶ୍ୟକ ପଡ଼ିଲେ ବଳ ପ୍ରୟୋଗର ଆଶ୍ରୟ ନେବାକୁ । ଏହାର ଅର୍ଥ, କ୍ଷମତାଚ୍ୟୁତ ହୋଇଥିବା ଶୋଷକଶ୍ରେଣୀର ପ୍ରତିରୋଧକୁ ଭାଙ୍ଗିବା ଉଦ୍ଦେଶ୍ୟରେ ଜମିଜମା, ଖଣି, ବ୍ୟାଙ୍କ, ରେଳବାଇ, ଫାକ୍ଟ୍ରି ଓ ଉତ୍ପାଦନର ଅନ୍ୟାନ୍ୟ ଉପକରଣମାନ ଲୋକଙ୍କ ହସ୍ତାନ୍ତରିତ କରିବା ଲକ୍ଷ୍ୟରେ ବାହାରର ଶତ୍ରୁମାନଙ୍କ ହସ୍ତକ୍ଷେପ ଓ ଆକ୍ରମଣ ବିରୁଦ୍ଧରେ ଛିଡ଼ା ହୋଇ ବୈପ୍ଳବିକ ସୁଯୋଗସୁବିଧାକୁ (gains) ସୁରକ୍ଷିତ କରିବା ସଙ୍ଗେ ସଙ୍ଗେ ସମାଜବାଦୀ ନିର୍ମାଣକୁ ସଂଗଠିତ କରିବା ସକାଶେ ସର୍ବହରାର ଏକଛତ୍ର ଶାସନ ମୁଖ୍ୟତଃ ଆବଶ୍ୟକ ।

ଲେନିନ୍ ଲେଖିଥିଲେ, "ଯେଉଁ ବୁର୍ଜୁଆମାନେ ପରାସ୍ତ ହୋଇଛନ୍ତି, ଅଥଚ ଧ୍ୱଂସ ହୋଇନାହାନ୍ତି, ଲୋପ ପାଇନାହାନ୍ତି, ପ୍ରତିରୋଧ କରିବାରୁ ବିରତ ହୋଇନାହାନ୍ତି ଏବଂ ନିଜର ପ୍ରତିରୋଧକୁ ଆହୁରି ଓ ଜୋରଦାର କରୁଛନ୍ତି, ସେହି ବୁର୍ଜୁଆମାନଙ୍କ ବିରୁଦ୍ଧରେ ଲଢ଼ି ଯେଉଁ ସର୍ବହରା ବିଜୟ ହାସଲ କରିଛି, ଓ ରାଜନୈତିକ କ୍ଷମତା ଦଖଲ କରିଛି, ସେହି ସର୍ବହରାଙ୍କ ଦ୍ୱାରା ପରିଚାଳିତ ଶ୍ରେଣୀସଂଗ୍ରାମ ହେଉଛି— ସର୍ବହରାର ଏକଛତ୍ର ଶାସନ ।"

## ସର୍ବହରା ଏକଛତ୍ର ଶାସନର ଗଠନମୂଳକ ଭୂମିକା

ବୁର୍ଜୁଆ ମତାଦର୍ଶବାଦୀମାନେ ବହୁ କାଳିକଲମ ଖର୍ଚ୍ଚ କରି ପ୍ରମାଣ କରିବାକୁ ଚେଷ୍ଟା କରନ୍ତି ଯେ ସର୍ବହରାର ଏକଛତ୍ର ଶାସନ ହିଂସା-ବ୍ୟତୀତ, ଶ୍ରମିକଶ୍ରେଣୀ ଦ୍ୱାରା ଅନ୍ୟ ଶ୍ରେଣୀମାନଙ୍କର ଦମନ ଆଉ ଗଣତନ୍ତ୍ରର ବିଲୋପ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି ଅଭିଯୋଗରେ କୌଣସି ସତ୍ୟ ନାହିଁ ।

ଶ୍ରମଜୀବୀ ଲୋକେ, ଯେଉଁମାନେ ହଜାର ହଜାର ବର୍ଷ ଧରି ଶୋଷକ-ଶ୍ରେଣୀମାନଙ୍କ ଦ୍ୱାରା ନିର୍ଯ୍ୟାତିତ ଓ ଅତ୍ୟାଚାରିତ ହୋଇଆସିଛନ୍ତି, ସେମାନେ ସମସ୍ତ ପ୍ରକାର ବାଧ୍ୟବାଧକତା ପରିହାର କରିବାକୁ ଉଚିତ ମନେ କରିବେ, ପସନ୍ଦ କରିବେ । କିନ୍ତୁ ଶୋଷକଶ୍ରେଣୀମାନେ ହିଁ ତାଙ୍କୁ ବଳ ପ୍ରୟୋଗ କରିବାକୁ ବାଧ୍ୟ କରନ୍ତି । ଶ୍ରମିକଶ୍ରେଣୀ ତା'ର ଏକଛତ୍ର ଶାସନକୁ କାର୍ଯ୍ୟକାରୀ କରି ପୂର୍ବର ଶାସକଶ୍ରେଣୀକୁ ନୂଆ'ର ସହିତ କାମ କରିବା ଲାଗି ଓ ଧୀରେ ଧୀରେ ଶ୍ରମଜୀବୀ ଲୋକମାନଙ୍କ ସହିତ ମିଶିଯିବା ଲାଗି ସୁଯୋଗ ଦେବାକୁ ଚେଷ୍ଟା କରିଥାଏ, ମାତ୍ର ଅନ୍ୟ ପକ୍ଷରେ ଏକ ନୂତନ ଜୀବନର ନିର୍ମାଣକୁ ରୋଧ କରିବା ଦିଗରେ ଏକଛତ୍ର ଶାସକମାନଙ୍କର ସମସ୍ତ ଉଦ୍ୟମକୁ ଦୃଢ଼ ଭାବରେ ପ୍ରତିହତ କରେ, ବିରୋଧ କରେ ।

ସର୍ବହରା ଏକଛତ୍ର ଶାସନର ଅର୍ଥ ହେଉଛି, ସମାଜର ଅତି ନଗଣ୍ୟ ସଂଖ୍ୟାଲଘୁ ଲୋକଙ୍କ ଉପରେ ଅତି ବିପୁଳ ଭାବେ ଅଧିକ ସଂଖ୍ୟକ ଲୋକମାନଙ୍କର ଶାସନ । ଅଥଚ ଦାସମାଲିକ, ସାମନ୍ତବାଦୀ ପ୍ରଭୁ ଓ ପୁଞ୍ଜିପତି ପ୍ରଭୃତି ଅନ୍ୟ ସମସ୍ତ ଶୋଷକଶ୍ରେଣୀର ଏକଛତ୍ର ଶାସନ ହେଉଛି ସାଧାରଣତଃ ବହୁସଂଖ୍ୟକ ଲୋକଙ୍କ ଉପରେ ଅଳ୍ପସଂଖ୍ୟକ ଲୋକଙ୍କର ଶାସନ । ସର୍ବହରାର ଏକଛତ୍ର ଶାସନ, ବିପୁଳ ଭାବେ ଅଧିକ ସଂଖ୍ୟକ ଲୋକଙ୍କ ସ୍ୱାର୍ଥ ରକ୍ଷା କରେ । ତାହା ଶୋଷଣ ଲୋପ କରି ସମାଜବାଦ ନିର୍ମାଣ ଦ୍ୱାରା ଏକ ମହାନ ନ୍ୟାୟୋଚିତ ଆଦର୍ଶ ପୂରଣ କରେ; ଅଥଚ ପୂର୍ବର ସମସ୍ତ ରାଷ୍ଟ୍ର ମୁଷ୍ଟିମେୟ ଶୋଷକମାନଙ୍କର ସ୍ୱାର୍ଥକୁ ହିଁ ପୂରଣ କରୁଥିଲା ।

ଏଥିରୁ ଜଣାଯାଏ, ସର୍ବହରାର ଏକଛତ୍ର ଶାସନ ହେଉଛି ବର୍ତ୍ତମାନ ପର୍ଯ୍ୟନ୍ତ ବିଦିତ ସର୍ବଶ୍ରେଷ୍ଠ ଗଣତାନ୍ତ୍ରିକ ବ୍ୟବସ୍ଥା ।

ଏଣୁ ନୂତନ ସମାଜବାଦୀ ସମାଜ ନିର୍ମାଣ ଦିଗରେ ସର୍ବହରାର ଏକଛତ୍ର ଶାସନ ଏକ ବିରାଟ ଗଠନମୂଳକ ଭୂମିକା ଗ୍ରହଣ କରେ ।

ସମାଜବାଦ ନିର୍ମାଣ ଲାଗି କେବଳ ବୃହତ୍ ଧରଣର ଶିଳ୍ପ ପ୍ରତିଷ୍ଠାନଗୁଡ଼ିକୁ ସମାଜୀକରଣ (Socialise) କରିବା ଆବଶ୍ୟକ ନୁହେ । କ୍ଷୁଦ୍ର ଧରଣର ଉତ୍ପାଦନ, ବିଶେଷରେ ସମସ୍ତ କୃଷକବନ୍ଧୁଙ୍କୁ ମଧ୍ୟ ସର୍ବପ୍ରଥମେ ସମାଜବାଦୀ ଧାରାରେ



ଲେନିନ ବକ୍ତୃତା ଦେଉଛନ୍ତି ।

ପକାଇବାକୁ ହେବ । ଦେଶର ଅର୍ଥନୈତିକ ଓ ପ୍ରତିରକ୍ଷା ଶକ୍ତି ବୃଦ୍ଧି ପାଇଁ ଏବଂ ଶ୍ରମଜୀବୀ ଲୋକମାନଙ୍କ ଜୀବନଧାରଣର ମାନକୁ ଦୃଢ଼ଭାବେ ଉନ୍ନତ କରିବା ସକାଶେ ଉତ୍ପାଦନ ଶକ୍ତିଗୁଡ଼ିକର ଦ୍ରୁତ ବିକାଶର ନିଶ୍ଚୟତା ଦିଗରେ ପଦକ୍ଷେପ ନେବାକୁ ହେବ । ଲୋକମାନଙ୍କ ମଧ୍ୟରେ ସଂପର୍କର ପରିବର୍ତ୍ତନ, ସେମାନଙ୍କର ସାଂସ୍କୃତିକ ମାନର ବିକାଶ ଏବଂ ସେମାନଙ୍କ ସାମାଜିକ ଚେତନାର ପୁନର୍ଗଠନ ଆଣିବା ଆବଶ୍ୟକ ହେବ ।

ଶ୍ରମିକଶ୍ରେଣୀ ନିଜର ଏକଛତ୍ର ଶାସନକୁ ବ୍ୟବହାର କରି ଏହି ସମସ୍ତ କର୍ତ୍ତବ୍ୟ ସଂପାଦନ କରେ ; ସମାଜର ସମାଜବାଦୀ ପୁନର୍ଗଠନକୁ ପରିଚାଳିତ କରେ; ସମାଜବାଦୀ ନିର୍ମାଣ ପ୍ରତି ସମସ୍ତ ଶ୍ରମଜୀବୀ ଲୋକ ଓ ନିଜର ମିତ୍ରମାନଙ୍କୁ ଟାଣିଥାଏ; ଏକ ସର୍ବସାଧାରଣ ସମାଜବାଦୀ ଲକ୍ଷ୍ୟ ଦିଗରେ ସେମାନଙ୍କର ଉଦ୍ୟମକୁ ସଂଚାଳିତ କରେ ।

ସଂପୃକ୍ତ ଦେଶର ବାସ୍ତବ ଅବସ୍ଥା ଉପରେ ନିର୍ଭର କରି, ସର୍ବହରା ଏକଛତ୍ର ଶାସନର ପ୍ରତିଷ୍ଠା ଲାଗି ସଂଗ୍ରାମ ଏବଂ ଅସ୍ଥାୟୀ ମଧ୍ୟବର୍ତ୍ତୀ (transition) କାଳରେ ସମାଜର ରାଜନୈତିକ ସଂଗଠନ —ଏ ଉଭୟ ବିଭିନ୍ନ ରୂପ ଗ୍ରହଣ କରିପାରେ ।

କିନ୍ତୁ ପୁଞ୍ଜିବାଦରୁ ସମାଜବାଦକୁ ଅସ୍ଥାୟୀ ମଧ୍ୟବର୍ତ୍ତୀକାଳୀନ ଯାତ୍ରା ବା ସନ୍ଧି-ଅତିକ୍ରମଣ, ତାହା ଯେକୌଣସି ରୂପରେ ହେଉ ପଛେ, କେବଳ ମାତ୍ର ବିପ୍ଳବ ଜରିଆରେହିଁ ସମ୍ଭବ ହୋଇପାରେ । ସମାଜବାଦୀ ନିର୍ମାଣ କାଳରେ ନୂତନ ରାଷ୍ଟ୍ର ଶକ୍ତି ଯେତେ ଭିନ୍ନ ଭିନ୍ନ ରୂପରେ ପ୍ରକାଶ ପାଉ ପଛେ (ଯଥା ସୋଭିଏତ୍, ଶାସନ, ଲୋକ ଗଣତନ୍ତ୍ର) ସେଗୁଡ଼ିକର ସାରମର୍ମ ଦେଖାଦିଏ ସାଧାରଣତଃ ସମାନ ଭାବରେ ଅର୍ଥାତ୍ ସର୍ବହରାର ଏକଛତ୍ର ଶାସନ, ଏହି ମର୍ମରେ ।

ସମାଜବାଦୀ ବିପ୍ଳବ ସମ୍ପନ୍ନ ହେଲା ପରେ କେବଳ ଗୋଟିଏ ମାର୍କସବାଦୀ-ଲେନିନବାଦୀ ପାର୍ଟି ହିଁ ଶ୍ରମିକଶ୍ରେଣୀର ସମସ୍ତ ସଂଗ୍ରାମକୁ ଏକଛତ୍ର ଶାସନର ପ୍ରତିଷ୍ଠା ଓ ସମାଜବାଦର ନିର୍ମାଣ ଦିଗରେ ପରିଚାଳିତ କରିଥାଏ ଓ କରିପାରେ ।

ସର୍ବହରାର ଏକଛତ୍ର ଶାସନରେ ପାର୍ଟି ଏକ ମିଳନକାରୀ ନେତୃତ୍ୱର ଭୂମିକା ଗ୍ରହଣ କରେ । ତାହା ଶ୍ରମଜୀବୀ ଲୋକମାନଙ୍କର ରାଷ୍ଟ୍ର, ଟ୍ରେଡ୍ ଇଉନିଅନ, ଯୁବକସଂସ୍ଥା ଇତ୍ୟାଦି ଅନ୍ୟ ସମସ୍ତ ଅନୁଷ୍ଠାନ ଓ ସଂଗଠନର କାର୍ଯ୍ୟକୁ ନିର୍ଦ୍ଦେଶ ଦିଏ, ପରିଚାଳିତ କରେ । ଏଣୁ ପାର୍ଟିକୁ ତା'ର ନେତୃତ୍ୱର ଭୂମିକା ସଂପାଦନ କରିବାକୁ ହେଲେ ବୈପ୍ଳବିକ ତତ୍ତ୍ୱରେ ପୋକ୍ତ ହେବାକୁ ହେବ । ଘଟଣାବଳୀର ଧାରାକୁ ପୂର୍ବରୁ ଦୂରଦୃଷ୍ଟି ବଳରେ ଦେଖିବାକୁ ହେବ । ଲୋକମାନଙ୍କ ସହିତ ନିବିଡ଼ ଘନିଷ୍ଠ ସମ୍ପର୍କ

ରଖିବାକୁ ହେବ । ଲୋକଙ୍କୁ ଶିକ୍ଷା ଦେବାକୁ ହେବ ଏବଂ ତାଙ୍କଠାରୁ ଶିକ୍ଷା ଆହରଣ କରିବାକୁ ହେବ । ନିଜର କାର୍ଯ୍ୟକୁ ସମାଲୋଚନାମୂଳକ ଦୃଷ୍ଟିରେ ବିଚାର କରିବାକୁ ପଡ଼ିବ ଏବଂ ନିଜ ଦଳର ଏକତା, ନିଷ୍ଠା ଓ ବିଶୁଦ୍ଧତାକୁ ଯତ୍ନର ସହିତ ରକ୍ଷା କରିବାକୁ ହେବ ।

ଏକତା ଓ ଶୃଙ୍ଖଳା ରକ୍ଷାରେ ପାର୍ଟିର ସମସ୍ତ ତ୍ରୁଟି ସର୍ବହରାର ଏକଛତ୍ର ଶାସନକୁ ଦୁର୍ବଳ କରେ ।

ସମାଜବାଦର ନିର୍ମାଣ ସ୍ତରରେ ସର୍ବହରାର ଏକଛତ୍ର ଶାସନ ହେଉଛି ଏକ ଅପରିହାର୍ଯ୍ୟ ଅବସ୍ଥା ଓ ଅସ୍ତ୍ର । ପୁଞ୍ଜିବାଦରୁ ସମାଜବାଦକୁ ଯାତ୍ରା କରିବାର ଅସ୍ଥାୟୀ ମଧ୍ୟବର୍ତ୍ତୀ (transition) ଅର୍ଥାତ୍ ସାକ୍ରାନ୍ତି କାଳରେ ଏହା ନିତ୍ୟାନ୍ତ ପ୍ରୟୋଜନ । କିନ୍ତୁ ସମାଜ ଶତ୍ରୁଭାବାପନ୍ନ ଶ୍ରେଣୀଗୁଡ଼ିକରେ ବିଭକ୍ତ ହୋଇ ରହିବା ଯେପରି ସ୍ଥାୟୀ ନୁହେଁ ଏହା ସେହିପରି ସ୍ଥାୟୀ ନୁହେଁ—ଚିରନ୍ତନ ନୁହେଁ ।

ଯେତେବେଳେ ସମାଜବାଦ ନିର୍ମାଣ ଶେଷହୋଇଯିବ, ଦୃଢ଼ୀଭୂତ ହେବ, ଅର୍ଥାତ୍ ଯେତେବେଳେ ସମସ୍ତ ଶୋଷଣ ମୂଳରେ ଥିବା ଉତ୍ପାଦନର ଉପକରଣ ଉପରେ ବ୍ୟକ୍ତିଗତ ମାଲିକାନା ଲୋପ ପାଇବ, ଶୋଷକ ଶ୍ରେଣୀମାନେ ନିର୍ମୂଳ ହୋଇଯିବେ, ଯେତେବେଳେ ଉତ୍ପାଦନ ଶକ୍ତିଗୁଡ଼ିକର ବିରାଟ ଅଗ୍ରଗତି ଘଟିବ, ଯେତେବେଳେ ଉତ୍ପାଦନରେ ସମାଜବାଦୀ ସମ୍ପର୍କ ଦୃଢ଼ଭାବେ ପ୍ରତିଷ୍ଠିତ ହେବ, ଯେତେବେଳେ ଲୋକମାନଙ୍କର ସାମାଜିକ-ରାଜନୈତିକ ଏକତା ଶକ୍ତ ହୋଇଉଠିବ, ସେତେବେଳେ ସର୍ବହରା ଏକଛତ୍ର ଶାସନର ଆଉ ତଳେ ହେଲେ ପ୍ରୟୋଜନ ରହିବ ନାହିଁ ।

ସୋଭିଏତ ଇଉନିଅନରେ ଯେଉଁଠି ସବୁକାଳ ପାଇଁ ସମାଜବାଦ ସଂପୂର୍ଣ୍ଣ ଭାବେ ବିଜୟ ଲାଭ କରିଛି, ଯେଉଁଠି ପୂର୍ଣ୍ଣ ବ୍ୟାପକ ଧରଣରେ ସାମ୍ୟବାଦ ନିର୍ମାଣ ବା କମ୍ୟୁନିଷ୍ଟ ନିର୍ମାଣ ଯୁଗରେ ସମାଜର ପ୍ରବେଶଲାଭ ଘଟିଛି, ସେଠାରେ ସର୍ବହରା ଏକଛତ୍ର ଶାସନ ତା'ର ଐତିହାସିକ ଲକ୍ଷ୍ୟ ପୂରଣ କରିପାରିଛି—ଆଭ୍ୟନ୍ତରୀଣ ବିକାଶ ଦୃଷ୍ଟିରୁ ଆଉ ତା'ର ଆବଶ୍ୟକତା ନାହିଁ ।

ସୋଭିଏତ୍ ଇଉନିଅନରେ ସର୍ବହରାର ଏକଛତ୍ର ଶାସନ ସମସ୍ତ ଜନସାଧାରଣଙ୍କର ଏକ ସମାଜବାଦୀ ରାଷ୍ଟ୍ର ଭାବରେ ବିକଶିତ ହୋଇଛି ।

ଏହି ହେଲା ସାମାଜିକ ବିକାଶର ନିୟମଗୁଡ଼ିକ ସମ୍ବନ୍ଧରେ ମାର୍କସବାଦୀ-ଲେନିନ୍‌ବାଦୀ ତତ୍ତ୍ୱର ପ୍ରଧାନ ନୀତି—ମୌଳିକ ସୂତ୍ର । ଏହି ମାର୍କସବାଦୀ-ଲେନିନ-ବାଦୀ ତତ୍ତ୍ୱ ସମଗ୍ର ଇତିହାସର ଗତିଧାରା ଦ୍ୱାରା ଦୃଢ଼ଭାବରେ ପ୍ରତିପାଦିତ ହୋଇଛି

ଏବଂ ସୋଭିଏତ୍ ଇଉନିଅନ ଓ ଅନ୍ୟାନ୍ୟ ସମାଜବାଦୀ ଦେଶର ଶ୍ରମଜୀବୀ ଲୋକେ ଏହାକୁ ହିଁ କାର୍ଯ୍ୟରେ ପ୍ରୟୋଗ କରୁଛନ୍ତି ।

ରୁଷର ଲୋକେ କିପରି କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ପରିଚାଳିତ ହୋଇ ପୁଞ୍ଜିପତି ଓ ଜମିମାଲିକମାନଙ୍କୁ ଧ୍ୱଂସ କଲେ, ସର୍ବହରା ଏକଛତ୍ର ଶାସନର ଏକ ରାଷ୍ଟ୍ରୀୟ ରୂପ—ସୋଭିଏତ୍ ଶକ୍ତିକୁ ପ୍ରତିଷ୍ଠିତ କଲେ ଓ ପୃଥିବୀର ସର୍ବପ୍ରଥମ ସମାଜ-ବାଦୀ ସମାଜ ନିର୍ମାଣ କଲେ—ଏସବୁ ବିଷୟ ଆମେ ଆମର ପରବର୍ତ୍ତୀ ଆଲୋଚନାରେ ଦେଖିପାରିବା ।





## ଦ୍ୱିତୀୟ ଅଧ୍ୟାୟ

# ସୋଭିଏତ୍ ରୁଷରେ ସମାଜବାଦର ବିଜୟ

## ୧—ବୈପ୍ଳବିକ ସଂଗ୍ରାମର ନେତୃତ୍ୱରେ ମାର୍କ୍ସବାଦୀ ପାର୍ଟି

ଶହ ଶହ ବର୍ଷ ଧରି ରୁଷର ଲୋକେ ସେଠାର ରାଜା ଜାରଙ୍କ ଶାସନରେ ପେଷି ହୋଇଯାଉଥିଲେ; ବଡ଼ ବଡ଼ ଜମିମାଲିକ ଓ ପୁଞ୍ଜିପତିଙ୍କ ଶୋଷଣ ଆଉ ଅତ୍ୟାଚାରରେ ସଢ଼ୁଥିଲେ । ସେମାନଙ୍କ ଭିତରୁ ନିର୍ଯ୍ୟାତନାର କରୁଣ ଚିତ୍କାର ଉଠୁଥିଲା । ସେହି ଶୋଷଣକାରୀଙ୍କ ବିରୁଦ୍ଧରେ ସେମାନେ ବହୁଦିନ ଧରି ଅତି କଠୋର ସଂଗ୍ରାମ ଚଳାଇଥିଲେ । ସମୟେ ସମୟେ ତାଙ୍କର ବିପ୍ଳବୀ ଅଭ୍ୟୁତ୍ଥାନ ଏତେ ବିରାଟ ଆକାର ଧାରଣ କରୁଥିଲା ଯେ ତାକୁ ଦମନ କରିବା ଲାଗି ଶାସକଙ୍କୁ ସୈନ୍ୟବାହିନୀ ପ୍ରୟୋଗ କରିବାକୁ ପଡ଼ୁଥିଲା ।

## ରୁଷର ମାର୍କସବାଦୀ ପାର୍ଟିର ଅଭ୍ୟୁତ୍ଥାନ

ରୁଷରେ ଲେନିନ ମାର୍କ୍ସବାଦୀ ରାଜନୈତିକ ପାର୍ଟି ଗଠନ କଲା ପରେ, ଶ୍ରମିକଶ୍ରେଣୀ ନେତୃତ୍ୱ ଦେବାକୁ ଜାଗ୍ରତ ହୋଇଉଠିଲା ପରେ, ସେହି ଅତ୍ୟାଚାରୀମାନଙ୍କ ବିରୁଦ୍ଧରେ ଲୋକଙ୍କର ସଂଗ୍ରାମ ବିଶେଷ ଭାବରେ ଶକ୍ତ ହୋଇଉଠିଲା, ସଂଗଠିତ ରୂପ ନେଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ

ରୁଷରେ ସର୍ବହରା ଶ୍ରେଣୀ ଏକ ବଳିଷ୍ଠ ଶକ୍ତି ରୂପେ ଦେଖାଦେଲା, ପୁଞ୍ଜିପତିମାନଙ୍କ ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିଦେଲା ।

ସେ ସମୟର ଅଗ୍ରଣୀ ଶିଳ୍ପ-ଶ୍ରମିକମାନେ ଏକ ସଂଗଠିତ ଶ୍ରେଣୀ ଭାବରେ ନିଜର ଶକ୍ତି ସମ୍ବନ୍ଧରେ ବେଶ ସଚେତନ ହୋଇଉଠିଥିଲେ । ୧୮୭୭ରେ ଜଣେ ବୁଣାଳୀ ପିଓଟର ଆଲେକ୍‌ସେଇଭ, ଯାହାଙ୍କୁ କି ବିପ୍ଳବ ପ୍ରଚାର ଲାଗି ଗିରଫ କରାଯାଇଥିଲା, ସେ କଚେରୀରେ ଘୋଷଣା କରିଥିଲେ, "ଲକ୍ଷ ଲକ୍ଷ ଶ୍ରମିକ, ସେମାନଙ୍କର ଶକ୍ତି ବାହୁ ଉତ୍ତୋଳନ କରିବେ ଏବଂ ସୈନ୍ୟମାନଙ୍କ ସଂଗୀନ ମୂନରେ ସୁରକ୍ଷିତ ସ୍ୱେଚ୍ଛାଚାରୀ ଶାସକମାନଙ୍କୁ ଧ୍ୱଂସ କରିଦେବେ ।"

ରୁଷରେ ମାର୍କସବାଦର ପ୍ରସାର ହେବା ସଙ୍ଗେ ସଙ୍ଗେ ତାହା ବିପ୍ଳବୀ ଶ୍ରମିକ-ଶ୍ରେଣୀ ଆନ୍ଦୋଳନକୁ ସଂଗଠିତ କରିବା ଦିଗରେ ଏକ ବିଶେଷ ଭୂମିକା ଗ୍ରହଣ କଲା । ମାର୍କ୍‌ସବାଦୀ ତତ୍ତ୍ୱର ଅନୁଧ୍ୟାନ ଲାଗି କ୍ଷୁଦ୍ର କ୍ଷୁଦ୍ର ଦଳ ବା ଆଲୋଚନା ଚକ୍ରମାନ ପ୍ରକାଶ ପାଇଲା । କଳକାରଖାନାର ଶ୍ରମିକ ଓ ବୁଦ୍ଧିଜୀବୀମାନେ ସେଥିରେ ଯୋଗ ଦେଲେ । ତରୁଣ ଲେନିନ ଏହିପରି ଏକ ଚକ୍ରର ସଭ୍ୟ ହୋଇଥିଲେ ।

ଭ୍ଲାଦିମିର ଇଲିଚ୍ ଲେନିନ (ଉଲିୟାନଭ) ୧୮୭୦ ମସିହା ଏପ୍ରିଲ ୩୦ ତାରିଖରେ ସିମ୍‌ବିର୍ସ୍କ (ବର୍ତ୍ତମାନର ଉଲିୟାନଭସ୍କ) ସହରରେ ଜଣେ ସ୍କୁଲଶିକ୍ଷକଙ୍କ ପରିବାରରେ ଜନ୍ମଗ୍ରହଣ କରିଥିଲେ । ୧୭ବର୍ଷ ବୟସରୁ ସେ ବିପ୍ଳବରେ ଯୋଗ ଦେଇଥିଲେ । ସେ ବିପ୍ଳବୀ କାର୍ଯ୍ୟ ଆରମ୍ଭ କଲା ମୁହୂର୍ତ୍ତରୁ ଜାର କର୍ତ୍ତୃପକ୍ଷ ତାଙ୍କ ପ୍ରତି କଠୋର ହୋଇଉଠିଥିଲା । ତାଙ୍କୁ ନିର୍ଦ୍ଦୟ ଭାବରେ ଦମନ କରିବାକୁ ଯାଇ ବିଶ୍ୱବିଦ୍ୟାଳୟରୁ ବିତାଡ଼ିତ କରିଦେଇଥିଲା ପରେ ତାଙ୍କୁ ଗିରଫ କଲା ଏବଂ ଶେଷରେ ତାଙ୍କୁ ନିର୍ବାସିତ କରିଦେଲା ।

ମାର୍କସବାଦ ସମ୍ବନ୍ଧରେ ତରୁଣ ଲେନିନଙ୍କର ଗଭୀର ଜ୍ଞାନ, ରୁଷର ଜୀବନ କ୍ଷେତ୍ରରେ ସେହି ମାର୍କସବାଦର ପ୍ରୟୋଗ ଦିଗରେ ତାଙ୍କର ବିରାଟ ଦକ୍ଷତା, ଶ୍ରମିକ-ଶ୍ରେଣୀର ବିଜୟ ଯେନି ସୁଦୃଢ଼ ବିଶ୍ୱାସ ଏବଂ ଏକ ସଂଗଠକ ଭାବରେ ତାଙ୍କର ଅସାଧାରଣ ପ୍ରତିଭା—ଏହିସବୁ କାରଣ ଯୋଗୁଁ ସେ ରୁଷୀୟ ମାର୍କସବାଦୀମାନଙ୍କର ସ୍ୱୀକୃତ ନେତା ହୋଇ ଉଠିଥିଲେ ।

ସେ ପରିଷ୍କାର ଭାବେ ଦେଖିଥିଲେ ଯେ ଯଦି ସର୍ବହରାମାନଙ୍କର ଏକ ରାଜନୈତିକ ଦଳ ନ ରହେ, ତେବେ ସେମାନେ ନିଜ ଲାଗି ଏବଂ ସମସ୍ତ ଶ୍ରମଜୀବୀ ଲୋକମାନଙ୍କ ଲାଗି କେବେହେଲେ ସ୍ୱାଧୀନତା ଲାଭ କରିବାରେ ସମର୍ଥ ହେବେ ନାହିଁ । ୧୮୯୩ର ହେମନ୍ତ ଋତୁରେ ସେ ସେଣ୍ଟପିଟରବର୍ଗ (ପରେ ପେଟ୍ରୋଗ୍ରାଡ୍ ଓ ବର୍ତ୍ତମାନ ଲେନିନଗ୍ରାଡ୍ ନାମରେ ପରିଚିତ) ସହରକୁ ଆସିଲେ । ସେଠାର ମାର୍କସବାଦୀ

ଦଳଗୁଡ଼ିକୁ ଅତି ବଳିଷ୍ଠ ଭାବେ ସଂଗଠିତ ଏକ ସଂଗଠନ ମଧ୍ୟରେ ଏକତାବଦ୍ଧ କରିବାରେ ପ୍ରାଣପଣେ ଲାଗିପଡ଼ିଲେ । ୧୮୯୫ରେ ଜାର କର୍ତ୍ତୃପକ୍ଷ ତାଙ୍କୁ ଗିରଫ କଲା । ବହୁଦିନ ଜେଲରେ ରଖିଲା ପରେ ସାଇବେରିଆକୁ ୧୯୦୦ ମସିହାଯାଏ ନିର୍ବାସିତ କରିଦେଲା । ଜେଲରେ ଓ ନିର୍ବାସନରେ, ଉଭୟ କ୍ଷେତ୍ରରେ ସେ ତାଙ୍କର ବିପ୍ଳବୀ କାର୍ଯ୍ୟ ଚଳାଇଥାନ୍ତି । ସେ ଅନେକଗୁଡ଼ିଏ ବହି ଓ ପ୍ରବନ୍ଧ ରଚନା କଲେ । ଶ୍ରମିକ ପାର୍ଟି ଗଠନ ଲାଗି ଯୋଜନାମାନ ପ୍ରସ୍ତୁତ କଲେ । ତେଣେ ଶ୍ରମିକ ସଂଗଠନ-ଗୁଡ଼ିକ ସହିତ ସଦାସର୍ବଦା ସମ୍ପର୍କ ରଖିଥାନ୍ତି ।

୧୮୯୮ରେ ଯେତେବେଳେ ଲେନିନ ନିର୍ବାସନରେ ଥିଲେ, ବିପ୍ଳବୀମାନେ ସେତେବେଳେ ଗୋଟିଏ ରୁଷୀୟ ସୋସାଲ୍ ଡେମୋକ୍ରାଟିକ୍ ଲେବର ପାର୍ଟି ପ୍ରତିଷ୍ଠା ପାଇଁ ଚେଷ୍ଟା କଲେ । ସେମାନେ ତାର 'ପ୍ରଥମ କଂଗ୍ରେସ' ଆହ୍ୱାନ କଲେ । ତାହା ଉକ୍ତ ପାର୍ଟି ଗଠିତ ହେଲା ବୋଲି ଘୋଷଣା କଲା; କିନ୍ତୁ ଅତି ଶୀଘ୍ର ଅନ୍ୟ କେତୋଟି ଦିନ ପରେ ପୁଲିସ ତା'ର କେନ୍ଦ୍ର କମିଟିକୁ ଭାଙ୍ଗିଦେଲା । ବିପ୍ଳବୀମାନେ ଆଉ ବିକ୍ଷିପ୍ତ ପାର୍ଟି ସଂଗଠନଗୁଡ଼ିକୁ ଏକତ୍ରିତ କରିବାରେ ସକ୍ଷମ ହୋଇପାରିଲେ ନାହିଁ ।

ନିର୍ବାସନରୁ ଫେରିଲା ପରେ ଲେନିନ ପାର୍ଟି ଗଠନ ଦିଗରେ ନୂତନ ଶକ୍ତି ଓ ଦ୍ୱିଗୁଣ ଉତ୍ସାହରେ ଲାଗି ପଡ଼ିଲେ । ସେ ବାହାରେ ବିଦେଶରେ ଗୁପ୍ତ ଭାବରେ ଇସ୍କ୍ରା (ସ୍ଫୁଲିଙ୍ଗ) ନାମକ ଖବର କାଗଜ ପ୍ରକାଶ କଲେ । ତାହା ପାର୍ଟିର ସମସ୍ତ ଶକ୍ତିକୁ ସମ୍ମିଳିତ ଓ ଶିକ୍ଷିତ କରିବାର ଏକ କେନ୍ଦ୍ରରେ ପରିଣତ ହେଲା । ଇସ୍କ୍ରା ପାର୍ଟିର ପ୍ରୋଗ୍ରାମ ବା କାର୍ଯ୍ୟକ୍ରମ ଓ ନିୟମ ବିଧାନ ଆଦିର ଚିଠା ପ୍ରକାଶ କଲା: ଦ୍ୱିତୀୟ ପାର୍ଟି କଂଗ୍ରେସର ମୂଳଦୁଆ ପକାଇଲା ।

୧୯୦୩ ରେ ଅନୁଷ୍ଠିତ ଏହି ଦ୍ୱିତୀୟ ପାର୍ଟି କଂଗ୍ରେସରେ ଏକ ଲଢୁଆ ବୈପ୍ଳବିକ ଶ୍ରମିକ ଶ୍ରେଣୀର ପାର୍ଟି ପ୍ରତିଷ୍ଠିତ ହେଲା । ତାହା ପାର୍ଟିର କାର୍ଯ୍ୟକ୍ରମ ଓ ନିୟମାବଳୀ ଗ୍ରହଣ କଲା; ପାର୍ଟିର ନେତୃସ୍ଥାନୀୟ କମିଟିମାନ ନିର୍ବାଚନ କଲା । ପାର୍ଟି ପ୍ରୋଗ୍ରାମର ଆଶୁ ବା ନଗଦ ଲକ୍ଷ୍ୟ ହେଲା—ଜାର ଶାସନକୁ ଧ୍ୱଂସ କରିବା ; ଚରମ ଲକ୍ଷ୍ୟ ରହିଲା—ପୁଞ୍ଜିବାଦକୁ ଧ୍ୱଂସ କରିବା ଓ ସର୍ବହରାର ଏକଛତ୍ର ଶାସନ ପ୍ରତିଷ୍ଠା କରିବା ।

ଦ୍ୱିତୀୟ ପାର୍ଟି କଂଗ୍ରେସରେ ଦୁଇଟି ମତ ସୃଷ୍ଟି ହୋଇଉଠିଲା । ଗୋଟିଏ ହେଲା, ଲେନିନଙ୍କ ନେତୃତ୍ୱରେ ବିପ୍ଳବର ମତ, ଅନ୍ୟଟି ହେଲା ସୁବିଧାବାଦର ମତ । ଏହି ଦୁଇ ମତ ମଧ୍ୟରେ ସଙ୍ଘର୍ଷ ଉତ୍ପନ୍ନ ଶେଷରେ ତାହା ପାର୍ଟିକୁ ଭାଗ ଭାଗ କରିଦେଲା । ଫଳରେ ଶ୍ରମିକଶ୍ରେଣୀ ଆନ୍ଦୋଳନ ମଧ୍ୟରେ ଦୁଇଟି ପାର୍ଟି ଦେଖାଦେଲା,

ଏକ ବିପ୍ଳବୀ ମାର୍କସବାଦୀ ପାର୍ଟି ଓ ଅନ୍ୟଟି ହେଲା ସୁବିଧାବାଦୀ ପାର୍ଟି । ଲେନିନ୍ ଓ ତାଙ୍କର ଅନୁଗାମୀ ବା ସମର୍ଥକମାନେ, ଯେଉଁମାନଙ୍କର ସଂଖ୍ୟା ଥିଲା କଂଗ୍ରେସରେ ଅଧିକ, ସେମାନେ ବଲସେଭିକ ନାମରେ ପରିଚିତ ହେଲେ ( ଅଧିକ ସଂଖ୍ୟକଙ୍କୁ ରୁଷ ଭାଷାରେ ବଲସିନ୍‌ସଭୋ କହନ୍ତି ); ଆଉ ସେମାନଙ୍କର ବିରୋଧୀ ସବୁ ମେନସେଭିକ୍ ନାମରେ ପରିଚିତ ହେଲେ । ( ଅଳ୍ପ ସଂଖ୍ୟକଙ୍କୁ ରୁଷ ଭାଷାରେ ମେନସିନସଭୋ କହନ୍ତି )

ଲେନିନଙ୍କର ବଲସେଭିକ ପାର୍ଟି ହେଲା ଏକ ନୂତନ ଧରଣର ରାଜନୈତିକ ଦଳ । ତାହା ପାଶ୍ଚାତ୍ୟ ଦେଶମାନଙ୍କର ସୁବିଧାବାଦୀ ପାର୍ଟିମାନଙ୍କଠାରୁ ଓ ସେଗୁଡ଼ିକର ରୁଷୀୟ ପ୍ରତିରୂପ ମେନସେଭିକ ପାର୍ଟିଠାରୁ ମୌଳିକଭାବେ ପୃଥକ୍ । ଲେନିନଙ୍କର ପାର୍ଟି, ଲୋକଙ୍କୁ ଜାର ଶାସନ ଓ ପୁଞ୍ଜିବାଦ ଉପରେ ଆକ୍ରମଣ ଚଳାଇବା ଲାଗି ନେତୃତ୍ୱ ଦେଇ ଏକ ନୂତନ ସମାଜବାଦୀ ସମାଜ ନିର୍ମାଣ ସକାଶେ ପରିଚାଳିତ କରି, ସେମାନଙ୍କୁ ଏକ ବିପ୍ଳବ ଲାଗି ପ୍ରସ୍ତୁତ କରିବା ଲକ୍ଷ୍ୟ ସାଧନରେ ଲାଗିପଡ଼ିଲା ।

ଅନ୍ୟ ପଟରେ ସୁବିଧାବାଦୀମାନେ ବୁର୍ଜୁଆମାନଙ୍କ ସହିତ ସାଲିସ ଆପୋଷର ନୀତି ଗ୍ରହଣ କଲେ । ଏକ ବୈପ୍ଳବିକ ଶ୍ରେଣୀସଂଗ୍ରାମ ପରିବର୍ତ୍ତେ ସେମାନେ ଛୋଟ ଛୋଟ ସଂସ୍କାର ଆଣିବା ଚେଷ୍ଟାରେ ଲାଗିଲେ । ତେଣୁ ତାଙ୍କର ନାମ ସଂସ୍କାରବାଦୀ ହେଲା । ସଂସ୍କାରବାଦୀ ନେତାମାନେ ମାର୍କସବାଦକୁ ସଂଶୋଧନ କରିବାକୁ ଆରମ୍ଭ କଲେ । ସେମାନେ ମାର୍କସବାଦରୁ ବୈପ୍ଳବିକ ନୀତିକୁ ପୋଛିଦେଲେ; ତା ପରେ ତାକୁ ଏକଦମ ପ୍ରତ୍ୟାଖ୍ୟାନ କଲେ । କହିଲେ ଯେ ତା'ର ସମସ୍ତ ଭୁଲଗଲାଣି, କାଳ ପୂରିଗଲାଣି । ଅନ୍ୟ ଅର୍ଥରେ ସେମାନେ ଶ୍ରମିକଶ୍ରେଣୀର ଟାଣୁଆ ବୈପ୍ଳବିକ ଅସ୍ତ୍ରକୁ ଏକାବେଳକେ ପାଣିକୁ ଫିଙ୍ଗି ଦେଲେ ।

ମାର୍କସବାଦୀ-ଲେନିନବାଦୀ ପାର୍ଟିର ଗଠନ, କଳା, ରୁଷର ପରବର୍ତ୍ତୀ ସମଗ୍ର ଇତିହାସରେ ଏବଂ ବିଶ୍ୱବ୍ୟାପୀ ଶ୍ରମିକଶ୍ରେଣୀ ଆନ୍ଦୋଳନରେ ଏକ ସର୍ବଶ୍ରେଷ୍ଠ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ରୁଷିଆ ଏକ ଜନବିପ୍ଳବର ପୂର୍ବକ୍ଷଣରେ ପହଞ୍ଚିଥାଏ । ତାହା ବିଶ୍ୱବ୍ୟାପୀ ବୈପ୍ଳବିକ ଆନ୍ଦୋଳନର କେନ୍ଦ୍ର ହୋଇଉଠିଲା । ଲେନିନଙ୍କ ଦ୍ୱାରା ପ୍ରତିଷ୍ଠିତ ବଲସେଭିକ ପାର୍ଟି ସଙ୍ଗେ ସଙ୍ଗେ ବୈପ୍ଳବିକ ସଂଗ୍ରାମରେ ଝାସ ଦେଲା ଓ ସ୍ୱେଚ୍ଛାଚାରୀ ଶାସନ ଉପରେ ଆକ୍ରମଣ ଚଳାଇବାକୁ ଲୋକମାନଙ୍କ ପରିଚାଳିତ କଲା ; ନେତୃତ୍ୱ ଦେଲା ।

# ପ୍ରଥମ ରୁଷ ବିପ୍ଳବ

ପ୍ରଥମ ରୁଷ ବିପ୍ଳବ ଘଟିଲ ୧୯୦୫ ରେ । ଶ୍ରମିକମାନେ ନିଜ ଜୀବନଧାରଣ ଅବସ୍ଥାର ଉନ୍ନତି ଲାଗି ଜାରଙ୍କ ପାଖରେ ଦରଖାସ୍ତ କରିବାକୁ ଯାଇ ପହଞ୍ଚିଥାନ୍ତି କି ନାହିଁ, ଜାର ସରକାର ସେମାନଙ୍କ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଉପରେ ଗୁଳି ଚଳାଇ ଅତି ନିର୍ମମ ଭାବେ ସେମାନଙ୍କୁ ହତ୍ୟା କଲା । ଏହା ପରେ ପରେ ଶ୍ରମଜୀବୀ ଲୋକମାନେ ନିଜର ମୁକ୍ତି ପାଇଁ ଲଢିବା ଲାଗି ନିଷ୍ପତ୍ତି ନେଲେ ; ଜାର ଉପରୁ ସେମାନଙ୍କର ସମସ୍ତ ବିଶ୍ୱାସ ତୁଟିଲେ ।

ଦେଶଯାକ ଶିଳ୍ପ ଶ୍ରମିକମାନେ ବ୍ୟାପକ ଆକାରରେ ରାଜନୈତିକ ଧର୍ମଘଟ ଆରମ୍ଭ କରିଦେଲେ । ବୈପ୍ଳବିକ ସଂଗ୍ରାମର ଧାରା ଭିତରେ ଶ୍ରମିକମାନେ ଶ୍ରମିକ ପ୍ରତିନିଧିଙ୍କ ନେଇ ସୋଭିଏତମାନ ଗଠନ କଲେ । ଏହି ସୋଭିଏତ ସଭା ଓ ସଂଗଠନମାନ ସଶସ୍ତ୍ର ଅଭ୍ୟୁତ୍ଥାନକୁ ପରିଚାଳିତ କଲା, ତାହା ହିଁ ହୋଇଉଠିଲା ନୂତନ ଏକ ବିପ୍ଳବୀ ସରକାରର ଭ୍ରୂଣ ଭଳି । ୧୯୦୫ ଡିସେମ୍ବର ମାସରେ ଆରମ୍ଭ ହୋଇଗଲା ମସ୍କୋର ସଶସ୍ତ୍ର ଅଭ୍ୟୁତ୍ଥାନ । ଜାର ସରକାର ପ୍ରଥମେ ଗୁଳି ଚଳାଇଲା; ଶ୍ରମିକ ବସ୍ତି ଉପରେ କମାଣରୁ ଗୋଳା ବର୍ଷଣ କଲା । ଅପାତତଃରେ ପାଖପର କମ୍ୟୁନିଷ୍ଟବାସୀଙ୍କ ଭଳି ମସ୍କୋର ଶ୍ରମିକମାନେ ୧୦ ଦିନ ଧରି ରାସ୍ତାଘାଟରେ ପ୍ରତିରୋଧର ପ୍ରାଚୀର ବା ବ୍ୟାରିକେଡମାନ ରଚନା କରି ବୀରତ୍ୱର ସହ ଲଢ଼ିଲେ । ଜାର ସରକାର ଅତି ନୃଶଂସଭାବେ ଏହି ସଶସ୍ତ୍ର ଅଭ୍ୟୁତ୍ଥାନକୁ ଦମନ କରିଦେଲା ।

ରୁଷର ଅନ୍ୟାନ୍ୟ ବହୁ ସହର ଓ ଜିଲ୍ଲାକୁ ଏହି ସଶସ୍ତ୍ର ବିପ୍ଳବ ବ୍ୟାପି-ଯାଇଥିଲା । କିନ୍ତୁ ତାହାକୁ ମଧ୍ୟ ନିର୍ମମଭାବରେ ଦମନ କରିଦିଆଗଲା । ବିପ୍ଳବରେ ଜାର ସିଂହାସନ ଜୋରରେ ଥରିଗଲା ସତ, କିନ୍ତୁ ତା'ର ପତନ ହେଲା ନାହିଁ । ଜାର ସରକାର ମୃତ୍ୟୁମୁଖରୁ ଉଦ୍ଧାର ପାଇଲା ପରେ ବିପ୍ଳବୀ ଶ୍ରମିକ, କୃଷକମାନଙ୍କ ଉପରେ ରକ୍ତାକ୍ତ ଦମନର ସୁଅ ଛୁଟାଇଦେଲା ।

ତେବେ ଏହି ପ୍ରଥମ ରୁଷ ବିପ୍ଳବର ତାତ୍ପର୍ଯ୍ୟ କଣ ?

ଏହି ବିପ୍ଳବ ଏକ ସମାଜବାଦୀ ବିପ୍ଳବ ନୁହେଁ; ଏହା ଏକ ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବ । ଏକ ସମାଜବାଦୀ ସମାଜ ପ୍ରତିଷ୍ଠା କରିବା ଏହାର ଲକ୍ଷ୍ୟ ନ ଥିଲା । ଏହାର ଲକ୍ଷ୍ୟ ଥିଲା ରୁଷର ଅଗ୍ରଗତିର ପ୍ରଧାନ ପ୍ରତିବନ୍ଧକ ଜାରର ସ୍ୱେଚ୍ଛାଚାରୀ ଶାସନ ଓ ଦାସପ୍ରଥାକୁ ଲୋପ କରିବା । ବିପ୍ଳବର ପ୍ରହାର ସେହି ଦିଗରେ ଉଦ୍ଦିଷ୍ଟ ଥିଲା । ଜାର ଶାସନ ଓ ଦାସ ପ୍ରଥାର ଅବଶେଷକୁ ଲୋପ କରିବା, ବଡ଼ ବଡ ଜମିମାଲିକମାନଙ୍କ ହାତରୁ ଜମି କାଢ଼ିନେବା, ଶ୍ରମିକମାନଙ୍କ ଲାଗି

ଆଠ ଘଣ୍ଟାର ଶ୍ରମଦିନ ପ୍ରଚଳନ କରିବା ଏବଂ ଲୋକସାଧାରଣଙ୍କୁ ଗଣତାନ୍ତ୍ରିକ ଅଧିକାର ଓ ସ୍ୱାଧୀନତା ପ୍ରଦାନ କରିବା—ଏହିସବୁ ଥିଲା ବିପ୍ଳବର ମୁଖ୍ୟ ଉଦ୍ଦେଶ୍ୟ ।

ମାତ୍ର ଜାରଶାହୀ ଶାସନର ଲୋପ ଥିଲା ପ୍ରଥମଗୁରୁତ୍ୱ କାର୍ଯ୍ୟ । ଲେନିନ ଏହା ସେତେବେଳେ ବୁଝାଇଦେଇଥିଲେ ।

ତେଣୁ ସର୍ବହରାଙ୍କ ପୂର୍ଣ୍ଣ ମୁକ୍ତି ହାସଲ କରିବାକୁ ହେଲେ ସେହି ଜାରଶାହୀ ଲୋପର ପରବର୍ତ୍ତୀ ସ୍ତରକୁ ଗତି କରିବାକୁ ହେବ । ଗରିବ କୃଷକମାନଙ୍କ ସହିତ ମିଶି ବୁର୍ଜୁଆ ଶାସନ ଧ୍ୱଂସ କରିବାକୁ ହେବ, ଆଉ ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବକୁ ସମାଜବାଦୀ ବିପ୍ଳବରେ ରୂପାନ୍ତରିତ କରିବାକୁ ପଡ଼ିବ ।

ବିପ୍ଳବର ପରାଜୟ ଘଟିଲେ ମଧ୍ୟ ତାହା ଏକ ଗଭୀର ଚିହ୍ନ ରଖିଦେଇଗଲା । ତାହା ଜାରର ସ୍ୱେଚ୍ଛାଚାରୀ ଶାସନକୁ ଦୁର୍ବଳ କରିଦେଲା । ଆହୁରି ବି ତାହା ଶ୍ରମିକ-କୃଷକମାନଙ୍କ ପକ୍ଷରେ ଏକ ବିରାଟ ଶିକ୍ଷା ହେଲା । ତାହା ଦର୍ଶାଇଦେଲା ଯେ କୃଷକମାନଙ୍କ ସହିତ ମିତ୍ରତା କରି ଏକଜୁଟ ହୋଇ ଏବଂ ଏକ ବିପ୍ଳବୀ ସର୍ବହରା ପାର୍ଟି ଦ୍ୱାରା ପରିଚାଳିତ ହୋଇ ଏକମାତ୍ର ଶ୍ରମିକଶ୍ରେଣୀ ହିଁ ଜାର ଶାସନ ଓ ଜମିମାଲିକ-ମାନଙ୍କୁ ଲୋପ କରିବାକୁ ସମର୍ଥ ହେବ ।

ପ୍ରଥମ ବିପ୍ଳବର ପ୍ରଧାନ ତାତ୍ପର୍ଯ୍ୟ ହେଲା ଯେ ତା ଦ୍ୱାରା ପାର୍ଟି, ଶ୍ରମିକ ଓ କୃଷକମାନେ ବିଶେଷ ଅଭିଜ୍ଞତା ଲାଭ କଲେ । ୧୯୧୭ ର ବିପ୍ଳବକୁ ବିଜୟ-ମଣ୍ଡିତ କରିବାରେ ତାହା ସେମାନଙ୍କୁ ସାହାଯ୍ୟ କଲା ।

୧୯୦୫ ବିପ୍ଳବକୁ ଦମନ କରିଦେଲା ପରେ ଜାର ଶାସନ ଶ୍ରମିକ ଓ କୃଷକମାନଙ୍କ ବିରୁଦ୍ଧରେ, ବିଶେଷ କରି ବଲ୍‌ସେଭିକମାନଙ୍କ ପ୍ରତି ଅତି କଠୋର ଦମନମୂଳକ ବ୍ୟବସ୍ଥା ଗ୍ରହଣ କଲା । ଏକ ବ୍ୟାପକ ଧରଣରେ ଗିରଫଦାରି ଓ ହତ୍ୟାର ଯୁଗ ଆରମ୍ଭ ହୋଇଗଲା । ତେବେ ଲେନିନବାଦୀ ବଲ୍‌ସେଭିକମାନେ ଏଥିରେ ହତୋତ୍ସାହ ହୋଇ ନ ଥିଲେ । ସେମାନେ ପୂର୍ଣ୍ଣ ଆତ୍ମଗୋପନ କରି କାମରେ ଲାଗିପଡ଼ିଲେ, ପୂର୍ବଭଳି ସେମାନଙ୍କର ପାର୍ଟି ସଂଗଠନ ଗଠନ କଲେ; ଶ୍ରମିକମାନଙ୍କ ସହିତ ସଂପର୍କକୁ ବ୍ୟାପକ କରିବାରେ ଲାଗିଲେ । ଲେନିନ ପାର୍ଟିକୁ ଶିକ୍ଷା ଦେଇ କହିଲେ ଯେ ପ୍ରତିକ୍ରିୟାର ଏହି ଔଦ୍ଧତ୍ୟ, ଏହି ଅଧିପତ୍ୟ ବେଶି ଦିନ ତିଷ୍ଠିବ ନାହିଁ । ଆଉ ଏକ ବିପ୍ଳବ ଆସିବ । ସେଥିଲାଗି ଧୈର୍ଯ୍ୟର ସହିତ ପ୍ରସ୍ତୁତ ହେବାକୁ ହେବ ।

ଘଟଣାବଳୀର ବିକାଶରୁ ଜଣାଯାଏ ଯେ ବଲ୍‌ସେଭିକ୍‌ମାନେ ଅବସ୍ଥାକୁ ସଠିକ ଭାବେ ବୁଝିଥିଲେ । କେତେକ ବର୍ଷ ପରେ ଏକ ନୂତନ ବିପ୍ଳବୀ ଅଭ୍ୟୁତ୍ଥାନ ଯୁଗରେ ଆରମ୍ଭ ହୋଇଗଲା ।

# ପ୍ରଥମ ବିଶ୍ୱଯୁଦ୍ଧ ଓ ଫେବ୍ରୁୟାରୀ ବିପ୍ଳବ

୧୯୧୪ ଖ୍ରୀଷ୍ଟାବ୍ଦରେ ବିଶ୍ୱଯୁଦ୍ଧର ସୂତ୍ରପାତ ହେଲା । ଏଥିରେ ଦୁଇଟି ସାମ୍ରାଜ୍ୟବାଦୀ ଗୋଷ୍ଠୀ ମଧ୍ୟରେ ଯେଉଁ ସଂଘର୍ଷ ଚାଲିଲା, ତାହା ଫଳରେ ବୈପ୍ଳବିକ ଅଭ୍ୟୁତ୍ଥାନରେ ବ୍ୟାଘାତ ଆସିଲା ।

ଯୁଦ୍ଧ ଫଳରେ ଅପରିମେୟ କ୍ଷତି ଘଟିଲା । ଦୁଃଖ ଦୈନ୍ୟର ସୀମା ରହିଲା ନାହିଁ । ପ୍ରାୟ ୭୪୦ ଲକ୍ଷ ଲୋକଙ୍କୁ ତାଙ୍କର ଦୈନନ୍ଦିନ ଶାନ୍ତିପୂର୍ଣ୍ଣ କାର୍ଯ୍ୟକ୍ଷେତ୍ରରୁ ଉଠା-ଣାଯାଇ ସୈନ୍ୟବାହିନୀରେ ଭର୍ତ୍ତି କରିଦିଆହେଲା । ଚାରିବର୍ଷ କାଳ ଯୁଦ୍ଧ ଭିତରେ ପ୍ରାୟ ଏକ କୋଟିରୁ ଊର୍ଦ୍ଧ୍ୱ ଲୋକ ରଣକ୍ଷେତ୍ରରେ ପ୍ରାଣ ହରାଇଲେ । ତା'ର ପ୍ରାୟ ଦୁଇଗୁଣ ଲୋକ ଆହତ ଓ ପଙ୍ଗୁ ହୋଇଗଲେ ।

ଯେତେବେଳେ ଯୁଦ୍ଧ ଲାଗିଗଲା, ସବୁ ଦେଶର ପୁଞ୍ଜିପତି ଓ ଜମିମାଲିକମାନେ ସେତେବେଳେ ସୈନ୍ୟମାନଙ୍କୁ କହିଲେ ଯେ 'ସେମାନଙ୍କର ମାତୃଭୂମି ଲାଗି' ସେମାନଙ୍କୁ ଲଢ଼ିବାକୁ ପଡ଼ିବ । ପ୍ରତ୍ୟେକ ସରକାର ପ୍ରମାଣ କରିବାକୁ ଚେଷ୍ଟା କଲା ଯେ ସେ ନିଜେ ପ୍ରଥମେ ଅନ୍ୟ ଦେଶ ଆକ୍ରମଣ କରିନାହିଁ, ଆଉ ଅନ୍ୟ ଦେଶ ଦ୍ୱାରା ଆକ୍ରାନ୍ତ ହୋଇଛି । ଏଗୁଡ଼ାକ କେବଳ ତାହା ମିଛ ବ୍ୟତୀତ ଅନ୍ୟ କିଛି ନ ଥିଲା । ମୁଷ୍ଟିମେୟ ଶୋଷଣକାରୀଙ୍କର ଅଧିକ ଲାଭ ଆଶାରେ ଓ ଧନସଂପଦର ବୃଦ୍ଧି ଲାଗି ଏହି ଯୁଦ୍ଧ ଚାଲିଥିଲା । ଦୁଇପକ୍ଷଯାକ ଅନ୍ୟାୟ ଓ ଲୁଣ୍ଠନର ସାମ୍ରାଜ୍ୟବାଦୀ ଯୁଦ୍ଧରେ ଲିପ୍ତ ଥିଲେ ।

ରୁଷରେ ମେନସେଭିକ ଓ ସୋସାଲିଷ୍ଟ ରିଭଲ୍ୟୁସନାରୀ ନେତାମାନେ, ଏବଂ ପଶ୍ଚିମ ଇଉରୋପରେ ଦକ୍ଷିଣପନ୍ଥୀ ସୋସାଲ ଡମୋକ୍ରାଟ ଓ ସୋସାଲିଷ୍ଟମାନେ ଲୋକମାନଙ୍କୁ ଠକିବା ଓ ପ୍ରତାରିତ କରିବା ଦିଗରେ ବୁର୍ଜୁଆମାନଙ୍କୁ ସାହାଯ୍ୟ କଲେ । ଏହି ସାଲିସପନ୍ଥୀ ପାର୍ଟିମାନେ ସାମ୍ରାଜ୍ୟବାଦୀ ଯୁଦ୍ଧକୁ ସମର୍ଥନ ଦେଲେ ; ଜାତି ବିରୁଦ୍ଧରେ ଜାତି, ଶ୍ରମିକଶ୍ରେଣୀ ବିରୁଦ୍ଧରେ ଶ୍ରମିକଶ୍ରେଣୀକୁ ଉତ୍ତେଜିତ କରିବାରେ, ମତାଇବାରେ ଲାଗିଲେ । ସମାଜବାଦୀ ଆଦର୍ଶ ପ୍ରତି ସେମାନେ ବିଶ୍ୱାସ-ଘାତକ ବୋଲି ଲେନିନ ସେମାନଙ୍କୁ ନିନ୍ଦା କରିଥିଲେ ।

ସମାଜବାଦର ଆଦର୍ଶ କିମ୍ବା ସବୁ ଦେଶର ଶ୍ରମିକମାନଙ୍କ ମଧ୍ୟରେ ଭ୍ରାତୃତ୍ୱ ଓ ସୌହାର୍ଦ୍ଦ୍ୟର ମନ୍ତ୍ରରୁ ବଲସେଭିକ ପାର୍ଟି ଟଳେ ହେଲେ ଘୁଞ୍ଚି ନ ଥିଲା । ଏହା ହିଁ ହେଉଛି ଏକମାତ୍ର ପାର୍ଟି, ଯିଏ କି ଧାରାବାହିକ ମାର୍କସବାଦୀ କାର୍ଯ୍ୟକ୍ରମ ପ୍ରସ୍ତୁତ କଲା; ତାକୁ କାର୍ଯ୍ୟକାରୀ କରିବା ଦିଗରେ ସାହସର ସହ ଲଢ଼ିଲା; ଯୁଦ୍ଧର ସାମ୍ରାଜ୍ୟବାଦୀ ଚରିତ୍ରକୁ ଖୋଲିଦେବାରେ ଲାଗିଲା; ସବୁ ଦେଶର ଶ୍ରମିକମାନଙ୍କୁ ଆନ୍ତର୍ଜାତୀୟ ସହହିତ ସଂହତିର ନିଦର୍ଶନ ଦେବାଲାଗି ଆହ୍ୱାନ କଲା ; ଘୋଷଣା

କଲ,ବଣ୍ଡର : ଶ୍ରମିକମାନଙ୍କର ଶତ୍ରୁ ଏକ—ବୁର୍ଜୁଆମାନେ । ସେମାନଙ୍କର ଲକ୍ଷ୍ୟ ମଧ୍ଯ ଏକ—ପୁଞ୍ଜିବାଦର ଧ୍ୱଂସସାଧନ ଓ ସମାଜବାଦର ବିଜୟ ହାସଲ । ବଲସେଭିକମାନେ ଯୁଦ୍ଧରେ ପୁଞ୍ଜିବାଦୀ ଦେଶରେ ଶ୍ରମିକମାନଙ୍କୁ ଆହ୍ୱାନ କଲେ ଯେ ସେମାନେ ପୁଞ୍ଜିପତି ଓ ଜମିଦାରଙ୍କ ବିରୁଦ୍ଧରେ ନିଜ ନିଜର ବନ୍ଧୁକର ମୁହଁକୁ ବୁଲାଇଦଅନ୍ତୁ, ସାମ୍ରାଜ୍ୟବାଦୀ ଯୁଦ୍ଧକୁ ଗୃହଯୁଦ୍ଧରେ ପରିବର୍ତ୍ତିତ କରନ୍ତୁ । ଅନ୍ୟ ଭାଷାରେ କହିଲେ, ବିପ୍ଳବରେ ଯୋଗ ଦିଅନ୍ତୁ, ତାକୁ ସଫଳ କରନ୍ତୁ ।

ଯୁଦ୍ଧ ଓ ତା ସହିତ ସୃଷ୍ଟିଥିବା ଅର୍ଥନୈତିକ ଅରାଜକତା, ଏ ଦୁଇଟିର ବୋଝ ଶ୍ରମଜୀବୀ ଲୋକମାନଙ୍କ ଉପରେ ପଡ଼ିଲା । ତାହା ଶ୍ରମିକ, କୃଷକମାନଙ୍କ ମଧ୍ୟରେ ଅସନ୍ତୋଷ ବୃଦ୍ଧି କଲା, ଶ୍ରମିକଶ୍ରେଣୀର ବିପ୍ଳବୀ ଆନ୍ଦୋଳନ ତୀବ୍ର ଓ ବଳିଷ୍ଠ ହେବାକୁ ଲାଗିଲା । ଦେଶ ଭିତରେ ସର୍ବୋଇ ବ୍ୟାପାରରେ ଏବଂ ରଣକ୍ଷେତ୍ରରେ, ଦେଶର ମଧ୍ୟ ସ୍ଥଳରେ ଓ ବାହାର ଅଞ୍ଚଳମାନଙ୍କରେ ଅଶାନ୍ତି ବିକ୍ଷୋଭ ଅାଦି ଦେଖାଦେଲା । ଅଧିକରୁ ଅଧିକ ଲୋକ ଅନୁଭବ କଲେ, ଜାର ଶାସନକୁ ଧ୍ୱଂସ କରିବା ହିଁ ହେଉଛି ଏକମାତ୍ର ପନ୍ଥା ।

ରୁଷରେ ପୁଣି ଏକ ବିପ୍ଳବର ସୂତ୍ରପାତ ହେଲା । ପେଟ୍ରୋଗାଦର ଶ୍ରମିକମାନେ ସର୍ବପ୍ରଥମେ ଜାର ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ୧୯୧୭ ଫେବୃୟାରୀ ମାସରେ, ବଲସେଭିକ ପାର୍ଟିର ଅହ୍ୱାନରେ ସେମାନେ ସାଧାରଣ ଧର୍ମଘଟ ଆରମ୍ଭ କରିଦେଲେ, ରାଜଧାନୀର ରାଜପଥକୁ ବାହାରିପଡ଼ିଲେ ଏବଂ ପେଟ୍ରୋଗ୍ରାଦର ସୈନ୍ୟ-ବାହିନୀର ସମର୍ଥନ ଲାଭ କଲେ । ସେମାନଙ୍କର ଧ୍ୱନି ହେଲା, "ଜାର ଶାସନ ଧ୍ୱଂସ ହେଉ", "ଯୁଦ୍ଧ ବନ୍ଦ ହେଉ", "ଆମେ ଖାଦ୍ୟ ଚାହୁଁ ।"

ଜାର ସରକାର ଏହି ଅଭ୍ୟୁତ୍ଥାନକୁ ଦମନ କରିବାକୁ ଚେଷ୍ଟା କଲା ; କିନ୍ତୁ ବନ୍ଧୁକ ଥିଲା ସୈନ୍ୟମାନଙ୍କ ହାତରେ, ଆଉ ସୈନ୍ୟମାନେ ଯୋଗ ଦେଇଥିଲେ ଶ୍ରମିକମାନଙ୍କ ହିତ । ୧୯୧୭ ଫେବୃୟାରୀ ୨୭ ତାରିଖରେ (ନୂଆ ହିସାବରେ ମାର୍ଚ୍ଚ ୧୨ ତାରିଖରେ) ଘୃଣ୍ୟ ଜାରଶାହୀ ଶାସନକୁ ଲୋକେ ଧ୍ୱଂସ କରିଦେଲେ । ରୁଷରେ ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବ ବିଜୟମଣ୍ଡିତ ହେଲା ।

ଜାର ଶାସନର ପତନ ଘଟିବାର ଠିକ୍ ସଂଗେ ସଂଗେ ପ୍ରତ୍ୟେକ ସ୍ଥାନରେ ଶ୍ରମିକ ଓ ସୈନ୍ୟମାନେ ମିଶି ଶ୍ରମିକ ଓ ସୈନ୍ୟପ୍ରତିନିଧିମାନଙ୍କର ସୋଭିଏତ୍ ଗଠନ କଲେ । ତେବେ ସାଲିସପନ୍ଥୀ ସୋସାଲିଷ୍ଟ ରିଭଲ୍ୟୁସନାରୀମାନେ ଓ ମେନସେଭିକ ଦଳ ଏହିସବୁ ସୋଭିଏତମାନଙ୍କରେ, ଏପରିକି ପେଟ୍ରୋଗ୍ରାଦ ଓ ମସ୍କୋ ସୋଭିଏତ୍‌ରେ ଅଧିକସଂଖ୍ୟକ ସ୍ଥାନ ଦଖଲ କଲେ । ଯେତେବେଳେ ବଲସେଭିକ୍-ମାନେ ରାସ୍ତାଘାଟରେ ବିପ୍ଳବୀ ସଂଗ୍ରାମ ପରିଚାଳନାରେ ବ୍ୟସ୍ତ, ସେତିକିବେଳେ

ମେନସେଭିକମାନେ ସେଇ ସମ୍ମିଳନୀମାନଙ୍କରେ ବଡ଼ ଚମତ୍କାର ଫାଙ୍କପୂର୍ଣ୍ଣ ବକ୍ତୃତା-ମାନ ଝାଡ଼ି ନିଜ ନିଜର ଲୋକଙ୍କୁ ସୋଭିଏତ୍‌ମାନଙ୍କରେ ଭର୍ତ୍ତି କରିଦେଲେ । ଫଳରେ, ଶ୍ରମିକ ଓ କୃଷକମାନଙ୍କ ସ୍ୱାର୍ଥର ପ୍ରକୃତ ପ୍ରହରୀ ବଲସେଭିକମାନେ ସୋଭିଏତ୍‌ଗୁଡ଼ିକରେ ସଂଖ୍ୟାଲଘୁ ହୋଇଗଲେ ।

ଶ୍ରମିକ ଓ ସୈନ୍ୟମାନେ ସୋଭିଏତ୍‌କୁ ଜନସାଧାରଣଙ୍କ କ୍ଷମତାର ସଂଗଠନ ସ୍ୱରୂପରେ ଦେଖୁଥିଲେ । ସେମାନେ ବିଶ୍ୱାସ କରୁଥିଲେ ଯେ, ସୋଭିଏତ୍ ଲୋକଙ୍କର ବୈପ୍ଳବିକ ଦାବୀମାନ ପୂରଣ କରିବ, ସର୍ବପ୍ରଥମେ ଦେଶକୁ ସାମ୍ରାଜ୍ୟବାଦୀ ଯୁଦ୍ଧ ଭିତରୁ ବାହାର କରିଆଣିବ, ଶାନ୍ତି ସ୍ଥାପନ କରିବ, ଶ୍ରମିକମାନଙ୍କୁ ଆଠଘଣ୍ଟାର ଶ୍ରମଦିନ ପ୍ରଦାନ କରିବ, କୃଷକମାନଙ୍କୁ ଜମି ଦେବ । ସୋଭିଏତ୍‌ଗୁଡ଼ିକ ପଛରେ ସମସ୍ତ ଜନସାଧାରଣଙ୍କର ସମର୍ଥନ ଥିଲା । ତାହା ଏସବୁ ଅଳ୍ପ ଆୟାସରେ କରି-ପାରିଥାନ୍ତା : କିନ୍ତୁ ସୋଭିଏତ୍‌ରେ ଥିବା ସୋସାଲିଷ୍ଟ ରିଭଲ୍ୟୁସନାରୀ ଓ ମେନସେଭିକ୍-ମାନଙ୍କର ଶାନ୍ତି ଆଣିବା କି ଲୋକମାନଙ୍କର ବୈପ୍ଳବିକ ଦାବୀମାନ ପୂରଣ କରିବାର ଅଭିପ୍ରାୟ ଆଦୌ ନ ଥିଲା । ସେମାନେ ଚାହୁଁଥିଲେ, ବୁର୍ଜୁଆମାନଙ୍କ ହାତରେ କ୍ଷମତା ରହୁ । ଏଣୁ, ଏକ ଅସ୍ଥାୟୀ ସରକାର ଗଠନ କରିବା ଢଙ୍ଗରେ ସେମାନେ ବୁର୍ଜୁଆମାନଙ୍କୁ ସାହାଯ୍ୟ କଲେ । ସେହି ସରକାରରେ ପୁଞ୍ଜିପତି ଓ ଜମିଦାରମାନେ ରହିଲେ । ତାହା ଏପରି ନୀତି ଅନୁସରଣ କଲା, ଯାହା ଶ୍ରମିକ-କୃଷକମାନଙ୍କ ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା । ସେଇ ସରକାର ସାମ୍ରାଜ୍ୟବାଦୀ ଯୁଦ୍ଧ ଚାଲୁ ରଖିବା ପକ୍ଷରେ ଛିଡ଼ା ହେଲା ।

ଦେଶ ଭିତରେ ଗୋଟାଏ ଦ୍ୱୈତ କ୍ଷମତା ଦେଖାଦେଲା : କ୍ଷମତା ଅସ୍ଥାୟୀ ସରକାର ଏବଂ ଶ୍ରମିକ ଓ ସୈନିକମାନଙ୍କର ପ୍ରତିନିଧିଙ୍କ ସୋଭିଏତ୍—ଉଭୟଙ୍କ ହାତରେ ରହିଲା । ସୋସାଲିଷ୍ଟ ରିଭଲ୍ୟୁସନାରୀ ଓ ମେନସେଭିକମାନେ, ଯେଉଁମାନେ କି ସୋଭିଏତ୍‌ଗୁଡ଼ିକୁ କଣ୍ଟ୍ରୋଲ କରୁଥିଲେ, ସେମାନେ ସ୍ୱତଃପ୍ରବୃତ୍ତ ହୋଇ ବୁର୍ଜୁଆମାନଙ୍କ ହାତରେ କ୍ଷମତା ସମର୍ପଣ କରିଦେଲେ ; ଅସ୍ଥାୟୀ ବୁର୍ଜୁଆ ସରକାରକୁ ସମର୍ଥନ କରିବା ଲାଗି ସଂକଳ୍ପ କଲେ ।

## ୨—ମହାନ୍ ଅକ୍‌ଟୋବର ସମାଜବାଦୀ ବିପ୍ଳବ

ବଲସେଭିକମାନେ ବେଆଇନ ଭାବେ ଗୋପନରେ କାମ କରୁଥିଲେ । ସେମାନେ ବାହାରକୁ ବାହାରିପଡ଼ି ବୈପ୍ଳବିକ ସଂଗ୍ରାମର ନେତୃତ୍ୱ ଗ୍ରହଣ କଲେ । ନୂତନ ଅବସ୍ଥାରେ କିପରି କାର୍ଯ୍ୟ କରିବାକୁ ପଡ଼ିବ ଏବଂ କେଉଁ ମାର୍ଗରେ ବିପ୍ଳବକୁ ପରିଚାଳିତ କରିବାକୁ ହେବ, ତାହା ସେମାନଙ୍କୁ ସ୍ଥିର କରିବାକୁ ହେଲା ।

ସବୁ ବୁର୍ଜୁଆ ଓ ପେଟି-ବୁର୍ଜୁଆ ପାର୍ଟି, ବିପ୍ଳବର ପଥରୋଧ କରିବାକୁ ଉଦ୍ୟମ କଲେ । ସେମାନେ ଘଟଣାବଳୀର ସ୍ରୋତକୁ ପଛକୁ ଫେରାଇନେଇ ପୁଞ୍ଜିବାଦକୁ ରକ୍ଷା କରିବାପାଇଁ ଚାହୁଁଥିଲେ । ସେତେବେଳେ ବଲସେଭିକ ପାର୍ଟି ଏକମାତ୍ର ବିପ୍ଳବୀ ପାର୍ଟି ବୋଲି ପ୍ରମାଣିତ ହେଲା ।

## ସମାଜବାଦୀ ବିପ୍ଳବ ପାଇଁ ମାର୍ଗ ନିର୍ମାଣ

ଦଶବର୍ଷ ନିର୍ବାସନ ପରେ ୧୯୧୭ ଏପ୍ରିଲ ମାସରେ ଲେନିନ ରୁଷକୁ ଫେରିଲେ । ସେ ପାର୍ଟି, ଶ୍ରମିକଶ୍ରେଣୀ ଓ ଶ୍ରମଜୀବୀ ଲୋକମାନଙ୍କର କ'ଣ କର୍ତ୍ତବ୍ୟ ହେବ, ତାହା ପରିଷ୍କାରଭାବେନିର୍ଣ୍ଣୟ କଲେ । ସେ କହିଲେ, ବିପ୍ଳବର ପ୍ରଥମ ପର୍ଯ୍ୟାୟରେ ବୁର୍ଜୁଆମାନଙ୍କ ହାତରେ କ୍ଷମତା ପଡ଼ିଥିଲା ; ତାହା ଏବେ ଶେଷ ହୋଇଗଲା । ଏବେ ଆମକୁ ଦ୍ୱିତୀୟ ପର୍ଯ୍ୟାୟକୁ, ଅର୍ଥାତ୍ ସମାଜବାଦୀ ପର୍ଯ୍ୟାୟକୁ ଯିବାକୁ ପଡ଼ିବ । ଏହି ପର୍ଯ୍ୟାୟରେ ସର୍ବହରା ଓ ଗରିବ କୃଷକମାନଙ୍କ ହାତକୁ କ୍ଷମତା ଆସିବାକୁ ହେବ ।

ସେତେବେଳେ ଲେନିନ ବଳପୂର୍ବକ ଅସ୍ଥାୟୀ ସରକାରକୁ ଭାଙ୍ଗିଦେବାଲାଗି ଆହ୍ୱାନ ଦେଇ ନ ଥିଲେ । କାରଣ, ସୋଭିଏତଗୁଡ଼ିକ ତାକୁ ସମର୍ଥନ କରୁଥିଲେ, ଏବଂ ସୋଭିଏତ୍ ପଛରେ ଲୋକସାଧାରଣଙ୍କର ସମର୍ଥନ ଥିଲା । ସେ କହିଲେ, ରୁଷରେ ସ୍ୱେଚ୍ଛାଚାରୀ ଶାସନର ପତନ ଓ ସୋଭିଏତ୍ ଗଠନ ଫଳରେ ଏକ ଶାନ୍ତିପୂର୍ଣ୍ଣ ସମାଜବାଦୀ ବିପ୍ଳବ ଲାଗି ଓ ମେହନତକାରୀ ଜନସାଧାରଣଙ୍କ ହାତକୁ ଶାନ୍ତିପୂର୍ଣ୍ଣ କ୍ଷମତା ହସ୍ତାନ୍ତର ଲାଗି ଏକ ଅତ୍ୟନ୍ତ ଅନୁକୂଳ ଅବସ୍ଥା ସୃଷ୍ଟି ହୋଇଛି ।

ତେବେ ବୁର୍ଜୁଆ ଓ ଜମିମାଲିକମାନଙ୍କ ପାଖରୁ ଶ୍ରମିକ ଓ କୃଷକମାନଙ୍କ ହାତକୁ ଶାନ୍ତିପୂର୍ଣ୍ଣ ଭାବରେ କ୍ଷମତା ହସ୍ତାନ୍ତରକୁ ଲେନିନ ଚିନ୍ତା କରିଥିଲେ କିପରି ?

ଲେନିନ ଦର୍ଶାଇଥିଲେ ଯେ ଲୋକମାନଙ୍କ ଭିତରେ ନିରବଚ୍ଛିନ୍ନ ପ୍ରଚାର ବା ବୁଝାଇବା କାର୍ଯ୍ୟ ଚଳାଇବାକୁ ପଡ଼ିବ । ଏହା ଦ୍ୱାରା ବଲସେଭିକମାନେ ଅଧିକାଂଶ ସୈନ୍ୟ, ଶ୍ରମିକ ଓ କୃଷକମାନଙ୍କୁ ଆପଣା ପକ୍ଷକୁ ଆଣିପାରିବେ ; ସେ ଭିତ୍ତିରେ ବଲସେଭିକ ସୋଭିଏତ୍ କରିପାରିବେ । ତା ପରେ ସୋଭିଏତର ନୀତି ବଦଳାଇବା ଓ ସମସ୍ତ କ୍ଷମତା ସୋଭିଏତ୍ ହାତରେ ନ୍ୟସ୍ତ କରିବା ସମ୍ଭବ ହେବ । ଲୋକମାନେ ସୋଭିଏତ୍‌କୁ ସମର୍ଥନ କରୁଛନ୍ତି । ଲୋକଙ୍କ ହାତରେ ଅସ୍ତ୍ରଶସ୍ତ୍ର ଅଛି । ତେଣୁ ବୁର୍ଜୁଆମାନେ ସେମାନଙ୍କ ଇଚ୍ଛା ବିରୁଦ୍ଧରେ ଯିବାକୁ ସମର୍ଥ ହେବେ ନାହିଁ ।

ଏହି ଭାବରେ ସମାଜବାଦୀ ବିପ୍ଳବ, ସଶସ୍ତ୍ର ଅଭ୍ୟୁତ୍ଥାନ ବିନା କାର୍ଯ୍ୟକାରୀ ହୋଇ ପାରିଥାନ୍ତା ; ସୋଭିଏତଗୁଡ଼ିକ କ୍ଷମତା ଦଖଲ କରିପାରିଥାନ୍ତେ ;

ସମାଜବାଦୀ ବିପ୍ଳବ ଦ୍ୱାରା ଧ୍ୱଂସପ୍ରାପ୍ତ ଜମିମାଲିକ ଓ ପୁଞ୍ଜିପତିଙ୍କ ଶାସନ ପରିବର୍ତ୍ତେ ଶ୍ରମିକ ଓ କୃଷକମାନଙ୍କର ଶାସନ ପ୍ରତିଷ୍ଠିତ ହୋଇପାରିଥାନ୍ତା । "ସମସ୍ତ କ୍ଷମତା ସୋଭିଏତ୍‌କୁ ଦିଅ", ଏହା ହିଁ ଥିଲା ବଲସେଭିକମାନଙ୍କର ପ୍ରଧାନ ସ୍ଲୋଗାନ ।

ଲେନିନ୍‌ଙ୍କର ନିର୍ଦ୍ଦେଶ ଅନୁଯାୟୀ ବଲସେଭିକ ପାର୍ଟି, ସମାଜବାଦୀ ବିପ୍ଳବ ଦିଗରେ ଶାନ୍ତିପୂର୍ଣ୍ଣ ମଧ୍ୟବର୍ତ୍ତିକାଳୀନ ପରିଗମନ ଲାଗି କାର୍ଯ୍ୟ ଆରମ୍ଭ କରିଦେଲା । ଅସ୍ଥାୟୀ ସରକାରର ସାମ୍ରାଜ୍ୟବାଦୀ ଲାଗିର ମୁଖା ଖୋଲିଦେଲା ଏବଂ ଜନବିରୋଧୀ ସରକାରରେ ଯୋଗ ଦେଇଥିବା ସୋସାଲିଷ୍ଟ ରିଭଲ୍ୟୁସନାରି ଓ ମେନସେଭିକ୍ ନେତାମାନଙ୍କର ବିଶ୍ୱାସଘାତକ କାମଦାମକୁ ପଦାରେ ପକାଇଦେଲା । ବ୍ୟାପକ ଭାବରେ ଜନସାଧାରଣଙ୍କୁ ନିଜ ପକ୍ଷକୁ ଟାଣିଆଣିବା ଦିଗରେ ଓ ସୋଭିଏତ୍‌ରେ ସଂଖ୍ୟାଗରିଷ୍ଠତା ହାସଲ ସକାଶେ କାମରେ ଲାଗିପଡ଼ିଲା ।

ଅସ୍ଥାୟୀ ସରକାର ସମସ୍ତ ପ୍ରକାର ଗୁଲିବାଜି ଓ କୌଶଳ ଦ୍ୱାରା ଲୋକଙ୍କ ଦାବୀ ପୂରଣକୁ ଗଡ଼ାଇବାରେ ଲାଗିଲା ଅନ୍ୟ ଦିଗରେ ସୋସାଲିଷ୍ଟ ରିଭଲ୍ୟୁସନାରି ଓ ମେନସେଭିକ୍‌ମାନଙ୍କ ଆୟତ୍ତରେ ଥିବା ସୋଭିଏତ୍‌ଗୁଡ଼ିକ ଲୋକମାନଙ୍କୁ ତାଙ୍କର ଦାବୀ ଉପରେ ଜୋର ନ ଦେବାକୁ କହୁଥିଲେ । ଇତିମଧ୍ୟରେ ବିଶ୍ୱଯୁଦ୍ଧ ଚାଲିଥାଏ ; ତାହା କେବେ ଶେଷ ହେବ, ଜଣା ଯାଉ ନ ଥାଏ ।

ଲୋକଙ୍କର ଏଣେ ଧୈର୍ଯ୍ୟ ତୁଟୁଥାଏ । ପେଟ୍ରୋଗ୍ରାଦ୍‌ରେ ଜୁଲାଇ ୩ ଓ ୪ ତାରିଖରେ ଶ୍ରମିକ, ସୈନ୍ୟ ଓ ନୌସୈନ୍ୟଙ୍କର ଯେଉଁ ବିକ୍ଷୋଭ ପ୍ରଦର୍ଶନ ହେଲା, ତାହା କ୍ଷମତା ଦଖଲ ଦିଗରେ ସୋଭିଏତ୍‌ଗୁଡ଼ିକୁ ଅନୁପ୍ରାଣିତ ଓ ଉଦ୍ଦୀପିତ କରିବାର ଶେଷ ପ୍ରଚେଷ୍ଟା ହୋଇଉଠିଲା । ଏହି ବିକ୍ଷୋଭ ଶାନ୍ତିପୂର୍ଣ୍ଣ ଥିଲେ ବି ଅସ୍ଥାୟୀ ସରକାର ତାକୁ ଦମନ କରିବାପାଇଁ ସଶସ୍ତ୍ର ସୈନ୍ୟବାହିନୀ ପ୍ରୟୋଗ କଲା ; ପେଟ୍ରୋଗ୍ରାଦର ରାଜପଥ ଲୋକରକ୍ତରେ ରଞ୍ଜିତ ହୋଇଗଲା ।

ଏହାପରେ ଖୋଲାଖୋଲି ଭାବରେ, ସୋସାଲିଷ୍ଟ ରିଭଲ୍ୟୁସନାରି ଓ ମେନସେଭିକଙ୍କର ଛତରିଆ ସମର୍ଥନରେ ପୁଞ୍ଜିପତିମାନେ ବିପ୍ଳବୀ ଲୋକଙ୍କ ବିରୁଦ୍ଧରେ ଗୃହଯୁଦ୍ଧ ଆରମ୍ଭ କରିଦେଲେ ।

ଜୁଲାଇ ମାସର ସେହି ରକ୍ତାକ୍ତ ଘଟଣା ପରେ ଅସ୍ଥାୟୀ ସରକାର ବଲସେଭିକମାନଙ୍କୁ ଗିରଫ କରିବାରେ ଲାଗିଲା । ବଲସେଭିକ ପାର୍ଟିର ପ୍ରଧାନ ସଂବାଦପତ୍ର ପ୍ରଭଦା ଓ ଆଉ ଅନେକଗୁଡ଼ିଏ ବଲସେଭିକ ଖବରକାଗଜର ପ୍ରକାଶନ ବନ୍ଦ କରିଦେଲା । ଲେନିନ୍‌ଙ୍କୁ ଗିରଫ କରିବା ଲାଗି ଓ୍ୱାରେଣ୍ଟ ଜାରି କଲା।

ନଜର ନେତାଙ୍କର ସୁରକ୍ଷା ଲାଗି ପାର୍ଟି ତାଙ୍କର ଆତ୍ମଗୋପନ ପାଇଁ ଏକ ନିରାପଦ ସ୍ଥାନ ଠିକ୍ କଲା ।

ରୁଷରେ ଦ୍ୱୈତ କ୍ଷମତାର ଅବସାନ ଘଟିଲା ; ପୂର୍ଣ୍ଣ କ୍ଷମତା ଅସ୍ଥାୟୀ ସରକାର ହାତରେ ପଡ଼ିଲା । ସୋଭିଏତ୍‌ଗୁଡ଼ିକ ସୋସାଲିଷ୍ଟ ରିଭଲ୍ୟୁସନାରି ଓ ମେନସେଭିକ୍ ନେତାମାନଙ୍କ ଯୋଗୁ ଅସ୍ଥାୟୀ ସରକାରର ପୁଚ୍ଛଧାରୀ ବା ଗୋଡ଼ାଣିଆ ହୋଇଥିଲା । ଏ ଅବସ୍ଥାରେ କେବଳ ଏକ ସଶସ୍ତ୍ର ଅଭ୍ୟୁତ୍‌ଥାନ ଦ୍ୱାରା ହିଁ ଶ୍ରମିକଶ୍ରେଣୀ କ୍ଷମତାକୁ ଆସିବା ସମ୍ଭବ ଥିଲା ।

ଲେନିନ୍ ଲେଖିଥିଲେ, "ରୁଷରେ ବିପ୍ଳବର ଶାନ୍ତିପୂର୍ଣ୍ଣ ବିକାଶ ବର୍ତ୍ତମାନ ଆଉ ସମ୍ଭବପର ନୁହେଁ । ଇତିହାସର ପ୍ରଶ୍ନ ହେଉଛି—ପ୍ରତିବିପ୍ଳବ ପାଇଁ ପୂର୍ଣ୍ଣ ବିଜୟ କିମ୍ବା ଏକ ନୂତନ ବିପ୍ଳବ ।"

ଘଟଣାବଳୀ ଆପେ ଆପେ ଶ୍ରମଜୀବୀ ଲୋକମାନଙ୍କୁ ଦର୍ଶାଇଦେଇଥିଲା ଯେ ପୁଞ୍ଜିପତି ଓ ଜମିମାଲିକମାନଙ୍କ କ୍ଷମତାକୁ ବଳପୂର୍ବକ ଧ୍ୱଂସ କରିବାକୁ ହେବ । ଦେଶର ଅର୍ଥନୀତି ଅଧିକରୁ ଅଧିକ ଭାଙ୍ଗିପଡ଼ିବାରେ ଲାଗିଲା । ପୁଞ୍ଜିପତିମାନେ ଭାବୁଥିଲେ, "ଅନାହାରର ହାଡ଼ୁଆ ହାଡ଼ୁଆ ହାତରେ" ସର୍ବହରାଙ୍କର ତଣ୍ଟି ଚିପିଦେବେ । ସେମାନେ କଳକାରଖାନା, ଫାକ୍ଟ୍ରି ଆଦି ବନ୍ଦ କରିଦେଲେ । ଶ୍ରମିକମାନଙ୍କୁ କ୍ଷୁଧା ଓ ଅନାହାର କବଳରେ ନିକ୍ଷେପ କଲେ । ସହରମାନଙ୍କରେ ଖାଦ୍ୟଦ୍ରବ୍ୟର ଅଭାବ ଥାଏ । ସୈନ୍ୟବାହିନୀର ମୁଖ୍ୟ ହୋଇ ରହିଥିବା ଜାର୍-ପ୍ରେମୀ ସେନାପତିମାନେ ଜର୍ମାନ ସୈନ୍ୟଙ୍କ ହାତରେ ବଡ଼ ବଡ଼ ନଗରମାନ ସମର୍ପଣ କରିଦେଲେ ଏବଂ ରାଜଧାନୀ ପେଟ୍ରୋଗ୍ରାଡକୁ ମଧ୍ୟ ଛାଡ଼ିଦେବା ଲାଗି ପ୍ରସ୍ତୁତ ହେଲେ ।

ବଲ୍‌ସେଭିକ ପାର୍ଟି କିନ୍ତୁ ସଶସ୍ତ୍ର ଅଭ୍ୟୁତ୍‌ଥାନ ଉପରେ ଦୃଷ୍ଟି ନିବଦ୍ଧ ରଖିଲା ; ସହସା ବୈପ୍ଳବିକ ଆକ୍ରମଣ ଚଳାଇବା ଲାଗି ଲୋକମାନଙ୍କୁ ପ୍ରସ୍ତୁତ କରିବାରେ ଲାଗିଲା ।

## ଅକ୍ଟୋବର ସମାଜବାଦୀ ବିପ୍ଳବର ବିଜୟ

ବିପ୍ଳବୀ ସଶସ୍ତ୍ର ଅଭ୍ୟୁତ୍‌ଥାନ ଦୃଢ଼ ଓ ଅଟଳ ଭାବରେ ବୃଦ୍ଧି ପାଇଲା । ଜନସାଧାରଣ, ଯେଉଁମାନେ କି ମାତ୍ର ଅଳ୍ପ କାଳ ପୂର୍ବେ ସୋସାଲିଷ୍ଟ ରିଭଲ୍ୟୁସନାରି ଓ ମେନସେଭିକ୍‌ମାନଙ୍କ ଉପରେ ବିଶ୍ୱାସ ସ୍ଥାପନ କରିଥିଲେ, ସେମାନେ, ବଲ୍‌ସେଭିକ ପାର୍ଟି ପକ୍ଷକୁ ଗଲେ । ନୂଆ ନିର୍ବାଚନରେ ବଲ୍‌ସେଭିକମାନେ ପେଟ୍ରୋଗ୍ରାଡ, ମସ୍କୋ ଓ ଆଉ ଅନେକଗୁଡ଼ିଏ ସୋଭିଏତ୍‌ରେ ସଂଖ୍ୟାଗରିଷ୍ଠତା ଲାଭ କଲେ । ଗ୍ରାମ, ସହର ଓ ସୈନ୍ୟବାହିନୀ ମଧ୍ୟରେ ବଲ୍‌ସେଭିକ୍‌ମାନଙ୍କର ଲୋକପ୍ରିୟତା

ଦୃଢ଼ ଭାବେ ବୃଦ୍ଧି ପାଇବାରେ ଲାଗିଲା । ଏସବୁ ବୁର୍ଜୁଆ ସରକାରକୁ ଧ୍ୱଂସ କରିବା ଦିଗରେ ଅନୁକୂଳ ପରିସ୍ଥିତି ସୃଷ୍ଟି କଲା ।

ଲେନିନ ଆତ୍ମଗୋପନ କଲେ ଭିତରେ ଘଟଣାବଳୀର ଧାରାକୁ ଠିକଣାରେ ଅନୁଧ୍ୟାନ କରି ଦେଖୁଥାନ୍ତି ଏବଂ ସଶସ୍ତ୍ର ଅଭ୍ୟୁତ୍‌ଥାନର ପ୍ରସ୍ତୁତି ଦିଗରେ ପାର୍ଟି କାର୍ଯ୍ୟ ପରିଚାଳନା କରୁଥାନ୍ତି । ଅକ୍‌ଟୋବର ୨୦ ତାରିଖରେ ସେ ଗୋପନରେ ଆସି ପେଟ୍ରୋଗ୍ରାଡ୍‌ରେ ପହଞ୍ଚିଲେ । ତିନି ଦିନ ପରେ ବଲଶେଭିକ ପାର୍ଟିର କେନ୍ଦ୍ର କମିଟିର ଐତିହାସିକ ବୈଠକ ବସିଲା । ତାହା ଏକ ପ୍ରସ୍ତାବ ଗ୍ରହଣ କରି ଘୋଷଣା କଲା ଯେ ସଶସ୍ତ୍ର ଅଭ୍ୟୁତ୍‌ଥାନ ଅନିବାର୍ଯ୍ୟ, ସେଥିଲାଗି ସମସ୍ତ ସଂପୂର୍ଣ୍ଣ ପରିପକ୍ୱ, ଏବଂ ସମସ୍ତ ପାର୍ଟି କମିଟି ଏହି ଅନୁସାରେ ପରିଚାଳିତ ହେବା ଉଚିତ । ରୁଷର ସମସ୍ତ ବଲଶେଭିକଙ୍କ ଲାଗି ଏହି ପ୍ରସ୍ତାବ ଥିଲା ଏକ ସଂଗ୍ରାମର ଲଢ଼ୁଆ ପ୍ରୋଗ୍ରାମ, ଲାଲରକ୍ଷୀ ବା ରେଡ୍ ଗାର୍ଡ ଭାବରେ ପରିଚିତ ସଶସ୍ତ୍ର ଶ୍ରମିକଫୌଜ, ବିପ୍ଳବୀ ସୈନ୍ୟବାହିନୀ ଓ ନୌବାହିନୀ ସବୁ ଅଭ୍ୟୁତ୍‌ଥାନ ଲାଗି ପ୍ରସ୍ତୁତ ହେଲେ ।

ଅସ୍ଥାୟୀ ସରକାର ଅଭ୍ୟୁତ୍‌ଥାନକୁ ପୂର୍ବରୁ ବ୍ୟର୍ଥ କରିଦେବାକୁ ସ୍ଥିର କଲା ଓ ବଲଶେଭିକ ପାର୍ଟିର ନେତୃତ୍ୱ ଦେଉଥିବା ମୁଖ୍ୟ ସଂଗଠନଗୁଡ଼ିକୁ ଧ୍ୱଂସ କରିଦେବାକୁ ବସିଲା । ଯୁଦ୍ଧଭୂମିରୁ ତା'ପ୍ରତି ଅନୁରକ୍ତ ଥିବା ସୈନ୍ୟବାହିନୀକୁ ତୁରନ୍ତ ଡାକିଆଣିଲା ଏବଂ ତାଲିମ ପାଉଥିବା ସୈନ୍ୟବାହିନୀ ଅଫିସରମାନଙ୍କର ଟାଣୁଆ ଦଳଗୁଡ଼ିକୁ ଆଣି ଏକତ୍ର କଲା ।

କିନ୍ତୁ ସମାଜବାଦୀ ବିପ୍ଳବର ବିଜୟକୁ ଅଭ୍ୟୁତ୍‌ଥାନକୁ ରୋକିଦେବ, ଏଭଳି କିଛି କୌଣସି ଶକ୍ତି ନ ଥିଲା ସେତେବେଳେ । ୧୯୧୭ ନଭେମ୍ବର ମାସ ୭ ତାରିଖ ଦିନ (ସେତେବେଳେ ରୁଷରେ ପ୍ରଚଳିତ ପାଞ୍ଜି ଅନୁସାରେ ଅକ୍‌ଟୋବର ୨୪ ତାରିଖ) ବିପ୍ଳବୀ ସୈନ୍ୟ ଓ ରେଡ୍‌ଗାର୍ଡମାନେ ପେଟ୍ରୋଗ୍ରାଡ ସୋଭିଏତ୍ ସମ୍ମୁଖରେ ସମବେତ ହେଲେ । ଆରମ୍ଭ ହେଲା ସଶସ୍ତ୍ର ଅଭ୍ୟୁତ୍‌ଥାନ ; ବିପ୍ଳବର ମହାନ ନେତା ଲେନିନଙ୍କ ଦ୍ୱାରା ପରିଚାଳିତ ହେଲା ବିଚକ୍ଷଣ ଭାବରେ ।

ବଲଶେଭିକ୍ ପାର୍ଟି କେନ୍ଦ୍ର କମିଟିର ନିର୍ଦ୍ଦେଶ ଅନୁସାରେ ସେହିଦିନ ରାତିରେ ରେଡଗାର୍ଡ ଓ ସୈନ୍ୟମାନେ ରେଲ ଷ୍ଟେସନ, କେନ୍ଦ୍ର ଡାକ ଓ ତାର ଅଫିସ, ଷ୍ଟେଟ୍ ବ୍ୟାଙ୍କ ଓ ମନ୍ତ୍ରୀଦପ୍ତର ଦଖଲ କରିନେଲେ । ଏହି ସଶସ୍ତ୍ର ଅଭ୍ୟୁତ୍‌ଥାନ ଥିଲା ସୁସଂଗଠିତ ଓ ସଂପନ୍ନ ହୋଇଥିଲା ବେଶ୍ ସୁନ୍ଦର ଭାବରେ । ଏଥିରେ ଅସୀମ ବୀରତ୍ୱ, ସାହସ ଓ ଶୃଙ୍ଖଳାର ସହିତ ବିପ୍ଳବର ବିଜୟ ଲାଗି ଲଢ଼ିଥିଲେ ପେଟ୍ରୋଗ୍ରାଡର ଶ୍ରମିକ ଓ ବିପ୍ଳବୀ ସୈନ୍ୟମାନେ ।



ହ୍ୱିଣ୍ଟର ପ୍ୟାଲେସ ଦଖଲର ଅଭିଯାନ

ନଭେମ୍ବର ୭ ତାରିଖ ଦିନ ୧୦ଟା ବେଳେ ଲେନିନଙ୍କ ସ୍ୱାକ୍ଷରରେ "ରୁଷିଆର ନାଗରିକମାନଙ୍କ ପ୍ରତି" ଏକ ଇସ୍ତାହାର ପ୍ରକାଶ ପାଇଲା । ସେଥିରେ ଘୋଷଣା କଲା— ଅସ୍ଥାୟୀ ସରକାର ଗଦିଚ୍ୟୁତ ହୋଇଛି । ରାଷ୍ଟ୍ରୀୟ କ୍ଷମତା ପେଟ୍ରୋଗ୍ରାଡ ସୋଭିଏତର ବିପ୍ଳବୀ ସାମରିକ କମିଟି ହାତରେ ନ୍ୟସ୍ତ ହୋଇଛି । ଏହି ଘୋଷଣାର କେତେକ ଘଣ୍ଟା ପରେ ପେଟ୍ରୋଗ୍ରାଡ୍ ସୋଭିଏତ୍‌ର ଗୋଟିଏ ଅଧିବେଶନ ବସିଲା । ସେଥିରେ ଶ୍ରମିକ ଓ ସୈନିକମାନେ ଛିଡ଼ାହୋଇ ଲେନିନଙ୍କୁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜଣାଇଲେ । ସୋଭିଏତ୍ ସରକାରର ଐତିହାସିକ କର୍ତ୍ତବ୍ୟଗୁଡ଼ିକ ସମ୍ପର୍କରେ ଐତିହାସିକ ଭାଷଣ ଦେବାକୁ ଯାଇ ଲେନିନ କହିଲେ, "ଆଜିଠାରୁ ରୁଷ ଇତିହାସର ନୂତନ ଯୁଗ ଆରମ୍ଭ ହେଲା । ଏହି ବିପ୍ଳବ ରୁଷର ବିପ୍ଳବଗୁଡ଼ିକ ମଧ୍ୟରେ ତୃତୀୟ ବିପ୍ଳବ; ଏହା ଶେଷରେ ସମାଜବାଦର ବିଜୟ ଦିଗକୁ ନେଇଯିବ ।"

ଦେଶର ପ୍ରକୃତ ମାଲିକ, ଶ୍ରମିକ ଓ କୃଷକମାନେ ଏବେ ନିଜର ଅଧିକାରରେ ଅଧିଷ୍ଠିତ ହେଲେ ।

ନଭେମ୍ବର ୭ ତାରିଖରେ ବିପ୍ଳବୀ ଶ୍ରମିକ, ସୈନିକ ଓ ନୌସେନା ଜାର୍‌ର 'ହ୍ୱିଣ୍ଟର ପ୍ୟାଲେସ' (ଶୀତ-ପ୍ରାସାଦ) ଉପରେ ଚଢ଼ାଉ କରି ତାହାକୁ ଦଖଲ କରିନେଲେ । ରୁଷର ଶେଷ ବୁର୍ଜୁଆ ସରକାରର ସେହି ପ୍ୟାଲେସ ଥିଲା ଶେଷ ଆଶ୍ରୟସ୍ଥଳୀ ।

ପେଟ୍ରୋଗ୍ରାଦ୍ ଅଭ୍ୟୁତ୍ଥାନ ପରେ ପରେ ମସ୍କୋ ଓ ଅନ୍ୟାନ୍ୟ ସହରରେ ସଶସ୍ତ୍ର ଅଭ୍ୟୁତ୍ଥାନମାନ ଦେଖାଦେଲା । ଅତି ଶୀଘ୍ର ସମାଜବାଦୀ ବିପ୍ଳବ ସୈନ୍ୟବାହିନୀ ଓ ଗ୍ରାମାଞ୍ଚଳକୁ ଖେଦିଗଲା । ପ୍ରତ୍ୟେକ ସ୍ଥାନରୁ ଶ୍ରମିକ ଓ କୃଷକମାନେ ପୁଞ୍ଜିପତି ଓ ଜମିମାଲିକମାନଙ୍କୁ ଓଲାଇ ସଫା କରିଦେଲେ, ଆଉ ଜନତାର ଶାସନ—ସୋଭିଏତ୍ ଶାସନ ପ୍ରତିଷ୍ଠା କଲେ ।

**ଏହିପରି ଭାବରେ ବଲସେଭିକ ପାର୍ଟି, ଲେନିନଙ୍କ ନେତୃତ୍ୱରେ ତା'ର କେନ୍ଦ୍ରକମିଟି ଦ୍ୱାରା ପରିଚାଳିତ ହୋଇ ପୁଞ୍ଜିପତି ଓ ଜମିମାଲିକମାନଙ୍କ ଉପରେ ରୁଷରେ ଶ୍ରମିକ—କୃଷକମାନଙ୍କର ଐତିହାସିକ ବିଜୟ କାଏମ କଲା ; ସମାଜବାଦୀ ବିପ୍ଳବର ବିଜୟର ଧ୍ୱଜା ଉଡ଼ାଇଲା ; ସର୍ବହରାର ଏକଛତ୍ର ଶାସନର ବିଜୟ ଚିହ୍ନ ଅଙ୍କିତ କଲା ।**

ଏହିଭଳି ଭାବରେ ସମାଜବାଦୀ ବିପ୍ଳବ ସମ୍ବନ୍ଧରେ ଲେନିନଙ୍କ ତତ୍ତ୍ୱର ନିର୍ଭୁଲତା ପ୍ରମାଣିତ ହେଲା ।

'୧୯୧୭ ନଭେମ୍ବର ମାସ ୭ ତାରିଖରେ ସଂଧ୍ୟା ଗଡ଼ିଯାଇଥାଏ, ପେଟ୍ରୋଗ୍ରାଦରେ ନିଖିଳ ରୁଷ ଶ୍ରମିକ-ସୈନିକ ପ୍ରତିନିଧିଙ୍କର କଂଗ୍ରେସ ଅନୁଷ୍ଠିତ ହେଲା । ପେଟ୍ରୋଗ୍ରାଦର ବିଜୟୀ ସଶସ୍ତ୍ର ଅଭ୍ୟୁତ୍ଥାନର ଶକ୍ତି ଓ ସମର୍ଥନରେ ଦେଶର ସମସ୍ତ କ୍ଷମତା ସୋଭିଏତ୍‌କୁ ହସ୍ତାନ୍ତରିତ ହେଲା ବୋଲି ଘୋଷଣା କରାଗଲା । ପୃଥିବୀର ସର୍ବପ୍ରଥମ ଶ୍ରମିକ-କୃଷକ ସରକାର, ପିପୁଲ୍ସ କମିସାରମାନଙ୍କ କାଉନସିଲ୍ ବା ପରିଷଦ ଗଠିତ ହେଲା । ଲେନିନ ତା'ର ଚେୟାରମ୍ୟାନ ବା ସଭାପତି ନିର୍ବାଚିତ ହେଲେ ।

ଏହି ନୂତନ ସରକାର ଯେ ପ୍ରକୃତରେ ଲୋକଙ୍କର ସରକାର, ଏହା ଠିକ୍ ଆରମ୍ଭରୁ ହିଁ ତା'ର ପରିଚୟ ଦେଲା । ଲେନିନଙ୍କ ଦ୍ୱାରା ଲିଖିତ ଶାନ୍ତିର ଘୋଷଣା ଗ୍ରହଣ କରି ସୋଭିଏତ୍ କଂଗ୍ରେସ, ଯୁଦ୍ଧରତ ସବୁ ଦେଶର ଲୋକ ଓ ସରକାରମାନଙ୍କୁ ଆହ୍ୱାନ ଦେଲା ଯେ ସେମାନେ ଏକ ନ୍ୟାୟସଂଗତ ଗଣତାନ୍ତ୍ରିକ ଶାନ୍ତି ଲାଗି ତୁରନ୍ତ କଥାବାର୍ତ୍ତା ଆରମ୍ଭ କରନ୍ତୁ । ଏହି ଶାନ୍ତିଯୋଗେ କୌଣସି ଅନ୍ୟ ରାଜ୍ୟ ବା ଅଞ୍ଚଳ ଦଖଲ କରିବାର ପ୍ରଶ୍ନ ନ ରହୁ ।

ସାମ୍ରାଜ୍ୟବାଦୀ ଯୁଦ୍ଧର ବଳୀପିଠରୁ ମନୁଷ୍ୟସମାଜକୁ ରକ୍ଷା କରିବାଲାଗି ଏହିଭଳି ଭାବରେ ସୋଭିଏତ୍ ସରକାର ନୂତନ ସଂଗ୍ରାମର ସୂତ୍ରପାତ କଲା । ଲୋକମାନଙ୍କ ମଧ୍ୟରେ ଲେନିନଙ୍କ ଶାନ୍ତି ଓ ମୈତ୍ରୀ ନୀତି କାର୍ଯ୍ୟକାରୀ ହୋଇ-ଛଠିଲା ।

କଂଗ୍ରେସରେ ଗୃହୀତ 'ଭୂମି ସମ୍ବନ୍ଧୀୟ ବା ଜମିସଂକ୍ରାନ୍ତ ଘୋଷଣା' ମଧ୍ୟ ଲେନିନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା । ଶହ ଶହ ବର୍ଷ ଧରି କୃଷକମାନେ ଯେଉଁ ସ୍ୱପ୍ନ ଦେଖୁଥିଲେ ଓ ଯେଉଁଥିପାଇଁ ପ୍ରାଣପଣେ ଲଢ଼ିଆସୁଥିଲେ, ଅକ୍ଟୋବର ବିପ୍ଳବର ଏହି ଘୋଷଣା ସେହି ସ୍ୱପ୍ନକୁ ବାସ୍ତବ ଆକାରରେ ସେହିମାନଙ୍କୁ ଦେଇ ପ୍ରଦାନ କଲା । ତାହା ସେମାନଙ୍କୁ ଜମିମାଲିକମାନଙ୍କର ଶୋଷଣରୁ ଓ ବର୍ଷକୁବର୍ଷ ଅତ୍ୟଧିକ ଖଜଣା ଦେବା ଦାଉରୁ ମୁକ୍ତ କଲା । ସେମାନେ ଜମିମାଲିକ, ବୁର୍ଜୁଆ, ଜାର ଆଉ ଗୀର୍ଜାଗୁଡ଼ିକ ହାତରୁ ବାଜ୍ୟାପ୍ତ ହୋଇଥିବା ୧୫୦, ୦୦୦, ୦୦୦ ହେକ୍ଟରରୁ (ଏକ ହେକ୍ଟର = ୨॥ ଏକର) ଊର୍ଦ୍ଧ୍ୱ ଜମି ଅବାଧ ବ୍ୟବହାର ଲାଗି ପାଇଲେ । ଜମି ଉପରୁ ବ୍ୟକ୍ତିଗତ ମାଲିକାନା ଚିରଦିନ ଲାଗି ଲୋପ କରିଦିଆଗଲା । ତା ପରିବର୍ତ୍ତେ ସର୍ବସାଧାରଣ ବା ରାଷ୍ଟ୍ରୀୟ ମାଲିକାନା ପ୍ରବର୍ତ୍ତିତ ହେଲା । ଏହି ରାଷ୍ଟ୍ରୀୟ ମାଲିକାନା କୃଷିକୁ ନୂତନ ସମାଜବାଦୀ ଲାଇନ୍ ବା ମାର୍ଗରେ ପୁନର୍ଗଠନ କରିବାରେ ସାହାଯ୍ୟ କଲା ।

ସୋଭିଏତ୍ ସରକାର କଳକାରଖାନା ଓ ଫ୍ୟାକ୍ଟ୍ରି, ମିଲ ପ୍ରଭୃତିରେ ୮।୦ ଘଣ୍ଟା ଶ୍ରମ-ଦିନ ପ୍ରବର୍ତ୍ତନ କଲା ଏବଂ ଉତ୍ପାଦନ ଉପରେ ଶ୍ରମିକମାନଙ୍କ ନିୟନ୍ତ୍ରଣ କ୍ଷମତା ପ୍ରତିଷ୍ଠିତ କଲା : ବ୍ୟାଙ୍କ, ରେଲବାଇ, ବାଣିଜ୍ୟ ଜାହାଜ ଓ ବୃହତ୍ ଶିଳ୍ପ ପ୍ରତିଷ୍ଠାନମାନଙ୍କୁ ଜାତୀୟକରଣ କଲା, ଅର୍ଥାତ୍ ପୁଞ୍ଜିପତିମାନଙ୍କଠାରୁ ସେସବୁ ଛଡ଼ାଇଆଣି ଲୋକମାନଙ୍କ ହାତରେ ସମର୍ପଣ କରିଦେଲା । ଆଉ ଏକ ରାଜନୈତିକ ଓ ଅର୍ଥନୈତିକ ଦିଗରୁ ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଘୋଷଣା ବଳରେ ତାହା ଜାର ଓ ଅସ୍ଥାୟୀ ସରକାର କରିଥିବା ବୈଦେଶିକ ଋଣକୁ ଅସ୍ୱୀକାର କରି-ଦେଲା ।

୧୯୧୭ ନଭେମ୍ବର ମାସରେ ପିପୁଲ୍ସ କମିସାର କାଉନସିଲରେ "ରୁଷର ଲୋକମାନଙ୍କ ଅଧିକାର ସଂକ୍ରାନ୍ତ ଘୋଷଣା" ଗୃହୀତ ହେଲା । ଏହା ରୁଷର ସମସ୍ତ ଲୋକଙ୍କ ପକ୍ଷରେ ସାମ୍ୟ ଓ ସ୍ୱାଧୀନତା ଘୋଷଣା କଲା ; ଜାତିବାଦ (nationa-lity) ଉପରେ ପ୍ରତିଷ୍ଠିତ ସମସ୍ତ ସୁବିଧାସୁଯୋଗ ଓ ବାଧା ଅବରୋଧକୁ ଲୋପ କରିଦେଲା । ଇଚ୍ଛା କଲେ ପ୍ରତ୍ୟେକ ଜାତି ଅଲଗା ହୋଇଯାଇ ଏକ ସ୍ୱାଧୀନ ରାଷ୍ଟ୍ର ଗଠନ କରିପାରେ, ପ୍ରତ୍ୟେକ ଜାତିର ଏହି ଆତ୍ମନିୟନ୍ତ୍ରଣ ଅଧିକାରକୁ ସ୍ୱୀକାର କଲା ; ସଂଖ୍ୟା-ଲଘୁ ଜାତିମାନଙ୍କ ଉପରେ ଓ ପୁଞ୍ଜିପତି ଜମିମାଲିକଙ୍କର ଅତ୍ୟାଚାରକୁ ବନ୍ଦ

କରିଦେଲା । ରୁଷରେ ବସବାସ କରୁଥିବା ଲୋକମାନଙ୍କ ମଧ୍ୟରେ ଅବାଧ ଓ ସୁଦୃଢ଼ ମିତ୍ରତା ଓ ବନ୍ଧୁତ୍ୱର ପ୍ରତିଷ୍ଠା କରି ଏବେ ମୂଳଦୃଢ଼ି ନିର୍ମିତ ହେଲା ।

## ବିଶ୍ୱ ଇତିହାସରେ ନୂତନ ଯୁଗର ଅଭ୍ୟୁଦୟ

ମହାନ ଅକ୍ଟୋବର ସମାଜବାଦୀ ବିପ୍ଳବ ବିଶ୍ୱ ଇତିହାସରେ ଏକ ମୋଡ଼ ଫେରାଣି । ତାହା ପୁଞ୍ଜିବାଦୀ ବ୍ୟବସ୍ଥା କବଳରୁ ଦେଶକୁ ଜୋର ସହକ ଛଡ଼ାଇ-ଆଣି ସମାଜବାଦ ଓ ସାମ୍ୟବାଦ (କମ୍ୟୁନିଜମ) ମାର୍ଗରେ ଅବସ୍ଥିତ କଲା ।

ବିପ୍ଳବର ପ୍ରବାହରେ ପୁଞ୍ଜିପତି ଓ ଜମିମାଲିକମାନେ ଭାସିଗଲେ, ଧୋଇହୋଇ-ଗଲେ । ପୁରୁଣା ରାଷ୍ଟ୍ରଶାସନ କଳ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ଶୋଷଣ ଓ ସାମାଜିକ ଅନ୍ୟାୟ-ଅନୀତି ଯେଉଁ ଅର୍ଥନୈତିକ ଭିତ୍ତି ଉପରେ ପ୍ରତିଷ୍ଠିତ ଥିଲା, ସେହି ଭିତ୍ତି ଲୋପ ହୋଇଗଲା । ପୃଥିବୀର ସର୍ବବୃହତ୍ ଦେଶର ଶ୍ରମିକଶ୍ରେଣୀ ଶାସକଶ୍ରେଣୀ ହେଲା । ତାହା ସର୍ବହରାର ଏକଛତ୍ର ଶାସନ ପ୍ରତିଷ୍ଠା କଲା ।

ଇତିହାସରେ ସର୍ବପ୍ରଥମେ ଲୋକମାନେ ନିଜର ଶ୍ରମିକ କୃଷକ ସରକାର ପ୍ରତିଷ୍ଠା କଲେ ।

ଅକ୍ଟୋବର ବିପ୍ଳବ ସାମ୍ରାଜ୍ୟବାଦୀ ଯୁଦ୍ଧ କବଳରୁ ରୁଷକୁ ବାହାର କରି-ଆଣିବା ଦ୍ୱାରା ଦେଶକୁ ବିରାଟ ଏକ ଜାତୀୟ ଦୁର୍ବିପାକରୁ ରକ୍ଷା କଲା । ଏହି ଦୁର୍ବିପାକ ଭିତରକୁ ଶୋଷକ ଶ୍ରେଣୀମାନେ ଦେଶକୁ ଠେଲିଦେଇଥିଲେ । ଏବେ ଲୋକଙ୍କୁ ଆଉ କେବେହେଲେ ସ୍ୱଦେଶୀ ରୁଷୀୟ ବା ବିଦେଶୀୟ ବୁର୍ଜୁଆଙ୍କ ସ୍ୱାର୍ଥ ସଞ୍ଚାଳେ ଅକାରଣରେ, ଅନ୍ୟାୟରେ ନିଜର ରକ୍ତ ଢାଳିବାକୁ ପଡ଼ିଲା ନାହିଁ ।

ଅଧିକନ୍ତୁ ଏହି ବିପ୍ଳବ ବୈଦେଶିକ ଶକ୍ତିମାନଙ୍କର ଅର୍ଥନୈତିକ, ରାଜ-ନୈତିକ ପରାଧୀନତାର ବିପଦରୁ ଦେଶକୁ ମୁକ୍ତ କଲା । ତାକୁ ମୁକ୍ତ ଓ ସ୍ୱାଧୀନତାରେ ନିଶ୍ଚୟତା ଦେଲା । ରୁଷର ବହୁ ଶତାବ୍ଦୀର ପୁରୁଣା ପଶ୍ଚାତପଦ ଅବସ୍ଥାକୁ ଦୂର କରି ତାକୁ ଏକ ମହାନ ଶକ୍ତିଶାଳୀ ସମାଜବାଦୀ ଦେଶରେ ପରିବର୍ତ୍ତିତ କରିବା ଲାଗି ଅବସ୍ଥାମାନ ସୃଷ୍ଟି କଲା । ଏକ ମୁକ୍ତ, ସମୃଦ୍ଧ ଓ ସୁଖମୟ ଜୀବନର ପଥରେ ବିପ୍ଳବ ଲୋକମାନଙ୍କୁ ମଡ଼ାଇନେଲା ।

ବିପ୍ଳବ ରୁଷରେ ସଂଖ୍ୟାଲଘୁ ଜାତିମାନଙ୍କ ଉପରେ ଚାଲିଥିବା ଅତ୍ୟାଚାରକୁ ଲୋପ କରିଦେଲା । ପୂର୍ବର ସମସ୍ତ ଅତ୍ୟାଚାରିତ ଜାତିଙ୍କୁ ଲୋକଙ୍କର ଏକତାବଦ୍ଧ ଏକ ପରିବାରର ସମାନ ସଭ୍ୟ କରିଦେଲା । ଶୋଷକମାନଙ୍କର ସମସ୍ତ ଶ୍ରେଣୀଗତ

ସୁବିଧାକୁ ଲୋପ କରିଦେଲା । ଏହା ହିଁ ହେଉଛି ଇତିହାସର ସର୍ବପ୍ରଥମ ବିପ୍ଳବ, ଯାହାକି ନାରୀଜାତିକୁ ମୁକ୍ତ କଲା ଏବଂ ପୁରୁଷମାନଙ୍କ ସହିତ ସେମାନଙ୍କୁ ସମାନ ଅଧିକାର ପ୍ରଦାନ କଲା ।

ବିପ୍ଳବର ନେତା ଓ ସଂଗଠକ ବଲସେଭିକ ପାର୍ଟି ଲୋକମାନଙ୍କ ନିକଟରେ ପ୍ରମାଣିତ କଲା ଯେ, କମ୍ୟୁନିଷ୍ଟମାନେ ହେଉଛନ୍ତି ପ୍ରକୃତ ଦେଶପ୍ରେମୀ । ସେମାନେ ଦେଶର ଉଜ୍ଜ୍ୱଳ ଭବିଷ୍ୟତ ନିମିତ୍ତ ଲଢ଼େଇ କରି ନିଜର ଜୀବନ ବଳି ଦେବାକୁ ପ୍ରସ୍ତୁତ ।

ଲୋକେ ଇତିହାସ ସୃଷ୍ଟି କରିବାକୁ ସମର୍ଥ ନୁହନ୍ତି, ଏହି ପ୍ରତିକ୍ରିୟାଶୀଳ ତତ୍ତ୍ୱ ପ୍ରତି ମରଣ ଆଘାତ ଦେଇ ବିପ୍ଳବ ଲୋକଙ୍କର ବିରାଟ ସୃଜନଶୀଳ ଶକ୍ତିର ଦ୍ୱାର ଉନ୍ମୁକ୍ତ କରିଦେଲା । ଏହା ପରିଷ୍କାରଭାବେ ଦର୍ଶାଇଦେଲା ଯେ, ଶ୍ରମଜୀବୀ ଲୋକେ, ଶ୍ରମିକ ଓ କୃଷକମାନେ ହିଁ ହେଉଛନ୍ତି ପ୍ରକୃତରେ ଇତିହାସର ସୃଷ୍ଟିକର୍ତ୍ତା ।

କେବଳ ରୁଷର ଲୋକମାନଙ୍କ ପାଇଁ ନୁହେଁ, ସମଗ୍ର ପୃଥିବୀର ଶ୍ରମଜୀବୀ ଲୋକମାନଙ୍କ ଲାଗି ଏହି ବିପ୍ଳବ ମହାନ ଗୁରୁତ୍ୱପୂର୍ଣ୍ଣ । ଏହା ସମସ୍ତ ଦେଶ ଓ ସମସ୍ତ ମନୁଷ୍ୟସମାଜର ଭାଗ୍ୟକୁ ବିଶେଷଭାବେ ପ୍ରଭାବିତ କଲା ।

ଏହି ରୁଷ ବିପ୍ଳବ ସମଗ୍ର ପୁଞ୍ଜିବାଦୀ ସୌଧର ଭିତ୍ତି ପର୍ଯ୍ୟନ୍ତ ଦୋହଲାଇ-ଦେଲା । ପୃଥିବୀକୁ ଦୁଇଟା ପରସ୍ପର ବିରୋଧୀ ବ୍ୟବସ୍ଥାରେ ଭାଗ ଭାଗ କରିଦେଲା । ସେହି ଦୁଇଟି ମଧ୍ୟରେ ସଂଗ୍ରାମ ଆଜି ବିଶ୍ୱ ଘଟଣାବଳୀ ବିକାଶର ପ୍ରଧାନ ଅକ୍ଷ ହୋଇଛି । ପ୍ରକୃତରେ କହିଲେ ସେହିଦିନଠୁ ମନୁଷ୍ୟ ସମାଜ ତା'ର ଶୋଷଣର ପ୍ରାକ୍-ଐତିହାସିକ ଅବସ୍ଥାରୁ ଅର୍ଥାତ୍ ଗୋଟାଏ ଦୁଃଖ ଦୈନ୍ୟ ନିର୍ଯ୍ୟାତନାର ସମସ୍ତରୁ ବାସ୍ତବରେ ସମୁଜ୍ଜ୍ୱଳ ଓ ଆନନ୍ଦମୟ ଏକ କମ୍ୟୁନିଷ୍ଟ ଇତିହାସର ମାର୍ଗରେ ଯାତ୍ରା ଆରମ୍ଭ କରିଛି ।

ବିପ୍ଳବ ପ୍ରତିପାଦିତ କଲା ଯେ, ମାର୍କସ୍‌ବାଦୀ-ଲେନିନବାଦୀ ଶିକ୍ଷା ନିର୍ଭୁଲ ଏବଂ ଲେନିନବାଦୀ ପାର୍ଟିର ଅନୁସୃତ ନୀତି ସଠିକ । ତାହା ସମାଜବାଦକୁ ଏକ ତତ୍ତ୍ୱରୁ ଏକ ସାମାଜିକ ବ୍ୟବସ୍ଥାରେ କୋଟି କୋଟି ଲୋକଙ୍କର ଏକ ଜୀବନ-ଆଦର୍ଶରେ ପରିବର୍ତ୍ତିତ କରିବାର ପ୍ରକ୍ରିୟା ଆରମ୍ଭ କଲା । ମାର୍କସବାଦୀ-ଲେନିନବାଦୀ ତତ୍ତ୍ୱର ସଂଶୋଧନବାଦୀ ବିକୃତି ଓ ମତାନ୍ଧ ନିଃଶ୍ୱାସରୋଧୀ ନୀତି, ଏ ଉଭୟ ଦେଉଳିଆ ଭାବକୁ ପଦାରେ ପକାଇଦେଲା । ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ସୁବିଧାବାଦ, ଏ ଦୁଇଟିର ଜନବିରୋଧୀ ମର୍ମକୁ ପ୍ରକଟିତ କଲା ।

ମହାନ ଅକ୍ଟୋବର ସମାଜବାଦୀ ବିପ୍ଳବ ବିଶ୍ୱର ଶ୍ରମଜୀବୀ ଲୋକମାନଙ୍କୁ ନିଜର ଶକ୍ତିରେ ଏବଂ ନିଜର ନ୍ୟାୟୋଚିତ ଆଦର୍ଶର ଅନିବାର୍ଯ୍ୟ ବିଜୟରେ ଦୃଢ଼ ବିଶ୍ୱାସ ରଖିବାପାଇଁ ଅନୁପ୍ରାଣିତ କଲା । ତାହା ଦର୍ଶାଇଦେଲା ଯେ, ସେମାନେ ନିଜେ ନିଜେ ଶୋଷକଙ୍କ କବଳରୁ ମୁକ୍ତ ହୋଇପାରନ୍ତି ଓ ଏକ ନୂତନ ଜୀବନ ଗଠନ କରିପାରନ୍ତି ।

ବୁର୍ଜୁଆମାନେ ଦାବୀ କରନ୍ତି ଯେ ପୁଞ୍ଜିବାଦୀ ସଂପତ୍ତି ହେଉଛି ଅପରିବର୍ତ୍ତିନୀୟ, ଅଲଙ୍ଘ୍ୟ, ପବିତ୍ର ଓ ଚିରନ୍ତନ । ଅକ୍ଟୋବର ବିପ୍ଳବ କିନ୍ତୁ ପୁଞ୍ଜିପତିମାନେ ଯେଉଁ ଧନସଂପଦ ଅପହରଣ କରିଥିଲେ, ସେମାନଙ୍କଠାରୁ ତାହା ଛଡ଼ାଇଆଣିଲା ଓ ସେ ସବୁକୁ ଜନସାଧାରଣଙ୍କ ସଂପତ୍ତିରେ ପରିଣତ କରିଦେଲା ।

ବୁର୍ଜୁଆମାନେ ଦାବୀ କରନ୍ତି ଯେ, ମନୁଷ୍ୟ ସମାଜ 'ଉତ୍କୃଷ୍ଟ' ଓ 'ନିକୃଷ୍ଟ' ଜାତିମାନଙ୍କରେ ବିଭକ୍ତ ; ଉତ୍କୃଷ୍ଟମାନେ ନିକୃଷ୍ଟଙ୍କୁ ଅଧୀନସ୍ଥ କରନ୍ତି । ବିପ୍ଳବ କିନ୍ତୁ ଦର୍ଶାଇଦେଲା ଯେ, ଥରେ ସେହି ନିକୃଷ୍ଟମାନେ ମୁକ୍ତି ଲାଭ କଲେ ଶ୍ରେଷ୍ଠ ବଡ଼ ସମସ୍ତ ଜାତି ସ୍ୱାଧୀନ ହିସାବରେ ନିଜର ଅର୍ଥନୀତି ଓ ସଂସ୍କୃତିର ବିକାଶ ଆଣିପାରିବେ ଓ ସମାଜବାଦ ନିର୍ମାଣ କରିପାରିବେ । ତାହା ପ୍ରକୃତରେ ପୃଥିବୀର ପରାଧୀନ ଲୋକମାନଙ୍କ ଆଗରେ ମୁକ୍ତିର ମାର୍ଗ ଖୋଲିଦେଲା ।

ଏହି ବିପ୍ଳବରୁ ନିର୍ଗତ ଉନ୍ମୁକ୍ତ ସ୍ଫୁଲିଙ୍ଗ ଆଜି ଅଧିକରୁ ଅଧିକ ଉଜ୍ଜ୍ୱଳ ଭାବରେ ପ୍ରଜ୍ଜ୍ୱଳିତ ହେଉଛି । ସମସ୍ତ ବଞ୍ଚିତ ଓ ଅତ୍ୟାଚାରିତ ଲୋକମାନଙ୍କ ଲାଗି ଏହାର ଫଳରେ ସୃଷ୍ଟି ପୃଥିବୀର ପ୍ରଥମ ସମାଜବାଦୀ ରାଷ୍ଟ୍ର ଶ୍ରମଜୀବୀ ଲୋକମାନଙ୍କର ଆଦର୍ଶ ଆଜି ଏକ ସଂଗ୍ରାମର ଆହ୍ୱାନ । ଏଣୁ ଲେନିନ ଯଥାର୍ଥରେ କହିଛନ୍ତି—ପୃଥିବୀର ସମସ୍ତ ଦେଶ ଭିତରେ ସ୍ଫୁଲିଙ୍ଗର କଣା ନିକ୍ଷେପ କରିଥିଲା ରୁଷ ବିପ୍ଳବ ଏବଂ ପତନର ଆହ୍ୱାନ ନିକଟବର୍ତ୍ତୀ କରିଥିଲା ସାମ୍ରାଜ୍ୟବାଦକୁ ।

**ଅକ୍ଟୋବର ସମାଜବାଦୀ ବିପ୍ଳବ ହିଁ ସଂକେତ ଦେଇଥିଲା—ବିଶ୍ୱ-ପୁଞ୍ଜିବାଦର ପତନ ଆରମ୍ଭ ହେଲା । ଏହା ହିଁ ସ୍ୱାଗତ କରିଆଣିଥିଲା ପୁଞ୍ଜିବାଦରୁ ସମାଜବାଦକୁ ପରିବର୍ତ୍ତନ ବା ଅସ୍ଥାୟୀ ପରିଗମନର ସମୟକୁ, ବିଶ୍ୱ-ବ୍ୟାପୀ ସମାଜବାଦ ଓ ସାମ୍ୟବାଦ(କମ୍ୟୁନିଜମ୍)ର ବିଜୟର ଯୁଗକୁ ।**

# ହସ୍ତକ୍ଷେପକାରୀ ଓ ହ୍ୱାଇଟ୍ ଗାର୍ଡ ବା ଶ୍ୱେତରକ୍ଷୀଙ୍କ ପରାଜୟ

୧୯୧୭ର ଶେଷ ଆଉ ୧୯୧୮ର ପ୍ରାରମ୍ଭରେ ସୋଭିଏତ କ୍ଷମତା ସମସ୍ତ ରୁଷରେ ଦ୍ରୁତ ଦ୍ରୁତ ବିସ୍ତୃତ ହେଲା । ବଲସେଭିକ୍‌ଙ୍କ ଦ୍ୱାରା ପରିଚାଳିତ ହୋଇ ଶ୍ରମିକ ଓ କୃଷକମାନେ ପ୍ରତ୍ୟେକଠାରେ ନିଜ ହାତକୁ କ୍ଷମତା ନେଲେ ।

ଆରମ୍ଭରୁ ହିଁ କିନ୍ତୁ ସୋଭିଏତ ରିପବ୍ଲିକ୍‌କୁ କଠୋର ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଲା । ପୁଞ୍ଜିପତି ଓ ଜମିମାଲିକମାନେ ବିଜୟୀ ଶ୍ରମିକ-କୃଷକମାନଙ୍କ ବିରୁଦ୍ଧରେ ହିଂସ୍ର ପ୍ରତିରୋଧ ଆରମ୍ଭ କରିଦେଲେ । ପୂର୍ବର ଜାରପ୍ରେମୀ ଅଫିସରମାନେ ଏବଂ ପୁରୁଣା ବୁର୍ଜୁଆଙ୍କ ମଧ୍ୟରୁ ଗୋଟାଏ ଦଳ ନୂତନ ସରକାର ସହିତ ସହଯୋଗ କରିବାକୁ ନାପସନ୍ଦ କଲେ ଏବଂ ଶିଶୁ ସୋଭିଏତ୍ ରାଷ୍ଟ୍ରର ଶାସନ କଳର କାର୍ଯ୍ୟକୁ ବିଦ୍ରୋହର ସହ କ୍ଷୁଣ୍ଣ କରିବାକୁ ଚେଷ୍ଟା କଲେ । ପୁଞ୍ଜିପତି ଓ ଜମିମାଲିକମାନେ ସୋସାଲିଷ୍ଟ ରିଭଲ୍ୟୁସନାରୀ, ମେନସେଭିକ୍ ଓ ସୋଭିଏତର ଅନ୍ୟାନ୍ୟ ଶତ୍ରୁମାନଙ୍କର ସାହାଯ୍ୟ ପାଇ ପ୍ରତିବିପ୍ଳବୀ ଚକ୍ରାନ୍ତ ଓ ଷଡ଼ଯନ୍ତ୍ରମାନ ରଚନା କରିବାରେ ଲାଗିଲେ, ସୋଭିଏତ୍ ବିରୋଧୀ ବିଦ୍ରୋହ ସୃଷ୍ଟି କଲେ, ଏବଂ ପାର୍ଟି ଓ ସରକାରର ନେତାମାନଙ୍କୁ ହତ୍ୟା କରିବାର ଉଦ୍ୟମ କଲେ ।

ଶିଶୁ ସୋଭିଏତ୍ ରାଷ୍ଟ୍ର ଏହି ଶତ୍ରୁ-ଶକ୍ତିମାନଙ୍କ ବିରୁଦ୍ଧରେ ଦୃଢ଼ ବ୍ୟବସ୍ଥା ଗ୍ରହଣ କରିବାକୁ ବାଧ୍ୟ ହେଲା । ଆଭ୍ୟନ୍ତରୀଣ ପ୍ରତିବିପ୍ଳବୀମାନଙ୍କର ପ୍ରାରମ୍ଭିକ ପ୍ରତିରୋଧକୁ ଦମନ କରିବା ପରେ ପରେ ଠିକ୍ ଆଉ ଏକ ବିରାଟ ବିପଦର ସମ୍ମୁଖୀନ ହେଲା—ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତିମାନେ ତାହା ବିରୁଦ୍ଧରେ ଖଡ଼୍ଗୋତ୍ତୋଳନ କଲେ ।

ସୋଭିଏତ୍ ରିପବ୍ଲିକ ବିଶ୍ୱର ଶୋଷିତ ଅତ୍ୟାଚାରିତ ଲୋକମାନଙ୍କର ଧ୍ରୁବ ତାରା ହୋଇଥାଏ । ସବୁ ଦେଶର ସାମ୍ରାଜ୍ୟବାଦୀମାନେ ତାକୁ ଦଳିଦେବାକୁ ବସିଲେ । ସେମାନେ ତାକୁ ଧ୍ୱଂସ କରି, ରୁଷରେ ପୁନର୍ବାର ପୁଞ୍ଜିପତି ଓ ଜମିଦାରଙ୍କ କ୍ଷମତା ପ୍ରତିଷ୍ଠା କରିବାକୁ ଆଗଭର ହେଲେ ।

ଯେତେବେଳେ ନିଖିଳ ରୁଷ ସୋଭିଏତ କଂଗ୍ରେସର ଦ୍ୱିତୀୟ ଅଧିବେଶନ ଯୁଦ୍ଧରତ ଦୁଇ ପକ୍ଷର ଲୋକ ଓ ସରକାରମାନଙ୍କୁ ଯୁଦ୍ଧ ବନ୍ଦ କରିବାକୁ ଓ ନ୍ୟାୟୋଚିତ ଗଣତାନ୍ତ୍ରିକ ଶାନ୍ତି ସଂପାଦନ କରିବାକୁ ନିବେଦନ ଜଣାଇଲା ସେତେବେଳେ ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ ଓ ଫ୍ରାନ୍ସ ସରକାରମାନେ

ସେଥିରେ ନଷ୍ଟ କରିଦେଲେ । ତାହା କରିବା ଦ୍ୱାରା ସେମାନେ ଏକ ସାଧାରଣ ଶାନ୍ତି ପ୍ରତିଷ୍ଠାରେ ବାଧା ଦେଲେ ।

ଏହି କଠୋର ବା ଭୟଙ୍କର ଅବସ୍ଥାରେ ତଥାକଥିତ 'ବାମପନ୍ଥୀ କମ୍ୟୁନିଷ୍ଟ' ଓ ଟ୍ରଟସ୍କି, ପାର୍ଟି ଏବଂ ତା'ର ଶାନ୍ତିନୀତି ବିରୁଦ୍ଧରେ ତୀବ୍ର ଭାବରେ ଲଢ଼ିଲେ ।

ଶିଶୁ ସୋଭିଏତ୍ ରିପବ୍ଲିକ୍ ଉତ୍ତରାଧିକାରୀ ସୂତ୍ରରେ ପୁରୁଣା ଶାସନର ଏକ ଭଗ୍ନ ଅର୍ଥନୀତି ହିଁ ପାଇଥାଏ । ତାର ନିଜର ସୈନ୍ୟବାହିନୀ ଗଠନ ଲାଗି ତାକୁ ସେ ପର୍ଯ୍ୟନ୍ତ ଅବସର ମିଳି ନ ଥାଏ । ତାକୁ ସେମାନେ ସୁସ୍ପଷ୍ଟ ଏକ ବେପରବାଏ ଜୀବନମରଣ ଜୁଆଖେଳ ଭିତରକୁ ଠେଲିଦେବାକୁ ବସିଲେ । ଯେଉଁ ସାମ୍ରାଜ୍ୟବାଦୀମାନେ ଦାନ୍ତ ପର୍ଯ୍ୟନ୍ତ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିଲେ, ସେମାନଙ୍କ ବିରୁଦ୍ଧରେ ଏକ "ବୈପ୍ଳବିକ ଯୁଦ୍ଧ" ସେମାନେ ଦାବୀ କଲେ । ଏହାର ଅର୍ଥ ଥିଲା, ଇତିହାସର ପ୍ରଥମ ସମାଜବାଦୀ ରାଷ୍ଟ୍ର ଓ ବିଶ୍ୱର ସର୍ବହରା ବିପ୍ଳବର ମୂଳ ଭିତ୍ତିକୁ ବିପନ୍ନ କରିଦେବା ।

ଟ୍ରଟସ୍କି ଓ "ବାମପନ୍ଥୀ" କମ୍ୟୁନିଷ୍ଟମାନଙ୍କ ଦ୍ୱାରା ଅନୁସୃତ ଏହି ଗଣ୍ଡଗୋଳ-କାରୀ ନୀତିର ସୁବିଧା ନେଇ ଜର୍ମାନ ସାମ୍ରାଜ୍ୟବାଦୀମାନେ ଶାନ୍ତି କଥାବାର୍ତ୍ତାକୁ ଭାଙ୍ଗିଦେଲେ ଓ ବିଶ୍ୱାସଘାତକଭାବେ ସୋଭିଏତ୍ ରିପବ୍ଲିକ୍ ଉପରେ ଆକ୍ରମଣ କଲେ । ଯୁବକ, ଶ୍ରମିକ, କୃଷକମାନଙ୍କର ଲାଲ ସେନାବାହିନୀ ବା ରେଡ୍ ଆର୍ମି ଆକ୍ରମଣକାରୀଙ୍କୁ କଠୋରଭାବେ ପରାସ୍ତ କଲା ପରେ ଜର୍ମାନୀ ସହିତ ଶାନ୍ତିଚୁକ୍ତି ସଂପାଦିତ ହେଲା ।

ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ, ଫ୍ରାନ୍ସ, ଜାପାନ ଓ ଅନ୍ୟ ଦେଶର ସାମ୍ରାଜ୍ୟବାଦୀମାନେ ମଧ୍ୟ ସୋଭିଏତ୍ ରିପବ୍ଲିକ୍‌କୁ ଆକ୍ରମଣ କଲେ । ସେମାନଙ୍କର

ସୈନ୍ୟମାନେ ସୋଭିଏତ୍ ରିପବ୍ଲିକ୍‌ର ବେଶ ଗୋଟାଏ ବଡ଼ ଅଞ୍ଚଳ ଦଖଲ କରିନେଲେ ଓ ସେଠାରେ ଅତି ଘୃଣ୍ୟ, ନୃଶଂସ ଅତ୍ୟାଚାର ଚଳାଇଲେ । ସାମ୍ରାଜ୍ୟବାଦୀ ଦେଶର ସରକାରସବୁ ସୋଭିଏତ୍ ରିପବ୍ଲିକ୍‌କୁ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରୁ ବିଚ୍ଛିନ୍ନ କରି ଅବରୋଧ କଲେ । ଶିଳ୍ପଜାତ ଦ୍ରବ୍ୟ, ଖାଦ୍ୟଶସ୍ୟ, ଔଷଧ-ପତ୍ର ସେହି ଅବରୋଧ ଭେଦ କରି ଭିତରକୁ ଆସିପାରିଲା ନାହିଁ ।

ବିଦେଶୀ ହସ୍ତକ୍ଷେପକାରୀମାନେ ସୋଭିଏତ ଦେଶ ଭିତରେ ଥିବା ପ୍ରତି-ବିପ୍ଳବୀମାନଙ୍କ ସହିତ କ୍ଷୀରରେ ନୀର ଭଳି ମିଶି ସଙ୍ଗ ହୋଇ କାମ କରୁଥିଲେ ।

ସେମାନେ ବ୍ରିଟେନ ପ୍ରତିକ୍ରିୟାଶୀଳ ଶ୍ୱେତ ସୈନ୍ୟବାହିନୀ ବା ହ୍ୱାଇଟ୍ ଗାର୍ଡ଼ଙ୍କୁ ଅସ୍ତ୍ରଶସ୍ତ୍ର ଓ ସାମରିକ ସରଞ୍ଜାମ ଯୋଗାଇ ଦେଉଥିଲେ । ବ୍ରିଟିଶ ସେନାପତି ନକ୍ସ ପ୍ରକାଶ କରିଥିଲେ ଯେ, ସେମାନେ ଲକ୍ଷ ଲକ୍ଷ ରାଇଫଲ, କୋଟି କୋଟି ସଂଖ୍ୟାରେ ଗୁଳିଗୋଳା, ଲକ୍ଷ ଲକ୍ଷ ପୋଷାକପତ୍ର, ମେସିନ୍ ଗନ୍ ଆଦି ସାଇବେରିଆକୁ ପଠାଇ-ଥିଲେ । ସେ ଆହୁରି କହିଥିଲେ, ବଲସେଭିକଙ୍କ ମୃତ୍ୟୁ ହେଉଥିବା ପ୍ରତ୍ୟେକଟି ଗୁଳି ତିଆରି ହୋଇଥିଲା ବିଲାତରେ ।

ରୁଷର ପୁଞ୍ଜିପତି ଓ ଜମିଦାରମାନେ ଦେଶକୁ ବିକିଦେବାକୁ ପ୍ରସ୍ତୁତ ଥିଲେ । ସେମାନଙ୍କୁ ପୁନର୍ବାର କ୍ଷମତା ଦଖଲରେ ସାହାଯ୍ୟ କଲେ ସେମାନେ ତା ବଦଳରେ ବିଦେଶୀ ସାମ୍ରାଜ୍ୟବାଦୀମାନଙ୍କୁ ଜମି, ଖାଦ୍ୟଶସ୍ୟ, ତୈଳ ଓ ଅନ୍ୟାନ୍ୟ ଧନସଂପଦ ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ତେଣୁ ଦୁଇଟି ଶକ୍ତି : ବିଦେଶୀ ସାମାଜ୍ୟବାଦୀ ଓ ଦେଶ ଭିତରର ପ୍ରତିବିପ୍ଳବୀ ସୋଭିଏତ୍ ରୁଷରେ ଲଢ଼ି ତାକୁ ଧ୍ୱଂସ କରିବାଲାଗି ମିଳିତ ହୋଇଥିଲେ । ସେମାନେ ଶିଶୁ ସୋଭିଏତ୍ ରାଷ୍ଟ୍ରକୁ ଚତୁର୍ଦ୍ଦିଗରୁ ଯୁଦ୍ଧର ଅଗ୍ନି-ବ୍ୟୂହରେ ପକାଇ ତା ଉପରେ ଏ ସୁଦୀର୍ଘ ଓ କଠୋର ସଂଗ୍ରାମ ଲଦିଦେଇଥିଲେ ।

ତିନି ବର୍ଷ କାଳ ସାମ୍ରାଜ୍ୟବାଦୀ ଓ ପ୍ରତିବିପ୍ଳବୀମାନେ ଅନାହାରଗ୍ରସ୍ତ ଦୁର୍ଭିକ୍ଷ ଓ ଯୁଦ୍ଧବିଧ୍ୱସ୍ତ ଶ୍ରମିକ କୃଷକଙ୍କ ରିପବ୍ଲିକ୍‌କୁ ଦାରୁଣ ଦୁଃଖଯନ୍ତ୍ରଣାରେ ମଥିତ ଓ ବ୍ୟତିବ୍ୟସ୍ତ କରିପକାଉଥିଲେ । ଏମିତି ସମସ୍ତ ଅଛିଥିଲା ଯେତେବେଳେ କି ପ୍ରତି-ବିପ୍ଳବୀ ଶ୍ୱେତ ସୈନ୍ୟବାହିନୀ ପେଟ୍ରୋଗ୍ରାଡ୍‌ର ଉପକଣ୍ଠରେ ଓ ମସ୍କୋଠାରୁ ୮୦ କିଲୋମିଟର ଦୂରରେ ଉପସ୍ଥିତ ହୋଇଯାଇଥିଲେ ; ସବୁଠୁଁ ଗୁରୁତ୍ୱପୂର୍ଣ୍ଣ ଶିଳ୍ପ ଓ ଖାଦ୍ୟଶସ୍ୟ ଉତ୍ପାଦନକାରୀ ଅଞ୍ଚଳମାନଙ୍କୁ ଦଖଲ କରିନେଇଥିଲେ ।

ଲେନିନଙ୍କ ଆହ୍ୱାନରେ ବୀର ଲାଲ ସେନାବାହିନୀ କମ୍ୟୁନିଷ୍ଟ, ଯୁବ କମ୍ୟୁନିଷ୍ଟ ଲିଗ ସଭ୍ୟ ଓ ଶ୍ରେଣୀ ସଚେତନ ଶ୍ରମିକମାନଙ୍କୁ ସମ୍ମୁଖ ଭାଗରେ ରଖି ଶ୍ୱେତବାହିନୀ ଓ ବିଦେଶୀ ସାମ୍ରାଜ୍ୟବାଦୀମାନଙ୍କର ପଥ ଅବରୁଦ୍ଧ କଲା ; ୧୯୨୦ର ଶେଷ ବେଳକୁ ସୋଭିଏତ ରିପବ୍ଲିକ୍‌ର ସମସ୍ତ ମୁଖ୍ୟ ଶତ୍ରୁମାନଙ୍କୁ ଧ୍ୱସ୍ତବିଧ୍ୱସ୍ତ କରିଦେଲା ଏବଂ ସୋଭିଏତ୍ କ୍ଷମତା ପ୍ରତିଷ୍ଠାର ୫ମ ବାର୍ଷିକ ଅନୁଷ୍ଠାନ ସମସ୍ତଙ୍କୁ ସମସ୍ତ ହସ୍ତକ୍ଷେପକାରୀଙ୍କୁ ବାହାର କରିଦେଲା ।

ବିଦେଶୀ ହସ୍ତକ୍ଷେପକାରୀ ଓ ଘର ଭିତରର ପ୍ରତିବିପ୍ଳବୀମାନଙ୍କର ସୋଭିଏତ ବ୍ୟବସ୍ଥାବିରୋଧୀ ସଂଗ୍ରାମ ଶ୍ରମିକ-କୃଷକମାନଙ୍କର ବିଜୟରେ ହିଁ ଶେଷ ହେଲା । ସୋଭିଏତ ଲୋକେ ସେମାନଙ୍କ ସମାଜବାଦୀ ମାତୃଭୂମିର ମୁକ୍ତି ଆଉ ସ୍ୱାଧୀନତାର ଟେକ ରଖିଲେ ।

ଏହି ଅସଂଖ୍ୟ ବାଲିଷ୍ଠ ଶତ୍ରୁଙ୍କୁ ପରାସ୍ତ କରିବା ବାଟରେ ଶିଶୁ ସୋଭିଏତ୍ ରିପବ୍ଲିକକୁ ସାହାଯ୍ୟ ମିଳିଥିଲା କିଏ, କିଭଳି ବା ?

ଦେଶର ସକଳପ୍ରକାର ଜାତିବର୍ଣ୍ଣର ଶ୍ରମିକ ଆଉ କୃଷକ ସୋଭିଏତ୍ ସରକାର ପଛରେ ସମବେତ ହୋଇଥିଲେ । ସେମାନେ ଦେଖିଥିଲେ ଯେ, ସୋଭିଏତ୍ ସରକାର ହିଁ ସେମାନଙ୍କର ସ୍ୱାର୍ଥରକ୍ଷା କରୁଛି । ବୁଝିଥିଲେ, ଏକ ନ୍ୟାୟସଂଗତ ଯୁଦ୍ଧ ଚାଲିଛି । ଏଣୁ ଅକୁଣ୍ଠିତ ଭାବରେ ଲାଲ ସେନାବାହିନୀକୁ ସେମାନେ ସମସ୍ତ ସାହାଯ୍ୟ ଯୋଗାଇ ଦେଉଥିଲେ । ଲାଲ ସେନାବାହିନୀ ଯେ ଲୋକମାନଙ୍କର ସ୍ୱାର୍ଥ ଲାଗି ଲଢୁଛି, ତାହା ହିଁ ତାକୁ ଅଜେୟ ଶକ୍ତିରେ ବଳୀୟାନ କରିଥିଲା । "ସୋଭିଏତ ଭୂମି ଉପରେ ହାତ ଦିଅ ନାହିଁ," ଏହି ସ୍ଲୋଗାନ ଦେଇ ଆନ୍ତର୍ଜାତୀୟ ସର୍ବହରାମାନଙ୍କର ବୈପ୍ଳବିକ ସଂଗ୍ରାମ ମଧ୍ୟ ଲାଲ ସୈନ୍ୟବାହିନୀକୁ ବିଜୟ ହାସଲ ଲାଗି ଉତ୍ସାହ ଉନ୍ମାଦନା ଯୋଗାଇଦେଇଥିଲା ।

ସୋଭିଏତ୍ ଲୋକ ଓ ସେମାନଙ୍କ ସୈନ୍ୟବାହିନୀର ବିଜୟ ପଛରେ ନିତାନ୍ତ ବା କୃତ୍ରିମ ଭାବରେ ଯାହା କାର୍ଯ୍ୟକାରୀ ହୋଇଥିଲା, ତାହା ହେଉଛି କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ । ପାର୍ଟି ସର୍ବହରା ଓ ମେହନତୀକାରୀ କୃଷକମାନଙ୍କୁ ସେମାନଙ୍କ ଶତ୍ରୁମାନଙ୍କ ବିରୁଦ୍ଧରେ ଲଢିବାଲାଗି ସଂଗଠିତ ଓ ଅନୁପ୍ରାଣିତ କରିଥିଲା ।

## ୩—ସୋଭିଏତ ସୋସାଲିଷ୍ଟ ରିପବ୍ଲିକ ଇଉନିଅନର ସମାଜବାଦୀ ନିର୍ମାଣ

ଯେତେବେଳେ ଗୃହଯୁଦ୍ଧ ଓ ସାମ୍ରାଜ୍ୟବାଦୀ ହସ୍ତକ୍ଷେପର ଅବସାନ ଘଟିଲା, ସେତେବେଳେ ସୋଭିଏତ୍ ଲୋକେ ଏକ ନୂତନ ସାମାଜିକ ବ୍ୟବସ୍ଥା ଗଠନ ବାଟରେ ସେମାନଙ୍କର ଏକନିଷ୍ଠ ଦୃଷ୍ଟି ଦେବାକୁ ସମର୍ଥ ହେଲେ । ସଂକଳ୍ପ କରି ସେମାନେ ଶାନ୍ତିପୂର୍ଣ୍ଣ ଅର୍ଥନୈତିକ ନିର୍ମାଣରେ ଲାଗିପଡ଼ିଲେ ।

## ସମାଜବାଦ ଲାଗି ଲେନିନଙ୍କ ଖସଡ଼ା

ସୋଭିଏତ୍ ସୋସାଲିଷ୍ଟ ରିପବ୍ଲିକ୍ ଇଉନିଅନରେ ସମାଜବାଦର ଗଠନ ଥିଲା କୌଣସିକାଳେ ଏକ ନୂତନ ଆଉ ଅଚିହ୍ନା କଷ୍ଟକର କାର୍ଯ୍ୟ । ଶିଶୁ ସୋଭିଏତ୍ ରାଷ୍ଟ୍ରକୁ ଅର୍ଥନୈତିକ ଅବରୋଧ, ଷଡ଼ଯନ୍ତ୍ର, ଅନ୍ତର୍ଘାତୀ ଓ ସନ୍ତ୍ରାସବାଦୀ କାର୍ଯ୍ୟ ଆଦି ବିରୁଦ୍ଧରେ ଠିଆ ହେବାକୁ ପଡ଼ିଥିଲା । ତାର ଅର୍ଥନୀତି ଅତ୍ୟନ୍ତ

ପଶ୍ଚାଦ୍‌ପଦ, ମୁଖ୍ୟତଃ କୃଷି-ଅର୍ଥନୀତି ହିଁ ଥିଲା: ଆଉ, ତାହା ମଧ୍ୟ ଅଭୂତପୂର୍ବ ଧ୍ୱଂସ ଅବସ୍ଥାରେ ରହିଥିଲା । ଏଣୁ ପ୍ରଧାନ ଶିଳ୍ପଜାତ ଦ୍ରବ୍ୟଗୁଡ଼ିକର ଉତ୍ପାଦନ ଯୁକ୍ତରାଷ୍ଟ୍ର ଆମେରିକାର ଉତ୍ପାଦନ ସ୍ତରଠାରୁ ଶହେ ବା ତା'ଠାରୁ ଅଧିକ ଗୁଣ ପଛରେ ପଡ଼ିବା ସ୍ୱାଭାବିକ ଥିଲା ।

ଶ୍ରମଜୀବୀ ଲୋକମାନଙ୍କର ଦେଶପର୍ଯ୍ୟନ୍ତ ସମାଜବାଦୀ ଗଠନ ପଥରେ କୌଣସି କାର୍ଯ୍ୟକାରୀ ଅଭିଜ୍ଞତା ଆସି ନ ଥିଲା । ସେଭଳି କେହି କେଉଁଠି ନ ଥିଲେ, ଯାହାଙ୍କ ଅଭିଜ୍ଞତାକୁ ଓ ଅର୍ଥନୈତିକ ସାହାଯ୍ୟ ଲାଗି ଦୃଷ୍ଟି ପକାଇ ପାରିଥାନ୍ତେ । ଏହା ପରେ ପ୍ରାୟ ୩୦ ବର୍ଷ କାଳ ସୋଭିଏତ୍ ଇଉନିଅନ ଏକମାତ୍ର ସମାଜବାଦୀ ଦେଶ ହୋଇ ରହିଲା । ସାମ୍ରାଜ୍ୟବାଦୀ ଶକ୍ତିମାନେ ସମାଜବାଦର ନିର୍ମାଣକୁ କ୍ଷତିଗ୍ରସ୍ତ ଓ ପଣ୍ଡ କରିବା ପଥରେ ଏବଂ ସୋଭିଏତ୍ ଇଉନିଅନକୁ ଦୁର୍ବଳ କରିବା ପଥରେ ଯେତେଦୂର ଯାହା କରିପାରିବା ସମ୍ଭବ ତାହା କରିବାକୁ ଆଗେଇ ଯାଇଥିଲେ । କିନ୍ତୁ ଲେନିନଙ୍କ ନେତୃତ୍ୱରେ ପରିଚାଳିତ କମ୍ୟୁନିଷ୍ଟ ପାର୍ଟି କଠିନ ଅସୁବିଧା ସମ୍ମୁଖରେ ଭୟଭୀତ ନ ହୋଇ ବରଂ ସୃଜନଶୀଳ ଉଦ୍ୟମ ଲାଗି ଶ୍ରମଜୀବୀ ଲୋକମାନଙ୍କୁ ସମବେତ ଓ ଅନୁପ୍ରାଣିତ କରିଥିଲା ।

ଲେନିନ, ସୋସାଲିଷ୍ଟ ସୋଭିଏତ ଗଣତନ୍ତ୍ର ଇଉନିଅନରେ ସମାଜବାଦ ଗଠନ ଲାଗି ଏକ ବଡ଼ ଯୋଜନା ପ୍ରସ୍ତୁତ କଲେ । ସେ ଜୋର ଦେଇ କହିଲେ, ପାର୍ଟି ଓ ଲୋକମାନଙ୍କର ମୁଖ୍ୟ କର୍ତ୍ତବ୍ୟ ହେଉଛି ସେମାନଙ୍କୁ ନିଜର ଶିଳ୍ପ ଗଠନ କରିବାକୁ ହେବ । ସର୍ବପ୍ରଥମେ ସେହି ଗୁରୁ ଶିଳ୍ପଗୁଡ଼ିକ ପ୍ରତି ଦୃଷ୍ଟି ଦେବାକୁ ହେବ, ଯାହା କି ଉତ୍ପାଦନର ଉପକରଣ ଉତ୍ପନ୍ନ କରେ ଏବଂ ସଙ୍ଗେ ସଙ୍ଗେ ସମସ୍ତ ଦେଶକୁ ବିଦ୍ୟୁତ୍‌ମୟ କରିବାକୁ ହେବ । ଏହା ହେଲେ ହିଁ ସେମାନେ କୃଷିକୁ ଯନ୍ତ୍ରପାତି ଯୋଗାଇପାରିବେ ଓ ତା'ର ଅଗ୍ରଗତିକୁ ନିଶ୍ଚିତ କରିପାରିବେ; ଖାଉଟି ଦ୍ରବ୍ୟ ଶିଳ୍ପଗୁଡ଼ିକର ବିକାଶ ଆଣିପାରିବେ, ଦେଶର ପ୍ରତିରକ୍ଷା ଶକ୍ତିକୁ ସୁଦୃଢ଼ କରିବେ ଏବଂ ତା'ର ରାଜନୈତିକ ଓ ଅର୍ଥନୈତିକ ସ୍ୱାଧୀନତାକୁ ରକ୍ଷା କରିପାରିବେ ।

୧୯୨୦ରେ ଲେନିନଙ୍କ ଉଦ୍ୟମରେ ରୁଷରେ ବିଦ୍ୟୁତୀକରଣର ଏକ ଯୋଜନା ପ୍ରସ୍ତୁତ ହେଲା । ଲେନିନ ଏହାକୁ ପାର୍ଟିର ଦ୍ୱିତୀୟ କାର୍ଯ୍ୟକ୍ରମ ଆଖ୍ୟା ଦେଲେ । ଦେଶର ଉତ୍ପାଦିକା ଶକ୍ତିର ଜୋରଦାର ପ୍ରସାର ପଥରେ ଉଦ୍ଦିଷ୍ଟ ଏହି ଯୋଜନାରେ ବ୍ୟବସ୍ଥା ରହିଲା — ୧୦ ରୁ ୧୫ ବର୍ଷ ମଧ୍ୟରେ ସର୍ବମୋଟ ୧, ୫୦୦, ୦୦୦ କିଲୋଓ୍ୱାଟ୍ ଶକ୍ତିସଂପନ୍ନ ୩୦ଟି ବୃହତ୍ ବିଦ୍ୟୁତ୍ ଶକ୍ତି କେନ୍ଦ୍ର ପ୍ରତିଷ୍ଠିତ ହେବ ।



ବିଦ୍ୟୁତୀକରଣ କର୍ମସୂଚୀର ରୂପରେଖ ରଚନାରେ ଲେନିନ୍

ଆଜି ଭଲ୍ଗା କୂଳରେ ଥିବା ଲେନିନ୍ ଜଳବିଦ୍ୟୁତ୍ ଷ୍ଟେସନ୍‌ର ଶକ୍ତି କେବଳ ଏହି ଯୋଜନାର ନିର୍ଦ୍ଦିଷ୍ଟ ଶକ୍ତି ତୁଳନାରେ ଅନେକ ବେଶି । ତେବେ ସେ ସମୟରେ ଅତ୍ୟନ୍ତ ପଶ୍ଚାତ୍‌ପଦ ରୁଷରେ ଏହି ଯୋଜନା ଥିଲା ଏକ ଦୁଃସାହସିକ ସ୍ୱପ୍ନ । ବନ୍ନ ବୈଜ୍ଞାନିକ ଉପନ୍ୟାସର ଲେଖକ ଏଚ, ଜି, ଓ୍ୱେଲସ୍ ରୁଷରେ ଏହି ବିଦ୍ୟୁତୀକରଣ ଯୋଜନା ସମ୍ଭବପର ବୋଲି ବିଶ୍ୱାସ କରି ନ ଥିଲେ ଏବଂ ଏଥିପାଇଁ ସେ ଲେନିନଙ୍କୁ "କ୍ରେମଲିନର ସ୍ୱପ୍ନବିଳାସୀ" ବୋଲି ଅଭିହିତ କରିଥିଲେ ।

ସମାଜବାଦ ନିର୍ମାଣ ପଥରେ ଆଉ ଏକ କାର୍ଯ୍ୟ କରିବାକୁ ପଡ଼ିଥିଲା । ତାହା ଥିଲା, ଛୋଟ ଛୋଟ କୃଷକଙ୍କର କ୍ଷେତବାଡ଼ିକୁ କୋଠଖେତରେ ଏକତ୍ର କରିବାକୁ ହେବ । କୋଠଖେତ ସହିତ ଶିଳ୍ପର ପୁରା ଉନ୍ନତି ହୋଇ କାର୍ଯ୍ୟକାରୀ ହେଲେ ତାହା ହିଁ ବହୁ ସଂଖ୍ୟାରେ ଆଧୁନିକ କଳକବ୍ଜା ଓ ମେସିନ ଆଦି କୃଷିକୁ ଯୋଗାଇପାରିବ ଏବଂ ପଶ୍ଚାତ୍‌ପଦ ଅବସ୍ଥାକୁ ଦୂର କରିପାରିବ । ଗ୍ରାମାଞ୍ଚଳରେ ସମାଜବାଦୀ ନିର୍ମାଣ ଏକ କଠିନ କାର୍ଯ୍ୟ ଥିଲା । ଲେନିନ୍ ସାବଧାନ କରିଦେଇ କହିଥିଲେ, କୌଣସି ଆବଶ୍ୟକୀୟ ପ୍ରଚେଷ୍ଟା ନ ନେଇ ତରବରରେ ଓ ବାଧ୍ୟତାମୂଳକ ବ୍ୟବସ୍ଥାକୁ ଏଡ଼ାଇଦେବା ବିଷୟରେ ସତର୍କ ହେବାକୁ ହେବ ଏବଂ ଧୀରେ ଧୀରେ ଗ୍ରାମାଞ୍ଚଳରେ ପ୍ରଥମେ କୃଷି ଉତ୍ପାଦନ ଦ୍ରବ୍ୟ ବିକ୍ରୟ କ୍ଷେତ୍ରରେ ଓ ପରେ ସମସ୍ତ ଉତ୍ପାଦନ କ୍ଷେତ୍ରରେ କୋଅପରେଟିଭମାନ ପ୍ରଚଳନ କରିବାକୁ ହେବ । କୃଷକମାନଙ୍କୁ ନିଜ ଅଭିଜ୍ଞତାରୁ

କୋଠରୀ ପ୍ରତି ସୁବିଧା ସୁଯୋଗ ବିଷୟ ଶିକ୍ଷା କରିବାକୁ ହେବ । ଏହା ହେଲେ ସଫଳତା ସୁନିଶ୍ଚିତ ହେବ ।

ସମାଜବାଦ ନିର୍ମାଣ ପଥରେ ଏକ ସାଂସ୍କୃତିକ ବିପ୍ଳବ, ଲେନିନଙ୍କ ଯୋଜନାର ଗୋଟାଏ ପ୍ରଧାନ ବିଷୟବସ୍ତୁ ଥିଲା । ଦେଶର ଶାସନ, ଅର୍ଥନୀତି ପରିଚାଳନା, ଜାତିର ବିଦ୍ୟାର ବିକାଶ ଓ ଦ୍ରୁତଭାବେ ଶ୍ରମଉତ୍ପାଦନଶୀଳତା ବୃଦ୍ଧି—ଏ ସବୁ ହାସଲ କରିବାକୁ ହେଲେ ସମସ୍ତ ଅଧିବାସୀଙ୍କୁ ଶିକ୍ଷିତ କରିବାକୁ ହେବ, ସୋଭିଏତ ବୈଜ୍ଞାନିକ ଓ ଟେକ୍‌ନିକାଲ ବା କାରିଗରି ଲୋକ ତାଲିମ କରିବାକୁ ହେବ ।

ସମାଜବାଦ ଗଠନ ଲାଗି ଲେନିନଙ୍କର ସେହି ଚମତ୍କାର ଯୋଜନା, ବୈଜ୍ଞାନିକ ଭାବରେ ପ୍ରଣୋଦିତ ଥିଲା । ତାହା ସାମାଜିକ ବିକାଶର ବସ୍ତୁଗତ ନିୟମକୁ ପୂର୍ଣ୍ଣଭାବରେ ବିଚାରକୁ ନେଇଥିଲା । ସେ ସମୟରେ ସୋଭିଏତ୍ ରିପବ୍ଲିକ୍‌ର ଯେଉଁ ବାସ୍ତବ ସମ୍ଭାବନାମାନ ଥିଲା, ଲେନିନ୍ ତାଙ୍କୁ ଧ୍ୟାନ ଭିତ୍ତି କରି ଅଗ୍ରସର ହୋଇଥିଲେ । ସାମାଜିକ ପରିବର୍ତ୍ତନର ଏକ ସ୍ତରରୁ ଅନ୍ୟ ଏକ ସ୍ତରକୁ ପରିଗମନ କେତେବେଳେ ସେତେବେଳେ ହିଁ ସମ୍ଭବ ହୁଏ, ଯେତେବେଳେ ତଦନୁରୂପ ଅର୍ଥନୈତିକ ଓ ରାଜନୈତିକ ପୂର୍ବାବସ୍ଥା ସୃଷ୍ଟି ହୋଇଥାଏ,—ଲେନିନ ଏ ବିଷୟରେ ସତର୍କ କରିଦେଇଥିଲେ । ଯଦି ଲେନିନ୍‌ଙ୍କ ନିର୍ଦ୍ଦେଶକୁ ଏଡ଼ା ଦିଆ ହୋଇଥାନ୍ତା, ଯଦି ଅତି ଶୀଘ୍ର ଅଗ୍ରସର ହେବା ଲାଗି ଓ ସମାଜବାଦୀ ନିର୍ମାଣର ଆବଶ୍ୟକୀୟ ସ୍ତରସବୁ ଡେଇଁଯିବା ପଥରେ ଚେଷ୍ଟା ହୋଇଥାନ୍ତା, ତାହା ସମାଜବାଦର ବିଜୟକୁ କେବଳ ପ୍ରତିହତ କରିଥାନ୍ତା ।

ଲେନିନ୍ ବୁଝାଇଦେଇଥିଲେ ଯେ, ସମାଜବାଦ ନିର୍ମାଣ ଲାଗି ସୋଭିଏତ ଭୂମିରେ ଦରକାର ହେଉଥିବା ପ୍ରତ୍ୟେକଟି ଜିନିଷ ରହିଛି । ସମସ୍ତଙ୍କୁ ଯାହା କେବଳ କରିବାକୁ ପଡ଼ିବ, ତାହା ହେଲା: ପ୍ରତ୍ୟେକ ବ୍ୟବସ୍ଥା ଉପଯୁକ୍ତ ଭାବରେ ପରିଚାଳିତ କରିବାକୁ ହେବ, ଦେଶକୁ ବଳିଷ୍ଠ କରିବାକୁ ହେବ, ସବୁଥିରେ କଠୋର ମିତବ୍ୟୟିତା ପାଳନ କରିବାକୁ ହେବ ।

ସମାଜବାଦ ନିର୍ମାଣ ଲାଗି ଶାନ୍ତି ଏକାନ୍ତ ଆବଶ୍ୟକ । ଲେନିନ୍‌ଙ୍କର ମହାନ ନିର୍ଦ୍ଦେଶ ଥିଲା ଯେ ଶାନ୍ତିର ସୁରକ୍ଷା ଲାଗି ଦେଶ କାର୍ଯ୍ୟକାରୀ ହେବା ଉଚିତ । ଏକ ନିର୍ମମ ବୈଦେଶିକ ନୀତି ଅନୁସରଣ କରିବା ଦରକାର ଏବଂ ସାମ୍ରାଜ୍ୟବାଦୀମାନେ ତାଙ୍କୁ ଯେପରି ଯୁଦ୍ଧ ଭିତରକୁ ଟାଣି ନ ନିଅନ୍ତି, ସେଥିପ୍ରତି ସତର୍କ ରହିବା ଆବଶ୍ୟକ । ଏହା ହେଲା ସଂକ୍ଷେପରେ ସମାଜବାଦୀ ଗଠନ ଲାଗି ଲେନିନ୍‌ଙ୍କ ଯୋଜନାର ସାରମର୍ମ । ତାହା ଏକ ଚିରଜାଜ୍ୱଲ୍ୟମାନ ଆଲୋକର ସ୍ତମ୍ଭ—ନୂତନ ଜୀବନ, ସମାଜବାଦ ପଥରେ ଲୋକମାନଙ୍କର ମାର୍ଗକୁ ଆଲୋକିତ କରୁଛି ।

ଲେନିନ୍‌ଙ୍କ ଯୋଜନାକୁ କାର୍ଯ୍ୟକାରୀ କରିବାରେ କମ୍ୟୁନିଷ୍ଟ ପାର୍ଟି ଲୋକମାନଙ୍କ ଉଦ୍ୟମକୁ ପରିଚାଳିତ କଲା। ଅତି ତାକୁ ପ୍ରଥମ ବିଶ୍ୱଯୁଦ୍ଧ ଓ ଗୃହଯୁଦ୍ଧ କାଳରେ ଧ୍ୱସ୍ତବିଧ୍ୱସ୍ତ ହୋଇଥିବା ଅର୍ଥନୀତିକୁ ପୁନର୍ଗଠିତ କରିବାକୁ ପଡ଼ିଲା। ଏହି ପୁନର୍ଗଠନ ସମସ୍ତ (୧୯୨୧-୨୫) ଚାରିବର୍ଷ କାଳ ଯାଏ ଲାଗି ରହିଥିଲା। ଏହି ସମସ୍ତ ଭିତରେ ଅର୍ଥନୈତିକ ବିଶୃଙ୍ଖଳାକୁ ଦୂର କରିବାଲାଗି, ଶିଳ୍ପ, ପରିବହନ ଓ କୃଷିକ୍ଷେତ୍ରରେ ଅଧୋଗତିକୁ ଅତିକ୍ରମ କରିବାଲାଗି ଏବଂ ବେକାର ସମସ୍ୟା ଓ ଅନାହାରକୁ ମୂଳପୋଛ କରିବାଲାଗି ଜୋରସୋରରେ କାର୍ଯ୍ୟ କରିବାକୁ ପଡ଼ିଥିଲା।

ସମାଜବାଦ ନିର୍ମାଣରେ ସଫଳତା ଲାଭର ଏକ ମୁଖ୍ୟ ବିଷୟ ହେଉଛି— ଶ୍ରମିକଶ୍ରେଣୀ ଓ କୃଷକମାନଙ୍କ ମଧ୍ୟରେ ସୁଦୃଢ଼ ମିତ୍ରତା। ଶ୍ରମିକ ଓ କୃଷକ ଉଭୟଙ୍କ ସ୍ୱାର୍ଥକୁ ବିସ୍ତାର କରୁଥିବା କେବଳ ଏକ ନିର୍ଭୁଲ ଅର୍ଥନୈତିକ ନୀତି ଅନୁସରଣ କରିବା ଦ୍ୱାରା ସୋଭିଏତ୍ ରାଷ୍ଟ୍ର ଏହି ପ୍ରକାର ମିତ୍ରତାକୁ ସୁନିଶ୍ଚିତ କରିଥିଲା।

ଗୃହଯୁଦ୍ଧ କାଳରେ ସୋଭିଏତ୍ ରାଷ୍ଟ୍ର 'ସାମରିକ କମ୍ୟୁନିଜମ୍'ର ନୀତି କାର୍ଯ୍ୟକାରୀ କରିବାକୁ ବାଧ୍ୟ ହୋଇଥିଲା। ଏହାର ସାରକଥା ହେଉଛି ଯେ, ନିଜର ଉତ୍ପାଦିତ ସମସ୍ତ ଉଦ୍‌ବୃତ୍ତ ଶସ୍ୟ କୃଷକମାନଙ୍କୁ ଜାତୀୟ ପ୍ରତିରକ୍ଷାର ଆବଶ୍ୟକତା ପୂରଣ ଲାଗି ରାଷ୍ଟ୍ରକୁ ଦେଇଦେବାକୁ ପଡ଼ୁଥିଲା। ଯୁଦ୍ଧ ଓ ଧ୍ୱସ୍ତବିଧ୍ୱସ୍ତ ଅର୍ଥନୀତି ଯୋଗୁଁ ରାଷ୍ଟ୍ର କୃଷକମାନଙ୍କର ଉକ୍ତ ଶସ୍ୟ ଓ କୃଷିଜାତ ପଦାର୍ଥ ପରିବର୍ତ୍ତେ କୃତକ୍ କିଛି ଦେବାକୁ ସମର୍ଥ ହୋଇଥିଲା। ଏହା ସତ୍ତ୍ୱେ କୃଷକମାନେ ସୋଭିଏତ୍‌କୁ ସମର୍ଥନ ଦେଇଥିଲେ, କାରଣ ତାହା ହିଁ ସେମାନଙ୍କୁ ଜମି ଦାନ କରିଥିଲା। ତେଣୁ ସେମାନେ ଶତ୍ରୁ ବିରୁଦ୍ଧରେ ବିଜୟ ହାସଲ ଲାଗି ତ୍ୟାଗ ସ୍ୱୀକାର କରିବାକୁ କୁଣ୍ଠିତ ହୋଇ ନ ଥିଲେ। ଶ୍ରମିକଶ୍ରେଣୀ ଓ କୃଷକମାନଙ୍କ ମଧ୍ୟରେ ଏକ ସାମରିକ ଓ ରାଜନୈତିକ ମିତ୍ରତା ଗଠିତ ହୋଇଥିଲା।

ତେବେ ଯେତେବେଳେ ଯୁଦ୍ଧ ଶେଷ ହେଲା, ଏହି ମିତ୍ରତା ଲାଗି ଏକ ଅର୍ଥନୈତିକ ଭିତ୍ତି ଯୋଗାଇବାକୁ ପଡ଼ିଲା। ତେଣୁ ଯୁଦ୍ଧ ପରେ ଅତି ଶୀଘ୍ର ଲେନିନଙ୍କ ଉଦ୍ୟମରେ ଆଉ ଏକ ନୂତନ ଅର୍ଥନୈତିକ ନୀତି (NEP) "ନେପ୍" ପ୍ରବର୍ତ୍ତିତ ହେଲା।

ବ୍ୟକ୍ତିଗତ ବୈଷୟିକ ଉତ୍ସାହର ଭିତ୍ତି ଉପରେ ଅର୍ଥନୈତିକ ବିକାଶରେ ସକ୍ରିୟ ଅଂଶ ଗ୍ରହଣ କରିବା ଦିଗରେ ଏହି ନୂତନ ଅର୍ଥନୈତିକ ନୀତି (ନେପ) ସମସ୍ତ ଶ୍ରମଜୀବୀ ଲୋକଙ୍କୁ ଆକୃଷ୍ଟ କରିଥିଲା।

ବାଧ୍ୟତାମୂଳକ ଉଦ୍‌ବୃତ୍ତ ଦାନର ବ୍ୟବସ୍ଥା ପରିବର୍ତ୍ତେ ଜିନିଷପତ୍ରରେ ଟିକସ ପ୍ରଥା ପ୍ରଚଳିତ ହେଲା। କୃଷକମାନଙ୍କୁ ଏବେ ପୂର୍ବରୁ ନିର୍ଦ୍ଧାରିତ ଏକ ନିର୍ଦ୍ଦିଷ୍ଟ



ତ୍ରିଂଶ ଦଶକର ସାଇବେରିଆରେ କୁଜ୍‌ନେତ୍ସ୍କ
ଲୁହା ଓ ଇସ୍ପାତ କାରଖାନା ନିର୍ମାଣ

ପରିମାଣରେ ଉତ୍ପନ୍ନ ଦ୍ରବ୍ୟକୁ ବେଚିବାକୁ ପଡ଼ୁଥିଲା । ସେମାନଙ୍କର ଯାହା ଉଦ୍‌ବୃତ୍ତ ରହୁଥିଲା, ସେମାନେ ଅବାଧରେ ତାହା ବିକ୍ରି କରିପାରିଲେ । ଏ ପର୍ଯ୍ୟନ୍ତ ଜିନିଷପତ୍ର ପ୍ରସ୍ତୁତକାରୀ ଶିଳ୍ପ ପୁନର୍ବାର ପ୍ରତିଷ୍ଠିତ ହୋଇ ପାରି ନ ଥିଲା, ଓ ଗ୍ରାମାଞ୍ଚଳରେ ଲୋକେ ଦରକାର କରୁଥିବା ଜିନିଷମାନ ସେମାନଙ୍କୁ ଯୋଗାଇ ହେଉ ନ ଥିଲା । ତେଣୁ ଘରୋଇ ବ୍ୟକ୍ତିଗତ ବ୍ୟବସାୟୀମାନଙ୍କୁ ଛୋଟ ଛୋଟ ଫ୍ୟାକ୍ଟରି ମାନ ଖୋଲିବାକୁ ଅନୁମତି ଦେଲା । ଅବାଧ ବାଣିଜ୍ୟ ବ୍ୟବସ୍ଥା ଅନୁମୋଦିତ ହେଲା ।

ଏହିସବୁ ବ୍ୟବସ୍ଥା ଫଳରେ କୃଷକମାନେ ଯେତେ ଦୂର ପାରିଲେ ସେତେ ପରିମାଣରେ ଶସ୍ୟ, ମାଂସ, ପଶମ, ଛଣପଟ ଓ ଅନ୍ୟାନ୍ୟ ପଦାର୍ଥ ଉତ୍ପାଦନ କରିବାରେ ଉତ୍ସାହିତ ହେଲେ । ଅନ୍ୟ ଅର୍ଥରେ ଏହା କୃଷିକ୍ଷେତ୍ରରେ ଅଗ୍ରଗତିକୁ ପ୍ରୋତ୍ସାହିତ କଲା । ଏହା ମଧ୍ୟ ଶିଳ୍ପର ପୁନଃପ୍ରତିଷ୍ଠା ଲାଗି ନିତାନ୍ତ ଆବଶ୍ୟକ ଥିଲା ।

କମ୍ୟୁନିଷ୍ଟ ପାର୍ଟି ବୁଝିଥିଲା ଯେ, ଏହି ନୂତନ ଅର୍ଥନୀତି ସହର ଓ ମଫସଲରେ କେତେକ ପରିମାଣରେ ପୁଞ୍ଜିବାଦୀ ଉପାଦାନଗୁଡ଼ିକୁ ପୁନର୍ଜୀବିତ କରୁଛି ଏବଂ ତାହା ସବୁ ସମାଜବାଦ ବିରୁଦ୍ଧରେ ଗତି କରିବ—ତାହା ବିରୁଦ୍ଧରେ ଲଢ଼ିବ । କିନ୍ତୁ ସେହି ଲଢ଼େଇର ଫଳାଫଳ ଯେଉଁ ପାର୍ଟିର କୌଣସି ସନ୍ଦେହ ନ ଥିଲା । କାରଣ, ପାର୍ଟି ଜାଣିଥିଲା— ଯେତେବେଳେ ଶ୍ରମିକଶ୍ରେଣୀ ହାତରେ କ୍ଷମତାର ଡୋରି ରହିଛି ଓ ଅର୍ଥନୀତିରେ ତାହା ମୁଖ୍ୟ ସ୍ଥାନ ଅଧିକାର କରିଛି, ସେତେବେଳେ ସମାଜବାଦର ବିଜୟ ସୁନିଶ୍ଚିତ ହେବ ।

ଏହାର ସଂକ୍ଷିପ୍ତ ସାର ହେଲା—ନୂତନ ଅର୍ଥନୀତି (NEP) ର ଉଦ୍ଦେଶ୍ୟ ହେଉଛି, ଏକ ସମାଜବାଦୀ ସମାଜର ଅର୍ଥନୈତିକ ଭିତ୍ତି ପ୍ରତିଷ୍ଠା କରିବା ଲାଗି ଜାତୀୟ ଅର୍ଥନୀତିର ସମସ୍ତ କ୍ଷେତ୍ରରେ ପୁଞ୍ଜିବାଦୀ ଶକ୍ତିମାନଙ୍କୁ ପରାସ୍ତ କରିବା ସକାଶେ ଏବଂ ଶୋଷକ ଶ୍ରେଣୀମାନଙ୍କୁ ଦୂର କରି ସମାଜବାଦକୁ ବିଜୟ-ମଣ୍ଡିତ କରିବାପାଇଁ ଶ୍ରମିକଶ୍ରେଣୀ ଓ କୃଷକମାନଙ୍କର ମିତ୍ରତାକୁ ସୁଦୃଢ଼ ଓ ବଳିଷ୍ଠ କରିବା ।

ଏହି 'ନୂତନ ଅର୍ଥନୀତି'ର ଆନ୍ତର୍ଜାତୀୟ ତାତ୍ପର୍ଯ୍ୟ ରହିଛି, କାରଣ ଏହା ପୁଞ୍ଜିବାଦରୁ ସମାଜବାଦକୁ ପରିଗମନ କାଳରେ ଅର୍ଥନୀତିର ଏକ ବିଶିଷ୍ଟ ରୂପକୁ ପ୍ରକାଶ କରେ । ଯେଉଁସବୁ ଦେଶରେ ସମାଜବାଦୀ ବିପ୍ଳବ ସଂଗଠିତ ହୋଇଛି, ସେ ସମସ୍ତ ସ୍ଥାନରେ ପୁଞ୍ଜିବାଦରୁ ସମାଜବାଦକୁ ପରିଗମନ କାଳରେ ସୋଭିଏତ୍‌ର ଏହି ନୂତନ ଅର୍ଥନୀତିର ଅନୁରୂପ ନୀତି ପ୍ରୟୋଗ କରାଯାଇଛି ।

# ସାମାଜବାଦୀ ଆର୍ଥନୀତିକ ପୁନର୍ଗଠନ

ଶିଳ୍ପ, କୃଷି ଓ ଅର୍ଥନୀତିର ଅନ୍ୟ ବିଭାଗମାନ ଯୁଦ୍ଧପୂର୍ବ ସ୍ତରରେ ପହଞ୍ଚି-ଗଲା ପରେ କମ୍ୟୁନିଷ୍ଟ ପାର୍ଟି ସମାଜବାଦୀ ଶିଳ୍ପୀକରଣର ଏକ ପ୍ରୋଗ୍ରାମ ତିଆରି କଲା ଓ ତାହା କାର୍ଯ୍ୟକାରୀ କରିବାପାଇଁ ଲୋକମାନଙ୍କୁ ସଂଗଠିତ କଲା ।

ଏହି ସମାଜବାଦୀ ଶିଳ୍ପୀକରଣ ବହୁତ କଷ୍ଟ ଓ ଅସୁବିଧା ଭିତରେ ସମ୍ଭବପର ହୋଇଛି । ସେତେବେଳେ ଏକଦମ୍ ନୂଆ ସମଗ୍ର ଶିଳ୍ପକୁ ନିର୍ମାଣ କରିବା, ସମସ୍ତ ଅର୍ଥନୀତିକୁ ଆଧୁନିକ ଭିତ୍ତିରେ ପ୍ରତିଷ୍ଠା କରିବା ଏବଂ ଦେଶସାରା ବିଦ୍ୟୁତୀକରଣର ପ୍ରୋଗ୍ରାମ କାର୍ଯ୍ୟକାରୀ କରିବାଲାଗି ବିପୁଳ ଅର୍ଥର ପ୍ରୟୋଜନ ପଡ଼ିଥିଲା । ଅନ୍ୟ ସମାଜବାଦୀ ଦେଶମାନଙ୍କରେ ଶିଳ୍ପୀକରଣ ତାହା ତୁଳନାରେ ଅତି ସହଜ ହୋଇଛି, କାରଣ ଉକ୍ତ ଦେଶ ଗୁଡ଼ିକ ପରସ୍ପରକୁ ଭ୍ରାତୃଭାବରେ ସାହାଯ୍ୟ କରୁଛନ୍ତି । ସୋଭିଏତ୍ ଇଉନିଅନ ମଧ୍ୟ ଏହିସବୁ ଦେଶକୁ ବିଶେଷ ଭାବେ ସହାୟତା ଦେଉଛି ।

ତେବେ ବିଂଶ ଓ ତ୍ରିଂଶ ଦଶକରେ ସୋଭିଏତ୍ ଇଉନିଅନ ପୁଞ୍ଜିପତି ଦେଶମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ରହିଥିଲା । ତାକୁ କେବଳ ନିଜର ସମ୍ବଳ ଉପରେ ହିଁ ନିର୍ଭର କରିବାକୁ ପଡ଼ୁଥିଲା ।

ତେବେ ତାହା ଶିଳ୍ପୀକରଣ ଲାଗି ଆବଶ୍ୟକ ସମ୍ବଳ ପାଇଲା କେଉଁଠୁ ? ଏ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ, ପୁଞ୍ଜିପତିମାନେ କିପରି ସେମାନଙ୍କର ଶିଳ୍ପ ନିର୍ମାଣ କରନ୍ତି ଦେଖାଯାଉ । ପୁଞ୍ଜିପତିମାନେ ମୁଖ୍ୟତଃ ନିଜ ଦେଶର ଶ୍ରମଜୀବୀ ଲୋକଙ୍କୁ ନିଶଂସଭାବେ ଶୋଷଣ କରି, ଉପନିବେଶର ଲୋକଙ୍କୁ ନିର୍ମମଭାବେ ଲୁଣ୍ଠନ କରି, ଯୁଦ୍ଧରୁ ବିପୁଳ ଲାଭ ଓ ମୁନଫା ମାରି, ଆଉ ମଧ୍ୟ ଅନ୍ୟ ଦେଶରୁ ସବୁ ଋଣ ଆଣି ନିଜର ବିରାଟ ବିରାଟ ଶିଳ୍ପ-ଅନୁଷ୍ଠାନମାନ ଛିଡ଼ା କରାନ୍ତି ।

ଏହିଭଳି ଭାବରେ ଥିବା ପୂର୍ବର ଶିଳ୍ପସଂସ୍ଥା ମଧ୍ୟରୁ କୌଣସିଟି ହେଲେ ସୋଭିଏତ ସରକାର ପକ୍ଷରେ ଗ୍ରହଣଯୋଗ୍ୟ ହୋଇ ନ ଥିଲା । ତେଣୁ ତାହା ଦେଶର ଆଭ୍ୟନ୍ତରୀଣ ସଂପଦ ଓ ନିଗୂଢ଼ ପ୍ରାକୃତିକ ଶକ୍ତିକୁ(potentiality) ଜାଗ୍ରତ ଓ ସଚଳ କରିବାର ନୀତି ଗ୍ରହଣ କରିଥିଲା ।

ସର୍ବପ୍ରଥମେ ତାହା ରାଷ୍ଟ୍ରାୟତ୍ତ ଶିଳ୍ପ ପ୍ରତିଷ୍ଠାନ, ବ୍ୟାଙ୍କ, ଏବଂ ଦେଶୀୟ ଓ ବୈଦେଶିକ ବାଣିଜ୍ୟରୁ ମିଳୁଥିବା ଲାଭକୁ ଶିଳ୍ପୀକରଣ ଦିଗରେ ଖଟାଇଲା । ବିରାଟ ବୈଦେଶିକ ଋଣ ଭାରରୁ ସମାଜବାଦୀ ବିପ୍ଳବ ଦେଶକୁ ମୁକ୍ତ କରିଦେଇଥିଲା । ସେହି ବୋଝ ଜାର ଜାର ଅମଳରେ ଲୋକମାନଙ୍କ ଉପରେ ପଡ଼ିଥିଲା । ଜମିର

ଭାଗ୍ୟସ୍ୱୀକରଣ ସଂପନ୍ନ ହେବା ଫଳରେ କୃଷକମାନେ ଜମିମାଲିକମାନଙ୍କ ଲାଗି କର ଖଜଣାର ଯେଉଁ ହାଡ଼ଭଙ୍ଗା ବୋଝ ବୋହୁଥିଲେ ଓ ଜମି ପାଇବାପାଇଁ ସେମାନଙ୍କ ଯେଉଁ ପ୍ରଚୁର ଅର୍ଥ ଗଣୁଥିଲେ, ସେଥିରୁ ମୁକ୍ତ ହୋଇଗଲେ । ବର୍ତ୍ତମାନ ସେମାନେ ରାଷ୍ଟ୍ରକୁ ଶିଳ୍ପ ନିର୍ମାଣରେ ସାହାଯ୍ୟ କରିବା ଦିଗରେ ନିଜର ଶ୍ରମ ଓ ବୈଷୟିକ ସମ୍ବଳ ବା ଜିନିଷପତ୍ର ଅଧିକ ଅର୍ପଣ କରିପାରିଲେ, ଯୋଗାଇ ଦେଇପାରିଲେ ।

ପୁଞ୍ଜିବାଦୀ ଦେଶପରି ଆଗ ଲଘୁ ଶିଳ୍ପ (light industry) ର ବିକାଶ ଆଣି ଶିଳ୍ପୀକରଣ ଆରମ୍ଭ କରିଥିଲା । ସୋଭିଏତ୍ ଇଉନିଅନ କିନ୍ତୁ ଗୁରୁ ଶିଳ୍ପକୁ ଅଗ୍ରାଧିକାର ଦେଲା; କାରଣ, ସମାଜବାଦୀ ଅର୍ଥନୀତିର ମେରୁଦଣ୍ଡସ୍ୱରୂପ ବୃହତ୍ ଧରଣର ଶିଳ୍ପର ପ୍ରସାର ଫଳରେ ହିଁ ଦେଶରେ ସମାଜବାଦ ବିଜୟ ଲାଭ କରିପାରେ । ଯଦି ଗୁରୁ ଶିଳ୍ପମାନ ପ୍ରତିଷ୍ଠିତ ହୋଇଯାଏ, ତେବେ ତାହା ଲଘୁ ଶିଳ୍ପର ବିକାଶ ଆଧାରରେ, ସମାଜବାଦୀ ପଦ୍ଧତିରେ କୃଷିକୁ ସଂଗଠିତ କରିପାରେ, ଲୋକଙ୍କର ଜୀବନଧାରଣର ମାନକୁ ଉନ୍ନତ କରିପାରେ, ଅତି ଅଳ୍ପ ସମୟ ମଧ୍ୟରେ ଅର୍ଥନୈତିକ ସ୍ୱାଧୀନତା ଓ ବଳିଷ୍ଠ ଦେଶରକ୍ଷା କ୍ଷମତା ଓ ଶକ୍ତି ହାସଲ କରିପାରେ । ସୋଭିଏତ୍ ୟୁନିଅନ ଏହା ଉତ୍ତମରୂପେ ବୁଝି ଗ୍ରହଣ କରିଥିଲା ।

ସମଗ୍ର ସୋସାଲିଷ୍ଟ ସୋଭିଏତ୍ ୟୁନିୟନରେ ବିରାଟ ଏକ ନିର୍ମାଣ କାର୍ଯ୍ୟ ଆରମ୍ଭ କରି ସୋଭିଏତ ଜନସାଧାରଣ ସମାଜବାଦୀ ଶିଳ୍ପୀକରଣରେ ନିଜର ସମସ୍ତ ଉଦ୍ୟମ ଢାଳି ଦେଲେ । ସେମାନେ କଳକାରଖାନା, ଫାକ୍ଟ୍ରି, ବିଦ୍ୟୁତ୍ କେନ୍ଦ୍ର, ଶିଳ୍ପଗୋଷ୍ଠୀ ଓ ନଗରମାନ ଗଠନ କଲେ । ଟ୍ରାକ୍ଟର, ମଟର କାର, ମେସିନ୍ ଯନ୍ତ୍ରପାତି ଓ ବିମାନ ତିଆରି କାରଖାନା ସମେତ ବିଭିନ୍ନ ଧରଣର ନୂତନ ଶିଳ୍ପାନୁଷ୍ଠାନମାନ ଗଢ଼ିଉଠିଲା ।

କମ୍ୟୁନିଷ୍ଟ ପାର୍ଟିର ଓ ଲୋକମାନଙ୍କର କଠୋର ପରିଶ୍ରମ ଯୋଗୁଁ ଦେଶ ଜବାଙ୍କ ଶିଳ୍ପୀକରଣ ବିଶେଷ ଅଗ୍ରଗତି ଲାଭ କଲା । ସେଥିଲାଗି ସେମାନେ ଅଙ୍କ ପ୍ରଶଂସାର ପାତ୍ର । ଏହା ପରେ ସମସ୍ୟା ହେଲା, କୃଷିରେ ଯୌଥକୃଷିର ପ୍ରବର୍ତ୍ତନ ।

ସୋଭିଏତ ଇଉନିଅନରେ ଶିଳ୍ପର ଦ୍ରୁତ ଅଗ୍ରଗତି ହେଉଥିଲାବେଳେ କୃଷି ଅନୁନ୍ନତ ଅବସ୍ଥାରେ ପଡ଼ି ରହିଥାଏ । ଜମିସବୁ ଛୋଟ ଛୋଟ ଖଣ୍ଡରେ ଭାଗ ଭାଗ ହୋଇଥାଏ ବୋଲି କୃଷିରେ ଯନ୍ତ୍ର ଲାଗି ସେଥିରୁ କିଛି ପ୍ରାପ୍ୟ ଉତ୍ପନ୍ନ ହେଉ ନଥାଏ । କୃଷିକ୍ଷେତ୍ରରେ ଏହି ପଶ୍ଚାତ୍ପଦତା ଅତ୍ୟନ୍ତ ବିପଦଜନକ । ଏହା ଅର୍ଥନୀତିର ଅନ୍ୟାନ୍ୟ କ୍ଷେତ୍ରଗୁଡ଼ିକର ବିକାଶ, ଶିଳ୍ପୀକରଣ ଏବଂ ସମଗ୍ରଭାବେ ସମାଜବାଦ ନିର୍ମାଣରେ ଗତିକୁ ଗୁରୁତରଭାବେ ରୋଧ କରିଦିଏ ।

ଏହା ଅତ୍ୟନ୍ତ ପରିଷ୍କାର ଯେ, ଶ୍ରେଷ୍ଠ ଶ୍ରେଷ୍ଠ କୃଷିବନ୍ଧ ବ୍ୟବସ୍ଥା କେବେ-ହେଲେ ଦାରିଦ୍ର୍ୟ ଓ ପଶ୍ଚାତ୍‌ପଦ ଅବସ୍ଥାକୁ ଦୂର କରିପାରିବ ନାହିଁ । ବୃହତ୍ ଧରଣର କୃଷିବନ୍ଧ ହିଁ ତାହା କରିପାରେ । କିନ୍ତୁ ବିଭିନ୍ନ ପ୍ରକାରର ବୃହତ୍-କୃଷିବନ୍ଧ ରହିଛି । ବଡ଼ ବଡ଼ ଜମିଦାରୀ ଇଷ୍ଟେଟ କିମ୍ବା ବଡ଼ ବଡ଼ ଧନୀ କୃଷିଙ୍କର କୃଷିବନ୍ଧର ପୁନଃ-ପ୍ରବର୍ତ୍ତନ ବିଷୟରେ ଶ୍ରମିକ-କୃଷକ ରାଷ୍ଟ୍ର କେବେହେଲେ ଏକମତ ହୋଇ ନ ପାରେ । କାରଣ, ସେଇ ଉଭୟ ପ୍ରକାର କୃଷିବନ୍ଧ କୃଷକମାନଙ୍କୁ ନିର୍ମମଭାବେ ଶୋଷଣ କରିବା ଉପରେ ପ୍ରତିଷ୍ଠିତ ।

ତେଣୁ କେବଳ ଗୋଟିଏ ମାତ୍ର ମାର୍ଗ ରହିଛି, ଯାହାର ସୂଚନା ଦେଇଥିଲେ ଲେନିନ । ସେଇ ମାର୍ଗଟି ହେଲା କ୍ଷୁଦ୍ରାୟତନ କୃଷିବନ୍ଧଗୁଡ଼ିକୁ ବୃହତ୍ କୋଠକୃଷି ବା ଯୌଥ କୃଷିବନ୍ଧରେ ଏକତ୍ରିତ କରିବା । ଅଧୁନାତନ ମେସିନ କଳକବ୍‌ଜା ଓ ବୈଜ୍ଞାନିକ କୃଷିପ୍ରଣାଳୀ ପ୍ରୟୋଗ କରିବା ଦିଗରେ ଅସୀମ ସୁବିଧା ସୁଯୋଗ ସେହି କୋଠକୃଷି ବା ଯୌଥ କୃଷିବନ୍ଧରେ ହିଁ ମିଳେ । ସେଭଳି କୃଷିବନ୍ଧରେ ଶୋଷଣକୁ ପୁରାପୁରି ବାଦ ଦିଆଯାଏ । ଆଉ ଏକ ପ୍ରକାର ବୃହତ୍ ଧରଣର କୃଷିବନ୍ଧ ସମାଜବାଦୀ ଦେଶ ପକ୍ଷରେ ମଧ୍ୟ ଗ୍ରହଣଯୋଗ୍ୟ । ତାହା ହେଲା, ରାଷ୍ଟ୍ର ପରିଚାଳିତ ବୃହଦାୟତନ କୃଷିବନ୍ଧ ବା ରାଷ୍ଟ୍ରୀୟ ଫାର୍ମ ।

ମହାନ ଅକ୍ଟୋବର ବିପ୍ଳବର ଠିକ ପରେ ପରେ ରାଷ୍ଟ୍ରୀୟ ଫାର୍ମ ଓ କୋଠକୃଷି ବ୍ୟବସ୍ଥାମାନ ମୁଣ୍ଡ ଟେକିବାକୁ ଆରମ୍ଭ କଲା । ତେବେ ପ୍ରଥମ ଅବସ୍ଥାରେ ସେଗୁଡ଼ିକର ସଂଖ୍ୟା ଖୁବ୍ ଅଳ୍ପ ଥିଲା । କୃଷିବନ୍ଧ ସବୁ ବହୁ ସଂଖ୍ୟାରେ କୋଅପରେଟିଭର ଅନ୍ତର୍ଭୁକ୍ତ ହେବା ପୂର୍ବରୁ ସେଥିଲାଗି ଆବଶ୍ୟକୀୟ ଅବସ୍ଥା ସୃଷ୍ଟି କରିବା ଅତି ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲା । ଗ୍ରାମାଞ୍ଚଳକୁ କୃଷି ଯନ୍ତ୍ରପାତି ଓ ରସାୟନିକ ସାର ଆଦି ଯୋଗାଇବା ସକାଶେ ଗୁରୁ ଶିଳ୍ପମାନ ଦେଶରେ ପ୍ରତିଷ୍ଠା କରିବା ଜରୁର ହେଲା ।

ଆଉ ମଧ୍ୟ କୃଷକମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଦିଗରେ ଅନେକ କିଛି କରିବାକୁ ପଡ଼ିଲା । ବ୍ୟକ୍ତିଗତ କୃଷିବନ୍ଧରୁ କୋଠକୃଷି ଜରିଆରେ ମିଳିତ କୃଷିବନ୍ଧକୁ ଗତି କରିବା ଯୋଗୁଁ ଯେଉଁ ପରିବର୍ତ୍ତନ ଆସିଲା, ତାହା ସମଗ୍ର କୃଷକ-ଜୀବନର ଧାରାରେ ଏକ ପରିବର୍ତ୍ତନ ଆଣିଲା ।

ଗରିବ କୃଷକମାନେ ହିଁ କୋଠକୃଷି ପ୍ରବର୍ତ୍ତନ ଦିଗରେ ସବୁଠାରୁ ବଳି ସକ୍ରିୟ ହେଲେ । କମ୍ୟୁନିଷ୍ଟ ପାର୍ଟି ଓ ସୋଭିଏତ୍ ସରକାର କୋଠକୃଷି ସଂସ୍ଥାକୁ ସବୁ ଟ୍ରାକ୍ଟର, ଯନ୍ତ୍ରପାତି ଏବଂ ଅନ୍ୟ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇଲେ ; ମେସିନ୍ ଓ ଟ୍ରାକ୍ଟର କେନ୍ଦ୍ରମାନ ପ୍ରତିଷ୍ଠା କଲେ । ସେ ସବୁ କୋଠକୃଷିର ଯାନ୍ତ୍ରିକୀ-କରଣ ଆଦି ସାଂଗଠନିକ ଓ ଅର୍ଥନୈତିକ ଦୃଷ୍ଟିରୁ ସେଗୁଡ଼ିକର ଦୃଢ଼ୀକରଣ ଦିଗରେ ବିଶେଷ ଭୂମିକା ଗ୍ରହଣ କଲା ।

ଆମେ ଦେଖୁଛୁଁ, ସବୁଠାରୁ ଉପଯୁକ୍ତ ପ୍ରକାରେ ସମାଜବାଦୀ କୃଷି-ପ୍ରତିଷ୍ଠାନ ହେଉଛି କୋଠଖେତ ବା କୋଠରେ ଖେତବାଡ଼ି । ସେଥିରେ ହିଁ ଉତ୍ପାଦନ ସଂକ୍ରାନ୍ତ ପ୍ରଧାନ ଉପକରଣଗୁଡ଼ିକର ଓ କୃଷକମାନଙ୍କ ଶ୍ରମର ସମାଜୀକରଣ (socialised) ହୋଇଛି । କୋଠଖେତର ଆୟ ପ୍ରତ୍ୟେକ କୃଷକର କାମ ଅନୁସାରେ ବଣ୍ଟା ହେଉଛି । ଏହି 'ଆୟ' ବାବଦ ପ୍ରାପ୍ୟ ପାଇବା ଛଡ଼ା ପ୍ରତ୍ୟେକ କୋଠଖେତୀ ନିଜ ଘରବାରି ପାଇଁ ପନିପରିବା ବଗିଚା, ନିର୍ଦ୍ଦିଷ୍ଟ ପରିମାଣରେ ଜମି, ଗୋରୁଗାଈ, କୁକୁଡ଼ା ଆଉ କେତେକ ଛୋଟ ଛୋଟ ଗୃହୋପକରଣ ଯନ୍ତ୍ରପାତି ରଖିପାରୁଛି । ଏହି ବ୍ୟବସ୍ଥା ଫଳରେ ସେ କୋଠଖେତରୁ ଅର୍ଜନ କରୁଥିବା ଆୟ ସାଙ୍ଗକୁ ଆଉ କିଛି କିଛି ଅଧିକା ଆୟ କରିପାରୁଛି ।

ଏହି କୋଠଖେତର ପ୍ରବର୍ତ୍ତନ ପ୍ରସ୍ତାବ ଗୋଟାଏ ନୂଆ ବ୍ୟବସ୍ଥା । ତେଣୁ ସେଥିରେ କୌଣସି ଭୁଲ ତ୍ରୁଟି ଘଟିବା କିଛି ବିସ୍ମୟର ବିଷୟ ନୁହେଁ । ପ୍ରଥମେ ପ୍ରଥମେ କେତେକ ସ୍ଥାନରେ ଲୋକମାନେ ତରବର ହୋଇ ମାତି ଯାଇଥିଲେ । ସେମାନେ କୋଠଖେତ ସ୍ତରକୁ ଡେଇଁ ସିଧାସଳଖ "କମ୍ୟୁନ୍ ସ୍ତର", ଅର୍ଥାତ୍ ଯେଉଁ ସ୍ତରରେ ସମାନ ଭାବେ ଆୟର ବଣ୍ଟନ କରାଯାଏ, ସେଇ ସ୍ତରକୁ ଯିବାକୁ ବସିଥିଲେ । କିନ୍ତୁ ଏହା ନିର୍ଧାର୍ଯ୍ୟ, ସମସ୍ତଙ୍କୁ ଏକାବେଳେକେ ସମାନ ସ୍ତରକୁ ଘେନିଯିବା ବା ସମାନ କରିଦେବା, ଅନିବାର୍ଯ୍ୟଭାବେ ଅଧୋଗତି ହିଁ ଆଣେ । କାରଣ, ଅଧିକ ଉତ୍ପାଦନ କରିବା ଦିଗରେ କୃଷକର ଉତ୍ସାହକୁ ତାହା କ୍ଷୁର୍ଣ୍ଣ କରିଦିଏ । ଏହି ଦୃଷ୍ଟିରୁ ଦେଖାଯାଉଥିଲା ଯେ, କେତେକ କ୍ଷେତ୍ରରେ ସ୍ୱେଚ୍ଛାମୂଳକଭାବେ କୋଠଖେତରେ ଯୋଗ ଦେବାର ଲେନିନଙ୍କ ନୀତିକୁ ମଧ୍ୟ ଲଙ୍ଘନ କରାଯାଇଥିଲା । କେତେକ ଲୋକ ଉତ୍ପାଦନର ପ୍ରଧାନ ପ୍ରଧାନ ଉପକରଣଗୁଡ଼ିକ କେବଳ ନୁହେଁ, ସମସ୍ତ ଗାଈଗୋରୁ, ଘୋଡ଼ା, ମଇଁଷି, କୁକୁଡ଼ା ପ୍ରଭୃତିଙ୍କୁ ବି 'କୋଠ' କରିବାକୁ ଚାହିଁଥିଲେ ।

କମ୍ୟୁନିଷ୍ଟ ପାର୍ଟି ଓ ସୋଭିଏତ୍ ସରକାର ଏଇସବୁ ଭୁଲ ତ୍ରୁଟିକୁ ସୁଧାରିଲେ ଓ ବ୍ୟାପକ ଭାବରେ ପ୍ରଚାରମୂଳକ ଓ ସାଙ୍ଗଠନିକ କାର୍ଯ୍ୟ ଚଳାଇଲେ । ଏଣୁ ଗ୍ରାମାଞ୍ଚଳରେ ସମାଜବାଦୀ ନିର୍ମାଣ କାର୍ଯ୍ୟ ଅଗ୍ରସର ହେବାରେ ଲାଗିଲା ।

ଏହି କୋଠଖେତ ପ୍ରଚଳନ ସହିତ ଶ୍ରେଣୀସଂଗ୍ରାମ ମଧ୍ୟ ତୀବ୍ର ଭାବରେ ଲାଗି-ରହିଥିଲା । ଧନୀ ଚାଷୀ କୁଲାକମାନେ ଉଗ୍ରଭାବରେ କୋଠଖେତର ଆନ୍ଦୋଳନକୁ ବିରୋଧ କରୁଥାନ୍ତି । ସେମାନେ ଅତି ବିଦ୍ୱେଷମୂଳକ ସୋଭିଏତବିରୋଧୀ ପ୍ରଚାର ଚଳାଇଲେ, କୋଠଖମାରମାନଙ୍କରେ ନିଆଁ ଲଗାଇଦେଲେ, ଗୋରୁଗାଈ, ଘୋଡ଼ା, ମଇଁଷି ଆଦିକୁ ବିଷ ଦେଇ ମାରିପକାଇଲେ ଏବଂ କର୍ମିଠ ବା ସକ୍ରିୟ କର୍ମୀମାନଙ୍କୁ ହତ୍ୟା କଲେ ।

ତେଣୁ ଦେଶରେ ଶେଷ ଶୋଷକଶ୍ରେଣୀ ଭାବରେ ସେତେବେଳଯାଏ ତିଷ୍ଠିଥିବା ଏହି କୁଲାକମାନଙ୍କୁ ଲୋପ କରିଦେବା ନୀତି ଗ୍ରହଣ କରିବାଲାଗି ସୋଭିଏତ୍ ସରକାର ବାଧ୍ୟ ହେଲେ । ଜମିସବୁ ଭଡ଼ାରେ ଲଗାଇବାକୁ ଓ ମୂଲିଆ ଖଟାଇବାକୁ ନିଷେଧ କରିଦେଲେ । କୋଠଚାଷର ସବୁ ପ୍ରକାର ଲାଭ ଓ ମଙ୍ଗଳ ଦୃଷ୍ଟିରୁ କୁଲାକମାନଙ୍କ ଯନ୍ତ୍ରପାତି ଓ ପଶୁ ଆଦି ବାଜ୍ୟାପ୍ତ କରିବା-ପାଇଁ କୃଷକମାନଙ୍କୁ ଅନୁମତି ଦେଲେ । ସବୁଠାରୁ ଅତି ଜଘନ୍ୟ କୁଲାକମାନଙ୍କୁ ଦେଶର ଅନ୍ୟ ଅଞ୍ଚଳକୁ ତଡ଼ା କରିଦେଲେ, ଆଉ ସେଠାରେ ଅନ୍ୟମାନଙ୍କୁ ଶୋଷଣ ନ କରି ସେମାନେ ଯେପରି କାମ କରିବାର ସୁଯୋଗ ପାଆନ୍ତି, ସେଥିଲାଗି ବ୍ୟବସ୍ଥା କରିଦେଲେ ।

**କୃଷକମାନଙ୍କ ପକ୍ଷରେ ଏହି ବୃହତ୍ ଧରଣର ସମାଜବାଦୀ ଚୃଷବନ୍ଦି ବ୍ୟବସ୍ଥା ଗ୍ରହଣ ଥିଲା ଅର୍ଥନୈତିକ ସମ୍ପର୍କ କ୍ଷେତ୍ରରେ ଏବଂ ଶତାବ୍ଦୀ ଶତାବ୍ଦୀ ଧରି ପ୍ରଚଳିତ ରହିଥିବା କୃଷକର ଚୃଷବନ୍ଦି ପ୍ରଥାରେ ଏକ ବିରାଟ ବିପ୍ଳବ ।**

ଏହି କୋଠଚାଷର ପ୍ରସାର ଗ୍ରାମଗୁଡ଼ିକୁ ଚିରଦିନ ପାଇଁ କୁଲାକମାନଙ୍କ ଦାସତ୍ୱରୁ, ଶ୍ରେଣୀ-ବିଭାଗ, ଧ୍ୱଂସ ଓ ଦାରିଦ୍ର୍ୟର କବଳରୁ ମୁକ୍ତ କଲା । ଏହା ଫଳରେ କୃଷକମାନେ ଦୃଢ଼ଭାବେ ସମାଜବାଦୀ ମାର୍ଗରେ ପଦକ୍ଷେପ କରି ଅଗ୍ରସର ହେବାରେ ଲାଗିଲେ ।

## ସାଂସ୍କୃତିକ ବିପ୍ଳବ

ସୋଭିଏତ୍ ଇଉନିଅନରେ ସମାଜବାଦୀ ଆର୍ଥନୀତିକ ସଂସ୍ଥାର ନିର୍ମାଣ ଚାଲିଥିଲା । ନୂତନ ଏକ ସାଂସ୍କୃତିକ ବିପ୍ଳବ ସହିତ ଏକ ଢଙ୍ଗରେ ସମାଜବାଦୀ ସମାଜର ଗତିପ୍ରକୃତିରେ ଗୁରୁତ୍ୱପୂର୍ଣ୍ଣ ହେଉଛି, ଉଚ୍ଚକୋଟିର ବୈଜ୍ଞାନିକ ଓ ସାଂସ୍କୃତିକ ସ୍ତର, ଅର୍ଥାତ୍ ବିଜ୍ଞାନ ଓ ସଂସ୍କୃତି ସେଥିରେ ବିକଶିତ ହୁଏ । ଏହା ହୃଦୟଙ୍ଗମ କରି ଠିକ୍ ଅର୍ଥନୈତିକ କ୍ଷେତ୍ରରେ ଅଗ୍ରସର ହେଲା ପରି ସୋଭିଏତ୍ ଇଉନିଅନ ଅଳ୍ପ ସମୟ ଭିତରେ ସାଂସ୍କୃତିକ କ୍ଷେତ୍ରରେ ମଧ୍ୟ ବିପୁଳ ଅଗ୍ରଗତି ହାସଲ କରିଥିଲା ।

ଗୋଟିଏ ଜାତିର ସାଂସ୍କୃତିକ ସ୍ତରର ମୌଳିକ ମାପକାଠି ହେଲା, ତାର ସାକ୍ଷର ଲୋକଙ୍କର ସଂଖ୍ୟା । ବିପ୍ଳବ ପୂର୍ବରୁ ରୁଷରେ ୯ ବର୍ଷ ଓ ତଦୂର୍ଦ୍ଧ୍ୱ ବୟସର ଲୋକଙ୍କ ଭିତରୁ ଶତକଡ଼ା ୭୬ ଭାଗ ଓ ସ୍ତ୍ରୀଲୋକଙ୍କ ମଧ୍ୟରେ ଶହକେ ୮୮ ଥିଲେ

ନିରକ୍ଷର । ଦେଶର ସୀମାନ୍ତ ଅଞ୍ଚଳରେ ବସବାସ କରୁଥିବା ଅତ୍ୟାଗ୍ରସତ ଜାତିର ଲୋକଙ୍କ ମଧ୍ୟରୁ ଜଣେ ହେଲେ କାହାର ଲେଖାପଢ଼ା ସଙ୍ଗେ ପରିଚୟ ନ ଥିଲା ।

କମ୍ୟୁନିଷ୍ଟ ପାର୍ଟି ଓ ସୋଭିଏତ୍ ସରକାର ଦେଶର ଦ୍ରୁତ ସାଂସ୍କୃତିକ ଅଗ୍ରଗତିକୁ ପ୍ରୋତ୍ସାହିତ କରିବା ଦିଗରେ କୌଣସି ଉଦ୍ୟମ କିମ୍ବା ଅର୍ଥର ବିନିଯୋଗରେ ଟିକେ ହେଲେ ତ୍ରୁଟି କରି ନ ଥିଲେ । ରୁଷ ଭାଷା ଓ ସୋଭିଏତ୍ ଇଉନିଅନର ଅନ୍ୟ ଜାତିମାନଙ୍କ ଭାଷା, ଏହି ଉଭୟ ଭାଷା ମାଧ୍ୟମରେ ଶିକ୍ଷା ଦେବା ଲାଗି ଅତି ବ୍ୟାପକ-ଭାବେ ସାଧାରଣ ଓ ସ୍ୱତନ୍ତ୍ର ଧରଣର ସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟମାନ ସେମାନେ ପ୍ରତିଷ୍ଠା କରିଥିଲେ । ଅବୈତନିକ ଶିକ୍ଷା ଓ ଛାତ୍ରମାନଙ୍କୁ ସରକାରୀ ବୃତ୍ତି ଯୋଗାଇ ଦେବା ନୀତି ଗ୍ରହଣ କରିଥିଲେ । ଏଥିଯୋଗୁଁ ଶିକ୍ଷା ସମସ୍ତଙ୍କ ନିକଟରେ ସହଜରେ ପହଞ୍ଚିପାରିଲା । ବୟସ୍କ ଲୋକମାନଙ୍କର ନିରକ୍ଷରତା ଦୂରୀକରଣ ଲାଗି ଯାହା ଆବଶ୍ୟକ, ତାହା ସଂପନ୍ନ କରାଗଲା ।

ଅର୍ଥନୀତିର ପ୍ରତ୍ୟେକ ବିଭାଗରେ ନୂତନ ନୂତନ ମେସିନ ଓ ଯନ୍ତ୍ରପାତିର ପ୍ରଚଳନ, ଲୋକମାନଙ୍କର ସାଂସ୍କୃତିକ ଓ ଟେକ୍‌ନିକାଲ ବା କାରିଗରୀ କୌଶଳର ସ୍ତରକୁ ଦ୍ରୁତ ବେଗରେ ଉଦ୍ଦୀପିତ କଲା । କଳକାରଖାନା, ଫାକ୍ଟ୍ରି, କୋଠଚାଷ ଓ ରାଷ୍ଟ୍ରୀୟ ଫାର୍ମମାନଙ୍କରେ ବିଭିନ୍ନ ପ୍ରକାରର ସ୍କୁଲ ଓ ଶ୍ରେଣୀମାନ ଖୋଲାଗଲା । ଲକ୍ଷ ଲକ୍ଷ ସଂଖ୍ୟାରେ ଶ୍ରମିକ ଓ କୋଠଚାଷର ଚାଷୀମାନେ ସେଥିରେ ଯୋଗ ଦେଲେ ଓ ନୂତନ ନୂତନ ଢଙ୍ଗରେ ଦକ୍ଷତା ଲାଭ କଲେ ।

ଏହି ସମାଜବାଦୀ ନିର୍ମାଣ ଭିତରେ ଶିଳ୍ପ, ବିଜ୍ଞାନ ଓ ସଂସ୍କୃତିର କ୍ଷେତ୍ରସବୁ ପାଇଁ ଯୋଗ୍ୟ ବ୍ୟକ୍ତିମାନଙ୍କୁ ତାଲିମ ଦିଆଗଲା । ଇଉନିଅନ ରିପବ୍ଲିକ୍‌ସବୁ ନିଜ ନିଜର ବୁଦ୍ଧିଜୀବୀ ତିଆରି କଲେ ।

## ବିରାଟ କୃତିତ୍ୱ

ସୋଭିଏତ୍ ଇଉନିଅନ ବାର୍ଷିକ ଓ ପଞ୍ଚବାର୍ଷିକ ଯୋଜନା ଅନୁଯାୟୀ ସମାଜବାଦ ଗଠନ କଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ (ଯାହାକି ୧୯୨୯-୩୨, ୪ ବର୍ଷ ମଧ୍ୟରେ କାର୍ଯ୍ୟକାରୀ ହୋଇଥିଲା) ବୃହତ୍ ଧରଣର ଆଧୁନିକ ଶିଳ୍ପର ଓ କୋଠଚାଷ ପ୍ରଥାର ପ୍ରବର୍ତ୍ତନ ଆଣି ସମାଜବାଦୀ ସମାଜର ଅର୍ଥନୈତିକ ଭିତ୍ତି ରଚନା କଲା ।

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା (୧୯୩୩-୩୭) ସମାଜବାଦୀ ଅର୍ଥନୈତିକ ବିକାଶ ଦିଗରେ ଆଉ ଏକ ବିରାଟ ପଦକ୍ଷେପ ହେଲା । ଜାତୀୟ ଅର୍ଥନୀତିକୁ ଆଧୁନିକ କରିବାର କାର୍ଯ୍ୟ ପୂର୍ଣ୍ଣ ହେଲା । ତା'ର ବିଭିନ୍ନ ବିଭାଗ ଆଧୁନିକ ମେସିନ ଯନ୍ତ୍ରପାତି

ଦ୍ୱାରା ସୁସଜ୍ଜିତ ହୋଇଉଠିଲା । ନୂତନ କଳକାରଖାନା ଓ ଫାକ୍ଟ୍ରି ଅନ୍ୟ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରମାନଙ୍କର ନିର୍ମାଣ କାର୍ଯ୍ୟ ଜୋରସୋରରେ ଅଗ୍ରସର ହେଲା । ନୂତନ ଟେକ୍ନିକ ବା କାରିଗରି ବିଦ୍ୟା ଶିକ୍ଷା କରିବାକୁ ଏକ ଗଣ-ଆନ୍ଦୋଳନ ଦେଶସାରା ବ୍ୟାପକ ହୋଇଉଠିଲା । ଉତ୍ପାଦନ କ୍ଷେତ୍ରରେ ତାହା ହିଁ ହେଲା ନୂତନ ସୃଜନକାରୀମାନଙ୍କର ଏକ ଆନ୍ଦୋଳନ, ଅଧିକ ଜିନିଷ ଉତ୍ପାଦନ କରି ସେଗୁଡ଼ିକୁ ଉତ୍କୃଷ୍ଟତର କରିବା ଦିଗରେ ଏକ ପ୍ରତିଦ୍ୱନ୍ଦ୍ୱିତାର ଆନ୍ଦୋଳନ । କୃଷିକ୍ଷେତ୍ରରେ ଜେଜେ କୋଠବୃତ୍ତି ପ୍ରବର୍ତ୍ତନ କରିବା ଉପରେ ଓ କୋଠଖମାର-ଗୁଡ଼ିକୁ ସାଙ୍ଗଠନିକ ଓ ଅର୍ଥନୈତିକ ଭାବେ ଶକ୍ତିଶାଳୀ କରିବା ଉପରେ ଦୃଷ୍ଟି କେନ୍ଦ୍ରୀଭୂତ ହେଲା ।

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ଶେଷବେଳକୁ ସୋଭିଏତ୍ ଇଉନିଅନ ମୁଖ୍ୟତଃ ସମାଜବାଦର ଗଠନ କାର୍ଯ୍ୟ ଶେଷ କରିପାରିଲା । ସମାଜବାଦର ବିଜୟ, ଜୀବନର ସମସ୍ତ କ୍ଷେତ୍ରରେ ମୌଳିକ ପରିବର୍ତ୍ତନ ଆଣିଲା । ସେଇ ସେଉଁ ପରିବର୍ତ୍ତନ ସବୁ ଆସିଲା, ତାହାର ତାତ୍ପର୍ଯ୍ୟ ହେଲା କ'ଣ ? ପ୍ରଥମରେ ସୃଷ୍ଟି ହେଲା ଶକ୍ତିଶାଳୀ ଏକ ସମାଜବାଦୀ ଶିଳ୍ପ, ତାର ପ୍ରାଣ କେନ୍ଦ୍ର ହୋଇଉଠିଲା ଗୁରୁ ବା ଭାରୀ ଶିଳ୍ପ, ମୁଖ୍ୟତଃ ମେସିନ ଆଉ ଯନ୍ତ୍ରପାତି ତିଆରି ।

ଦ୍ୱିତୀୟରେ—ଉତ୍ପାଦନର ବ୍ୟକ୍ତିଗତ ମାଲିକାନା ଉପରେ ପ୍ରତିଷ୍ଠିତ କୃଷକମାନଙ୍କର କ୍ଷୁଦ୍ର କ୍ଷୁଦ୍ର ବ୍ୟକ୍ତିଗତ କୃଷିକ୍ଷେତ୍ର, ଆଧୁନିକ ମେସିନ ଓ ଯନ୍ତ୍ରପାତି ଦ୍ୱାରା ସଜ୍ଜିତ ବୃହତ୍ ସମାଜବାଦୀ କୃଷିକ୍ଷେତ୍ର ବା ଫାର୍ମମାନଙ୍କରେ ଏକତ୍ରିତ ହେଲେ ।

ତୃତୀୟରେ—ଶୋଷକଶ୍ରେଣୀ ଓ ଉତ୍ପାଦନ ଉପକରଣଗୁଡ଼ିକ ଉପରେ ବ୍ୟକ୍ତିଗତ ମାଲିକାନାକୁ (ଅର୍ଥାତ୍ ଯେଉଁ ମାଲିକାନା ଶୋଷଣ ସୃଷ୍ଟି କରେ, ସେ ସବୁକୁ) ଲୋପ କରିଦିଆଗଲା ।

ଚତୁର୍ଥରେ — ଏକ ସାଂସ୍କୃତିକ ବିପ୍ଳବ ସଙ୍ଘଟିତ ହେଲା ।

ଏହି ବ୍ୟବସ୍ଥାସବୁ ପଶ୍ଚାତ୍‌ପଦ କୃଷିନିର୍ଭର ରୁଷକୁ ଏକ ବୃହତ୍ ଧରଣର ମେସିନଯୁକ୍ତ କୃଷିପ୍ରଧାନ ଆଉ ଏକ ଉଚ୍ଚ ସ୍ତରର ବୈଜ୍ଞାନିକ ସାଂସ୍କୃତିକ ଅଗ୍ରଗାମୀ ଶିଳ୍ପପ୍ରଧାନ ଶକ୍ତିରେ ପରିଣତ କଲା । ଶୋଷକଶ୍ରେଣୀ ସବୁର ବିଲୋପ ସୋଭିଏତ୍ ଲୋକମାନଙ୍କ ମଧ୍ୟରେ ଏକ ଅଭୂତପୂର୍ବ ସାମାଜିକ ରାଜନୈତିକ ଏକତା ସୃଷ୍ଟି କଲା ।

**ସମାଜବାଦର ବିଜୟ ଉଚ୍ଚତର ଜୀବନଧାରଣର ମାନ ଓ ସାଂସ୍କୃତିକ ସ୍ତରର ମାର୍ଗ ଉନ୍ମୁକ୍ତ କଲା,**

**ସୋଭିଏତ୍‌ର ପ୍ରତିରକ୍ଷା ବ୍ୟବସ୍ଥାକୁ ଶକ୍ତିଶାଳୀ କଲା ଏବଂ ଦେଶର ଅର୍ଥନୈତିକ ଓ ରାଜନୈତିକ ସ୍ୱାଧୀନତାକୁ ସୁନିଶ୍ଚିତ କଲା । ସମାଜବାଦ ନିର୍ମାଣରେ ସୋଭିଏତ୍ ଲୋକମାନଙ୍କର କୃତିତ୍ୱ ୧୯୩୬ରେ ଗୃହୀତ ସୋଭିଏତ୍ ସଂବିଧାନରେ ବୈଜ୍ଞାନିକଭାବେ ରୂପାୟିତ ହେଲା ।**

ସମାଜବାଦର ବିଜୟ ଓ ସୋଭିଏତ୍ ଇଉନିୟନର ନୂତନ ସଂବିଧାନର ସ୍ୱୀକୃତି, ସୋଭିଏତ୍ ଗଣତନ୍ତ୍ର ଲାଗି ବ୍ୟାପକ ସଂଭାବନାଗୁଡ଼ିକ ଉନ୍ମୁକ୍ତ କରିଦେଲା । କମ୍ୟୁନିଷ୍ଟ ପାର୍ଟି ଓ ସୋଭିଏତର ଲୋକେ ଷ୍ଟାଲିନଙ୍କ ବ୍ୟକ୍ତିପୂଜା ଭିତର ନାସ୍ତିମୂଳକ ପ୍ରଭାବରେ ପଡ଼ି ନ ଥିଲେ ଯଦ୍ଦ୍ୱାରା ଅଧିକ ଅଗ୍ରଗତି କରିପାରିଥାନ୍ତେ ।

ସୋଭିଏତ୍ ରାଷ୍ଟ୍ର ବିକାଶର ପ୍ରାଥମିକ ଅବସ୍ଥାରେ ଷ୍ଟାଲିନ୍ ଟ୍ରଟସ୍କିପନ୍ଥୀ, ଦକ୍ଷିଣପନ୍ଥୀ ସୁବିଧାବାଦୀ ଓ ଅନ୍ୟ ଆତ୍ମସମର୍ପଣବାଦୀମାନଙ୍କ ବିରୁଦ୍ଧରେ ଲଢ଼ି ସମାଜବାଦ ଗଠନ ବାଟରେ ଲେନିନ୍‌ଙ୍କ ଯୋଜନାକୁ ରକ୍ଷା କରିଥିଲେ । ଏହା ହିଁ ପାର୍ଟି ଓ ଲୋକଙ୍କ ମଧ୍ୟରେ ତାଙ୍କର ସମ୍ମାନ ଓ ମର୍ଯ୍ୟାଦାକୁ ବହୁଗୁଣରେ ବଢ଼ାଇଦେଇଥିଲା । କିନ୍ତୁ ଯାହାଙ୍କ ଲାଗି ତାଙ୍କର ଏତେ ସମ୍ମାନ, ଅତି ଶୀଘ୍ର ସେ ଠିକ୍ ସେହିମାନଙ୍କୁ ଭୁଲିଯାଇଥିଲେ । ନିଜ ସଂପର୍କରେ ଅବାଧ ଅକୁଣ୍ଠିତ ପ୍ରଶଂସାକୁ ଉତ୍ସାହିତ କରିଥିଲେ । ପାର୍ଟିର ଲେନିନବାଦୀ ମାନ ଓ ସମଷ୍ଟିଗତ ଜୀବନକୁ ଲଙ୍ଘନ କରିଥିଲେ । ଅଧିକରୁ ଅଧିକ କ୍ଷମତା ନିଜ ହାତରେ ଠୁଳ କରି ସାମୂହିକ ନେତୃତ୍ୱର ନୀତିକୁ ଅତି ନିଷ୍ଠୁରଭାବରେ ଭାଙ୍ଗି ଦେବାକୁ ବାହାରିଥିଲେ । କ୍ଷମତାର ଅପବ୍ୟବହାର ଦୋଷରେ ଦୋଷୀ ଥିଲେ ସେ ।

ଯଦିଓ ବ୍ୟକ୍ତିପୂଜା ପାର୍ଟି ପ୍ରତି, ଲୋକମାନଙ୍କ ପ୍ରତି ଏବଂ ସମାଜବାଦ ନିର୍ମାଣର ଆଦର୍ଶ ପ୍ରତି ଘୋର କ୍ଷତିକାରକ ହୋଇଥିଲା । ତେବେ ତାହା ସୋଭିଏତ୍‌ର ଅଗ୍ରଗତିକୁ ରୋଧ କରି ପାରି ନ ଥିଲା, କାରଣ ଲୋକେ ସେହି ସମାଜବାଦୀ ବ୍ୟବସ୍ଥାର ମୁଖ୍ୟ ଉତ୍ସ ହୋଇଆସିଛନ୍ତି ଓ ମୁଖ୍ୟାଧାର ହୋଇ ରହିବେ, ସେହି ସମାଜବାଦୀ ବ୍ୟବସ୍ଥାର ପ୍ରକୃତିକୁ ପରିବର୍ତ୍ତିତ କରି ପାରି ନ ଥିଲା ।

ସୋଭିଏତ୍ ଇଉନିୟନରେ ସମାଜବାଦର ବିଜୟ ବିଶ୍ୱ ଇତିହାସରେ ବିରାଟ ଓ ବିପୁଳ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ପ୍ରଥମ ସମାଜବାଦୀ ବ୍ୟବସ୍ଥାର ପ୍ରତିଷ୍ଠା ସୁରକ୍ଷିତ ହୋଇ ଉଠିଲା ସମସ୍ତ ଅତ୍ୟାଚାରିତ ଲୋକମାନଙ୍କ ପାଇଁ ସ୍ୱାଧୀନତା ସଂଗ୍ରାମରେ ଏକ ଉଦ୍‌ବୋଧିନୀ ଆଲୋକର ସ୍ତମ୍ଭ ରୂପରେ, ଏକ ପ୍ରେରଣାମୟ ଆଦର୍ଶ, ମାର୍କସବାଦ-ଲେନିନବାଦର ଜୀବନ୍ତ ଏକ ପ୍ରମୂର୍ତ୍ତି ଭାବଧାରାରେ !

ଏଣୁ ଏହା ସ୍ପଷ୍ଟ ଯେ, କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ସୋଭିଏତ୍ ଲୋକଙ୍କର ଗୌରବପୂର୍ଣ୍ଣ ଉଦ୍ୟମ ହିଁ ମନୁଷ୍ୟ ସମାଜକୁ ଦାନ କଲା ଏକ ସମାଜବାଦୀ ସମାଜ ଓ ସମାଜବାଦୀ ନିର୍ମାଣ ଲାଗି ଏକ ସୁପରୀକ୍ଷିତ ବିଜ୍ଞାନ ; ପ୍ରସ୍ତୁତ କଲା ବିଶ୍ୱର ସମସ୍ତ ଦେଶମାନଙ୍କ ସକାଶେ ସମାଜବାଦର ପ୍ରଶସ୍ତ ପଥ ।

ଏଭଳି ଏକ ସମୟରେ ସମାଜବାଦ ବିଜୟମଣ୍ଡିତ ହେଲା ଯେ, ଇଉରୋପର କେତେକ ଦେଶରେ ଫାସିଷ୍ଟମାନେ ଗଣତାନ୍ତ୍ରିକ ସ୍ୱାଧୀନତାର ଅବଶେଷକୁ ସେ ତବେଲକୁ ମୂଳୋତ୍ପାଟନ କରିଥିଲେ ଏବଂ ଆଉ ଏକ ବିଶ୍ୱଯୁଦ୍ଧର ପ୍ରସ୍ତୁତି ଲାଗି ମାତିଉଠିଥିଲେ । ଏହି ଅବସ୍ଥାରେ ସୋଭିଏତ୍ ସମାଜବାଦୀ ରାଷ୍ଟ୍ର ଶାନ୍ତିର, ଗଣତନ୍ତ୍ରର ଆଉ ପ୍ରଗତିଶୀଳ ସମସ୍ତ ଶକ୍ତିର ଏକମାତ୍ର ଆଶା ଓ ଧ୍ୱଜପତାକାର ଦୁର୍ଗ ହୋଇଥିଲା ।

କିନ୍ତୁ ସମାଜବାଦର ବିଜୟ ଯୋଗେ ସୋଭିଏତ୍ ଇଉନିୟନ ବିକାଶର ଏଭଳି ଏକ ନୂତନ ପର୍ଯ୍ୟାୟରେ ପ୍ରବେଶ କରିଥିଲା, ଯେଉଁ ପର୍ଯ୍ୟାୟରେ ତା ସମକ୍ଷରେ ପ୍ରଶ୍ନ ହୋଇ ଉଠିଥିଲା, ସମାଜବାଦର ନିର୍ମାଣ ଯେପରି ହେଉ ସେତେ ଶୀଘ୍ର ସମ୍ଭବ ପୂର୍ଣ୍ଣ କରିବାକୁ ହେବ ଏବଂ ସାମ୍ୟବାଦ ବା କମ୍ୟୁନିଜମ୍ ଆଡ଼କୁ ଧୀରେ ଧୀରେ ଧର୍ଷିତ ଭାବରେ ଯତ୍ରା ଆରମ୍ଭ କରିବାକୁ ହେବ ।

କିନ୍ତୁ ପ୍ରଥମ ସମାଜବାଦୀ ଦେଶକୁ ଆକ୍ରମଣ କଲେ ଯେଉଁ ପରରାଜ୍ୟ ଲୁଣ୍ଠନକାରୀ ହିଟଲରୀ ବାହିନୀ, ସେହିମାନଙ୍କ ବିରୁଦ୍ଧରେ ପ୍ରବଳ ଯୁଦ୍ଧରେ ଲିପ୍ତ ହେବା ଯୋଗୁଁ ଏହି କାର୍ଯ୍ୟରେ ବ୍ୟାଘାତ ଆସିଲା । ପ୍ରତିବନ୍ଧକ ସୃଷ୍ଟି ହେଲା ।

## ୪ । ସମାଜବାଦୀ ବ୍ୟବସ୍ଥା : ଯୁଦ୍ଧରେ ବିଜୟର ଉତ୍ସ

ସାମ୍ରାଜ୍ୟବାଦୀମାନେ ସୋଭିଏତ୍ ଇଉନିୟନ ଉପରେ ଯୁଦ୍ଧ ଲଦିଦେଇ ନ ଥିଲେ ସୋଭିଏତ୍ ଯେ ଆଜି କେତେ ଦୂର ଅଧିକ ଅଗ୍ରଗତି କରିଥାନ୍ତା, ତାହା ଏହିକ୍ଷଣି କହିବା କଷ୍ଟକର । ସୋଭିଏତ୍ ଲୋକଙ୍କୁ ନିଜ ଇତିହାସର ୫୦ ବର୍ଷରୁ କମ ସମୟ ଭିତରେ ଦୁଇଟି ଦଶକ ଧରି ସମସ୍ତ ଶ୍ରେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଆକ୍ରମଣ ପ୍ରତିହତ କରିବାରେ ଖଟାଇବାକୁ ପଡ଼ିଥିଲା, ତାପରେ ଅର୍ଥନୀତିର ଯୁଦ୍ଧଜନିତ କ୍ଷୟକ୍ଷତିର ପୂରଣରେ ନିୟୋଗ କରିବାକୁ ହୋଇଥିଲା । ବିଶ୍ୱ ଇତିହାସର ସବୁଠୁଁ ନିଷ୍ଠୁରତମ କଠିନ ଯୁଦ୍ଧ ଥିଲା, ସେହି ବୃହତ ଦେଶପ୍ରେମୀ ଯୁଦ୍ଧ । ସେହି ସମୟରେ ସୋଭିଏତ୍ ବ୍ୟବସ୍ଥାକୁ ବିଶେଷ ଭାବରେ କଠୋର ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

## ଯୁଦ୍ଧର ନିରୋଧ ଲାଗି ସୋଭିଏତ୍ ଉଦ୍ୟମ

ଦୁଇଟି ବିଶ୍ୱଯୁଦ୍ଧର ମଧ୍ୟବର୍ତ୍ତୀ ସମୟରେ ସୋଭିଏତ୍ ଇଉନିୟନ ପୁଣି ଏକ ବିଶ୍ୱବ୍ୟାପୀ ରକ୍ତାକ୍ତ ସଂଗ୍ରାମର ନିରୋଧ ଲାଗି ବାରମ୍ବାର ଉଦ୍ୟୋଗୀ ହୋଇ-

ଉଠିଥିଲା । ସେଥିପାଇଁ ଅନ୍ୟାନ୍ୟ ଦେଶ ସହିତ ଅନାକ୍ରମଣ ଚୁକ୍ତି କରିବା ଲାଗି ପ୍ରସ୍ତାବ ବାଢ଼ିଥିଲା । କିନ୍ତୁ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନେ, ଯେଉଁମାନେ କି ଏବେ ପୃଥିବୀର ପ୍ରଥମ ସମାଜବାଦୀ ରାଷ୍ଟ୍ରକୁ ଧ୍ୱଂସ କରିବାର ସ୍ୱପ୍ନ ଦେଖନ୍ତି, ସେମାନେ ସୋଭିଏତ୍ ଇଉନିଅନର ସମ୍ମିଳିତ ନିରାପତ୍ତା ବ୍ୟବସ୍ଥା ପ୍ରସ୍ତାବକୁ ବିରୋଧ କରିଥିଲେ ।

ଏକଚାଟିଆ ପୁଞ୍ଜିପତିମାନେ ହିଟଲରର ନାଜୀ ପାର୍ଟିକୁ ଜର୍ମାନୀରେ କ୍ଷମତାରେ ପ୍ରତିଷ୍ଠିତ କରିଦେଲା ପରେ ୧୯୩୩ ମସିହା ଠାରୁ ବିଶ୍ୱଯୁଦ୍ଧର ବିପଦ ଅଧିକ ଘନେଇଆସିଲା । ଉକ୍ତ ନାଜୀ ପାର୍ଟି ଥିଲା ସାମ୍ରାଜ୍ୟବାଦୀମାନଙ୍କର ସବୁଠାରୁ ବଳି ପ୍ରତିକ୍ରିୟାଶୀଳ ଓ ଯୁଦ୍ଧଖୋର ପାର୍ଟି । ହିଟଲରବାଦୀମାନେ ଜର୍ମାନୀରେ ଗଣତାନ୍ତ୍ରିକ ସ୍ୱାଧୀନତାର ଶେଷ ସତ୍ତା ଲୋପ କରିଦେଲେ, ସମସ୍ତ ପ୍ରଗତିଶୀଳ ରାଜନୈତିକ ଦଳ ଓ ସଂଗଠନର ତଣ୍ଟି ଚିପି ଦଳନ କଲେ । କମ୍ୟୁନିଷ୍ଟମାନଙ୍କୁ ଅତି ନୃଶଂସ ଭାବରେ ପାଶବିକ ଢଙ୍ଗରେ ଦଣ୍ଡିତ ଓ ନିର୍ଯ୍ୟାତିତ କରି ନିପାତ କରିବାରେ ଲାଗିଲେ । ଆମେରିକା ଓ ବ୍ରିଟିଶ ପୁଞ୍ଜିପତିଙ୍କର ସାହାଯ୍ୟରେ ସମଗ୍ର ପୃଥିବୀକୁ ଦଖଲ କରିବା ମତଲବରେ ଜର୍ମାନୀର ସମର ବ୍ୟବସ୍ଥାକୁ ଜୋରସୋରରେ ପୁନର୍ଗଠିତ କଲେ ।

ହିଟଲର ଜର୍ମାନୀ ଭୀଷଣ ଭାବେ ଆନ୍ତର୍ଜାତୀୟ ଆଇନ୍‌କାନୁନ୍ ବିଧି-ବିଧାନମାନଙ୍କୁ ଲଙ୍ଘନ କଲା ଓ ପୃଥିବୀକୁ ରକ୍ତର ସାଗରରେ ନିମଜ୍ଜିତ କରିବା-ଲାଗି ମୁହୁର୍ମୁହୁଃ ଧମକ ଦେଲା ।

ଏହା ସତ୍ତ୍ୱେ ଆମେରିକା, ବ୍ରିଟେନ ଓ ଫ୍ରାନ୍‌ସ ଏ ସମସ୍ତ ପ୍ରତି ଆଖି ବୁଜିଦେଇ ଅହସ୍ତକ୍ଷେପ ନୀତି, ଅର୍ଥାତ୍ କୌଣସିଥିରେ ପାଟି ନ ଫିଟେଇବା ନୀତି ଅନୁସରଣ କଲେ । ନାଜି-ଜର୍ମାନୀକୁ ସେମାନେ ନିଜର କମ୍ୟୁନିଜମ୍ ବିରୋଧୀ ଯୁଦ୍ଧରେ ଭ୍ରାମ୍ୟମାଣ ଆକ୍ରମଣକାରୀ ଚମକଦାର ସୈନ୍ୟବାହିନୀ ବୋଲି ଗ୍ରହଣ କଲେ ଓ ସୋଭିଏତ୍ ବିରୁଦ୍ଧରେ ଜର୍ମାନୀର ଆକ୍ରମଣ ତୁରନ୍ତ ଆରମ୍ଭ ହେଉ, ଏଥିପାଇଁ ଅଧୀର ଭାବେ ଅନାଇ ରହିଲେ । ସେମାନେ ଜର୍ମାନୀର ଗତିବିଧି ଦେଖି କଳ୍ପନା କଲେ ଯେ, ଯେଉଁ ଯୁଦ୍ଧ ଆରମ୍ଭ ହୋଇଆସୁଛି, ସେହି ପ୍ରଳୟଙ୍କରୀ ଯୁଦ୍ଧ ସେମାନଙ୍କୁ ଆଘାତ କରିବ ନାହିଁ । ଆହୁରି ମଧ୍ୟ ସେମାନେ ଏଣା ଧରି ବସିଲେ—ସୋଭିଏତ୍ ଇଉନିୟନ ଆଉ ଜର୍ମାନୀ ଉଭୟେ ଜୀବନମରଣ ଯୁଦ୍ଧ ଭିତରେ ଧୂଳିସାତ୍ ହେବେ । ସେତେବେଳେ ସେମାନେ ଏହି ଉଭୟ ଦେଶ ଉପରେ ହୁକୁମ ଜାରି କରିବେ ଓ ନିଜର ଦାବୀ, ନିଜର ଆପୋଷମୂଳକ ସର୍ତ୍ତସବୁ ଲଦିଦେବେ ।

ସାମ୍ରାଜ୍ୟବାଦୀମାନେ ଭାବିଥିଲେ, ଗୋଟିଏ ଲେଖାଏଁ ଢେଲାରେ ଦୁଇ ଦୁଇଟା ଚଢ଼େଇ ଏକ ସଙ୍ଗରେ ଶିକାର କରିବେ । ପ୍ରଥମ ସମାଜବାଦୀ ରାଷ୍ଟ୍ରକୁ ଧ୍ୱଂସ କରିଦେବେ ଏବଂ ସେଥି ସହିତ ସେମାନଙ୍କରେ ଭୟଙ୍କର ପ୍ରତିଦ୍ୱନ୍ଦୀ ଜର୍ମାନୀକୁ ମଧ୍ୟ ଖତମ କରିଦେବେ ।

ଯେତେବେଳେ ନାଜିବାହିନୀ ଉନ୍ମତ୍ତ ହୋଇ ସାରା ଇଉରୋପରେ ଖେଦିଗଲେ, ଗୋଟାଏ ପରେ ଗୋଟାଏ ଦେଶ ଦଖଲ କଲେ, ସେତେବେଳେ ଆମେରିକା, ବ୍ରିଟେନ୍ ଓ ଫ୍ରାନ୍ସ ସେହିସବୁ ଦେଶକୁ ରକ୍ଷା କରିବା ଦିଗରେ କିଛୁ କରିବେ କଣ, ଓଲଟି ନାଜିମାନଙ୍କୁ ପୂର୍ବ ଦିଗକୁ ମାଡ଼ି ମାଡ଼ି ଯାଇ ସୋଭିଏତ୍ ସୀମାର ନିକଟବର୍ତ୍ତୀ ହେବାଲାଗି ଚତୁର କୌଶଳର ସହିତ ଉତ୍ସାହିତ କଲେ । ସେମାନେ ହିଟଲରକୁ ଅଷ୍ଟ୍ରିଆ ଦଖଲ କରିବାକୁ ଛାଡ଼ିଦେଲେ; ମିଉନିକ୍‌ଠାରେ ଚେକୋସ୍ଲୋଭାକିଆର ନାଜି ଅଧିକାରକୁ ସ୍ୱୀକାର କରି ହିଟଲର ସହିତ ଅତି ଘୃଣ୍ୟ, ଅତି ଲଜ୍ଜାକର ବିଶ୍ୱାସଘାତକତାପୂର୍ଣ୍ଣ ଚୁକ୍ତି ସଂପାଦନ କଲେ ।

ସୋଭିଏତ୍ ଇଉନିଅନ ହେଉଛି ଏକମାତ୍ର ଦେଶ, ଯାହା କି ନାଜି ଆକ୍ରମଣକାରୀମାନଙ୍କୁ ଖର୍ବ କରିବାକୁ ଚାହୁଁଥିଲା । ଯେତେବେଳେ ଜର୍ମାନ ଦାସତ୍ୱରେ ଜର୍ଜର ହେବାର ବିପଦ ଚେକୋସ୍ଲୋଭାକିଆକୁ ଗ୍ରାସ କରିବାକୁ ବସିଲା, ସେତେବେଳେ ସୋଭିଏତ୍ ଇଉନିଅନ ହିଁ କେବଳ ତାର ସ୍ୱାଧୀନତାକୁ ରକ୍ଷା କରିବା ଲାଗି ତତ୍ପର ହୋଇଉଠିଲା ଏବଂ ତାକୁ ସାମରିକ ସାହାଯ୍ୟ ଦେବାକୁ ପ୍ରସ୍ତୁତ ହେଲା । କିନ୍ତୁ ଚେକୋସ୍ଲୋଭାକିଆର ବୁର୍ଜୁଆ ସରକାର ତାହା ଗ୍ରହଣ କରିବାକୁ ଚାହିଁଲା ନାହିଁ—ନାସ୍ତି କରିଦେଲା ।

ବିଶ୍ୱଯୁଦ୍ଧର ଶିଖା କେବଳ ଜର୍ମାନୀ ଫାସିଷ୍ଟମାନଙ୍କ ଦ୍ୱାରା ପଶ୍ଚିମରେ ନୁହେଁ, ସୁଦୂର ପ୍ରାଚ୍ୟ ଭାଗରେ ଜାପାନୀ ଯୁଦ୍ଧଖୋରମାନଙ୍କ ଦ୍ୱାରା ମଧ୍ୟ ପ୍ରଜ୍ୱଳିତ ହେବାକୁ ଲାଗିଲା । ବାରୁଦର ଗନ୍ଧରେ ଆନ୍ତର୍ଜାତୀୟ ବାତାବରଣ ଅଧିକରୁ ଅଧିକ ବିଷାକ୍ତ ହୋଇଉଠିଲା । ବ୍ରିଟେନ୍, ଫ୍ରାନ୍ସ ଓ ଅନ୍ୟ ସାମ୍ରାଜ୍ୟବାଦୀ ଦେଶମାନଙ୍କରେ ଉପର ଗୋଷ୍ଠୀମାନେ ଭାବିଥିଲେ ଯେ, ଫାସିଷ୍ଟ ଯୁଦ୍ଧ ଭଳି ବିପଦ ସେମାନଙ୍କୁ ବିଚଳିତ କରିବ ନାହିଁ, ଏପରିକି ସ୍ପର୍ଶ କରିବ ନାହିଁ । ମାତ୍ର ସେମାନଙ୍କ ବିଚାର ଥିଲା ଭୁଲ, ପ୍ରମାଦପୂର୍ଣ୍ଣ । ହିଟଲରକୁ ସାହାଯ୍ୟ ଦେଇ ଯେଉଁ ସଂହାରଯନ୍ତ୍ର ଛିଡ଼ା କରାଇ ସେମାନେ ସର୍ଜ୍ଜିତ କରିଥିଲେ, ଅର୍ଥାତ୍ ଯେଉଁ ସାମରିକ ସଂଗଠନରେ ହିଟଲରକୁ ମଦତ୍ ଦେଇଥିଲେ, ଠିକ୍ ସେହି ସମରଯନ୍ତ୍ରର ପ୍ରଥମ ଶିକାର ସେଇମାନେ ହିଁ ହେଲେ ।

୧୯୩୯ ସେପ୍ଟେମ୍ବର ପହିଲାରେ ହିଟଲର ପୋଲାଣ୍ଡ ଆକ୍ରମଣ କଲା । ବ୍ରିଟେନ୍ ଓ ଫ୍ରାନ୍ସର ସରକାରମାନେ ନିଜର ମିତ୍ର ପୋଲାଣ୍ଡକୁ ସମର୍ଥନ ଦେବାକୁ ବାଧ୍ୟ ହେଲେ । ସେପ୍ଟେମ୍ବର ୩ ତାରିଖରେ ସେମାନେ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଯଦି ସେମାନେ ତାହା କରି ନ ଥାନ୍ତେ, ତେବେ ସେମାନେ ପୁରାପୁରି ସାଲିସ କଲେ ବୋଲି ନିଜର ଜନସାଧାରଣଙ୍କ ଚକ୍ଷୁରେ ଧରା ପଡ଼ିଥାନ୍ତେ । ଏହିପରି ଭାବେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା ।

ହିଟଲର ବିଚାର କରିଥିଲା ଯେ, ପଶ୍ଚିମ ଇଉରୋପ ଅଧିକାର କରିସିବ; ତା'ପରେ ସୋଭିଏତ୍ ଲୋକଙ୍କୁ ପରାଧୀନ କରି ଲୁଣ୍ଠନ କରିବା ଲାଗି ତା'ର ସମସ୍ତ ଶକ୍ତିକୁ ସୋଭିଏତ୍ ଆକ୍ରମଣରେ ନିୟୋଜିତ କରିବ । ତା'ର ଏହି ଘୃଣ୍ୟ ଯୋଜନାର ପ୍ରଥମ ଅଂଶଟି ହିଁ ସଫଳ ହେଲା । ଅଧିକୃତ ଇଉରୋପୀୟ ଦେଶଗୁଡ଼ିକର ଓ ତା'ର ଅଂଶୀଦାରମାନଙ୍କର ବିରାଟ ସାମରିକ ସଂପଦକୁ ହସ୍ତଗତ ଓ ସଂଗୃହୀତ କରି ହିଟଲର ସୋଭିଏତ୍ ଇଉନିଅନ ଉପରେ ଆକ୍ରମଣ କଲା । ବିନା ଯୁଦ୍ଧ ଘୋଷଣାରେ ଏହା ଥିଲା ଏକ ସହସା ଅତର୍କିତ ଆକ୍ରମଣ ।

## ବିରାଟ ଦେଶପ୍ରେମୀ ଯୁଦ୍ଧ

ଜର୍ମାନ ଫାସିଷ୍ଟ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ୧୯୪୧ ଜୁନ ୨୨ ତାରିଖରେ ଯେଉଁ ବିରାଟ ଦେଶପ୍ରେମୀ ଯୁଦ୍ଧର ସୂତ୍ରପାତ ହେଲା, ତାହା ହିଁ ପ୍ରକଟିତ ହେଲା ଦ୍ୱିତୀୟ ମହାଯୁଦ୍ଧର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଭାବରେ ।

ଦ୍ୱିତୀୟ ମହାଯୁଦ୍ଧରେ ସୋଭିଏତ୍ ଇଉନିଅନର ପ୍ରବେଶ, ଫାସିଷ୍ଟ ମିତ୍ରଗୋଷ୍ଠୀମାନଙ୍କ ବିରୁଦ୍ଧରେ ମୁକ୍ତିସଂଗ୍ରାମ ଚଳାଇବା ଲାଗି ସେହି ଯୁଦ୍ଧକୁ ଏକ ନ୍ୟାୟୋଚିତ ଯୁଦ୍ଧରେ ପୁରାପୁରି ପରିଣତ କରିଦେଲା । କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ସୋଭିଏତ୍ ଲୋକେ ନିଜର ସ୍ୱାଧୀନତା ଓ ସମାଜବାଦୀ ମାତୃଭୂମିର ରକ୍ଷା ଲାଗି ଏକ ହୋଇ ଉଠିଲେ । ସେହି ସଙ୍ଗେ ସଙ୍ଗେ ସେମାନେ ବିଚାରିଲେ ଯେ, ସେମାନଙ୍କର ଆନ୍ତର୍ଜାତୀୟ କର୍ତ୍ତବ୍ୟ ହେଉଛି ଇଉରୋପର ପରାଧୀନ ଲୋକମାନଙ୍କୁ ଫାସିଷ୍ଟ ଅତ୍ୟାଚାରରୁ ମୁକ୍ତ କରିବା । ସେମାନଙ୍କର ସେହି ଯୁଦ୍ଧ ଥିଲା ନ୍ୟାୟର ଯୁଦ୍ଧ, ମୁକ୍ତିର ସଂଗ୍ରାମ, ପ୍ରକୃତରେ ଏକ ଜନତାର ଯୁଦ୍ଧ ।

ମୁକ୍ତିସଂଗ୍ରାମ ଭାବରେ ସେହି ବିରାଟ ଦେଶପ୍ରେମୀ ଯୁଦ୍ଧ ସୋଭିଏତ ଇଉନିଅନ ବାହାର ପୃଥିବୀର ଶ୍ରମଜୀବୀ ଲୋକଙ୍କର ଆବେଗମୟ ନିଷ୍ଠାପୂର୍ଣ୍ଣ ସମର୍ଥନ ସୃଷ୍ଟି କଲା । ଆମେରିକା, ବ୍ରିଟେନ୍, ଫ୍ରାନ୍ସ ଓ ଅନ୍ୟାନ୍ୟ ପୁଞ୍ଜିବାଦୀ ଦେଶର ଲୋକେ

ଉପଲବ୍ଧି କଲେ, ସୋଭିଏତ ଇଉନିଅନ ହେଉଛି ଏକମାତ୍ର ଶକ୍ତି, ଯିଏ କି ଫାସିଷ୍ଟ ସମରଯନ୍ତ୍ର ଧ୍ୱଂସ କରିବାକୁ ସମର୍ଥ । ସେହିସବୁ ଦେଶର ସରକାରମାନେ ମଧ୍ୟ ଅନୁଭବ କଲେ, ସୋଭିଏତ୍ ଇଉନିଅନ ବିନା ହିଟଲରୀ ଆକ୍ରମଣକୁ ରୋକ କରିବା ଅସମ୍ଭବ । ସୋଭିଏତ୍ ଇଉନିଅନ ପ୍ରତି ବିଶ୍ୱର ଜନସାଧାରଣଙ୍କ ଶକ୍ତିଶାଳୀ ସମର୍ଥନକୁ ସେମାନେ ମଧ୍ୟ ଘୃଣାକ୍ଷରେ ଏଡ଼ାଇଦେଇପାରିଲେ ନାହିଁ ।

ପ୍ରଥମେ ବ୍ରିଟେନ (୧୯୪୧ ଜୁଲାଇରେ) ଏବଂ ତା'ପରେ ଯୁକ୍ତରାଷ୍ଟ୍ର ଆମେରିକା (୧୯୪୨ ଜୁନରେ) ଜର୍ମାନୀ ବିରୁଦ୍ଧରେ ପରସ୍ପର ସାହାଯ୍ୟକୃତ ଚୁକ୍ତିନାମା ସ୍ୱାକ୍ଷରିତ କଲେ ।

ହିଟଲର-ବିରୋଧୀ ମେଣ୍ଟର ସଭ୍ୟମାନେ ଭିନ୍ନ ଭିନ୍ନ ଲକ୍ଷ୍ୟ ଅନୁସରଣ କରୁଥିଲେ ସତ, କିନ୍ତୁ ପ୍ରଧାନ ବିଷୟ ଥିଲା ସୋଭିଏତ୍ ଇଉନିଅନ, ଯୁକ୍ତରାଷ୍ଟ୍ର ଆମେରିକା ଓ ବ୍ରିଟେନ, ଜର୍ମାନୀ ଓ ତାର ସାଥୀମାନଙ୍କ ବିରୁଦ୍ଧରେ ଥିଲେ ଏକ ପକ୍ଷରେ ଓ ଏକ ସଙ୍ଗରେ ।

ଯୁଦ୍ଧର ପ୍ରଥମ ଅବସ୍ଥା ଥିଲା, ସୋଭିଏତ୍ ଇଉନିଅନ ଓ ତା'ର ସେନାବାହିନୀ ପକ୍ଷରେ ଅତ୍ୟନ୍ତ ଅସୁବିଧାଜନକ । ସେତେବେଳକୁ ହିଟଲର ଜର୍ମାନୀ ପ୍ରାୟ ସମସ୍ତ ପଶ୍ଚିମ ଇଉରୋପକୁ ଦଖଲ କରିଥାଏ; ପଶ୍ଚିମ ୟୁରୋପର ସମସ୍ତ ଅର୍ଥନୀତିକୁ ଯୁଦ୍ଧମୁଖୀ କରିଥାଏ । ଏହା ଫଳରେ ତା'ର ଅସ୍ତ୍ରଶସ୍ତ୍ରର ସଂଖ୍ୟା ଅଧିକରୁ ଅଧିକ ବୃଦ୍ଧି ପାଇଲା ଓ କେତେ ପ୍ରକାର ଅସ୍ତ୍ରଶସ୍ତ୍ର ନିର୍ମାଣରେ ମଧ୍ୟ ତାହା ଅଧିକ ଦକ୍ଷତା ଓ ଉତ୍କର୍ଷ ହାସଲ କଲା । ଏହା ଛଡ଼ା ମଧ୍ୟ ହିଟଲରର ସୈନ୍ୟବାହିନୀ ପୂର୍ବରୁ ଗତିଶୀଳ ଓ ସୁସଜ୍ଜିତ ଅବସ୍ଥାରେ ଥିବା; ଆଧୁନିକ ଯୁଦ୍ଧବିଦ୍ୟାରେ କେତେକ ଅଭିଜ୍ଞତା ହାସଲ କରିପାରିଥିଲା । ସେ ଜର୍ମାନୀ ଏପରି ଏକ ସମୟରେ ସୋଭିଏତ ୟୁନିଅନ ଉପରେ ଆକ୍ରମଣ କଲା, ଯେତେବେଳେ କି ପଶ୍ଚିମରେ ସ୍ଥଳଭାଗରେ କୌଣସି ଯୁଦ୍ଧ ସଂଘଟିତ ହେଉ ନ ଥିଲା, ଏବଂ ତା'ର ନିଜର ଓ ତା ସାଥୀମାନଙ୍କର ପ୍ରଧାନ ସୈନ୍ୟବାହିନୀକୁ ସବୁ ସୋଭିଏତ ୟୁନିଅନ ବିରୁଦ୍ଧରେ ପ୍ରୟୋଗ କରିବାକୁ ସମର୍ଥ ଥିଲା । ଅଳ୍ପ ମଧ୍ୟ ତେଣେ ସୋଭିଏତ ୟୁନିଅନକୁ ପ୍ରାଚ୍ୟ ସ୍ଥାନରେ ଜାପାନ ବିରୁଦ୍ଧରେ ଉପଯୁକ୍ତ ସୈନ୍ୟବାହିନୀ ମୁତୟନ ରଖିବାକୁ ପଡ଼ିଲା । ଏହି ପରିସ୍ଥିତିରେ ଜର୍ମାନର ସହସା ଅତର୍କିତ ଆକ୍ରମଣ ଜର୍ମାନୀକୁ ସାମୟିକ ସୁବିଧା ସୁଯୋଗ ଦେଲା । ତାହା ସବୁ ମଧ୍ୟ ଅନେକ ଦିନ ତିଷ୍ଠି ରହିଲା । ଯୁଦ୍ଧର ପ୍ରଥମ ସ୍ତରରେ ଯେଉଁ ପ୍ରଧାନ ବିପର୍ଯ୍ୟୟ ଘଟିଥିଲା, ତାହା ସମ୍ଭବ ହୋଇଥିଲା ଷ୍ଟାଲିନ୍ଙ୍କର ଗୁରୁତର ପ୍ରମାଦପୂର୍ଣ୍ଣ ବିଚାର ଓ ରଣକୌଶଳ ସାମରିକ ତ୍ରୁଟି ହେତୁରୁ ।

# ସମାଜବାଦୀ ବ୍ୟବସ୍ଥା ଅଜେୟ

ଗୃହଯୁଦ୍ଧ କାଳ ଯୁଦ୍ଧରେ ସୋଭିଏତ ଲୋକଙ୍କର ବୈଷୟିକ, ନୈତିକ ଓ ଆତ୍ମିକ ଶକ୍ତି ସଂପଦ ଉପରେ ସାଂଘାତିକ ପ୍ରଭାବ ବା ଚାପ ପଡ଼ିଲା ।

ଯୁଦ୍ଧର ପ୍ରଥମ ଅବସ୍ଥାରେ ସୋଭିଏତର ପରାଜୟ ଫଳରେ ନାଜି ଶାସକମାନଙ୍କର ଦମାକ୍ ବଢ଼ିଗଲା । ସେମାନେ ପୃଥିବୀ ସମ୍ମୁଖରେ ଦମ୍ଭରେ ଗର୍ବର ସହିତ ଘୋଷଣା କଲେ ଯେ, ସୋଭିଏତ୍ ୟୁନିଅନର ଅତି ଶୀଘ୍ର ପତନ ଅବଶ୍ୟମ୍ଭାବୀ । କିନ୍ତୁ ସେମାନଙ୍କର ଭବିଷ୍ୟତ ବାଣୀ ବ୍ୟର୍ଥ ହେଲା । ସୋଭିଏତ ୟୁନିଅନ ସମସ୍ତ ଆକ୍ରମଣ ସମ୍ମୁଖରେ ଦଣ୍ଡାୟମାନ ହୋଇ ଶେଷରେ ଜୟଲାଭ କଲା । ଯେଉଁମାନେ ତା'ର ଶତ୍ରୁ ଥିଲେ, ସେହିମାନେ ହିଁ ଧ୍ୱସ୍ତ ହେଲେ ।

ସୋଭିଏତ୍ ୟୁନିଅନ ଓ ହିଟଲର-ଜର୍ମାନୀ ମଧ୍ୟରେ ଏହି ଯେଉଁ ରକ୍ତାକ୍ତ ସଂଘର୍ଷ ଘଟିଗଲା, ତାହା ସେହି ଦୁଇ ରାଷ୍ଟ୍ର ମଧ୍ୟରେ ଏକ ସରଳ ସାଧାରଣ ସଶସ୍ତ୍ର ଯୁଦ୍ଧ ନ ଥିଲା । ପ୍ରକୃତରେ ତାହା ଥିଲା—ଦୁଇଟି ବିରୁଦ୍ଧାତ୍ମକ ସାମାଜିକ ବ୍ୟବସ୍ଥା ମଧ୍ୟରେ, ଅର୍ଥାତ୍ ସମାଜବାଦୀ ଓ ପୁଞ୍ଜିବାଦୀ ବ୍ୟବସ୍ଥା ମଧ୍ୟରେ ସଂଗ୍ରାମ । ଅଗ୍ରଗାମୀ ଆଉ ପ୍ରବଳ ଭାବରେ ଶକ୍ତିଶାଳୀ ସମାଜବାଦୀ ବ୍ୟବସ୍ଥା, ସେହି ଜୀବନମରଣ ସଂଗ୍ରାମରେ ଜୟଲାଭ ନ କରି ରହିପାରିଥାନ୍ତା ବା କିପରି ? ଏଣୁ ବାସ୍ତବରେ ଜୟଲାଭ କଲା ସମାଜବାଦୀ ବ୍ୟବସ୍ଥା । ସୋଭିଏତ ୟୁନିଅନର ଯେଉଁ କମ୍ୟୁନିଷ୍ଟ ପାର୍ଟି ଦେଶର ସ୍ୱାଧୀନତାର ସଂଗ୍ରାମକୁ ନିଃସ୍ୱାର୍ଥପର ଭାବେ ପରିଚାଳିତ କରିଥିଲା, ସମାଜବାଦୀ ବ୍ୟବସ୍ଥାର ଉତ୍କର୍ଷକୁ ତାହା ସଂପୂର୍ଣ୍ଣରୂପେ ବ୍ୟବହାର କଲା ।

**ଏହି ଯୁଦ୍ଧ ଦର୍ଶାଇଦେଲା ଯେ ସମାଜବାଦୀ ସାମାଜିକ ବ୍ୟବସ୍ଥା ଓ ବହୁଜାତି-ଅଧ୍ୟୁଷିତ ସୋଭିଏତ୍ ରାଷ୍ଟ୍ର ଶକ୍ତିଶାଳୀ ଓ ସୁଦୃଢ଼; ଆଉ ମଧ୍ୟ ଏହା ଦର୍ଶାଇଦେଲା, ବର୍ବର ଓ ମାନବ-ଘୃଣାକାରୀ ଫାସିଷ୍ଟ ମତାଦର୍ଶଠାରୁ କମ୍ୟୁନିଷ୍ଟ ମତାଦର୍ଶ ହେଉଛି ଅତି ଉଚ୍ଚ ଓ ଉତ୍କୃଷ୍ଟ ।**

ଯୁଦ୍ଧର ଆରମ୍ଭରେ ହିଁ ପରିଷ୍କାର ହୋଇଉଠିଲା, ନାଜି ରଣନୀତି-ବିଶାରଦଙ୍କର କଳନା ଓ ଧାରଣା ଭ୍ରାନ୍ତ । ସେମାନଙ୍କର ତୋଫାନ ବିଜୟର କଳ୍ପନା ଧୂଆଁ ଭଳି ଉଭେଇଗଲା ଆକାଶରେ ।



ବର୍ଲିନ୍‌ରେ ସୋଭିଏତ୍‌ର ବିଜୟୀ ପତାକା ଉଡ଼ୁଛି ।

ଶତ୍ରୁର ଅଧିକ ଶକ୍ତିଶାଳୀ ସେନାବାହିନୀ ସମ୍ମୁଖରେ ପଛଘୁଞ୍ଚା ଦେଉଥିବେଳେ ସୋଭିଏତ୍ ସୈନ୍ୟମାନେ ସୋଭିଏତ୍ ଭୂମିର ପ୍ରତ୍ୟେକ ଇଞ୍ଚ ସ୍ଥାନକୁ ରକ୍ଷା କଲେ ପ୍ରାଣମୂର୍ଚ୍ଛା ଲଢ଼େଇ କରି । ପଶ୍ଚିମ ଇଉରୋପରେ ସହଜ ବିଜୟଲାଭ ପରେ ନାଜୀମାନେ ଏବେ ପ୍ରଥମ ଥର ପାଇଁ ଦୃଢ଼ ପ୍ରତିରୋଧର ସମ୍ମୁଖୀନ ହେଲେ; ଅନୁଭବ କଲେ—ପ୍ରକୃତରେ ଯୁଦ୍ଧ କାହାକୁ କହନ୍ତି । ଓଡ଼େଶା, ସେବାସ୍ତୋପୋଲ, ଲେନିନ-ଗ୍ରାଦ୍‌ରେ ଆଉ ୧୯୪୧ ଶୀତକାଳରେ ମସ୍କୋର ବିରାଟ ଯୁଦ୍ଧରେ ସୋଭିଏତ୍ ସୈନ୍ୟବାହିନୀର ଯେଉଁ ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଯୋଗେ ନାଜୀ ଦସ୍ୟୁଦଳ ପରାସ୍ତ ହେଲେ, ଛିନ୍ନଭିନ୍ନ ହେଲେ, ସେହି ବୀରତ୍ୱପୂର୍ଣ୍ଣ ସଂଗ୍ରାମକୁ କେବେହେଲେ ସୋଭିଏତ୍‌ର ଜନସାଧାରଣ ଭୁଲିପାରିବେ ନାହିଁ ।

ତଥାପି ନାଜୀ ଜର୍ମାନୀର ବିପୁଳ ସାମରିକ ଶକ୍ତି ଅକ୍ଷୁଣ୍ଣ ଥାଏ । ୧୯୪୨ ଗ୍ରୀଷ୍ମ କାଳରେ ତାହା ଦକ୍ଷିଣାଞ୍ଚଳ ରଣକ୍ଷେତ୍ରରେ ଏକ ନୂତନ ଆକ୍ରମଣ ଆରମ୍ଭ କଲା । ଯଦି ବ୍ରିଟେନ୍ ଓ ଆମେରିକା ସେମାନଙ୍କର ପ୍ରତିଶ୍ରୁତି ରକ୍ଷା କରି ୧୯୪୨ରେ ଇଉରୋପରେ ଦ୍ୱିତୀୟ ରଣକ୍ଷେତ୍ର ଖୋଲିଥାନ୍ତେ, ତାହାହେଲେ ନାଜୀ ଜର୍ମାନୀ ଏହି ଆକ୍ରମଣ ଆରମ୍ଭ କରିବାପାଇଁ ସାହସ କରି ନ ଥାନ୍ତା । କିନ୍ତୁ ଏହି ଆକ୍ରମଣ ଫଳରେ ନାଜୀମାନେ ଭଲଗା କୂଳରେ ପହଞ୍ଚିବାକୁ ସମର୍ଥ ହୋଇଗଲେ । ଷ୍ଟାଲିନଗ୍ରାଦ୍

(ବର୍ତ୍ତମାନର ଭଲ୍‌ଗୋଗ୍ରାଦ୍‌)କୁ ଘୋଟାଏ ମାଡରେ ଦଖଲ କରିବାର ପରିକଳ୍ପନା କରି ସେମାନେ ତାହାର ସର୍ବଶ୍ରେଷ୍ଠ ଅତି ଶକ୍ତିଶାଳୀ ଅସ୍ତ୍ରଶସ୍ତ୍ର ସଜ୍ଜିତ ସାଞ୍ଜୁଆ ବାହିନୀକୁ ଯୁଦ୍ଧରେ ପ୍ରୟୋଗ କଲେ ।

ଭଲ୍‌ଗା କୂଳରେ, ଷ୍ଟାଲିନଗ୍ରାଦ୍‌ ଓ ଅନ୍ୟାନ୍ୟ ରଣକ୍ଷେତ୍ରରେ ଘୋର ପ୍ରଚଣ୍ଡ ସଂଘର୍ଷ ଭିତରେ ସୋଭିଏତ୍‌ ସୈନ୍ୟବାହିନୀ ଶତ୍ରୁ ସୈନ୍ୟଙ୍କର ଅଗ୍ରଗତିକୁ ରୋଧ କରିଦେଲା ଓ ସେମାନଙ୍କୁ ଭୟଙ୍କର ଭାବେ କ୍ଷତିଗ୍ରସ୍ତ କଲା; ହିଟଲର୍‌ ଜର୍ମାନୀର ପରାଜୟର ଧ୍ୱଂସର ମାର୍ଗ ଉନ୍ମୁକ୍ତ କଲା; ଆଉ ୧୯୪୨ ନଭେମ୍ବର ୧୯ ତାରିଖରେ ଭଲ୍‌ଗା ରଣକ୍ଷେତ୍ରରେ ପ୍ରତି-ଅଭିଯାନ ବା ପ୍ରତି-ଆକ୍ରମଣ ଆରମ୍ଭ କରିଦେଲା । ନାଜି ବାହିନୀସମୂହର ସମରବ୍ୟୂହ ଭେଦ କରି ସେମାନଙ୍କର ସମ୍ମୁଖଂକୁ ଫଟେଇଦେଇ ସୋଭିଏତ୍‌ ସୈନ୍ୟ ୩୩୦,୦୦୦ ନାଜି ସୈନ୍ୟଙ୍କୁ ଘେରାଉ କରି ଧ୍ୱଂସ କଲେ । ଅବଶିଷ୍ଟ ସୈନ୍ୟଙ୍କୁ ବନ୍ଦୀ କରିଦେଲେ ।

ଭଲ୍‌ଗା କୂଳରେ ଜର୍ମାନୀର ପରାଜୟ ନାଜି ଜର୍ମାନୀକୁ ପ୍ରଚଣ୍ଡଭାବେ ଆଘାତ ଦେଲା । ତାହା ଜର୍ମାନୀର ସାମରିକ ଶକ୍ତିର ନୈତିକ ବଳକୁ କ୍ଷୁଣ୍ଣ ଓ ଦୁର୍ବଳ କରିଦେଲା; ତା'ର ଗୋଡ଼ାଣିଆ ଦେଶମାନଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି କଲା । ଏହା ହିଁ ହୋଇଉଠିଲା ସୋଭିଏତ୍‌ ୟୁନିୟନ ଓ ତା'ର ମିତ୍ରଗୋଷ୍ଠୀ ପକ୍ଷରେ ଯୁଦ୍ଧର ଗତି ପରିବର୍ତ୍ତନ ବା ମୋଡ଼ର ମୁହୂର୍ତ୍ତ । ଏବେ ବ୍ୟାପକ ଭାବରେ ସୋଭିଏତ୍‌ ୟୁନିୟନରୁ ଶତ୍ରୁ ବିତାଡ଼ନ ଆରମ୍ଭ ହେଲା ।

୧୯୪୩ ଗ୍ରୀଷ୍ମକାଳରେ କୁର୍ସ୍କ ରଣକ୍ଷେତ୍ରରେ ହିଟଲର ପ୍ରଧାନ ଏକ ପ୍ରବଳ ଅଭିଯାନ ଆରମ୍ଭ କରିବାପାଇଁ ଶେଷ ଚେଷ୍ଟା କଲା, ମାତ୍ର ପୁନର୍ବାର ସେ ଭୁଲ କରିବସିଲା । ନିଜର ଯୋଜନାରେ, ଅନୁମାନରେ ସୋଭିଏତ୍‌ ସୈନ୍ୟମାନେ ନାଜିମାନଙ୍କର ସର୍ବୋତ୍କୃଷ୍ଟ ବାହିନୀକୁ ଦୁର୍ବଳ କରିଦେଲା ପରେ ସେମାନଙ୍କର ବିରାଟ ଅଭିଯାନ ଆରମ୍ଭ କରିଦେଲେ !

ସୋଭିଏତ୍‌ ସୈନ୍ୟବାହିନୀ ପର୍ବତରୁ ପଥର ଗଡ଼ିଲା ଭଳି ଶତ୍ରୁ ସୈନ୍ୟଙ୍କ ଉପରେ ମାଡ଼ି ଚାଲିଲେ । ୧୯୪୩ ଓ ୧୯୪୪ରେ ସେମାନେ ଶହ ଶହ ଗ୍ରାମ ଓ ନଗର ମୁକ୍ତ କରି ସୋଭିଏତ୍‌ ଅଞ୍ଚଳକୁ ଆକ୍ରମଣକାରୀଙ୍କ କବଳରୁ ମୁକ୍ତ କରିଦେଲେ ; ତା ପରେ ଶତ୍ରୁକୁ ତା'ର ନିଜ ଘର ଭିତରେ ହିଁ ନିପାତ କରିବାରେ ଲାଗିଲେ ।

ଅବଶ୍ୟ ସୋଭିଏତ୍‌ ୟୁନିୟନର ଯୋଜନା ମଧ୍ୟରେ ବିଦେଶୀ ରାଜ୍ୟ ବା ଅଞ୍ଚଳ ଦଖଲ କରିବାର ପ୍ରଶ୍ନ ନ ଥିଲା ; କିନ୍ତୁ ବର୍ତ୍ତମାନ ଯୁଦ୍ଧ ଘୋର ରୂପଧାରଣ

ସେହି ଶତ୍ରୁକୁ ପରାସ୍ତ କରିବା ଓ ଇଉରୋପର ଜନସାଧାରଣଙ୍କୁ ନାଜୀ କବଳରୁ ମୁକ୍ତ କରିବା ଦିଗରେ ସାହାଯ୍ୟ ଦେବା ଲାଗି ସୋଭିଏତ୍ ସେନାବାହିନୀ ସଂଗ୍ରାମ ଆରମ୍ଭ କଲେ । ଏହା ଥିଲା ସର୍ବହରାମୂଳକ ଅନ୍ତର୍ଜାତୀୟ ସଂହତିର ଜ୍ୱଳନ୍ତ ନିଦର୍ଶନ, ଯାହା କି ସମାଜବାଦୀ ବ୍ୟବସ୍ଥାର ମୂଳ ଭିତ୍ତି ଉପରେ ନିହିତ ଏବଂ କମ୍ୟୁନିଷ୍ଟ ପାର୍ଟି ଓ ସୋଭିଏତ୍ ରାଷ୍ଟ୍ରର ଏକ ମହତ ନିର୍ଦ୍ଦେଶ ହୋଇଥିଲା । ସୋଭିଏତ୍ ସେନାବାହିନୀର ବିଜୟ ଇଉରୋପର ବହୁ ଦେଶରେ ଶ୍ରମଜୀବୀ ଲୋକମାନଙ୍କୁ ଶ୍ରମିକଶ୍ରେଣୀର ନେତୃତ୍ୱରେ ଘୃଣ୍ୟ ଫାସିଷ୍ଟ ଶାସନକୁ ଲୋପ କରି, ଜନତାର ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରତିଷ୍ଠା କରିବା ଲାଗି ସୁଯୋଗ ଯୋଗାଇଦେଲା ।

ସୋଭିଏତ୍ ସେନାବାହିନୀର କ୍ରମାଗତ ପ୍ରହାର ଫଳରେ ହିଟଲରର ସଙ୍ଗୀଦଳ ଫାଟି ଖଣ୍ଡ ଖଣ୍ଡ ହୋଇଗଲେ । ପୂର୍ବରୁ ଜର୍ମାନୀର ଦୋହରିଆ ଥିବା କେତେକ ରାଷ୍ଟ୍ର ତା'ହାର ବିରୁଦ୍ଧରେ ହିଁ ଅସ୍ତ୍ର ଧାରଣ କଲେ । ତଥାପି ଜର୍ମାନୀ ଅତି ଭୟଙ୍କର ପ୍ରତିରୋଧ କଲା । କିନ୍ତୁ ହେଲେ କ'ଣ ହେବ, ତାର ଦିନକାଳ ସରିଆସିଲା ।

ପ୍ରତ୍ୟେକ ଲୋକ ଆଗରେ ଜଳ ଜଳ ହୋଇ ଦେଖାଗଲା, ସୋଭିଏତ୍ ଇଉନିଅନ ଏକା ଏକା ନାଜୀ ଜର୍ମାନୀକୁ ପରାସ୍ତ କରି ସମଗ୍ର ଇଉରୋପକୁ ମୁକ୍ତ କରିଦେବାକୁ ସମର୍ଥ । ବ୍ରିଟେନ ଓ ଆମେରିକା ଏହା ବୁଝିନେଲେ । ୧୯୪୪ ଜୁନ୍‌ରେ— ହିଟଲର ଜର୍ମାନୀ ସୋଭିଏତ୍ ଇଉନିଅନ ଆକ୍ରମଣ କରିବାର ତିନିବର୍ଷ ପରେ— ସେମାନେ ଇଉରୋପରେ ଦ୍ୱିତୀୟ ରଣକ୍ଷେତ୍ର ଖୋଲିବା ପାଇଁ ଫ୍ରାନ୍ସ ଉପକୂଳରେ ସୈନ୍ୟ ଓହ୍ଲାଇଦେଲେ । ତେବେ ସେମାନଙ୍କର ସୈନ୍ୟବାହିନୀ ବିଶେଷ ସକ୍ରିୟ ହେଲେ ନାହିଁ: ଜୋରରେ ଯୁଦ୍ଧରେ ଲାଗିଲେ ନାହିଁ । ହିଟଲର ତେଣୁ ନିଜର ପ୍ରଧାନ ସୈନ୍ୟବାହିନୀକୁ ଅଦୂରରେ ପଡ଼ିଥିବା ସୋଭିଏତ୍ ରଣକ୍ଷେତ୍ରରେ କ୍ରମାଗତଭାବେ ନିଯୁକ୍ତ ରଖିପାରିଲେ । ଏହାର ଅର୍ଥ, ଶେଷ ପର୍ଯ୍ୟନ୍ତ ସୋଭିଏତ୍ ସୈନ୍ୟବାହିନୀକୁ ହିଁ ଯୁଦ୍ଧର ପ୍ରଧାନ ଆଘାତ ସହ୍ୟ କରିବାକୁ ପଡ଼ିଥିଲା ।

ଯେଉଁ ନାଜୀ ଜର୍ମାନୀ ଏତେ ବୀଭତ୍ସତା, ନିର୍ଦ୍ଦୟତା, ଏତେ ଉତ୍ପାତର କାରଣ ଥିଲା, ୧୯୪୫ ମଇ ମାସର ପ୍ରଥମ ଭାଗରେ ସେହି ନାଜୀ ଜର୍ମାନୀ ଧୂଳିଲୁଣ୍ଠିତ ହେଲା— ଚୂଡ଼ାନ୍ତଭାବେ ତାର ପତନ ଘଟିଲା । ମଇ ମାସ ୮ ତାରିଖରେ 'ନାଜୀ' ଜର୍ମାନୀ ବିନା ସର୍ତ୍ତରେ ଆତ୍ମସମର୍ପଣ କଲା ।

ଇଉରୋପରେ ଯୁଦ୍ଧର ଅବସାନ ହେଲା ସତ, କିନ୍ତୁ ଦ୍ୱିତୀୟ ମହାଯୁଦ୍ଧ ଲାଗି

ରହିଲା ଜନ୍ମଦିନ ପାଇଁ । ଜର୍ମାନୀର ବନ୍ଧୁ ଜାପାନ ଦକ୍ଷିଣ ପୂର୍ବ ଏସିଆରେ ଦୀର୍ଘକାଳ ଧରି ରକ୍ତାକ୍ତ ସଂଗ୍ରାମ ଚଳାଇଥିଲା । ତାକୁ ପରାସ୍ତ କରିବା ସମସ୍ୟା ହୋଇ ରହିଲା । ସୋଭିଏତ୍ ସେନାବାହିନୀ ମଧ୍ୟ ସାମ୍ରାଜ୍ୟବାଦୀ ଜାପାନ ବିରୋଧୀ ଯୁଦ୍ଧରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଜାପାନର ମୁଖ୍ୟ ସେନାବାହିନୀ କ୍ୱାଣ୍ଟୁଂ ସୈନ୍ୟମାନଙ୍କୁ ତାହା ଅତି ଶୀଘ୍ର ପରାସ୍ତ କରିଦେଲା—ଚୀନ ଓ ଏସିଆର ଅନ୍ୟାନ୍ୟ ଦେଶର ଲୋକମାନଙ୍କୁ ଜାପାନୀ ଆକ୍ରମଣକାରୀମାନଙ୍କ କବଳରୁ ମୁକ୍ତ ହେବା ଦିଗରେ ସାହାଯ୍ୟ ଦେଲା ।

## ସୋଭିଏତ୍ ଇଉନିଅନ ଯୁଦ୍ଧରେ ବିଜୟୀ ହେଲା କାହିଁକି

ସେ ସୋଭିଏତ୍ ଇଉନିଅନ କିପରି ନାଜୀ ଜର୍ମାନୀର ବିଶାଳ ସାମରିକ ବ୍ୟବସ୍ଥାର ଆକ୍ରମଣ ବିରୁଦ୍ଧରେ ଅଟଳ ହୋଇ ଦଣ୍ଡାୟମାନ ରହିଲା ଓ ପରେ ତାକୁ ଧ୍ୱଂସ କରିଦେଲା ବା କିପରି ? କାର୍ଯ୍ୟତଃ ପ୍ରାୟ ସମଗ୍ର ୟୁରୋପର ଶକ୍ତି ଓ ସଂପଦ ଯେତେବେଳେ ହିଟଲର-ଜର୍ମାନୀର ହାତରେ ରହିଥିଲା ସେତେବେଳେ ତାକୁ ସୋଭିଏତ୍ ଇଉନିଅନ ଦଳିଦେଲା କିପରି ? ସୋଭିଏତ୍ ଲୋକଙ୍କର ସେଭଳି ବଳ ଓ ଶକ୍ତି ଆସିଲା କେଉଁଠୁ ?

ସେଦିନ ସେହି ବିଜୟହାସଲ ପରେ ପୃଥିବୀସାରା କୋଟି କୋଟି ଲୋକ ଏହି ପ୍ରଶ୍ନ କରିଥିଲେ ଓ ଆଜି ମଧ୍ୟ ସେହି ପ୍ରଶ୍ନ କରନ୍ତି ।

ସୋଭିଏତ୍ରର ଏହି ବିଜୟ ସମ୍ଭବ ହୋଇଥିଲା ମୁଖ୍ୟତଃ ତା'ର ସମାଜବାଦୀ ବ୍ୟବସ୍ଥା ଯୋଗୁ । ଏହି ବ୍ୟବସ୍ଥା ହେଉଛି ତାହା ଯେ କଠୋର ପରୀକ୍ଷାରେ କେବଳ ଉତ୍ତୀର୍ଣ୍ଣ ହେଲା, ଏହା ନୁହେଁ; ଏହାଯୋଗେ ପ୍ରମାଣ କରିଦେଲା, ପୁଞ୍ଜିବାଦୀ ବ୍ୟବସ୍ଥା ତୁଳନାରେ ନିଜ ବ୍ୟବସ୍ଥାର ଉତ୍କର୍ଷ । ସୋଭିଏତର ସାମାଜିକ ଓ ରାଷ୍ଟ୍ରୀୟ ବ୍ୟବସ୍ଥା ହିଁ ତା'ର ଘର ଭିତରର ଯୁଦ୍ଧ ସାମର୍ଥ୍ୟ, ଯୁଦ୍ଧ ଆୟୋଜନ ଆଉ ସୈନ୍ୟ-ବାହିନୀକୁ ଶକ୍ତିସାମର୍ଥ୍ୟ ଯୋଗାଇଦେଲା ।

ସୋଭିଏତ୍ ସମାଜବାଦୀ ଅର୍ଥନୀତି ଯୁଦ୍ଧର ପରୀକ୍ଷା ଭିତରୁ ବିଜୟର ପତାକା ଉଡ଼ାଇ ବାହାରିଗଲା ।

ସମାଜବାଦୀ ଶିଳ୍ପୀକରଣ ଓ କୃଷିକ୍ଷେତ୍ରରେ ଯୌଥଖେତର ପ୍ରସାର ସେହି ଅର୍ଥନୀତିର ସାର୍ଥକତାକୁ ସାବ୍ୟସ୍ତ କଲା । କାରଣ ଉତ୍ପାଦନର ଉପକରଣ ବ୍ୟକ୍ତି-ବିଶେଷଙ୍କର ବ୍ୟକ୍ତିଗତ ସମ୍ପତ୍ତି ହେବା ପରିବର୍ତ୍ତେ ସମଗ୍ର ସମାଜର ସମ୍ପତ୍ତି ହୋଇ-

ଥିବାରୁ ସୋଭିଏତ୍ ଇଉନିଅନ ଜାଗ୍ରତ ଅର୍ଥନୀତିକୁ ଅତି ଶୀଘ୍ର ଯୁଦ୍ଧ ପାଇଁ ନିୟନ୍ତ୍ରିତ କରିପାରିଲା ; ଯୁଦ୍ଧର ଆବଶ୍ୟକତା ଦୃଷ୍ଟିରୁ ବିଶାଳ ବୈଷୟିକ ସମ୍ପଦକୁ ସୁପରି-ଚାଳିତ କରିବାରେ ସମର୍ଥ ହେଲା ।

ଏହି ଦେଶପ୍ରେମୀ ଯୁଦ୍ଧରେ ବିଜୟ ହାସଲ ଥିଲା ଲୋକଙ୍କର ଗୋଟାଏ ବିରାଟ କୃତିତ୍ୱ । ମହାନ ବୀରତ୍ୱ, ଶକ୍ତି, ଦୃଢ଼ତା ଓ ଅସୀମ ଦେଶପ୍ରେମର ପରିଚୟ ପ୍ରଦର୍ଶିତ କରିଥିଲେ ସେହିମାନେ । ହଜାର ହଜାର ସୋଭିଏତ୍ ନାଗରିକ ଏହି ଯୁଦ୍ଧରେ ଆପଣା ଆପଣାକୁ ମଣ୍ଡିତ କରିଥିଲେ ଅମର ଗୌରବରେ । ପୃଥିବୀ ବହୁ ବୀରଙ୍କର ନାମ ଜାଣେ, ଯେମିତି, ବିମାନଚାଳକ ନିକୋଲାଇ ଗାଷ୍ଟେଲୋ, ଯେ କି ନିଜର କ୍ଷତ-ବିକ୍ଷତ ବିମାନକୁ ନେଇ ଜର୍ମାନ ଟ୍ୟାଙ୍କମାନଙ୍କ ଉପରେ ଲମ୍ଫ ଦେଇଥିଲେ, ଟ୍ୟାଙ୍କ-ଗୁଡ଼ାକୁ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ସେ ମଧ୍ୟ ତା ସହିତ ନିଜେ ଧ୍ୱଂସ ପାଇଥିଲେ । ସେହି କଭୀରା ଗରିଲା ଯୋଦ୍ଧୃ-ବାଳିକା ଗୋୟା କୋସମୋଡେମିୟାନସ୍କାୟା, ନାତ୍ସୀମାନେ ଯାହାଙ୍କ ପ୍ରତି କି ନୃଶଂସ ଅତ୍ୟାଚାର ବା କରି ନ ଥିଲେ, ତାହାଙ୍କୁ ପୁଣି ଶେଷରେ ଝୁଲାଇଥିଲେ ଫାସି ଖୁଣ୍ଟରେ; ଅଥବା ସେହି ବିମାନଚାଳକ ଆଲେକ୍ସି ମାରେସେଭ, ଯିଏ ଦୁଇଟିଯାକ ଗୋଡ଼ କଟା ହୋଇଗଲା ପରେ ମଧ୍ୟ କୃତ୍ରିମ ଗୋଡ଼ ଲଗାଇ ତୁହାକୁ ତୁହା ଶତ୍ରୁ ଉପରେ ବିମାନ ଆକ୍ରମଣ ଚଳାଉଥିଲେ କାହିଁ କେତେ ଉଚ୍ଚରୁ ଆକାଶରେ ! ପୁଣି ସେହି ସୈନ୍ୟ ଆଲେକ୍ଜାଣ୍ଡର ମାଟ୍ରୋସୋଭ, ଯିଏ କି ନିଜର ଶରୀର ଦ୍ୱାରା ନାଜି-ନିର୍ମାଣ ଘାଟିର ମୁହଁକୁ ବନ୍ଦ କରି ନିଜର ସୈନ୍ୟଦଳଙ୍କ ଅଗ୍ରଗତିକୁ ସୁଗମ କରିଦେଇଥିଲେ । ଏହିପରି କେତେ କେତେ ବୀରଙ୍କର ଚମତ୍କାରପ୍ରଦ ବୀରତ୍ୱ ପୃଥିବୀର ସ୍ମୃତିଅଛେ କାହାକୁ ବା ଅଜଣା !

ସୋଭିଏତ ସୈନ୍ୟବାହିନୀର ନୈତିକ ଶକ୍ତିର ଜର୍ମାନ ସେନାବାହିନୀ ନୈତିକ ଶକ୍ତିଠାରୁ ଥିଲା ଅଧିକ ଉଚ୍ଚତର ଓ ବଳିଷ୍ଠ; କାରଣ ସୋଭିଏତ୍ ସୈନ୍ୟ ଯୁଦ୍ଧ କରୁଥିଲେ ଏକ ନ୍ୟାୟୋଚିତ ଆଦର୍ଶ ପାଇଁ, ନିଜର ସମାଜବାଦୀ ମାତୃଭୂମିର ସମ୍ମାନ ଓ ସ୍ୱାଧୀନତା ଲାଗି; ଆଉ ନାତ୍ସୀମାନେ ଯୁଦ୍ଧ କରୁଥିଲେ ଲୁଣ୍ଠନ ପାଇଁ, ପରରାଜ୍ୟ ଦଖଲ ପାଇଁ । ଦେଶପ୍ରେମୀ ଯୁଦ୍ଧର ମହାନ ଗୌରବମୟ ଲକ୍ଷ୍ୟ ବ୍ୟାପକ ଭାବେ ବୀରତ୍ୱରେ ଅନୁପ୍ରାଣିତ କରିଥିଲା ସୋଭିଏତ୍ ସୈନ୍ୟ ବାହିନୀକୁ; କିନ୍ତୁ ଫାସିଷ୍ଟ ଦସ୍ୟୁ ଦଳଙ୍କ ପକ୍ଷରେ କିଏ ବା ଥିଲା ଗୌରବର ବିଷୟ ! ନ ଥିଲା କି ଥାଇ ନ ପାରେ କେବେହେଲେ ।

ଅଦ୍ଭୁତ ସେ ସୋଭିଏତ୍ ସେନାବାହିନୀର ନେତୃତ୍ୱ ! ଯୁଦ୍ଧର ଜ୍ୱଳନ୍ତ ଅଗ୍ନିରେ ଦଗ୍ଧ ହୋଇ ଶକ୍ତ ହେଲେ—ତାପ-ସହ ହେଲେ ସେମାନେ । ସେମାନଙ୍କର ସମର ନିପୁଣତାରେ ସମସ୍ତ ପୃଥିବୀ ଚମତ୍କୃତ ହୋଇଥିଲେ ।

ସୋଭିଏତ୍ର ଲୋକମାନଙ୍କ ଲାଗି ଏ ଯୁଦ୍ଧ ଥିଲା ଏକ କଠୋର ପରୀକ୍ଷା । ବିଜୟ ହାସଲରେ ବିପୁଳ ଏକ ଭୂମିକା ଗ୍ରହଣ କରିଥିଲା ସେନାବାହିନୀ ଓ ସାଧାରଣ ଲୋକମାନଙ୍କର ଏକତା । ଦେଶ ଭିତରର ଏହି ଯୁଦ୍ଧ କାଳୀନ ସାମ୍ମୁଖ୍ୟରେ ଶ୍ରମିକମାନେ ଅତିକ୍ରମ କରିଥିଲେ ଅସଂଖ୍ୟ ଅସୁବିଧା, ଅଭାବ ଓ ଅନାଟନ; ବିଜୟ ଲାଗି ସେନାବାହିନୀର ଆବଶ୍ୟକ ପ୍ରତ୍ୟେକଟି ଜିନିଷ ଯୋଗାଇବାକୁ ଆଗେଇଆସି ସାଧ୍ୟମତେ ଯେକୌଣସି ଉଦ୍ୟମ କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ ।

ଶତ୍ରୁର ପରାଜୟ ଦିଗରେ ସେମାନଙ୍କର ଅବଦାନକୁ ଜଣେ ଯେତେ କଳନା କଲେ ମଧ୍ୟ ସେଥିରେ ଆତିଶଯ୍ୟ ଆସିବ ନାହିଁ ।

ଗରିଲା ଯୋଦ୍ଧାମାନେ ସୋଭିଏତ୍ ସୈନ୍ୟବାହିନୀକୁ ବିଶେଷଭାବେ ସାହାଯ୍ୟ କରିଥିଲେ । ସେମାନେ କି ଦିନ କି ରାତି କେତେବେଳେ ହେଲେ ଶତ୍ରୁକୁ ଟିକିଏ ବିଶ୍ରାମ ଦେଇ ନ ଥିଲେ । ଏଣୁ ନାଜୀମାନଙ୍କୁ ସମ୍ମୁଖ ରଣକ୍ଷେତ୍ରରୁ ବହୁ ଡିଭିଜନ ସୈନ୍ୟଙ୍କୁ ଅଣାଇ ଅଧିକୃତ ଅଞ୍ଚଳରେ ପହରା ଦେବା ଲାଗି ନିୟୋଗ କରିବାକୁ ପଡ଼ିଥିଲା ।

ସୋଭିଏତ୍ ଇଉନିୟନ କମ୍ୟୁନିଷ୍ଟ ପାର୍ଟି ଥିଲା, ଯୁଦ୍ଧ କ୍ଷେତ୍ରରେ ଏବଂ ଦେଶ ଭିତରେ, ଉଭୟ ସ୍ଥଳରେ ଯୁଦ୍ଧ ସାମ୍ମୁଖ୍ୟ ପରିଚାଳକ ଓ ସଂଗଠନକାରୀ ଶକ୍ତି । ରଣକ୍ଷେତ୍ରରେ ଶତ୍ରୁର ପରାଜୟ ସାଧନରେ ଓ ଯୁଦ୍ଧ ଦିଗରେ ଅର୍ଥନୀତିର ପ୍ରୟୋଗରେ ସଂଗ୍ରାମର ପୁରୋଭାଗରେ ଥିଲା ସେହି କମ୍ୟୁନିଷ୍ଟ ପାର୍ଟି । ତାହା ହିଁ ସୈନ୍ୟବାହିନୀର ସାହାଯ୍ୟ ଲାଗି ସାରା ଦେଶରେ ସମସ୍ତ ଆନ୍ଦୋଳନକୁ ସଙ୍ଗଠିତ କରିଥିଲା । ନିଜର ଶ୍ରେଷ୍ଠ ସନ୍ତାନ ଅର୍ଥାତ୍ କର୍ମୀମାନଙ୍କୁ ସୈନ୍ୟବାହିନୀକୁ ପ୍ରେରଣ କରିଥିଲା; ରଣକ୍ଷେତ୍ରରେ ଭୀଷଣ କ୍ଷତି ଘଟିଥିବା ସତ୍ତ୍ୱେ (ଅର୍ଥାତ୍ ଅଧିକ ସଂଖ୍ୟକ କମ୍ୟୁନିଷ୍ଟ ମୃତ ହତ ହେଉଥିବା ସତ୍ତ୍ୱେ) ଯୁଦ୍ଧ କାଳ ଭିତରେ କମ୍ୟୁନିଷ୍ଟ ପାର୍ଟି ଦ୍ରୁତଭାବେ ବୃଦ୍ଧି ପାଇଥିଲା । ଯୁଦ୍ଧ ପୂର୍ବରୁ ତା'ର ସଭ୍ୟ ଓ ପ୍ରାର୍ଥୀ ସଭ୍ୟ ସଂଖ୍ୟା ଥିଲା ୪୦ ଲକ୍ଷ । ଯୁଦ୍ଧ ପରେ ସେହି ସଂଖ୍ୟା ହୋଇଥିଲା ୬୦ ଲକ୍ଷ ।

ବସ୍ତୁତଃ ଦେଶପ୍ରେମୀ ଯୁଦ୍ଧରେ ଜୟଲାଭରେ ପାର୍ଟିର ନିର୍ଦ୍ଦେଶ ଓ ପରିଚାଳନା ଥିଲା ଗୁରୁତ୍ୱପୂର୍ଣ୍ଣ ବିଷୟ ।

## ୪ । ସୋଭିଏତ୍ ଇଉନିଅନରେ ସମାଜବାଦର ପୂର୍ଣ୍ଣ ଓ ଚୂଡ଼ାନ୍ତ ବିଜୟ

ସୋଭିଏତ୍ରର ଲୋକେ ଯୁଦ୍ଧରେ ବିଜୟ ଲାଭ କଲା ପରେ, ନାଜୀ ଆକ୍ରମଣକାରୀମାନଙ୍କ ଦ୍ୱାରା ବିସ୍ତୃତ ଭାବରେ କ୍ଷତିଗ୍ରସ୍ତ ହୋଇଥିବା ତାଙ୍କର ଅର୍ଥନୀତିକୁ

ପୁନର୍ଗଠିତ କରିବା କାମରେ ଉତ୍ସାହର ସହିତ ଲାଗିପଡ଼ିଲେ । ଏହି ଅଳ୍ପ ସମୟ: ମଧ୍ୟରେ ସୋଭିଏତ୍ ଇଉନିଅନ ତା'ର ଅର୍ଥନୀତିକୁ ପୁନର୍ଗଠିତ କରିଦେଲା ଏବଂ କ୍ଷିପ୍ର ବେଗରେ ଅଗ୍ରଗତି କରିବାକୁ ଆରମ୍ଭ କଲା ।

୧୯୪୬ ରୁ ୧୯୫୦ ଯୁଦ୍ଧ ପର ବର୍ଷମାନଙ୍କ ଭିତରେ ଦେଶର ଅର୍ଥନୀତି ତା'ର ଯୁଦ୍ଧକାଳୀନ କ୍ଷତିକୁ ପୂରଣ କରିଦେଲା । ଶିଳ୍ପ ଉତ୍ପାଦନ ଯୁଦ୍ଧ ପୂର୍ବ ବର୍ଷମାନଙ୍କ ତୁଳନାରେ ବହୁତ ପରିମାଣରେ ବୃଦ୍ଧି ପାଇଲା । ତତ୍ପରବର୍ତ୍ତୀ ପାଞ୍ଚବର୍ଷ (୧୯୫୧ରୁ ୧୯୫୬) ଭିତରେ ସୋଭିଏତ୍ ଆହୁରି ଅଧିକ ସଫଳତା ହାସଲ କଲା । ଉତ୍ପାଦନ ଉପକରଣଗୁଡ଼ିକର ଉତ୍ପନ୍ନ ଶତକଡ଼ା ୯୧ ଗୁଣ ଏବଂ ଖାଉଟି ଦ୍ରବ୍ୟର ଉତ୍ପନ୍ନ ଶତକଡ଼ା ୭୬ ଗୁଣ ବୃଦ୍ଧି ପାଇଲା ।

## ସୋଭିଏତ୍ ଇଉନିଅନର ଜୀବନରେ ଏକ ନୂତନ ଯୁଗ

୧୯୫୬ ଫେବୃଆରୀରେ ଅନୁଷ୍ଠିତ ହୋଇଥିବା ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି କଂଗ୍ରେସର ବିଂଶ ଅଧିବେଶନ ଦେଶର ପରବର୍ତ୍ତୀ ବିକାଶକୁ ବିଶେଷରୂପେ ପ୍ରଭାବିତ କଲା । ତାହା ନିର୍ଭୁଲ ଭାବେ ଅଗ୍ରଗତିର ମାର୍ଗର ଚିତ୍ର ଅଙ୍କନ କଲା ଏବଂ "ଷ୍ଟାଲିନଙ୍କ ବ୍ୟକ୍ତିପୂଜା" ସହିତ ସଂପୃକ୍ତ ଦୋଷତ୍ରୁଟିଗୁଡ଼ିକୁ ଗଭୀର ଭାବରେ ସମାଲୋଚନା କଲା ।

କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ପରିଚାଳିତ ହୋଇ ସୋଭିଏତ୍ ଲୋକେ ସମାଜବାଦ ନିର୍ମାଣରେ ଅଗ୍ରଗତି କରିଥିଲେ ଓ ଯୁଦ୍ଧରେ ଫାସିଷ୍ଟବାଦକୁ ହରାଇ ଚମତ୍କାରପ୍ରଦ ବିଜୟ ହାସଲ କରିଥିଲେ । କିନ୍ତୁ ବ୍ୟକ୍ତିପୂଜା କାଳରେ ପାର୍ଟି ଓ ଲୋକମାନଙ୍କର ସମସ୍ତ ବିଜୟ ଷ୍ଟାଲିନଙ୍କ କୃତି ବୋଲି ବୁଝାଯାଇ ତାଙ୍କ ପ୍ରତି ଉଦ୍ଦିଷ୍ଟ ହେଉଥିଲା ।

ବ୍ୟକ୍ତିପୂଜା ପାର୍ଟି ଓ ଜନସାଧାରଣଙ୍କ ଭୂମିକାକୁ କ୍ଷୁଣ୍ଣ କଲା, ଅର୍ଥାତ୍ ସେମାନଙ୍କ କାର୍ଯ୍ୟକୁ ତୁଚ୍ଛ ଆଖିରେ ଦେଖି ତାହା ପ୍ରତି ଯଥାର୍ଥ ଗୁରୁତ୍ୱ ଦେଲା ନାହିଁ । ତାହା ପାର୍ଟିର ଆଦର୍ଶଗତ ଜୀବନ ଓ ଲୋକଙ୍କର ଉଦ୍ୟମଶୀଳତାର ବିକାଶର ପ୍ରତିବନ୍ଧକ ହେଲା । ଏଠି ସଂକ୍ଷେପରେ ଉଲ୍ଲେଖ କରାଯାଇପାରେ ଯେ, ବ୍ୟକ୍ତିପୂଜାର ମତାଦର୍ଶ ହେଉଛି ମାର୍କସବାଦ-ଲେନିନବାଦର ଘୋର ବିରୋଧୀ ।

ଲକ୍ଷ୍ୟ କରିବାର ବିଷୟ, ବିଂଶ ପାର୍ଟି କଂଗ୍ରେସର ନିଷ୍ପତ୍ତି ଓ ବ୍ୟକ୍ତିପୂଜା ବିଲୋପର ଗୋଟିଏ ବିରାଟ ଆନ୍ତର୍ଜାତୀୟ ତାତ୍ପର୍ଯ୍ୟ ଅଛି । ୧୯୬୦ରେ ୮୧ଟି କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ବା ଶ୍ରମିକ ପାର୍ଟିର ପ୍ରତିନିଧିମାନଙ୍କ ସମ୍ମିଳନୀର ଗୃହୀତ ଇସ୍ତାହାର ଘୋଷଣା କରିଛି, "ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ବିଂଶ କଂଗ୍ରେସର

ଐତିହାସିକ ନିଷ୍ପତ୍ତି କେବଳ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ଓ ସୋଭିଏତ ଇଉନିଅନରେ ସାମ୍ୟବାଦ (କମ୍ୟୁନିଜମ୍) ନିର୍ମାଣ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ନୁହେଁ; ଏହା ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନରେ ଏକ ନୂତନ ପର୍ଯ୍ୟାୟର ସୂତ୍ରପାତ କରିଛି ଓ ମାର୍କସବାଦ-ଲେନିନବାଦର ଭିତ୍ତି ଉପରେ ତା'ର ବିକାଶକୁ ପ୍ରୋତ୍ସାହିତ କରିଛି ।"

ପାର୍ଟି ଓ ଲୋକମାନଙ୍କର ସୃଜନଶୀଳ ଶକ୍ତି ଲାଗି ବିଂଶ ପାର୍ଟି କଂଗ୍ରେସ ବ୍ୟାପକ ଦିଗନ୍ତ ଉନ୍ମୁକ୍ତ କରିଦେଲା, ପାର୍ଟି ଓ ଲୋକମାନଙ୍କ ମଧ୍ୟରେ ଥିବା ସମ୍ପର୍କର ବନ୍ଧନକୁ ଅଧିକ ପ୍ରଶସ୍ତ ଓ ସୁଦୃଢ଼ କଲା ଏବଂ ପାର୍ଟିର ସଂଗ୍ରାମୀତ୍ୱକୁ ଅଧିକ ଜାଗ୍ରତ କଲା । ତାହା ସାମ୍ୟବାଦ (କମ୍ୟୁନିଜମ୍) ଦିଗରେ ସୋଭିଏତ୍‌ର ଅଗ୍ରଗତିକୁ ବହୁ ପରିମାଣରେ ଅଧିକ ଦ୍ରୁତ ଓ ପ୍ରଖର କଲା ।

ବିଂଶ ପାର୍ଟି କଂଗ୍ରେସର ପରବର୍ତ୍ତୀ କାଳରେ ସୋଭିଏତ୍ ଇଉନିଅନରେ ସମାଜବାଦୀ ଗଣତନ୍ତ୍ରର ଦ୍ରୁତ ପ୍ରସ୍ଫୁଟନ ଘଟିଲା; ଲୋକମାନଙ୍କର ସାମାଜିକ ଓ ରାଜନୈତିକ କାର୍ଯ୍ୟାବଳୀ ବୃଦ୍ଧି ପାଇଲା । ସୋଭିଏତ୍ ସମାଜର ନୈତିକ ଓ ରାଜନୈତିକ ଐକ୍ୟ, ଶ୍ରମିକଶ୍ରେଣୀ ଓ କୃଷକମାନଙ୍କ ମଧ୍ୟରେ ମୈତ୍ରୀର ବନ୍ଧନ, ସୋଭିଏତ୍ ଇଉନିଅନର ଲୋକମାନଙ୍କ ମଧ୍ୟରେ ବନ୍ଧୁତ୍ୱର ସମ୍ପର୍କ ଆଗ ଅପେକ୍ଷା ଅଧିକ ଶକ୍ତ ଓ ବଳିଷ୍ଠ ହେଲା । ଲେନିନବାଦର ସମ୍ମାନ ଓ ମର୍ଯ୍ୟାଦା ଅଧିକ ଉଚ୍ଚକୁ ଉଠିଲା ।

ଏହି ସମସ୍ତ ମଧ୍ୟରେ ସୋଭିଏତ୍ ବୈଦେଶିକ ନୀତି ବିଭିନ୍ନ ସାମାଜିକ ପ୍ରଣାଳୀ ବା ବ୍ୟବସ୍ଥାର ଦେଶମାନଙ୍କ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନମୂଳକ ଲେନିନବାଦୀ ନୀତିର ମହାନ ଜୀବନଶକ୍ତିକୁ ପ୍ରମାଣିତ କଲା । ଆନ୍ତର୍ଜାତୀୟ ବ୍ୟାପାରରେ ଉଦ୍‌ଯୋଗର ସୂତ୍ର ଦୃଢ଼ଭାବେ ସୋଭିଏତ୍ ଇଉନିଅନ ହାତରେ ରହିଲା । ସାମ୍ରାଜ୍ୟବାଦୀ ପ୍ରତିକ୍ରିୟାଶୀଳତା ବିରୁଦ୍ଧରେ ଶାନ୍ତି ଓ ସମାଜବାଦ ଲାଗି ଲଢ଼ୁଥିବା ସବୁ ଶକ୍ତି ଭିତରେ ତାହା ହିଁ ସବୁଠାରୁ ଅଧିକ ଶକ୍ତିଶାଳୀ ଦୁର୍ଗରେ ପରିଣତ ହେଲା ।

ସୋଭିଏତ୍ ଇଉନିଅନର ନୀତିଗତ ଓ ସେଥି ସଙ୍ଗେ ସଙ୍ଗେ ମହନୀୟ ବୈଦେଶିକ ନୀତି ମାନବସମାଜ ପ୍ରତି କଲ୍ୟାଣକର । [illegible] ଆଉ ଏକ ବିଶ୍ୱଯୁଦ୍ଧର ଅଗ୍ନିଶିଖା ପ୍ରଜ୍ୱଳିତ କରିବା ଦିଗରେ ସାମ୍ରାଜ୍ୟବାଦୀମାନଙ୍କର ଅସଂଖ୍ୟ ଉଦ୍ୟମ ବ୍ୟର୍ଥ ହୋଇଗଲା । ବିଶ୍ୱର ଶ୍ରମିକଶ୍ରେଣୀ ଓ ଜାତୀୟ ମୁକ୍ତି ଆନ୍ଦୋଳନ ନୂତନ ସଫଳତାମାନ ହାସଲ କଲା । ସାମ୍ୟବାଦ ବା କମ୍ୟୁନିଜମ୍ ନିର୍ମାଣରେ ସୋଭିଏତ୍‌ର କୃତିତ୍ୱ ବିଶ୍ୱ ଇତିହାସର ଗତିଧାରା ଉପରେ ଆଦର୍ଶ ଅନୁସାରୀ ବୈପ୍ଳବିକ ପ୍ରଭାବକୁ ବୃଦ୍ଧି କଲା ।

ବିଂଶ କଂଗ୍ରେସର ପରବର୍ତ୍ତୀ ବର୍ଷଗୁଡ଼ିକରେ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ତାତ୍ତ୍ୱିକ କାର୍ଯ୍ୟ ଜୋରସୋରରେ ଚାଲିଲା ।

ଲେନିନଙ୍କର ଶିକ୍ଷାକୁ ଅନୁସରଣ କରି ସୋଭିଏତ୍ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ସମାଜବାଦୀ ବା କମ୍ୟୁନିଷ୍ଟ ସମାଜ ନିର୍ମାଣରେ ଗୁରୁତ୍ୱପୂର୍ଣ୍ଣ ତାତ୍ତ୍ୱିକ ସମସ୍ୟା ଗୁଡ଼ିକର ସୃଜନଶୀଳ ବ୍ୟାଖ୍ୟା ଦେଲା ।

ଏହା କମ୍ୟୁନିଷ୍ଟ ବା ସାମ୍ୟବାଦୀ ସାମାଜିକ ଅର୍ଥନୈତିକ ବ୍ୟବସ୍ଥାର ଅଭ୍ୟୁତ୍ଥାନକୁ ପୃଷ୍ଠଭୂମି ରୂପେ ଭିନ୍ନ ଭିନ୍ନ କରି ଅଧ୍ୟୟନ କଲା, ଅର୍ଥାତ୍ କମ୍ୟୁନିଷ୍ଟ ସାମାଜିକ ଅର୍ଥନୈତିକ ସଂଗଠନର ମୂଳ ଭିତ୍ତିରୁ ଆରମ୍ଭ କରି ଉପର ସଂଗଠନର ମୁଖ୍ୟ ଉପାଦାନଗୁଡ଼ିକର ବିଭିନ୍ନ ସଂଯୋଗ ଓ ମିଥସ୍କ୍ରିୟାଗୁଡ଼ିକୁ ବିଶଦ ଭାବରେ ଅନୁଧ୍ୟାନ କରି ଦେଖିଲା ।

କମ୍ୟୁନିଷ୍ଟ ଆନ୍ଦୋଳନର ଅନ୍ୟ ବିଭାଗଗୁଡ଼ିକ ସହିତ ମିଶି ସୋଭିଏତ୍ ଇଉନିଅନ କମ୍ୟୁନିଷ୍ଟ ପାର୍ଟି ସମସାମୟିକ ସାମାଜିକ ବିକାଶ ସମ୍ବନ୍ଧରେ ପ୍ରାସଙ୍ଗିକ ସମସ୍ୟା ବିଷୟରେ ନୂତନ ତାତ୍ତ୍ୱିକ ସିଦ୍ଧାନ୍ତମାନ ପ୍ରକାଶ କଲା ଓ ତା'ର ବିଶଦ ବ୍ୟାଖ୍ୟା ଦେଲା ।

ଗୁରୁତ୍ୱପୂର୍ଣ୍ଣଭାବେ ଲକ୍ଷ୍ୟକରିବାର କଥା, ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ଅନ୍ୟ ଦେଶର କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟିମାନଙ୍କ ସଙ୍ଗେ ଏକାଠି ମିଶି ସଂଶୋଧନବାଦ ଓ ମତାନ୍ଧତା ବିରୁଦ୍ଧରେ ଏକ ନୀତିଗତ ସଂଗ୍ରାମ ଚଳାଇଆସିଛି ଓ ଚଳାଇବାରେ ଲାଗିଛି ।

ଘଟଣାବଳୀର ବିକାଶରୁ ଜଣାଯାଏ ଯେ ସୋଭିଏତ୍ ଇଉନିଅନର କମ୍ୟୁନିଷ୍ଟମାନେ ନିଜ ଦେଶର ଅଗ୍ରଗାମୀ ସାମାଜିକ ଅଭିଜ୍ଞତା ଓ ସମଗ୍ର ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଓ ଶ୍ରମିକଶ୍ରେଣୀର ଆନ୍ଦୋଳନର ଅଭିଜ୍ଞତା ଉପରେ ନିର୍ଭର କରି ଆନ୍ତର୍ଜାତୀୟ କର୍ତ୍ତବ୍ୟ ପୂରଣ କରିଛନ୍ତି ଏବଂ ସୃଜନଶୀଳ ମାର୍କସବାଦର ପତାକାକୁ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରିଛନ୍ତି । ଏହିସବୁ ବୈପ୍ଳବିକ ତତ୍ତ୍ୱ ସଂକ୍ରାନ୍ତ ସୋଭିଏତ କମ୍ୟୁନିଷ୍ଟ ପାର୍ଟି ଅବଦାନର ଏକ ସଂପୂର୍ଣ୍ଣ ଚିତ୍ର ୨୦ଶ, ୨୧ଶ ଓ ୨୨ଶ ପାର୍ଟି କଂଗ୍ରେସର ଦଲିଲମାନଙ୍କରେ ଓ ସମସାମୟିକ ସାମାଜିକ ବିଜ୍ଞାନ କ୍ଷେତ୍ରରେ ସର୍ବଶ୍ରେଷ୍ଠ କୃତତ୍ୱ କମ୍ୟୁନିଷ୍ଟ ପାର୍ଟିର ପ୍ରୋଗ୍ରାମ ଭିତରେ ଦେଖିବାକୁ ମିଳେ ।

## ଛଉଶ୍ରେୟର ଅର୍ଥନୈତିକ ବିକାଶ

ବିଗତ ଦଶକରେ ଅର୍ଥନୈତିକ କ୍ଷେତ୍ରରେ ଯେଉଁର ଅତି ଦ୍ରୁତ ବିକାଶ ଦେଖିବାକୁ ମିଳିଛି, ଅତୀତରେ କେବେ ଏ ଦେଶର ଇତିହାସରେ ହୋଇନାହିଁ

ଦେଖାଯାଇ ନ ଥିଲା । ଏହି ଅର୍ଥନୈତିକ ବିକାଶ ଯୋଗେ ସୋଭିଏତ୍‌ର ଅର୍ଥନୀତିକ ଓ ପ୍ରତିରକ୍ଷାବିଷୟକ ଅନ୍ତର୍ନିହିତ ଶକ୍ତି ନିଶ୍ଚିତ ଭାବରେ ସୁଦୃଢ଼ ହୋଇଛି ଏବଂ ଏହା ହିଁ ପୁଞ୍ଜିବାଦ ସହିତ ଅର୍ଥନୈତିକ ପ୍ରତିଯୋଗିତା କ୍ଷେତ୍ରରେ ପରିବର୍ତ୍ତିତ ଗତିକୁ ସୂଚକ ହୋଇଛି ।

୧୯୫୯ରେ ସୋଭିଏତ୍ ସପ୍ତବାର୍ଷିକ ଯୋଜନା (୧୯୫୯—୬୫)ର ଲକ୍ଷ୍ୟ ଗୃହୀତ (ସଂଖ୍ୟାଗତ ହିସାବ) ହୋଇଥିଲା । ଇତିମଧ୍ୟରେ ସୋଭିଏତ୍ ଶିଳ୍ପ ବିରାଟ ସଫଳତା ହାସଲ କରିଛି । ନିମ୍ନଲିଖିତ ହିସାବରୁ ସେହି ବିକାଶର ଗତି-ଧାରାର ପରିଚୟ ମିଳେ । ଏହି ବିକାଶଯୋଗୁ ସମାଜବାଦୀ ଅର୍ଥନୈତିକ ସଂଗଠନର ଅସୀମ ସମ୍ଭାବନା ପ୍ରଶଂସନୀୟ ହୋଇଉଠିଛି । ସୋଭିଏତ୍ ଉତ୍ପାଦନ ୫୪, ୯୦୦, ୦୦୦ ଟନ ଇସ୍ପାତ ୧୯୫୮ରେ ଏବଂ ୮୫, ୦୦୦, ୦୦୦ ଟନ ଇସ୍ପାତ ୧୯୬୪ରେ ଉତ୍ପନ୍ନ କରିଥିଲା । ଏହି ସମୟରେ ଲୌହ ପିଣ୍ଡ ଯଥାକ୍ରମେ ୩୯, ୬୦୦, ୦୦୦ ଓ ୬୨, ୪୦୦, ୦୦୦ ଟନ, ଉତ୍ପାଦିତ ହୋଇଥିଲା ଏବଂ ଏହିଭଳି ହିସାବ କ୍ରମରେ ରେଲ ଦଣ୍ଡ ୪୨, ୯୦୦, ୦୦୦ ଓ ୫୬, ୪୦୦, ୦୦୦, ତୈଳ ୧୧୩, ୨୦୦, ୦୦୦ ଓ ୨୨୪, ୦୦୦, ୦୦୦ ଟନ । କୋଇଲା ୪୯୫, ୮୦୦, ୦୦୦ ଓ ୫୫୪, ୦୦୦, ୦୦୦ ଟନ, ସିମେଣ୍ଟ ୩୩, ୩୦୦, ୦୦୦ ଓ ୬୪, ୯୦୦, ୦୦୦ ଟନ ଏବଂ ବିଦ୍ୟୁତ୍ ଶକ୍ତି ୨୩୩, ୪୦୦ ନିୟୁତ ଓ ୪୫୯, ୦୦୦ ନିୟୁତ କିଲୋୱାଟ୍ ଘଣ୍ଟା ଉତ୍ପନ୍ନ ହୋଇଥିଲା ।

ଗତ ଛଅ ବର୍ଷ (୧୯୫୯ ରୁ ୧୯୬୪) ଭିତରେ ଶିଳ୍ପ ସଂସ୍ଥା ନିର୍ଦ୍ଧାରିତ ଲକ୍ଷ୍ୟ ଉପରେ ୪୨,୦୦୦ ନିୟୁତ ରୁବଲ ଦାମର ଅତିରିକ୍ତ ଦ୍ରବ୍ୟ ଉତ୍ପନ୍ନ ହୋଇଥିଲା ।

ସୋଭିଏତ ଅର୍ଥନୀତି ବିକାଶର ଦ୍ରୁତ ଗତିବେଗ ଫଳରେ ସୋଭିଏତ୍ ଉତ୍ପାଦନ ଓ ଆମେରିକା ମଧ୍ୟରେ ଅର୍ଥନୈତିକ ନିହିତ-ଶକ୍ତି ( Potential )ର ସମ୍ପର୍କ ମଧ୍ୟ ମୌଳିକଭାବରେ ପରିବର୍ତ୍ତିତ ହୋଇଯାଇଛି ।

ସୋଭିଏତ୍‌ର ମୋଟ ଶିଳ୍ପଜାତ ଦ୍ରବ୍ୟର ଉତ୍ପାଦନ ୧୯୫୩ ରେ ଆମେରିକାର ଉତ୍ପାଦନ ପରିମାଣରେ ଏକ ତୃତୀୟାଂଶ ଥିବା ସ୍ଥଳେ ୧୯୬୩ରେ ଆମେରିକା ଉତ୍ପାଦନର ପ୍ରାୟ ଶତକଡ଼ା ୬୫ ଭାଗକୁ ବୃଦ୍ଧି ପାଇଥିଲା । ଅତଏବ ଏହି ସମୟରେ ହାରାହାରି ବାର୍ଷିକ ବୃଦ୍ଧିର ହାର ଆମେରିକାର ବୃଦ୍ଧିର ହାରଠାରୁ ଦେଢ଼ ଗୁଣ ଅଧିକ ହୋଇଛି ।

ଶିଳ୍ପ ପ୍ରସାର ପ୍ରତି ଦୃଷ୍ଟି ଦେଲାବେଳେ କମ୍ୟୁନିଷ୍ଟ ପାର୍ଟି ଓ ସୋଭିଏତ୍ ସରକାର କୃଷିକ୍ଷେତ୍ରର ଅଗ୍ରଗତି ଦିଗରେ ବିଶେଷ ଭାବରେ କାର୍ଯ୍ୟ କରିଥିଲେ ।

ସେମାନଙ୍କ ଉଦ୍ୟମରେ ପତିତ ଓ ଅନାବାଦୀ ଜମିର ଉନ୍ନତି ଘଟିଥିଲା । ଶସ୍ୟ ଉତ୍ପାଦନର ବିକାଶରେ ସେମାନେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ । ଉନ୍ନତ ଧରଣର ଚାଷ ପ୍ରଣାଳୀର ପ୍ରବର୍ତ୍ତନ, ଅଧିକ ବ୍ୟାପକ ଭାବରେ ରାସାୟନିକ ସାରର ପ୍ରୟୋଗ, ଅଧିକ ଉତ୍ପାଦନଶୀଳ ବିହନର ବ୍ୟବହାର ଏବଂ ଶୀଘ୍ର ଶୀଘ୍ର ବୁଣାବୁଣି ଓ ଅମଳ ପ୍ରଭୃତିର ବ୍ୟବସ୍ଥା ହେତୁରୁ ଅଧିକ ଫସଲ ଉତ୍ପନ୍ନ ନିଶ୍ଚିତ ହୋଇଥିଲା ।

ନିକଟରେ ଯୌଥକୃଷି ଓ ରାଷ୍ଟ୍ରୀୟ ଫାର୍ମମାନଙ୍କର ବୈଷୟିକ ଓ କାରିଗରୀ ଭିତ୍ତିକୁ ବହୁ ପରିମାଣରେ ମଜବୁତ କରାଯାଇଛି । ରାଷ୍ଟ୍ର ଦ୍ୱାରା କୃଷି ଉତ୍ପନ୍ନର ପାଇକାରୀ କ୍ରୟ ନୀତି ଏକ ନିର୍ଦ୍ଦିଷ୍ଟ ଯୋଜନା ଅନୁଯାୟୀ କାର୍ଯ୍ୟକାରୀ ହେଉଛି ଓ କ୍ରୟ ମୂଲ୍ୟକୁ ବୃଦ୍ଧି କରାଯାଇଛି । ଏହିସବୁ ଓ ଅନ୍ୟାନ୍ୟ ଅର୍ଥନୈତିକ ପ୍ରୋତ୍ସାହନ କୃଷି ବିକାଶକୁ ଅଧିକରୁ ଅଧିକ ପ୍ରଖର, ଲାଭଜନକ ଓ ବେଗବାନ କରୁଛି ଏବଂ କୃଷି-ଶ୍ରମିକମାନଙ୍କର ଉଦ୍ୟୋଗକୁ ବିକଶିତ କରୁଛି ।

ଏହି ସମସ୍ତ ମଧ୍ୟରେ ସୋଭିଏତ୍ ବିଜ୍ଞାନ ଉଲ୍ଲେଖଯୋଗ୍ୟ ସଫଳତା ଲାଭ କରିଛି । ବିଜ୍ଞାନ ଓ ଟେକନୋଲୋଜି ବା କାରିଗରୀ ବିଦ୍ୟାର ମୁଖ୍ୟ ବିଭାଗମାନଙ୍କରେ ସୋଭିଏତ୍ ଇଉନିଅନ ନେତୃତ୍ୱଦାୟୀ ଅବସ୍ଥାକୁ ଉଠିଛି । ଅନ୍ତରୀକ୍ଷ ଅନ୍ୱେଷଣରେ ସୋଭିଏତ୍‌ର ସଫଳତା ଏହାର ସର୍ବଶ୍ରେଷ୍ଠ ଦୃଷ୍ଟାନ୍ତ ।

## ଜୀବନଧାରଣ ମାନରେ ବୃଦ୍ଧି

ସମାଜବାଦୀ ଉତ୍ପାଦନର ଉଦ୍ଦେଶ୍ୟ ହେଲା, ଲୋକମାନଙ୍କର ଭୌତିକ ଓ ସାଂସ୍କୃତିକ ପ୍ରୟୋଜନକୁ ପୂରଣ କରିବା । ଶିଳ୍ପ ଓ କୃଷି କ୍ଷେତ୍ରରେ ପ୍ରତ୍ୟେକଟି ପଦକ୍ଷେପ ସୋଭିଏତ୍ ଲୋକମାନଙ୍କ ଜୀବନଧାରଣ ମାନକୁ ଉନ୍ନତ କରୁଛି । ଏହି ଦଶକ ମଧ୍ୟରେ ସୋଭିଏତ୍ ଶ୍ରମଜୀବୀ ଲୋକମାନଙ୍କର ପ୍ରକୃତ ଆୟ ମୁଣ୍ଡପିଛା ଆୟ ହିସାବରେ ଶତକଡ଼ା ୭୦ ଭାଗ ବୃଦ୍ଧି ପାଇଛି । ବିଶେଷକରି ନ୍ୟୂନତମ ଜୀବନଧାରଣ ମାନର ଶ୍ରମିକ, ବୃଦ୍ଧ ଓ ଅକ୍ଷମ ଲୋକଙ୍କର ଆୟବୃଦ୍ଧି ଘଟିଛି । ବାର୍ଦ୍ଧକ୍ୟକାଳୀନ ଭତ୍ତା ହାରାହାରି ଶତକଡ଼ା ୧୦୦ ଭାଗରୁ ଅଧିକ ହୋଇଛି ।

୧୯୭୪ରେ ଏକ ନୂତନ ଆଇନ ଗୃହୀତ ହୋଇଛି । ଉଦ୍ୟୋଗ ଶିକ୍ଷା, ଡାକ୍ତରୀ ସାଧାରଣ ଜନମଙ୍ଗଳ, ଶ୍ରମିକ ଏବଂ ଯୋଗାଣ କ୍ଷେତ୍ରରେ ଓ ସେହିପରି ଯାଧ ଉଣ କାର୍ଯ୍ୟ କ୍ଷେତ୍ରରେ ଥିବା ଲୋକଙ୍କର ମଜୁରି ବୃଦ୍ଧି ପାଇଛି । ଏକ କୋଟି ଅଶୀ ଲକ୍ଷ୍ୟରୁ ଊର୍ଦ୍ଧ୍ୱ ଶ୍ରମିକ କର୍ମୀ ମୋଟ ଶ୍ରମଜୀବୀ ଲୋକମାନଙ୍କର ଏକଚତୁର୍ଥାଂଶ ଏହି ବୃଦ୍ଧି ଦ୍ୱାରା ଲାଭବାନ ହୋଇଛନ୍ତି । ସେମାନେ ଏବେ ହାରାହାରି ଶତକଡ଼ା ୨୧ ଭାଗ ଅଧିକ ପାଉଛନ୍ତି ।

ସୋଭିଏତ୍ ଲୋକମାନଙ୍କର ବୈଷୟିକ ଉନ୍ନତି ବିଷୟ ମନେକଲାବେଳେ ଆଉ ଗୋଟିଏ ଘଟଣା ବିଚାରକୁ ନେବା ଦରକାର । ସୋଭିଏତ୍ ୟୁନିଅନରେ ଲୋକମାନଙ୍କର ପ୍ରୟୋଜନର ବେଶ ଗୋଟାଏ ବଡ଼ ଅଂଶ ସାଧାରଣ ପାଣ୍ଠିରୁ ଅର୍ଥାତ୍ ରାଷ୍ଟ୍ରୀୟ ବ୍ୟୟ ଯୋଗେ ପୂରଣ କରାଯାଇଥାଏ । ୧୯୬୨ ରେ ପେନସନ୍, ଭତ୍ତା, ଛାତ୍ରବୃତ୍ତି, ଅବୈତନିକ ଶିକ୍ଷା, ବିନା ପଇସାରେ ଚିକିତ୍ସା ଇତ୍ୟାଦି ବାବଦରେ ଯୋଗାଇ ଦିଆଯାଇଥିବା ସୁବିଧାର ସର୍ବମୋଟ ପରିମାଣ ୨୮,୪୦୦ ନିୟୁତ ରୁବଲ୍ ଥିଲା । କିମ୍ବା କହିବାକୁ ଗଲେ ତାହା ୧୯୪୦ ତୁଳନାରେ ୭.୪ ଗୁଣ ଅଧିକ ଓ ୧୯୫୨ ତୁଳନାରେ ଦୁଇ ଗୁଣରୁ ଅଧିକ ଥିଲା ।

ବସବାସ ଗୃହ ବ୍ୟବସ୍ଥାରେ ବହୁ ପରିମାଣରେ ଉନ୍ନତି ଘଟିଛି ଓ ବର୍ଷକୁ ବର୍ଷ ଉନ୍ନତ ହେବାରେ ଲାଗିଛି । ଗୃହ ନିର୍ମାଣ ଦିଗରେ ସୋଭିଏତ୍ ୟୁନିଅନ ଏବେ ପୃଥିବୀରେ 'ନିର୍ମାଣର ବେଗ ଓ ପ୍ରସାର' କ୍ଷେତ୍ରରେ ପ୍ରଥମ ସ୍ଥାନ ଅଧିକାର କରିଛି । କେବଳ ଗତ ୭ ବର୍ଷ ଭିତରେ ସାଢ଼େ ୭ କୋଟି ସୋଭିଏତ୍ ନାଗରିକ ବା ସୋଭିଏତ୍ ଜନସଂଖ୍ୟାର ଏକତୃତୀୟାଂଶ ଲୋକ ଆଧୁନିକ ଧରଣର ନୂତନ-ବଡ଼ ବଡ଼ ଗୃହରେ ସ୍ଥାନ ପାଇପାରିଛନ୍ତି । ୧୯୧୩ରେ ଜାର ଅମଳର ରୁଷରେ ସହରମାନଙ୍କରେ ବସବାସ ଲାଗି ଯେତିକି ଗୃହୋପଯୋଗୀ ଜାଗା ବା ଚଟାଣ ଜମି ଥିଲା, ତା'ର ଦୁଇଗୁଣ ଜାଗା ବା ଚଟାଣ ଜମିରେ ଏବେ ଗୃହନିର୍ମାଣ ସଂପନ୍ନ ହୋଇଛି ।

ସବୁ ପ୍ରକାର ଶିଳ୍ପଶ୍ରମିକଙ୍କର ଶ୍ରମ ଦିନ ୭ ଘଣ୍ଟିଆ କିମ୍ବା ୬ ଘଣ୍ଟିଆ ଦିନରେ ପରିଣତ ହୋଇଛି । ଶ୍ରମ ଦିନର ସମୟକୁ କାଟି ଊଣା କରାଗଲାବେଳେ ମଜୁରୀକୁ କିନ୍ତୁ ସମାନ ସ୍ତରରେ ରଖାଯାଇଛି । ଏପରିକି ସେଥିରେ ବୃଦ୍ଧି ଅଣାହୋଇଛି ।

ସାଧାରଣ ଶିକ୍ଷାର ପ୍ରସାର ଦିଗରେ ଆହୁରି ଅଧିକ ଉନ୍ନତର ବ୍ୟବସ୍ଥା କରାଯାଇଛି । ବିଶେଷ ସେକେଣ୍ଡାରି ବା ଉଚ୍ଚତର ଶିକ୍ଷା ଲାଭ କରିଥିବା ୯,୫୦୦,୦୦୦ ଲୋକେ ସୋଭିଏତ୍ ଅର୍ଥନୀତିରେ ନିଯୁକ୍ତ ହୋଇଛନ୍ତି । '୯୧୩ରେ ଏହିପରି ଶିକ୍ଷାରେ ନିଯୁକ୍ତ ଥିବା ଲୋକସଂଖ୍ୟାର ଏହା ୫୦ ଗୁଣ ଅଧିକ । ବ୍ରିଟେନ୍, ଫ୍ରାନ୍ସ, ପଶ୍ଚିମ-ଜର୍ମାନୀ ଓ ଇଟାଲିର କଲେଜ ଓ ବିଶ୍ୱବିଦ୍ୟାଳୟର ମୋଟ ଛାତ୍ରସଂଖ୍ୟା ଯେତେ ହେବ, ତା'ର ୪ ଗୁଣ ଅଧିକ ଛାତ୍ର ଏବେ ସୋଭିଏତ୍ ୟୁନିଅନରେ ଅଧ୍ୟୟନ କରୁଛନ୍ତି ।

ବିଂଶ ପାର୍ଟି କଂଗ୍ରେସ ପରଠାରୁ କମ୍ୟୁନିଷ୍ଟ ପାର୍ଟି ଓ ସୋଭିଏତ୍ ସରକାର ଯେଉଁସବୁ କାର୍ଯ୍ୟ ସଂପାଦନ କରିଛନ୍ତି, ତାହା ଗୁରୁତ୍ୱରେ ଅତୀତର ସମସ୍ତ କାର୍ଯ୍ୟକୁ ବଳାଇଯାଇଛି । ମୋଟ ଉପରେ କହିଲେ, ଏହି କାର୍ଯ୍ୟସବୁ ସୋଭିଏତ୍ ୟୁନିଅନକୁ ପୂର୍ଣ୍ଣରୂପରେ କମ୍ୟୁନିଷ୍ଟ ନିର୍ମାଣ ଯୁଗରେ ପ୍ରବେଶ କରାଇବା ଲାଗି ସମସ୍ତ ମାର୍ଗ ଉନ୍ମୁକ୍ତ କରିଦେଇଛି ।

## ସମାଜବାଦର ପୂର୍ଣ୍ଣ ଓ ଚରମ ବିଜୟ

ଆଗରୁ କୁହାଯାଇଛି, ତିରିଶ ଦଶକର ମଧ୍ୟଭାଗରେ ସୋଭିଏତ ସୋଭିଏତ ୟୁନିଅନରେ ସମାଜବାଦ ଗଠିତ ହେଲା। ସମାଜବାଦ ବିଜୟୀ ହେଲା, ଏହାର ଅର୍ଥ, ଶ୍ରମିକଶ୍ରେଣୀ କୃଷକମାନଙ୍କ ସହିତ ମିତ୍ରତା ସ୍ଥାପନ କରି ଶୋଷକ ଶ୍ରେଣୀଗୁଡ଼ିକୁ ଧ୍ୱଂସ କରିଦେଲା ଓ ଉତ୍ପାଦନର ଉପକରଣ ଉପରୁ ବ୍ୟକ୍ତିଗତ ମାଲିକାନାକୁ ଲୋପ କରିଦେଲା। ଦେଶର ଶିଳ୍ପୀକରଣ ଓ କୃଷିକ୍ଷେତ୍ରରେ କୋଠଗୃହର ପ୍ରସାର ସମାଜବାଦ ଲାଗି ଭୌତିକ ଓ କାରିଗରି ଭିତ୍ତି ନିର୍ମାଣ କଲା। ସମାଜବାଦର ଉତ୍ପାଦନ ଶକ୍ତିଗୁଡ଼ିକର ଅଧିକ ବିକାଶ ସାଧନ ସକାଶେ ଓ ସାମାଜିକ ବ୍ୟବସ୍ଥାର ଉନ୍ନତ ବିଧାନ ସକାଶେ ବିପୁଳ ପରିମାଣରେ କାର୍ଯ୍ୟ କରିବାକୁ ହେଲା।

ତେଣୁ ସୋଭିଏତ ୟୁନିଅନର ଆଭ୍ୟନ୍ତରୀଣ ଅବସ୍ଥା ଦୃଷ୍ଟିରୁ ସମାଜବାଦ ପୂରାପୂରି ସେଠାରେ ବିଜୟ ଲାଭ କଲା।

କିନ୍ତୁ ପୃଥିବୀରେ ସେ ସୋଭିଏତ ୟୁନିଅନ ଯେ ପର୍ଯ୍ୟନ୍ତ ଏକମାତ୍ର ସମାଜବାଦୀ ଦେଶ ହୋଇ ରହିଥିଲା ଓ ଯେ ପର୍ଯ୍ୟନ୍ତ ତାହା ପୁଞ୍ଜିବାଦୀ ଦେଶମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ରହିଥିଲା, ସେ ପର୍ଯ୍ୟନ୍ତ ସମାଜବାଦର ବିଜୟ ଚୂଡ଼ାନ୍ତ ହେବା ସମ୍ଭବ ନ ଥିଲା; କାରଣ ବିଶ୍ୱ-ସମାଜବାଦୀମାନଙ୍କର ବଳପ୍ରୟୋଗ, ସାମରିକ ହସ୍ତକ୍ଷେପ ଓ ପୁଞ୍ଜିବାଦର ପୁନଃ ପ୍ରବର୍ତ୍ତନ ବିରୁଦ୍ଧରେ କୌଣସି ଦୃଢ଼ ନିଶ୍ଚିନ୍ତତା ଆସି ନ ଥିଲା। ଏକତ୍ର ଦେଖିଲେ, ପୁଞ୍ଜିବାଦୀ ଦେଶସବୁ ଅର୍ଥନୈତିକ ଓ ସାମରିକ, ଉଭୟ ଦିଗରୁ ସୋଭିଏତ ୟୁନିଅନ ଅପେକ୍ଷା ଅଧିକ ଶକ୍ତିଶାଳୀ ଥିଲେ।

ଆଜି ସୋଭିଏତ ୟୁନିଅନ ସଂପୂର୍ଣ୍ଣ ଏକ ଭିନ୍ନ ଅବସ୍ଥାରେ ପଡ଼ିଛି। ତାହା ଆଉ ପୁଞ୍ଜିବାଦୀ ଦେଶମାନଙ୍କ ଦ୍ୱାରା ପରିବେଷ୍ଟିତ ନୁହେଁ। ପାଠକମାନେ ଜାଣନ୍ତି ଯେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସମାଜବାଦୀ ବିପ୍ଳବର ପ୍ରବାହରେ ୟୁରୋପ ଓ ଏସିଆର ବହୁ ଦେଶ ପ୍ଳାବିତ ହୋଇଥିଲା। ସର୍ବମୋଟ ସତୁରି କୋଟିରୁ ଉର୍ଦ୍ଧ୍ୱ ଲୋକସଂଖ୍ୟାବିଶିଷ୍ଟ ଦେଶସବୁ ପୁଞ୍ଜିବାଦୀ ବ୍ୟବସ୍ଥାର ପରିସର ମଧ୍ୟରୁ ଫିଟି ବାହାରି ଆସିଲେ।

ଏବେ ସମାଜବାଦ ଆଉ ଗୋଟିଏ ଦେଶ ମଧ୍ୟରେ ସୀମାବଦ୍ଧ ନୁହେଁ। ଏବେ ଏକ ଶକ୍ତିଶାଳୀ ବିଶ୍ୱ-ସମାଜବାଦୀ ବ୍ୟବସ୍ଥାର ଉଦ୍ଭବ ଘଟିଛି। ଏହା ଦିନକୁ ଦିନ ଅଧିକ ବଳୀୟାନ ଓ ଶକ୍ତିମାନ ହେଉଛି। ଆଉ ତେଣେ ପୁଞ୍ଜିବାଦ ନିରନ୍ତର ଦୁର୍ବଳ ହେବାରେ ଲାଗିଛି। ଏହି ନୂତନ ସମାଜବାଦୀ ବ୍ୟବସ୍ଥାର ଉଦ୍ଭବ, ତା'ର

ଅର୍ଥନୈତିକ ଓ ରାଜନୈତିକ ଅନ୍ତରାଡ, ପୁଞ୍ଜିବାଦୀ ଦେଶମାନଙ୍କରେ ଶ୍ରମିକଶ୍ରେଣୀର ବୈପ୍ଳବିକ ଆନ୍ଦୋଳନର ବୃଦ୍ଧି, ଜାତୀୟ ମୁକ୍ତି ଆନ୍ଦୋଳନର ଅଭ୍ୟୁତ୍ଥାନ ଓ ସାମ୍ରାଜ୍ୟବାଦୀ ଔପନିବେଶିକ ବ୍ୟବସ୍ଥାର ଛିନ୍ନଛତ୍ର ଅବସ୍ଥା—ଏ ସମସ୍ତ ନିତାନ୍ତଭାବେ ପୁଞ୍ଜିବାଦର ସୌଧକୁ କ୍ଷୁଣ୍ଣ ଓ ଦୁର୍ବଳ କରିବାରେ ଲାଗିଛି ।

ଆଜି ଆମେ ସୋଭିଏତ୍ ୟୁନିଅନରେ ସମାଜବାଦର ଅନ୍ତିମ ବା ଚୂଡ଼ାନ୍ତ ବିଜୟ କଥା କହିପାରୁଁ । ସୋଭିଏତ୍ ୟୁନିଅନ ଓ ଅନ୍ୟ ସମାଜବାଦୀ ଦେଶମାନଙ୍କରେ ପୁନର୍ବାର ପୁଞ୍ଜିବାଦୀ ବ୍ୟବସ୍ଥାର ପ୍ରଚଳନ ଲାଗି ପୁଞ୍ଜିବାଦୀ ଦେଶମାନେ ଯେ ସେହି ଦେଶକୁ ଆଉ ପୁଣି ଥରେ ଆକ୍ରମଣ କରିବାକୁ ଉଦ୍ୟତ ନ ହେବେ, ଏହାର ନିଶ୍ଚିତତା ବା କଣ ? ପ୍ରକୃତପକ୍ଷେ ସ୍ୱାଭାବିକ କଥା ହେଉଛି, ଏ ସଂପର୍କରେ ସେପରି କୌଣସି ଗ୍ୟାରେଣ୍ଟି ବା ପ୍ରତିଶ୍ରୁତି ଆଶା କରାଯାଇ ନ ପାରେ । ତେବେ ପୁଞ୍ଜିବାଦର ପୁନଃ ପ୍ରବର୍ତ୍ତନ ବିରୁଦ୍ଧରେ ପୂର୍ଣ୍ଣ ଗ୍ୟାରେଣ୍ଟି ବା ପ୍ରତିଶ୍ରୁତି ଯେ ନାହିଁ, ଏହା ମଧ୍ୟ ନୁହେଁ । କାରଣ, ବର୍ତ୍ତମାନ ବିଭିନ୍ନ ଶକ୍ତିଗୁଡ଼ିକ ମଧ୍ୟରେ ଯେଉଁଭଳି ଭାରସାମ୍ୟ ରହିଛି, ସେଥିରେ ସୋଭିଏତ୍ ୟୁନିଅନ ଓ ଅନ୍ୟ ସମାଜବାଦୀ ଦେଶମାନେ ମିଳି ଯେକୌଣସି ଶତ୍ରୁ ପକ୍ଷରୁ ଯେକୌଣସି ପ୍ରକାର ଆକ୍ରମଣ ହେଲେ ତାକୁ ସହଜରେ ପ୍ରତିହତ କରିପାରିବେ ।

**ଏହାର ଅର୍ଥ ସୋଭିଏତ୍ ୟୁନିଅନରେ ସମାଜବାଦର ବିଜୟ କେବଳ ସଂପୂର୍ଣ୍ଣ ନୁହେଁ, ଚୂଡ଼ାନ୍ତ ହୋଇଛି ।**

* * * *

ଏବେ ସମାଜବାଦୀ ସମାଜର ଅର୍ଥନୈତିକ ଓ ରାଜନୈତିକ ମୂଳ ଭିତ୍ତିସବୁକୁ ସବୁ ଓ ତା'ର ବିକାଶକୁ ପରିଚାଳିତ କରୁଥିବା ନିୟମଗୁଡ଼ିକୁ ଆଲୋଚନା କରି ଦେଖାଯାଉ ।





# ତୃତୀୟ ଅଧ୍ୟାୟ

# ସୋଭିଏତ ସମାଜବାଦୀ ସମାଜ

## ୧ । ସମାଜବାଦୀ ସାମାଜିକ ବ୍ୟବସ୍ଥା

ଇତିହାସରେ ସର୍ବପ୍ରଥମ ସୋଭିଏତ୍ ୟୁନିଅନର ନୂତନ ସାମାଜିକ ବ୍ୟବସ୍ଥା ପୁରାତନ ପୁଞ୍ଜିବାଦୀ ବ୍ୟବସ୍ଥାଠାରୁ ମୌଳିକଭାବେ ପୃଥକ । ଏହି ଦୁଇଟି ବ୍ୟବସ୍ଥାକୁ ତୁଳନା କରି ସମାଜବାଦୀ ବ୍ୟବସ୍ଥାର ଉତ୍କର୍ଷ ଓ ବିଶିଷ୍ଟ ସୁବିଧା-ସୁଯୋଗଗୁଡ଼ିକ ବେଶ ପରିସ୍ଫୁଟ ହୁଏ ।

ଏହି ସୁବିଧାସୁଯୋଗଗୁଡ଼ିକ କଣ ?

## ଲୋକମାନେ ଯେଉଁଠି କ୍ଷମତାର ଅଧିକାରୀ

ପୁଞ୍ଜିବାଦୀ ସମାଜ, ଉତ୍ପାଦନ ଉପକରଣମାନଙ୍କର ବ୍ୟକ୍ତିଗତ ମାଲିକାନା ଉପରେ ପ୍ରତିଷ୍ଠିତ । ଏହା ହେଲା ତା'ର ସମସ୍ତ ଦୁଃଖ ଦୁର୍ବିପାକର ମୂଳ କାରଣ । ବ୍ୟକ୍ତିଗତ ମାଲିକାନାରୁ ସମସ୍ତ ଶୋଷଣ, ଅତ୍ୟାଚାର, ହିଂସା, ଉତ୍ପୀଡ଼ନର ଜନ୍ମ । ତାହା ବହୁସଂଖ୍ୟକ ଲୋକଙ୍କୁ ନିଃସ୍ୱ, ଦରିଦ୍ର କରେ; ମୁଷ୍ଟିମେୟଙ୍କୁ ଧନୀ, ବିଭବଶାଳୀ କରାଏ । ପୁଞ୍ଜିବାଦୀ ଦେଶମାନଙ୍କରେ ଅଧିକାଂଶ ଅଧିବାସୀ ହେଲେ ଶ୍ରମଜୀବୀ ଲୋକ । ସେମାନଙ୍କ ହାତରେ କିନ୍ତୁ ଶାସନ କ୍ଷମତା ନ ଥାଏ । ମୁଷ୍ଟିମେୟଙ୍କ ଶୋଷକ

ଶ୍ରେଣୀ ହେଉଛନ୍ତି ଶାସନ କ୍ଷମତାର ଅଧିକାରୀ । ପୁଞ୍ଜିବାଦୀ ସମାଜ, ଶୋଷକ ଓ ଶୋଷିତ ପରସ୍ପରବିରୋଧୀ ଶତ୍ରୁଭାବାପନ୍ନ ଏହି ଶ୍ରେଣୀମାନଙ୍କୁ ନେଇ ଗଠିତ । ତାହା ଗଭୀର ବିରୋଧିତା, ଯାହା ଶ୍ରେଣୀସଂଗ୍ରାମ ଦ୍ୱାରା ବିଦୀର୍ଣ୍ଣ ହୁଏ । ସେହି ଶ୍ରେଣୀସଂଗ୍ରାମ ସଂଘର୍ଷରେ ପରିଣତ ହେବା ଦିଗକୁ ଗତି କରେ ।

ସୋଭିଏତ ୟୁନିଅନରେ ଉତ୍ପାଦନର ସମସ୍ତ ଉପକରଣ ହେଉଛି ସର୍ବସାଧାରଣ ବା କୋଠ ସମ୍ପତ୍ତି । ରାଷ୍ଟ୍ରସମ୍ପତ୍ତି ଭାବରେ କିମ୍ବା କୋଠଗୃହର ସମ୍ପତ୍ତି ବା ଅନ୍ୟାନ୍ୟ କୋଅପରେଟିଭ ସଂଗଠନମାନଙ୍କର ସମ୍ପତ୍ତି ଭାବରେ ତାହା ମେହନତକାରୀ ଜନସାଧାରଣଙ୍କର ମାଲିକାନାର ଅଧୀନ । ଶ୍ରମିକ, କୃଷକ ଓ ବୁଦ୍ଧିଜୀବୀମାନଙ୍କର ଶ୍ରମର ଫଳ ଶୋଷକମାନେ ଭୋଗ କରନ୍ତି ନାହିଁ; ଭୋଗ କରନ୍ତି ସେମାନେ ନିଜେ; ଭୋଗ କରେ ସମାଜ ।

ପୁଞ୍ଜିବାଦୀ ବ୍ୟବସ୍ଥାର ଉତ୍ପାଦନ ସମ୍ପର୍କଠାରୁ ଏକାବେଳକେ ମୌଳିକଭାବେ ପୃଥକ ନୂତନ ଉତ୍ପାଦନ ସମ୍ପର୍କ ସମାଜବାଦ ସୃଷ୍ଟି କରେ । ସେହି ସମ୍ପର୍କ ହେଉଛି ଭ୍ରାତୃତ୍ୱପୂର୍ଣ୍ଣ ସହଯୋଗ ଓ ପାରସ୍ପରିକ ସାହାଯ୍ୟ ସମର୍ଥନର ସମ୍ପର୍କ । ସେଥିରେ ଶୋଷଣର କୌଣସି ସ୍ଥାନ ନ ଥାଏ । ଉତ୍ପାଦନ ବିଜ୍ଞାନ ଓ ଟେକ୍‌ନୋଲୋଜି ବା କାରିଗରି ବିଦ୍ୟା ଏପରି ବେଗରେ ବିକାଶଲାଭ କରେ ଯେ, ପୁଞ୍ଜିବାଦୀ ଅମଳରେ ସେଭଳି କେବେ କୁତ୍ରାପି ଦେଖା ଯାଇ ନ ଥାଏ । ଉତ୍ପାଦନର ମୁଖ୍ୟ ଲକ୍ଷ୍ୟ ହେଉଛି, ସମାଜବାଦୀ ସମାଜର ଲୋକମାନଙ୍କର ଭୌତିକ ଓ ସାଂସ୍କୃତିକ ଆବଶ୍ୟକତାଗୁଡ଼ିକ ଅଧିକରୁ ଅଧିକ ସନ୍ତୋଷଜନକଭାବେ ପୂରଣ କରିବା । ସମାଜବାଦ ଅଧୀନରେ ସମସ୍ତ କ୍ଷମତା ଶ୍ରମିକଶ୍ରେଣୀ ହାତରେ ନ୍ୟସ୍ତ ରହେ । ସମାଜବାଦୀ ସମାଜରେ କୌଣସି ଶୋଷଣକାରୀ ଶ୍ରେଣୀ ନାହାନ୍ତି ।

ସୋଭିଏତ୍ ୟୁନିଅନର ସମାଜର ଗଠନରେ ଯେଉଁସବୁ ବିରାଟ ପରିବର୍ତ୍ତନମାନ ଘଟିଛି, ତା'ର କେତେକ ଦୃଷ୍ଟାନ୍ତ ଏଠି ଦିଆଯାଇପାରେ । ୧୯୧୩ରେ ରୁଷର ଲୋକମାନଙ୍କ ଭିତରେ ଶିଳ୍ପ, ଅଫିସ ଓ ବିଭିନ୍ନ ପେଶାର ଶ୍ରମିକମାନଙ୍କ ସଂଖ୍ୟା ଥିଲା ମୋଟେ ଶତକଡ଼ା ୧୭ ଭାଗ; କୃଷକ, କାରିଗର ଓ ହସ୍ତଶିଳ୍ପୀମାନଙ୍କର ସଂଖ୍ୟା ଥିଲା ଶତକଡ଼ା ୬୬.୭ ଭାଗ, ଆଉ ଅବଶିଷ୍ଟ ଶତକଡ଼ା ୧୬.୩ ଥିଲେ ବଡ଼ ବଡ଼ ଜମିମାଲିକ, ଧନୀ ଚାଷୀ, ସହରର ବୁର୍ଜୁଆ ଓ ବଣିକ ବେପାରୀ । ୧୯୩୯ରେ ରୁଷର ଲୋକଙ୍କ ମଧ୍ୟରେ ଶିଳ୍ପ, ଅଫିସ ଓ ବିଭିନ୍ନ ପେଶାର ଶ୍ରମିକମାନଙ୍କ ସଂଖ୍ୟା ପହଞ୍ଚିଥିଲା ଶତକଡ଼ା ୫୦.୨ ଭାଗରେ ; କୋଠଚାଷୀମାନଙ୍କର ସଂଖ୍ୟା ହୋଇଥିଲା ଶତକଡ଼ା ୪୪.୯ ଭାଗ ; କୃଷକ ଓ କାରିଗର, ଯେଉଁମାନେ କି କୋଅପରେଟିଭର ସଭ୍ୟ ନୁହନ୍ତି, ସେମାନଙ୍କ ସଂଖ୍ୟା ହୋଇଥିଲା ଶତକଡ଼ା ୨.୬ ଭାଗ ।

ସେ ସମୟକୁ ଶୋଷକ ଶ୍ରେଣୀ ବିଲକୁଲ୍ ଲୋପ ପାଇଯାଇଥିଲା । ଆଜି ଶିଳ୍ପ, ଅଫିସର ଓ ପେଶାଦାର ଶ୍ରମିକମାନଙ୍କର ସଂଖ୍ୟା ହେଉଛି ସମୁଦାୟ ଲୋକସଂଖ୍ୟାର ଶତକଡ଼ା ୭୩ ଭାଗରୁ ଅଧିକ, ଆଉ କୋଠଚାଷୀମାନଙ୍କର ସଂଖ୍ୟା ଶତକଡ଼ା ୨୭ ଭାଗ ।

ଅତଏବ ଏବେ ସୋଭିଏତ୍ ୟୁନିଅନରେ କେବଳ ଦୁଇଟି ମାତ୍ର ଶ୍ରେଣୀ ଅଛି; ଶ୍ରମିକଶ୍ରେଣୀ ଓ କୃଷକଶ୍ରେଣୀ । ଏହି ଦୁଇଟି ସହୋଦର ଶ୍ରେଣୀ ଭିତରେ ରହିଥିବା ପାର୍ଥକ୍ୟ ଧୀରେ ଧୀରେ ଦୂର ହୋଇଯାଉଛି । ଏହି ଦୁଇ ଶ୍ରେଣୀର ସାମାଜିକ ଅବସ୍ଥିତିରେ ମୌଳିକ ପରିବର୍ତ୍ତନ ଆସିଛି ।

କିନ୍ତୁ ନିର୍ଦ୍ଦିଷ୍ଟଭାବେ ଏ ପରିବର୍ତ୍ତନ ଘଟିଛି କିପରି ?

ବିପ୍ଳବ ପୂର୍ବରୁ ଉତ୍ପାଦନ ଉପକରଣ ଉପରେ ଶ୍ରମିକଶ୍ରେଣୀର ଅଧିକାର ନ ଥିଲା; ଶ୍ରମିକମାନେ ତା'ର ମାଲିକ ନ ଥିଲେ । ସେମାନେ ଅତି ପାଶବିକ ଓ ନୃଶଂସଭାବେ ଶୋଷିତ ହେଉଥିଲେ । ଏବେ ସମାଜବାଦୀ ବ୍ୟବସ୍ଥାରେ ଶ୍ରମିକଶ୍ରେଣୀ ଅନ୍ୟ ଅବଶିଷ୍ଟ ଲୋକମାନଙ୍କ ସହିତ ଉତ୍ପାଦନ ଉପକରଣଗୁଡ଼ିକର ମାଲିକ, ଆଉ ସମାଜବାଦୀ ସମାଜରେ ନେତୃତ୍ୱକାରୀ ଭୂମିକା ଗ୍ରହଣ କରୁଛି । ଏହାର କାରଣ ହେଉଛି, ଅର୍ଥନୈତିକ କ୍ଷେତ୍ରରେ ତା'ର ବିଶେଷ ଅବସ୍ଥା; ଅନ୍ୟ କଥାରେ କହିଲେ, ତାହା, ଯାହାକି ସମାଜବାଦୀ ସମ୍ପତ୍ତିର ସର୍ବୋଚ୍ଚ ରୂପ, ସମଗ୍ର ଲୋକମାନଙ୍କର ସମ୍ପତ୍ତି ସହିତ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ । ତାହା ହେଉଛି, ସର୍ବାଧିକ ଭାବେ ସଙ୍ଗଠିତ ଶ୍ରେଣୀ ଓ ତା'ର ସର୍ବଶ୍ରେଷ୍ଠ ବୈପ୍ଳବିକ ଅଭିଜ୍ଞତା ରହିଛି । ଯୁଗ ଯୁଗ ବ୍ୟାପୀ ଶ୍ରେଣୀ-ସଂଗ୍ରାମ ଭିତରେ ତାହାର ଦୃଢ଼ତା ତାପସହ ଓ ସଂହତ ହୋଇଛି । କମ୍ୟୁନିଷ୍ଟ ଆଦର୍ଶର ତାହା ହିଁ ହେଉଛି ନିଷ୍ଠାପର ପ୍ରଚାରକ ।

ଏବେ କୃଷକମାନଙ୍କ କଥା ବିଚାର କରାଯାଉ । ପୂର୍ବେ ସେମାନେ କ୍ଷୁଦ୍ର କ୍ଷୁଦ୍ର ଉତ୍ପାଦନକାରୀ ଶ୍ରେଣୀ ହୋଇ ରହିଥିଲେ । ସେମାନଙ୍କର ପରସ୍ପର ସହିତ ସଂପର୍କ ଅତ୍ୟନ୍ତ କୋହଳ ଥିଲା । ସେମାନେ ନିରକ୍ଷର ଥିଲେ । ତାଙ୍କ ଭିତରୁ ଅଧିକାଂଶ ନିଃସ୍ୱ ନିଃସମ୍ବଳ ହୋଇ ପଡ଼ିରହିଥିଲେ । ସଦାସର୍ବଦା ଅଭାବ ଅନାଟନ ମଧ୍ୟରେ ସଢ଼ୁଥିଲେ । କୃଷିରେ କୋଠଚାଷର ପ୍ରବର୍ତ୍ତନ ଏବଂ ସାଂସ୍କୃତିକ ବିପ୍ଳବ କୃଷକମାନଙ୍କର ଅବସ୍ଥାକୁ ସଂପୂର୍ଣ୍ଣ ପରିବର୍ତ୍ତିତ କରିଦେଲା ।

ଆଜି ସେମାନେ ହେଉଛନ୍ତି କୋଠଚାଷ ଫାର୍ମର କୃଷକ । ସେମାନଙ୍କର 'ଶ୍ରେଣୀ' ଆଉ ଜମିମାଲିକ ଓ କୁଲାକ (ଧନୀ ଚାଷୀ) ମାନଙ୍କ ଦ୍ୱାରା ଶୋଷିତ ନୁହେଁ । ସେମାନେ ଏକତ୍ର ହୋଇ ବୃହତ୍ ଯନ୍ତ୍ର-ପରିଚାଳିତ ସମାଜବାଦୀ ଫାର୍ମମାନଙ୍କରେ

କାର୍ଯ୍ୟରତ । ସେମାନଙ୍କର ଅସ୍ତ୍ର, ସାଂସ୍କୃତିକ ଓ ସାମାଜିକ ଚେତନ ଆଜି ଜାଗରଣରେ ଅଭୂତପୂର୍ବ ବିକାଶ ଘଟିଛି ।

ବୁଦ୍ଧିଜୀବୀମାନଙ୍କ ଭିତରେ ବି ବିରାଟ ପରିବର୍ତ୍ତନମାନ ଦେଖାଦେଇଛି ! ବୁଦ୍ଧିଜୀବୀ ଶ୍ରେଣୀ କେବେ ଗୋଟାଏ ଅଲଗା ଶ୍ରେଣୀ ନ ଥିଲା । ଆଗେ ଏହାର ଉପର ସ୍ତରରେ ବୁର୍ଜୁଆମାନେ ଥିଲେ । ସେମାନେ ଶୋଷକଶ୍ରେଣୀର ହୁକୁମ ତାମିଲ କରୁଥିଲେ ସୋଭିଏତ୍ ବୁଦ୍ଧିଜୀବୀମାନେ ହେଉଛନ୍ତି ଶ୍ରମିକ ଓ କୃଷକମାନଙ୍କର ସନ୍ତାନସନ୍ତତି; ଲୋକଙ୍କ ସ୍ୱାର୍ଥ ଦୃଷ୍ଟିରୁ ନିଜ ନିଜ କାମରେ ନିଯୁକ୍ତ ଅଛନ୍ତି । ଲୋକଙ୍କର ସେବକ ସେମାନେ, ଆଉ ସୋଭିଏତ୍ ସମାଜର ପୂର୍ଣ୍ଣ ସଭ୍ୟ ।

ସମାଜବାଦୀ ସମାଜର ମହାନ ସାମାଜିକ-ରାଜନୈତିକ ଏକତା, ପୁଞ୍ଜିବାଦ ଉପରେ ତାକୁ ପ୍ରକାଣ୍ଡ ସୁବିଧା ସୁଯୋଗ ଯୋଗାଏ । ସମସ୍ତ ସୋଭିଏତ୍ ଲୋକେ ସାମ୍ୟବାଦ ବା କମ୍ୟୁନିଜମ୍ ନିର୍ମାଣ ବାଟରେ ସେମାନଙ୍କର ସର୍ବସାଧାରଣ ଉଦ୍ୟମ ଦ୍ୱାରା ସେମାନଙ୍କର ସାଧାରଣ ସ୍ୱାର୍ଥ, ମତାମତ ଓ ଲକ୍ଷ୍ୟ ଦ୍ୱାରା ଅତି ନିବିଡ଼-ଭାବେ ଏକତାବଦ୍ଧ ।

ଏହା ସତ ଯେ, ସୋଭିଏତ୍ ସମାଜରେ କେତେକ ସମାଜବିରୋଧୀ ଲୋକେ, ଯଥା ଠକ, ଲାଭଖୋର୍, ପରାଙ୍ଗପୁଷ୍ଟ, ଗଣ୍ଡଗୋଳକାରୀ ଗୁଣ୍ଡା ଆଦି ଏବେ ମଧ୍ୟ ଅଛନ୍ତି । ତେବେ ସେମାନଙ୍କ ସଂଖ୍ୟା ଅତି ନଗଣ୍ୟ । ସେମାନେ ସମାଜବାଦୀ ସମାଜରେ ଏକ ସ୍ୱତନ୍ତ୍ର ଶ୍ରେଣୀ ଭାବେ ଦେଖାଯାଉଛନ୍ତି, ଏହା ମନେ କରିବା ପୁରାପୂରି ଭୁଲ । ଇତିହାସ ସମ୍ବନ୍ଧରେ ସାଧାରଣ ଜ୍ଞାନ ଥିବା ଯେକୌଣସି ବ୍ୟକ୍ତି ଜାଣେ ଯେ, ଦାଗୀ ଅପରାଧୀମାନେ କୌଣସି ସମାଜରେ କେବେହେଲେ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ହୋଇ ରହନ୍ତି ନାହିଁ । ସମାଜବାଦ ଅଧୀନରେ ଏହି ଦାଗୀ ଅପରାଧୀ-ମାନଙ୍କୁ ଏକ ସ୍ୱତନ୍ତ୍ର ଶ୍ରେଣୀଭାବେ ଗଣ୍ୟ କରାଯିବ କାହିଁକି ? ସମାଜବାଦ ଅଧୀନରେ ଅପରାଧମୂଳକ କାର୍ଯ୍ୟ ଘଟିଥାଏ, କିନ୍ତୁ ସେସବୁ କେବଳ ପୁଞ୍ଜିବାଦୀ ମନୋଭାବର ଅବଶେଷ । ଏହି ସମାଜବିରୋଧୀ ନଗଣ୍ୟ ଲୋକ କେତେକଙ୍କୁ ଏକ ସ୍ୱତନ୍ତ୍ର ଶ୍ରେଣୀ ବୋଲି ବିଚାର କରିବା ମାର୍କସବାଦ-ଲେନିନବାଦର ବିରୋଧୀ ।

ଏହା ଅସ୍ୱୀକାର କରିହେବ ନାହିଁ ଯେ, ସୋଭିଏତ୍ ସମାଜ କୃଷକ ଓ ଶ୍ରମିକ ଏହି ଦୁଇ ସହୋଦର ଶ୍ରେଣୀ ଆଉ ଏକ ସାମାଜିକ ସ୍ତର ଭାବରେ ପ୍ରତିଷ୍ଠିତ ଜନତାର ବୁଦ୍ଧିଜୀବୀମାନଙ୍କୁ ନେଇ ଗଠିତ, ଏବଂ ଏହା ହେଉଛି ଶ୍ରମଜୀବୀ ଲୋକମାନଙ୍କର ଏକ ଗୋଷ୍ଠୀ ।

# ସମାଜବାଦୀ ବ୍ୟବସ୍ଥାର ଅର୍ଥନୈତିକ ଭିତ୍ତି

ଉତ୍ପାଦନର ଉପକରଣ ଉପରେ ସମାଜବାଦୀ ମାଲିକାନା, ସୋଭିଏତ ଅର୍ଥନୀତିରେ ଅଖଣ୍ଡ ଭାବେ ପ୍ରତିଷ୍ଠିତ । ସମସ୍ତ ଲୋକେ ଦେଶର ସ୍ୱତଃଶାଳ ସମ୍ପଦର ଅଧିକାରୀ । ଭୌତିକ ଉତ୍ପାଦନର ସମସ୍ତ ବିଭାଗ, ଶିଳ୍ପ ପ୍ରତିଷ୍ଠାନ, ନିର୍ମାଣମୂଳକ ଯୋଜନା, କୋଲଖୋଜ ଓ ରାଷ୍ଟ୍ର ଫାର୍ମ, ପରିବହନ, ବେପାର ବାଣିଜ୍ୟ, ବ୍ୟାଙ୍କ ତୁଲିତକୁ ନେଇ ଏହି ଅଖଣ୍ଡ ସୁନିବଦ୍ଧ ସମାଜବାଦୀ ଅର୍ଥନୀତି ଗଠିତ ।

ଅର୍ଥନୀତିର ସମାଜବାଦୀ ବ୍ୟବସ୍ଥା ଏବଂ ଉତ୍ପାଦନର ଉପକରଣ ଓ ଯନ୍ତ୍ରପାତି ଉପରେ ସମାଜବାଦୀ ମାଲିକାନା ହେଉଛି ସୋଭିଏତ୍ ୟୁନିଅନର ଅର୍ଥନୈତିକ ମୂଳଭିତ୍ତି ।

ସୋଭିଏତ୍ ଆଇନ ବ୍ୟକ୍ତିଗତ କୃଷକ ଓ କାରିଗରମାନଙ୍କର କ୍ଷୁଦ୍ର ବ୍ୟକ୍ତିଗତ ଅର୍ଥନୀତିକୁ କାର୍ଯ୍ୟକାରୀ ହେବାଲାଗି ଅନୁମତି ଦେଇଥାଏ । ତେବେ ଏ ସଂପର୍କରେ ଏକ ପ୍ରଧାନ ସର୍ତ୍ତ ହେଉଛି—ସେମାନେ ନିଜ ନିଜ ଲାଗି କାର୍ଯ୍ୟ କରିବେ, ଅନ୍ୟର ଶ୍ରମକୁ ଶୋଷଣ କରିବେ ନାହିଁ ।

ସୋଭିଏତ୍ ୟୁନିଅନରେ ଦୁଇ ପ୍ରକାରର ସଂପତ୍ତି ରହିଛି । ଗୋଟିଏ ହେଲା ରାଷ୍ଟ୍ର ସଂପତ୍ତି: ତାହା ସମସ୍ତ ଲୋକଙ୍କର । ଅନ୍ୟଟି ହେଲା କୋଅପରେଟିଭ ଓ କୋଲଖୋଜ ଫାର୍ମ ସମ୍ପତ୍ତି । ସେ ସମ୍ପତ୍ତି କୋଲଖୋଜ ଫାର୍ମ କିମ୍ବା କୋଅପରେଟିଭ ସଂସ୍ଥାଗୁଡ଼ିକର ।

ସୋଭିଏତ୍ ସମାଜବାଦୀ ଅର୍ଥନୀତିରେ ରାଷ୍ଟ୍ରୀୟ ସମ୍ପତ୍ତିର ପ୍ରାଧାନ୍ୟ ସର୍ବାଧିକ । ତାହା ମଧ୍ୟରେ ଜମିଜମା, ଖଣିଜ ସମ୍ପଦ, ଜଳ, ବନଜଙ୍ଗଲର ସମ୍ପଦ, ମିଲ, ଫାକ୍ଟ୍ରି, ଜଳ ସ୍ଥଳ ଓ ଆକାଶରେ ସମସ୍ତ ପ୍ରକାର ପରିବହନ ବ୍ୟବସ୍ଥା, ବ୍ୟାଙ୍କ, ଡାକତାର, ରେଡ଼ିଓ, ରାଷ୍ଟ୍ରଫାର୍ମ ଓ ସହରର ଅଧିକାଂଶ ଗୃହ ବ୍ୟବସ୍ଥା ଆଦି ରହିଛି ।

ଦୁଇ ପ୍ରକାରର ସମାଜବାଦୀ ସମ୍ପତ୍ତି, ଦୁଇ ପ୍ରକାରର ସମାଜବାଦୀ ଶିଳ୍ପ-ଉଦ୍ୟୋଗର ଅନୁରୂପ । ଉକ୍ତ ଦୁଇ ସମାଜବାଦୀ ପ୍ରତିଷ୍ଠାନ ହେଉଛି,(୧)ରାଷ୍ଟ୍ରପ୍ରତିଷ୍ଠାନ ଯଥା ଫାକ୍ଟ୍ରି, ରାଷ୍ଟ୍ର ଦ୍ୱାରା ସଗଠିତ କୃଷି ବ୍ୟବସ୍ଥା ( ରାଷ୍ଟ୍ର ଫାର୍ମ, ମରାମତି କେନ୍ଦ୍ର ଆଦି) ଆଉ ମ୍ୟୁନିସିପାଲିଟି ଅନୁଷ୍ଠାନ ପ୍ରଭୃତି, (୨) କୋଅପରେଟିଭ ପ୍ରତିଷ୍ଠାନ, ଯଥା ଖାଉଟି ସୋସାଇଟିମାନଙ୍କ ଦ୍ୱାରା ପରିଚାଳିତ କୋଅପରେଟିଭ ଫାର୍ମ ଓ ଅନ୍ୟ ଅନୁଷ୍ଠାନଗୁଡ଼ିକ ।

ଯୁଗୋସ୍ଲାଭିଆରେ ଫ୍ୟାକ୍ଟ୍ରି, କାରଖାନା ବା ଅନ୍ୟ ଯୁଗୋସ୍ଲାଭ୍ ପ୍ରତିଷ୍ଠାନଗୁଡ଼ିକ କାର୍ଯ୍ୟ କରନ୍ତି କିପରି ?

ସୋଭିଏତ୍ ଯୁଗୋସ୍ଲାଭ୍ ଜଣେ ଡିରେକ୍ଟରଙ୍କୁ ନିଯୁକ୍ତ କରେ । ସେ ଗଣ-ସଂଗଠନମାନଙ୍କ ସମର୍ଥନରେ ପ୍ରତିଷ୍ଠାନର ଅର୍ଥନୈତିକ କାର୍ଯ୍ୟ ପରିଚାଳନା କରନ୍ତି । ସେ ମେସିନ ଯନ୍ତ୍ରପାତି, ଅନ୍ୟାନ୍ୟ ସାଜସରଞ୍ଜାମ, ଘରବାଡ଼ି ଓ ଶ୍ରମଶକ୍ତି—ବା ପଦେ କଥାରେ କହିଲେ, ଶିଳ୍ପ-ଉଦ୍ୟୋଗର ସମସ୍ତ ବୈଷୟିକ, ଅର୍ଥନୈତିକ ଓ ଲୋକ-ଶକ୍ତି ସମ୍ପଦର ଠିକ୍ ଠିକ୍ ବିନିଯୋଗ ଓ ସଙ୍ଗତ ବ୍ୟବହାର ଲାଗି ଯୁଗୋସ୍ଲାଭ୍ ପାଖରେ ଦାୟୀ ରହନ୍ତି । ଉତ୍ପାଦନ ପ୍ରୋଗ୍ରାମର ପ୍ରତ୍ୟେକଟି ବିଷୟ ପୂରଣ ପାଇଁ ସେ ମଧ୍ୟ ଦାୟୀ ହୁଅନ୍ତି । ଫ୍ୟାକ୍ଟ୍ରି, କାରଖାନାର, ନିର୍ମାଣକାରୀ ସଂସ୍ଥା ଓ ଷ୍ଟେଟ୍ ଫାର୍ମର ଲୋକେ, ଏବଂ ସେମାନଙ୍କର ଟ୍ରେଡ ୟୁନିଅନର ସଂଗଠନଗୁଡ଼ିକ ଏହି ଉତ୍ପାଦନ ପରିଚାଳନାରେ ପୁଣି ସକ୍ରିୟ ଅଂଶ ଗ୍ରହଣ କରନ୍ତି । ଉତ୍ପାଦନ କ୍ଷେତ୍ରରେ ଦୋଷ-ତ୍ରୁଟିକୁ ଦେଖିବା ଓ ତାହା ଦୂର କରିବାରେ ସେମାନେ ପରିଚାଳନାକୁ ସାହାଯ୍ୟ କରନ୍ତି । ଏକ ବ୍ୟାପକ ପ୍ରତିନିଧିତ୍ୱର ଭିତ୍ତିରେ ଶ୍ରମିକ-ଉତ୍ପାଦନ-ସମ୍ମିଳନୀମାନ ଅନୁଷ୍ଠିତ ହୁଏ ଓ ଉତ୍ପାଦନ କମିଟିମାନ ଗଠିତ ହୋଇଥାଏ ।

କୋଠଘର କ୍ଷେତ୍ରରେ ସେହି ଲୋକେ ହିଁ ଜମିରେ କାର୍ଯ୍ୟ କରନ୍ତି । ଜମି ସମସ୍ତ ଲୋକଙ୍କର ସମ୍ପତ୍ତି । ତାହା କୋଠଘର ଫାର୍ମମାନଙ୍କୁ ଚିରସ୍ଥାୟୀ ଭାବେ ଭୋଗଦଖଲ କରିବାଲାଗି ହସ୍ତାନ୍ତରିତ ହୋଇଛି । ଉତ୍ପାଦନର ପ୍ରଧାନ ଯନ୍ତ୍ରପାତି—ଟ୍ରାକ୍ଟର ଓ ଅନ୍ୟ ମେସିନ ଆଦି ସେହି କୋଠଘର ଫାର୍ମର ସମ୍ପତ୍ତି । ସେହିଭଳି ସେ ସବୁର ଉତ୍ପନ୍ନ, କୋଠାବାଡ଼ି ଓ ଅନ୍ୟ ପ୍ରତିଷ୍ଠାନ ବି କୋଠଘରର ଧନ ।

କୋଠଘରୀ ସଂସ୍ଥାଗୁଡ଼ିକ ନିଜ ଉତ୍ପନ୍ନଗୁଡ଼ିକୁ ବ୍ୟବହାର କରନ୍ତି କିପରି ? ସେମାନେ ନିଜ ଉତ୍ପନ୍ନର ଗୋଟାଏ ଅଂଶ ଯୁଗୋସ୍ଲାଭ୍‌କୁ ବିକ୍ରୟ କରନ୍ତି କିମ୍ବା ସହରମାନଙ୍କରେ ନିଜେ ବିକ୍ରି କରନ୍ତି । ଅବଶିଷ୍ଟ ଅଂଶକୁ ସେମାନେ ବୀଜାଗମ ଲାଗି ଉଦ୍ଦେଶ୍ୟରେ ଓ କୋଠଘର ଫାର୍ମର ସଭ୍ୟମାନଙ୍କ ଭିତରେ ବଣ୍ଟନ ଲାଗି ବ୍ୟବହାର କରନ୍ତି । ସେମାନଙ୍କ ଉତ୍ପନ୍ନର ବିକ୍ରୟଲବ୍ଧ ଧନରୁ ଗୋଟାଏ ନିର୍ଦ୍ଦିଷ୍ଟ ଭାଗ ଉତ୍ପାଦନର ବିନିଯୋଗ ଲାଗି ଅଲଗା ରଖିଦିଅନ୍ତି । ନୂତନ ମେସିନ ଓ ଯନ୍ତ୍ରପାତି କିଣିବା, ନୂଆ ନୂଆ ଫାର୍ମ କୋଠାବାଡ଼ି ତିଆରି କରିବା, ବର୍ଷକୁ ବର୍ଷ କୋଠଘରର ପ୍ରସାର ଆଣିବା ଆଦି ବାଟରେ ଲଭ୍ୟାଂଶ ବ୍ୟୟ ହୁଏ ।

ସଭ୍ୟମାନେ ଗୋଟାଏ ସଂସ୍ଥା ଭାବରେ କୋଠଘର ଫାର୍ମକୁ ପରିଚାଳନା କରନ୍ତି । ସେମାନେ ତାଙ୍କର ସାଧାରଣ ବୈଠକରେ ନୀତିଗତ ପ୍ରଶ୍ନମାନ ସ୍ଥିର କରନ୍ତି ।

ଦୁଇଟି ସାଧାରଣ ବୈଠକର ମଧ୍ୟବର୍ତ୍ତୀ କାଳରେ ଯୌଥକୃଷ ଫାର୍ମ, ଜଣେ ଚେୟାରମ୍ୟାନଙ୍କ ନେତୃତ୍ୱରେ ଏକ ବୋର୍ଡ ଦ୍ୱାରା ପରିଚାଳିତ ହୁଏ । ଚେୟାର-ମ୍ୟାନଙ୍କୁ ନେଇ ସେହି ପରିଚାଳନା ବା ମାନେଜିଙ୍ଗ୍ ବୋର୍ଡ ଫାର୍ମ-ସଭ୍ୟମାନଙ୍କ ସାଧାରଣ ବୈଠକରେ ବର୍ଷକ ଲାଗି ନିର୍ବାଚିତ ହୁଏ ।

ଏହି ଯୌଥକୃଷ ଫାର୍ମ ସଂପତ୍ତି ଏବଂ ଉତ୍ପାଦନର ସାମୂହିକ ସଂଗଠନ କୃଷକମାନଙ୍କ ସ୍ୱାର୍ଥର ଅନୁଗତ ହୁଏ ଓ ସୋଭିଏତ୍ କୃଷିର ପ୍ରଚଳିତ ଉତ୍ପାଦିକା ଶକ୍ତି ସ୍ତର ଅନୁରୂପ ହୁଏ । ଯୌଥକୃଷ ବ୍ୟବସ୍ଥା କୃଷକର ନିଜ ସ୍ୱାର୍ଥକୁ ସମସ୍ତ ଲୋକଙ୍କର ସ୍ୱାର୍ଥ ସହିତ ସମ୍ମିଳିତ କରେ । କୃଷିଉତ୍ପାଦନ ବୃଦ୍ଧିରେ ଏବଂ ଗ୍ରାମାଞ୍ଚଳର ଲୋକମାନଙ୍କ ଜୀବନଧାରଣ ମାନର ଉନ୍ନତିସାଧନ କରିବାରେ ଏହାର ବିରାଟ ସମ୍ଭାବନା ରହିଛି । ମଫସଲ ଅଞ୍ଚଳକୁ ଧୀରେ ଧୀରେ ସାମ୍ୟବାଦ ବା କମ୍ୟୁନିଜମ ଆଡକୁ ନେଇଯିବାରେ ଯୌଥକୃଷ ହେଉଛି, ଲେନିନଙ୍କର ପ୍ରସ୍ତାବିତ ମାର୍ଗ । ଏହି ମାର୍ଗ ଇତିହାସ ଦ୍ୱାରା ପରୀକ୍ଷିତ ଓ କୃଷକମାନଙ୍କ ବିଶିଷ୍ଟ ଗୁଣଗୁଡ଼ିକ ସହିତ ଖାପଖାଏ । ଯୌଥକୃଷ ସୋଭିଏତ୍‌ର କୃଷକମାନଙ୍କୁ ସମାଜବାଦକୁ ନେଇଯାଇଛି । ତାହାହିଁ ସେମାନଙ୍କୁ ସାମ୍ୟବାଦ ବା କମ୍ୟୁନିଜମକୁ ନେଇଯିବ ।

ଆମେ ଦେଖୁଛୁ, ଯେପରିକି ରାଷ୍ଟ୍ରସଂପତ୍ତି ଆଉ ଯୌଥସମବାୟିକ ଓ ଯୌଥକୃଷ ସଂପତ୍ତି ମଧ୍ୟରେ କିଛି ପାର୍ଥକ୍ୟ ରହିଛି । ତେବେ ପ୍ରଧାନ କଥା ହେଲା, ଦୁହିଁଙ୍କର ରୂପ ହେଉଛି ସମାଜବାଦୀ ସଂପତ୍ତିର ରୂପ । ଏହି ଉଭୟ ରୂପର ସଂପର୍କ ବିକାଶ ଲାଭ କଲେ ଯୌଥକୃଷ ଫାର୍ମ ସଂପତ୍ତି ଧୀରେ ଧୀରେ ସର୍ବସାଧାରଣ ସମ୍ପତ୍ତିର ନିକଟବର୍ତ୍ତୀ ହେବ ଓ ଭବିଷ୍ୟତରେ ତାହା ସହିତ ମିଶିଯାଇ ଗୋଟିଏ ପ୍ରକାରର ସମ୍ପତ୍ତି, କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମ୍ପତ୍ତିରେ ପରିଣତ ହେବ ।

ସମାଜବାଦ ଅମଳରେ କଣ ନିଜସ୍ୱ ସମ୍ପତ୍ତି ବୋଲି କିଛି ରହେ ? ହଁ, ରହେ ! ସେହି ସମ୍ପତ୍ତି ହେଉଛି, ନାଗରିକମାନଙ୍କର ଆୟ ଓ ସଞ୍ଚୟ, ନିଜସ୍ୱ ବ୍ୟବହାରର ଜିନିଷପତ୍ର, ଯୌଥକୃଷ ଗ୍ରାମୀଣମାନଙ୍କର ଘରର ଆସବାବ୍ ଆଦି । ସୋଭିଏତ୍ ନାଗରିକମାନଙ୍କର ନିଜସ୍ୱ ସମ୍ପତ୍ତି କାର୍ଯ୍ୟ କରିଆରେ ହିଁ ପ୍ରାପ୍ତ ହୋଇଥାଏ ।

## ସମାଜବାଦ ଓ କାର୍ଯ୍ୟ ଅବିଚ୍ଛେଦ୍ୟ

ଶହ ଶହ ବର୍ଷ ଧରି କାମ ଗୋଟାଏ ବିରାଟ କଠିନ ବୋଝ ହୋଇ ଆସିଛି । ଆଜି ପୁଞ୍ଜିବାଦୀ ସମାଜରେ ମଧ୍ୟ ତାହା ସେମିତି ରହିଛି । ଏହି ସମାଜରେ ଲୋକର ପଦମର୍ଯ୍ୟାଦା ତାର ସମ୍ପତ୍ତି ଉପରେ ନିର୍ଭର କରେ । ଜଣେ ଲୋକ ଅନ୍ୟକୁ ଯେତେ

ଅଧିକ ଲୁଣ୍ଠନ ଓ ଶୋଷଣ କରେ, ତାର ସମ୍ମାନ ଓ ମର୍ଯ୍ୟାଦା ସେତେ ଅଧିକ ହୁଏ । ଏକ୍ଷରେ ଏଟିଶିଆ ମେହନତକାରୀ ଲୋକ ଅତ୍ୟାଗ୍ରତ ନର୍ଯ୍ୟାତିତ ହୁଏ ।

ସମାଜବାଦ ଇତିହାସରେ ସର୍ବପ୍ରଥମେ ଶ୍ରମକୁ ଶୋଷଣରୁ ମୁକ୍ତ କରିଥିଲା । ଅକ୍ଟୋବର ବିପ୍ଳବ ପରେ ପରେ ଲେନିନ୍ ଲେଖିଥିଲେ, "ଶହ ଶହ ବର୍ଷ ପରେ ଇତିହାସରେ ସର୍ବ ପ୍ରଥମେ ଅନ୍ୟମାନଙ୍କ ଲାଗି କାମ କରିବାର, ଶୋଷକମାନଙ୍କ ଲାଗି ବାସ୍ତବରେ ଗଧ କାମ କରିବା ପରିବର୍ତ୍ତେ ପ୍ରତ୍ୟେକ ଲୋକ ପକ୍ଷରେ ନିଜ ଲାଗି କାମ କରିବାର ଓ ଆଧୁନିକ ଟେକ୍ନିକ ଓ ସଂସ୍କୃତିର ସମସ୍ତ କୃତିତ୍ୱ ଓ ଫଳକୁ ନିଜର କାର୍ଯ୍ୟରେ ବିନିଯୋଗ କରିବାର ସମ୍ଭାବନା ଆସିଛି ।"

ସମାଜବାଦୀ ସମାଜରେ ଶୋଷକ ବା ପରଶ୍ରମଜୀବୀ ଲୋକମାନଙ୍କର କୌଣସି ସ୍ଥାନ ନାହିଁ । ସମାଜବାଦ ଓ କାମ ହେଉଛି ଅବିଚ୍ଛେଦ୍ୟ । ସମାଜବାଦୀ ପ୍ରତିଷ୍ଠାନମାନଙ୍କରେ କାମର ସଂଗଠନ ଶ୍ରମଜୀବୀ ଲୋକମାନଙ୍କ ସଚେତନ ଶୃଙ୍ଖଳା ଉପରେ ନିର୍ଭର କରେ ।—"ଯିଏ କାମ କରିବ ନାହିଁ, ସିଏ ଖାଇବ ନାହିଁ ।" ସକ୍ଷମ ସମର୍ଥ ଲୋକମାନଙ୍କ ଲାଗି ଏହା ହେଉଛି ସମାଜବାଦ ଅମଳର ନିୟମ ।

ସମାଜବାଦୀ ସମାଜରେ ଜଣେ ନାଗରିକର ପଦମର୍ଯ୍ୟାଦା କେବଳ ତାର କାମ ଦ୍ୱାରା ହିଁ ନିର୍ଣ୍ଣୀତ ହୁଏ । ସୋଭିଏତ ୟୁନିଅନର କଲକାରଖାନା ଓ ଅଫିସର ଶ୍ରମିକ, ଯୌଥ ଫାର୍ମର ଚାଷୀ, ବିଭିନ୍ନ ବୃତ୍ତିର ଲୋକ, ବୈଜ୍ଞାନିକ ଟେକ୍ନିସିଆନ ବା କାରିଗର ଓ ଶିଳ୍ପୀଙ୍କର, ସଂକ୍ଷେପରେ କହିଲେ, ସମସ୍ତଙ୍କର, ଶ୍ରମ ପ୍ରତି ସମ୍ମାନ ଓ ମର୍ଯ୍ୟାଦା ପ୍ରଦର୍ଶନ କରାଯାଏ ।

ସୋଭିଏତ କମ୍ୟୁନିଷ୍ଟ ପାର୍ଟି ଓ ସରକାର ପ୍ରଧାନ ପ୍ରଧାନ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକୁ ଉତ୍ସାହିତ କରେ । ଯୁଦ୍ଧ ପରବର୍ତ୍ତୀ କାଳରେ ସୋଭିଏତ୍ ସରକାର ୨୦ ଲକ୍ଷରୁ ଊର୍ଦ୍ଧ୍ୱ ଶିଳ୍ପ ଶ୍ରମିକ, ଯୌଥଚାଷୀ, ବୈଜ୍ଞାନିକ, ଇଞ୍ଜିନିଅର, ଟେକ୍ନିସିଆନ, କୃଷି ବିଶେଷଜ୍ଞ, ଡାକ୍ତର, ଶିକ୍ଷକ ଓ ଅନ୍ୟ ଲୋକମାନଙ୍କୁ ସେମାନଙ୍କର ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ଲାଗି ସମ୍ମାନରେ ଭୂଷିତ କରିଛି । ଏହି ସମୟ ମଧ୍ୟରେ ୯୦୦୦ରୁ ଊର୍ଦ୍ଧ୍ୱ ନାଗରିକଙ୍କୁ ଶିଳ୍ପ, କୃଷି ଓ ବିଜ୍ଞାନ କ୍ଷେତ୍ରରେ ସେମାନଙ୍କର ସୁପ୍ରସିଦ୍ଧ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ଲାଗି ସମ୍ମାନର ସର୍ବୋଚ୍ଚ ଚିହ୍ନ "ହିରୋ ଅଫ୍ ସୋସାଲିଷ୍ଟ ଲେବର" ବା ସମାଜବାଦୀ ଶ୍ରମ-ବୀର ସମ୍ମାନରେ ମଣ୍ଡିତ କରିଛି ।

ସୋଭିଏତ୍ ରାଷ୍ଟ୍ର, ଦେଶବ୍ୟାପୀ ତାର ସବୁ ନାଗରିକଙ୍କ କାମର ଯୋଜନା କରୁଛି, କାମକୁ ସଂଗଠିତ କରୁଛି । ପୁଞ୍ଜିବାଦର ଅଭିଶାପ ବେକାର ସମସ୍ୟା ତାକୁ ସୋଭିଏତ୍ ୟୁନିଅନରେ ଚିରଦିନ ପାଇଁ ଲୋପ କରାଯାଇଛି, ଲୋକମାନଙ୍କର ଶ୍ରମକୁ

ଅବସ୍ଥାର ଉନ୍ନତି ଦିଗରେ ବହୁତ କାମ କରାଯାଇଛି । କଠୋର ଓ ଅତ୍ୟଧିକ ପରିଶ୍ରମ-ସାପେକ୍ଷ କାମଗୁଡ଼ିକର ଯାନ୍ତ୍ରିକୀକରଣ ହୋଇଛି । ଶିଳ୍ପରେ ନିରାପତ୍ତା ଓ ଅନ୍ୟାନ୍ୟ ଶ୍ରମ-ରକ୍ଷାକାରୀ ବ୍ୟବସ୍ଥା ଦିଗରେ ରାଷ୍ଟ୍ର ପ୍ରଚୁର ଅର୍ଥ ବ୍ୟୟ କରୁଛି । ଯେତେବେଳେ ପୁଞ୍ଜିପତି ଏକ ନୂଆ ମେସିନ ବସାଏ ବା କାମରେ ଲଗାଏ, ସେତେବେଳେ ତାର ଲକ୍ଷ୍ୟ ଶ୍ରମିକମାନଙ୍କ କାମକୁ ଲାଘବ କରିବା ନୁହେଁ, ସେମାନଙ୍କ ଜୀବନକୁ ସୁଖମୟ କରିବା ନୁହେଁ ବା ଉନ୍ନତ କରିବା ନୁହେଁ, ତାର ଲକ୍ଷ୍ୟ ହୁଏ କେମିତି ଅଧିକ ଲାଭ ପାଇଁ ଶୋଷଣ କରିବ । କିନ୍ତୁ ସମାଜବାଦ ଅଧୀନରେ ଟେକ୍‌ନିକାଲ ଉନ୍ନତି ବା କାରିଗରୀ ବିଦ୍ୟାର ଅଗ୍ରଗତି ସମଗ୍ର ସମାଜର ସ୍ୱାର୍ଥ-ସାଧନରେ ନିୟୋଜିତ ହୁଏ ଓ ହେଉଛି ।

ଶ୍ରମଜୀବୀ ଲୋକମାନଙ୍କର ସାଂସ୍କୃତିକ ସ୍ତର ଓ କାର୍ଯ୍ୟକୁଶଳତାର ସଦାସର୍ବଦା ବିକାଶ ବ୍ୟତିରେକେ ସମାଜବାଦୀ ଉତ୍ପାଦନ ବିଷୟରେ ଚିନ୍ତା କରାଯାଇ ନ ପାରେ । ତାଲିମ ଦେବା ଓ ଶିକ୍ଷାର ସୁବିଧା ସୁଯୋଗ ଦେବା ଦିଗରେ ସୋଭିଏତ୍ ସଙ୍ଗଠନରେ ବ୍ୟାପକ ବ୍ୟବସ୍ଥା ହୋଇଛି । ବ୍ୟକ୍ତିଗତ ଭାବେ ଜଣ ଜଣ କରି ଓ ସମଷ୍ଟିଗତ ଭାବରେ ଦଳକୁ ଦଳ ଲୋକମାନଙ୍କୁ ବିଭିନ୍ନ କାମ ସମ୍ପର୍କରେ ଶିକ୍ଷା ଦେବା, ସେକେଣ୍ଡାରୀ ଓ ଉଚ୍ଚ ଶିକ୍ଷାର ବ୍ୟବସ୍ଥା କରିବା, ବିଭିନ୍ନ ଧନ୍ଦା ସମ୍ବନ୍ଧରେ ତାଲିମ କରିବା ପ୍ରଭୃତିରେ ପ୍ରଶସ୍ତ ସୁବିଧାସୁଯୋଗ ଯୋଗା ଯାଇଛି । ସେହି ସଂକ୍ରାନ୍ତ ଅନୁଷ୍ଠାନସବୁ, ଶ୍ରମିକ, ଇଞ୍ଜିନିଅର, ଟେକ୍‌ନିସିଆନ, କୃଷିବିଦ୍ୟା-ବିଶାରଦ, ଶିକ୍ଷକ, ଡାକ୍ତର ଓ ପଶୁଚିକିତ୍ସାବିଦ୍‌ମାନଙ୍କୁ ଯୋଜନା ଅନୁଯାୟୀ ତାଲିମ କରୁଛି ଓ ଶିକ୍ଷା ଦେଉଛି ।

ଶିଳ୍ପ, କୃଷି ଓ ଜାତୀୟ ଅର୍ଥନୀତିର ଅନ୍ୟ ବିଭାଗମାନଙ୍କରେ ଏବଂ ସାଂସ୍କୃତିକ କ୍ଷେତ୍ରରେ କାର୍ଯ୍ୟ କରୁଥିବା କୁଶଳ ଶ୍ରମିକମାନଙ୍କ ସଂଖ୍ୟାର ଶତକଡ଼ା ହାର ପ୍ରତିବର୍ଷ ବୃଦ୍ଧି ପାଇବାରେ ଲାଗିଛି ।

ଶ୍ରମର ଉତ୍ପାଦିକା ଶକ୍ତି ( Productivity ) ର ଅଭିବୃଦ୍ଧି ହେଉଛି ଏକ ନୂତନ ସାମାଜିକ ବ୍ୟବସ୍ଥାର ନିଷ୍ପତ୍ତିମୂଳକ ବିଜୟସୂଚକ ବିଷୟ । ଶ୍ରମର ଉତ୍ପାଦନ-ଶୀଳତାର ଦ୍ରୁତ ବିକାଶ ପାଇଁ ସମାଜବାଦୀ ସମାଜ ହିଁ ସମସ୍ତ ବ୍ୟବ ଯୋଗାଏ । ବ୍ୟାପକ ଭାବେ ବୈଜ୍ଞାନିକ ଓ ପ୍ରଯୁକ୍ତି-ବିଦ୍ୟାଗତ ସାଫଲ୍ୟଗୁଡ଼ିକର ପ୍ରୟୋଗ ଅତି ଆଧୁନିକ । କାରିଗରୀ ପ୍ରକ୍ରିୟା, ମେସିନ ଯନ୍ତ୍ରପାତି ଓ ସ୍ୱୟଂକ୍ରିୟ ଯନ୍ତ୍ର ଆଦିର ବିନିଯୋଗ, ଉନ୍ନତତର ଶ୍ରମବ୍ୟବସ୍ଥା ଓ ସୁଦକ୍ଷ ଶ୍ରମଯୋଜନା ଫଳରେ ଶ୍ରମର ଉତ୍ପାଦିକା ଶକ୍ତି ବୃଦ୍ଧି ପାଏ । ଏହି ଉତ୍ପାଦିକା ଶକ୍ତିର ଅଭିବୃଦ୍ଧିରେ ଓ ଶ୍ରମର ସଂଗଠନର ବ୍ୟବସ୍ଥାକୁ ଉନ୍ନତ କରିବାରେ ସୋଭିଏତର ଲୋକମାନଙ୍କ ସ୍ୱାର୍ଥ ପ୍ରତ୍ୟକ୍ଷ ଭାବେ ସଂଯୁକ୍ତ ଓ ସେଥିରେ ସେମାନେ ଅତ୍ୟନ୍ତ ଆଗ୍ରହଶୀଳ ।

ଅଧିକ ଉତ୍ପାଦନ ଓ ଉତ୍ପାଦକା ଶକ୍ତିର ଅଭିବୃଦ୍ଧିରେ ସମାଜବାଦୀ ପ୍ରତିଦ୍ୱନ୍ଦିତାର ଆନ୍ଦୋଳନ ସୋଭିଏତ୍ ଅର୍ଥନୀତିର ଅଗ୍ରଗତି ଦିଗରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା। ଲକ୍ଷ ଲକ୍ଷ ଲୋକ ମୁଖ୍ୟତଃ ଏହି ଆନ୍ଦୋଳନରେ ଅଂଶ ଗ୍ରହଣ କରନ୍ତି। ଆଗୁଆ ଶ୍ରମିକ ଓ କୋଠଗୃହ ଫାର୍ମର ଚାଷୀମାନେ ସେମାନଙ୍କ ଉଚ୍ଚ ଉତ୍ପାଦକା ଶକ୍ତି ଦ୍ୱାରା ଅନ୍ୟମାନଙ୍କ ଆଗରେ ଆଦର୍ଶ ହୋଇ ଠିଆ ହୁଅନ୍ତି, ନିଜ ଆଦର୍ଶକୁ ଉପସ୍ଥାପିତ କରନ୍ତି, କାର୍ଯ୍ୟର ପ୍ରଣାଳୀକୁ ଲୋକପ୍ରିୟ କରାନ୍ତି ଏବଂ ଅନ୍ୟମାନଙ୍କ କାର୍ଯ୍ୟକୁ ଉନ୍ନତତର ହେବାରେ ସାହାଯ୍ୟ କରନ୍ତି।

## ଅର୍ଥନୈତିକ ପରିଚାଳନାର ନୀତି

ସମାଜବାଦ ଅଧୀନରେ ଅର୍ଥନୀତି ପରିଚାଳନା ଓ ସାଂସ୍କୃତିକ ବିକାଶ ଗଣତାନ୍ତ୍ରିକ କେନ୍ଦ୍ରବାଦ ଉପରେ ପ୍ରତିଷ୍ଠିତ।

ଗଣତାନ୍ତ୍ରିକ କେନ୍ଦ୍ରବାଦର ଅର୍ଥ—କେନ୍ଦ୍ରବାଦ ଓ ଗଣତନ୍ତ୍ର ଏହି ଦୁଇ ନୀତିର ଘନିଷ୍ଠ ସଂଯୋଗ ବା ନିବିଡ଼ ସମ୍ମିଶ୍ରଣ। ବିଭିନ୍ନ ପ୍ରତିଷ୍ଠାନ, ଶିଳ୍ପ ଓ ସମଗ୍ର ଅର୍ଥନୀତିର ପରିଚାଳନାରେ ଉକ୍ତ ଦୁଇ ନୀତିର ଏହି ଘନିଷ୍ଠ ସଂଯୋଗ ଘଟେ। ପରିଚାଳନାରେ ବ୍ୟକ୍ତିଗତ ଦାୟିତ୍ୱ, କେନ୍ଦ୍ରସଂସ୍ଥା ଓ ତାର ପ୍ରତିନିଧିମାନଙ୍କର (ଅର୍ଥାତ୍ ପ୍ରତ୍ୟେକ ପ୍ରତିଷ୍ଠାନର ଡିରେକ୍ଟର, ଅର୍ଥନୈତିକ କାଉନସିଲର ଚେୟାର-ମ୍ୟାନ ପ୍ରଭୃତିଙ୍କର) ନିର୍ଦ୍ଦେଶକୁ ଠିକ୍ ଠିକ୍ ପାଳନ କରାଯିବା, ଏଥିପାଇଁ ଆବଶ୍ୟକ ହୁଏ।

ଆଉ ମଧ୍ୟ ଗଣତାନ୍ତ୍ରିକ କେନ୍ଦ୍ରବାଦ କହିଲେ ପରିଚାଳନା କରିବାରେ ଓ ଉତ୍ପାଦନର ଯୋଜନା କରିବାରେ ଗଣ ସଙ୍ଗଠନ ଓ ସମସ୍ତ ଶ୍ରମଜୀବୀ ଲୋକଙ୍କର ସକ୍ରିୟ ଅଂଶ ଗ୍ରହଣକୁ ବୁଝାଏ।

ସମାଜବାଦ ନିର୍ମାଣ କରିବାକୁ ହେଲେ ଏକ କେନ୍ଦ୍ରୀୟ ଓ ଯୋଜନାବଦ୍ଧ ଅର୍ଥନୀତି ଗଠନ କରିବାକୁ ହେବ, ଏହା ଲେନିନ ଶିକ୍ଷା ଦେଇଥିଲେ।

ପୁଞ୍ଜିବାଦ ତୁଳନାରେ ସମାଜବାଦୀ ବ୍ୟବସ୍ଥାର ଗୋଟାଏ ବଡ଼ ସୁବିଧା ବା ସୁଯୋଗ ହେଉଛି ଯେ, ସମାଜବାଦୀ ଅର୍ଥନୀତି ଏକାବେଳକେ ବୈଜ୍ଞାନିକ ଭିତ୍ତି ଉପରେ ସମଗ୍ର ରାଷ୍ଟ୍ର-ବ୍ୟାପୀ ଯୋଜନା ଅନୁଯାୟୀ ବିକାଶ ଲାଭ କରେ।

ସୋଭିଏତ ଇଉନିଅନରେ ଜାତୀୟ ଅର୍ଥନୀତିର ବିକାଶ ଲାଗି ରାଷ୍ଟ୍ର ସ୍ୱଳ୍ପ-କାଳୀନ ଓ ଦୀର୍ଘକାଳୀନ ଯୋଜନା ପ୍ରସ୍ତୁତ କରେ। ସର୍ବମୋଟ କେତେ ପରିମାଣରେ ଶିଳ୍ପ ଓ କୃଷିଜାତ ଦ୍ରବ୍ୟ ଉତ୍ପାଦନ କରାଯିବ, ଅର୍ଥନୀତିର ବିଭିନ୍ନ

ଶିଳ୍ପଗୁଡ଼ିକ କେତେ ଓ କେଉଁ ପ୍ରକାର ଜିନିଷମାନ ଉତ୍ପାଦନ କରିବ, କେଉଁ କେଉଁ ନୂଆ ପ୍ରତିଷ୍ଠାନମାନ କେଉଁଠାରେ ନିର୍ମାଣ କରାଯିବ, ଏବଂ କେତେ ସଂଖ୍ୟାରେ କୁଶଳୀ ଲୋକଶକ୍ତି ତାଲିମ ହେବେ—ଏହା ସବୁ ଯୋଜନା ଦ୍ୱାରା ସ୍ଥିର ହୁଏ ।

ରାଷ୍ଟ୍ରର ଯୋଜନା ଅନୁସାରେ ପ୍ରତ୍ୟେକ ପ୍ରତିଷ୍ଠାନ ଲାଗି ଉତ୍ପାଦନ ପରିମାଣ ସ୍ଥିର ହୋଇଥାଏ । ସେହି ଅନୁସାରେ ତାହା ନିଜର କାର୍ଯ୍ୟକ୍ରମ ପ୍ରସ୍ତୁତ କରେ, ନୂଆ ନୂଆ ମେସିନ ଓ ଯନ୍ତ୍ରପାତିର ପ୍ରୟୋଗ, ପୁରୁଣା ମେସିନଗୁଡ଼ିକର ନୂତନୀକରଣ, କାରିଗରି ପ୍ରକ୍ରିୟା ଓ କାର୍ଯ୍ୟ ପ୍ରଣାଳୀର ଉନ୍ନତିସାଧନ ଏବଂ ଉତ୍ପାଦନ ଦ୍ରବ୍ୟର ଉନ୍ନତିବିଧାନ ଆଦିର ବ୍ୟବସ୍ଥା କରେ ।

କୋଠଖିଆ ଫାର୍ମସବୁ ମଧ୍ୟ ସ୍ୱଳ୍ପକାଳୀନ ଓ ଦୀର୍ଘକାଳୀନ ଯୋଜନା ତିଆରି କରନ୍ତି । କେତେ ପରିମାଣରେ ଜମି ଚାଷ ହେବ, କେଉଁ ଫସଲ କେତେ ପରିମାଣରେ ଉତ୍ପନ୍ନ କରାଯିବ, ପଶୁପାଳନର କିପରି ଉନ୍ନତି ସାଧିତ ହେବ, ଶ୍ରମ ଓ ପୁଞ୍ଜିର କେତେ ବିନିଯୋଗ ହେବ, ନିର୍ମାଣ କାର୍ଯ୍ୟ କେତେ ଦୂର କରାଯିବ ଏବଂ ଆୟରୁ କେତେ ବଣ୍ଟନ ହେବ ଇତ୍ୟାଦି ସେଥିରେ ସ୍ଥିର ହୋଇଥାଏ ।

ଯୋଜନା ତିଆରି କରିବା ହେଲା ପ୍ରଥମ ପଦକ୍ଷେପ ମାତ୍ର । ପ୍ରଧାନ କଥା ହେଉଛି, ତାହାକୁ କାର୍ଯ୍ୟକାରୀ କରିବା, ନୂଆ ନୂଆ ଗୁପ୍ତ ସମ୍ପଦକୁ ବାହାର କରିବା, ଏବଂ ଯୋଜନାର ନିର୍ଦ୍ଧାରିତ ଲକ୍ଷ୍ୟଠାରୁ ଅଧିକ ଉତ୍ପାଦନ କରିବା । ସମାଜବାଦୀ ଉତ୍ପାଦନ ଭିତରେ ଯେତେ ସବୁ ଲୁକ୍କାୟିତ ଶକ୍ତି ଅଛି, ତାକୁ ସବୁ କୌଣସି ଯୋଜନା ଅଟକଳ ବା ବିଚାର କରି ନ ପାରେ । ତାହା କାର୍ଯ୍ୟର ପ୍ରକ୍ରିୟା ମଧ୍ୟରେ, ସେସବୁର ସୃଜନଶୀଳତା ଭିତରେ ପ୍ରକାଶ ପାଏ ।

## ଶ୍ରମ ଲାଗି ପ୍ରାପ୍ୟ

ସମାଜବାଦୀ ସମାଜରେ ସବୁ ଲୋକଙ୍କର ଶ୍ରମ-କୁଶଳତା ଏକାଭଳି ଉଚ୍ଚସ୍ତରର ନୁହେଁ । କେତେକ ବିଭିନ୍ନ ପ୍ରକାରର ମେସିନ ଯନ୍ତ୍ରପାତି ଓ ଉପାୟ ଆଦି ସାହାଯ୍ୟରେ ଅତି ଜଟିଳ କାର୍ଯ୍ୟ କରନ୍ତି, ଆଉ କେତେକ ଅତି ସହଜ କାମ କରନ୍ତି । ଶାରୀରିକ ଓ ମାନସିକ କାର୍ଯ୍ୟ ମଧ୍ୟରେ ବେଶ୍ ଏକ ବିଶେଷ ପ୍ରଭେଦ ସେଠାରେ ଏବେ ବି ରହିଛି ।

ପ୍ରତ୍ୟେକ ସୋଭିଏତ ନାଗରିକ, ତାର ସମସ୍ତ ଶକ୍ତି ଓ ଦକ୍ଷତା ଯେପରି ପ୍ରୟୋଗ କରିପାରିବ, ସେ ଦିଗରେ ତାକୁ ଉତ୍ସାହିତ କରିବା ପାଇଁ ଏବଂ ସାମାଜିକ ଉତ୍ପାଦନର ବୃଦ୍ଧି ଲାଗି ତାକୁ ଅଧିକ ଆଗ୍ରହୀ କରିବା ପାଇଁ ସୋଭିଏତ ରାଷ୍ଟ୍ର

କାମର ପରିମାଣ ଓ ଗୁଣକୁ ବିଚାର କରି ତାର ଭିତ୍ତିରେ ମଜୁରି ବା ପାରିଶ୍ରମିକ ଦେବାର ନୀତି ସ୍ଥିର କରେ ।

ଯେଉଁ ଲୋକ ଅଧିକ ଓ ଭଲ କାମ କରେ, ସେ ଅଧିକ ମଜୁରି ପାଏ ।

ଏହା ଲୋକମାନଙ୍କୁ ନିଜର ଯୋଗ୍ୟତା ବୃଦ୍ଧି କରିବାରେ, ସେମାନେ ଉତ୍ପାଦନ କରୁଥିବା ଜିନିଷପତ୍ରର ପରିମାଣ ଓ ମାନକୁ ଉନ୍ନତ କରିବାରେ ଅନୁପ୍ରାଣିତ ଓ ପ୍ରୋତ୍ସାହିତ କରେ ।

ବୃତ୍ତିଶିଳ୍ପ ଉଦ୍ୟୋଗରେ ନିଯୁକ୍ତ ଲୋକମାନେ ଫୋଡ଼ଣ ରେଟ ବା ସମୟ ରେଟ୍ ଅନୁଯାୟୀ ତାଙ୍କର ପ୍ରାପ୍ୟ ପାଆନ୍ତି ।

କୋଠକୃଷି ଫାର୍ମମାନଙ୍କରେ ମୁଖ୍ୟତଃ ଶ୍ରମ-ଦିବସର ଇଉନିଟ୍ ଅନୁଯାୟୀ ସେମାନଙ୍କୁ ନିଜ ନିଜର ପ୍ରାପ୍ୟ ମିଳେ । ଏହା ହେଲା କୋଠକୃଷି ଫାର୍ମର ସଭ୍ୟମାନଙ୍କ ଶ୍ରମର ଏକ ମାପକାଠି । ଏହା ଦ୍ୱାରା କୋଠକୃଷି ଫାର୍ମର ଆୟରେ ତାଙ୍କର ଯାହା ଭାଗ ତାହା ସ୍ଥିର କରାଯାଏ । ଶ୍ରମଦିନର ଇଉନିଟ୍ ଆଉ ଶ୍ରମଦିନ, ଏହା ଏକା କଥା ନୁହେଁ । ଜଣେ କୋଠକୃଷୀ ଗୋଟିଏ ଶ୍ରମଦିନ ଭିତରେ ତାର ନିଜର ଦକ୍ଷତା, କାର୍ଯ୍ୟକୁଶଳତା, କାର୍ଯ୍ୟର ପ୍ରକୃତି ଓ ପରିମାଣ ଦୃଷ୍ଟିରୁ ଅଧା ଦିନ କାମ କରିପାରେ ବା ଦୁଇ ତିନି ଦିନ ତା' ଠାରୁ ଅଧିକା କାମ ମଧ୍ୟ କରିଦେଇପାରେ ।

ପ୍ରଥମ ଅବସ୍ଥାରେ କେତେକ କୋଠକୃଷି ଫାର୍ମ ଆୟକୁ ସଭ୍ୟମାନଙ୍କ ମଧ୍ୟରେ ସମାନ ସମାନ ଭାବରେ ବଣ୍ଟନ କରୁଥିଲେ, ପ୍ରତ୍ୟେକ କାମ କରୁଥିବା ଲୋକକୁ ଓ ତାଙ୍କ ଉପରେ ନିର୍ଭର କରୁଥିବା ଲୋକଙ୍କୁ ସମାନ ପରିମାଣରେ ଭାଗ ଦେଉଥିଲେ । କିନ୍ତୁ ଏହି ସମ ବଣ୍ଟନ ପ୍ରଥା ଅନୁଯାୟୀ ଜଣେ ବହୁଦକ୍ଷ-ସଂପନ୍ନ ଚେତନଶୀଳ ଲୋକ ଯାହା ପାଉଥିଲେ, ଆଉ ଜଣେ ଠାକୁଆ ଅଳସୁଆ ଲୋକ ମଧ୍ୟ ସେତିକି ସମାନ ଭାବରେ ପାଉଥିଲେ । ଏଥିରୁ ଜଣାଯାଏ ଯେ, ଏହା କେବେହେଲେ ଅଧିକ ଉତ୍ପାଦନ ଶକ୍ତିକୁ ପ୍ରୋତ୍ସାହିତ କରିପାରି ନ ଥିବ କିମ୍ବା କୋଠକୃଷି ଫାର୍ମକୁ ଅଧିକ ଦକ୍ଷ ଓ ସମର୍ଥ କରିବାରେ ସାହାଯ୍ୟକାରୀ ହୋଇନଥିବ । ଶ୍ରମଦିନର ଇଉନିଟ ବ୍ୟବସ୍ଥା ଅନୁଯାୟୀ କୋଠକୃଷି ଫାର୍ମ ସଭ୍ୟର ଆୟ ତାର ନିଜ କାମ ଉପରେ ନିର୍ଭର କରେ । ଜଣେ ଭଲ କାମ କଲେ ଅଧିକ ଶ୍ରମଦିନ ଇଉନିଟ ପାଏ; କୋଠକୃଷି ଫାର୍ମରୁ ତାଙ୍କୁ ପ୍ରାପ୍ୟ ସ୍ୱରୂପ ଅଧିକ ଉତ୍ପନ୍ନ ଓ ଅଧିକ ଅର୍ଥ ମିଳେ । ଯଦି ଜଣେ କୋଠକୃଷୀ, ଯୋଜନାରେ ଧାର୍ଯ୍ୟ ଲକ୍ଷ୍ୟଠାରୁ ଅଧିକ ଫସଲ ଉତ୍ପାଦନ କଲେ ବା ପଶୁପାଳନ କ୍ଷେତ୍ରରେ ଅଧିକ ଉତ୍ପାଦନ ଦେଖାଇ ପାରିଲେ, ତେବେ ସେ ଅଧିକା ପ୍ରାପ୍ୟ ପାଏ । ଏହି ଅଧିକା ପ୍ରାପ୍ୟର ପରିମାଣ ଫାର୍ମ ସଭ୍ୟମାନଙ୍କର ସାଧାରଣ ବୈଠକରେ ସ୍ଥିର କରାଯାଏ ।

ଏବେ ଶ୍ରେଷ୍ଠ ବା ଉତ୍କୃଷ୍ଟ କୋଠାକୁ ଫାର୍ମସବୁ କାମର ପରିମାଣ ଓ ଗୁଣ ଅନୁଯାୟୀ ଯାହା ଦେଉ ତାହା ନଗଦ ଅର୍ଥରେ ଦେଉଛନ୍ତି ।

ଲୋକମାନଙ୍କର ଜୀବନଧାରଣ ମାନର ନିରବଚ୍ଛିନ୍ନ ଉନ୍ନତସାଧନ ହେଉଛି ସମାଜବାଦର ନିୟମ । ଏହା ହେଲା ସମାଜବାଦୀ ଉତ୍ପାଦନର ପ୍ରଧାନ ଲକ୍ଷ୍ୟ । ସମାଜବାଦୀ ବିପ୍ଳବ ଏହାହିଁ ସୃଷ୍ଟି । ଅର୍ଥାତ୍ ଲୋକ ଜୀବନର ଉନ୍ନତ ସାଧନ ହେଉଛି ଏହାର ପ୍ରଧାନ ଓ ପ୍ରଥମ ଉଦ୍ଦେଶ୍ୟ । ଏଣୁ ଆଗ ଲୋକମାନଙ୍କର ଭୌତିକ ଓ ସାଂସ୍କୃତିକ ପ୍ରୟୋଜନୀୟତାକୁ ପୂରଣ କରିବା ଲାଗି ସମାଜବାଦୀ ଉତ୍ପାଦନ ସଙ୍ଗଠିତ ହୁଏ । କମ୍ୟୁନିଜମ୍ ବା ସାମ୍ୟବାଦ ଲୋକମାନଙ୍କ ଲାଗି, ଲୋକମାନଙ୍କ ସୁଖ ସୁବିଧା ଲାଗି ନିର୍ମିତ ହେଉଛି । ଲେନିନ ଲେଖିଥିଲେ, "ସମାଜର ସମସ୍ତ ସଭ୍ୟଙ୍କର ସୁଖ ସୁବିଧା ଓ ସର୍ବବ୍ୟାପୀ ବିକାଶକୁ ନିଶ୍ଚିତ କରିବା ଲାଗି"—ସମାଜବାଦୀ ବିପ୍ଳବ ଉତ୍ପାଦନର ଉପକରଣ ଉପରେ ବ୍ୟକ୍ତିଗତ ମାଲିକାନା ପରିବର୍ତ୍ତେ ସର୍ବସାଧାରଣ ମାଲିକାନା କାଏମ କରେ ଏବଂ ଏକ ଯୋଜନାବଦ୍ଧ ସୁସଂଗଠିତ ସାମାଜିକ ଉତ୍ପାଦନ ପ୍ରଚଳିତ କରାଏ ।

ଜୀବନଧାରଣ ମାନର ବୃଦ୍ଧି ପ୍ରଧାନତଃ ଜାତୀୟ ଆୟର ବୃଦ୍ଧି ଉପରେ ନିର୍ଭର କରେ । ତେବେ, ଜାତୀୟ ଆୟ କାହାକୁ କହନ୍ତି ? ଏହା କଣ ନେଇ ଗଢ଼ା ଓ ଗଢ଼ା ହୁଏ ବା କିପରି ?

ବର୍ଷ ମଧ୍ୟରେ ଯେ କୌଣସି ଦେଶ କୋଇଲା, ତେଲ, ମେସିନ, ଖାଦ୍ୟଶସ୍ୟ, ମାଛ ମାଂସ, ଲୁଗା, ଜୋତା, ବହି ଇତ୍ୟାଦି ବିଭିନ୍ନ ପ୍ରକାର ଜିନିଷ ବହୁ ପରିମାଣରେ ଉତ୍ପାଦନ କରେ । ସମାଜର ମୋଟ ଉତ୍ପାଦନ ପରିମାଣ ଓ ମୂଲ୍ୟ-ହିସାବ ଭାବରେ ଏ ସବୁର ହିସାବ ଧରାଯାଏ । ମୋଟ ସାମାଜିକ ଉତ୍ପନ୍ନ ପାଇବା ଲାଗି ଆମେ ଉତ୍ପାଦନର ଉପକରଣମାନଙ୍କୁ କାର୍ଯ୍ୟରେ ବିନିଯୋଗ କରୁ । ଯଥା: କଞ୍ଚାମାଲ, ଜାଳେଣି, କାରଖାନାର କୋଠାବାଡ଼ି, ମେସିନ ଯନ୍ତ୍ରପାତି, ବିହନ, ଗୋଖାଦ୍ୟ ଇତ୍ୟାଦି ନୂଆ ଉତ୍ପାଦନ ପାଇଁ ଖର୍ଚ୍ଚ କରୁ । ଅର୍ଥାତ୍ ଯେଉଁସବୁ ପଦାର୍ଥ ପୂର୍ବରୁ ଉତ୍ପନ୍ନ ହୋଇଥାଏ ଏବଂ ଯେଉଁଥିରେ ପୂର୍ବରୁ ଶ୍ରମ ବିନିଯୋଗ ହୋଇଥାଏ ତାହାକୁ ସବୁ କାର୍ଯ୍ୟରେ ଲଗାଉ ।

ବର୍ଷକ ମଧ୍ୟରେ ତିଆରି ହୋଇଥିବା ସାମାଜିକ ଉତ୍ପନ୍ନର ସର୍ବମୋଟ ମୂଲ୍ୟ ଏବଂ ତାକୁ ତିଆରି ବା ଉତ୍ପନ୍ନ କରିବା ଲାଗି ସେଥିରେ ବ୍ୟୟ ହୋଇଥିବା ପୁଞ୍ଜି ସମ୍ବଳର ମୂଲ୍ୟ ମଧ୍ୟରେ ରହୁଥିବା ପାର୍ଥକ୍ୟ ହେଉଛି ଜାତୀୟ ଆୟ ।

ଦୃଷ୍ଟାନ୍ତ ସ୍ୱରୂପ ଧରି ନିଆଯାଉ ଯେ, କୌଣସି ବର୍ଷରେ ସମସ୍ତ ଉତ୍ପାଦନ କ୍ଷେତ୍ରରେ ମୋଟ ବ୍ୟୟ ହେଲା ୪୦୦୦ କୋଟି ଟଙ୍କା, ଆଉ ସେହି ବର୍ଷର ଉତ୍ପନ୍ନ

ହୋଇଥିବା ଦର୍ବଂଗୁଡ଼ିକର ମୂଲ୍ୟ ହେଲା ୭୦୦୦ କୋଟି ଟଙ୍କା । ଏବେ ଏ କ୍ଷେତ୍ରରେ ସେ ବର୍ଷର ଜାତୀୟ ଆୟ ହେବ ୩୦୦୦କୋଟି ଟଙ୍କା । ଜାତୀୟ ଆୟ ହେଉଛି, ଏକ ଦେଶର ଅର୍ଥନୈତିକ ବିକାଶର ଅତି ସାଧାରଣ ପରିପୂର୍ଣ୍ଣ ସୂଚୀ, ଆଉ ତାର ସାମାଜିକ ବିକାଶର ସୂତ୍ର ବା ମୌଳିକ ହେତୁ ।

ଶିଳ୍ପ, କୃଷି,ପରିବହନ ଓ ନିର୍ମାଣ କାର୍ଯ୍ୟ ଆଦି ଭୌତିକ ଉତ୍ପାଦନର ବିଭିନ୍ନ ବିଭାଗମାନଙ୍କରେ ନିଯୁକ୍ତ ଥିବା ଲୋକମାନଙ୍କର ଶ୍ରମ ଦ୍ୱାରା ଏହି ଜାତୀୟ ଆୟ ସୃଷ୍ଟି ହୁଏ ।

ଅଣ-ଉତ୍ପାଦନ କ୍ଷେତ୍ର ସବୁ (ଯଥା: ଶିକ୍ଷା, ସ୍ୱାସ୍ଥ୍ୟ, ସଂସ୍କୃତି, ମ୍ୟୁନିସିପାଲିଟିର ଅର୍ଥନୀତି ଓ ରାଷ୍ଟ୍ରର ଶାସନ କଳ ଆଦି) କୌଣସି ଜାତୀୟ ଆୟ ସୃଷ୍ଟି କରେ ନାହିଁ । ତେବେ ଏହି ସବୁ କ୍ଷେତ୍ରରେ ନିଯୁକ୍ତ ଥିବା ଲୋକମାନଙ୍କ କାର୍ଯ୍ୟ ସମାଜବାଦୀ ସମାଜ ଲାଗି ଦରକାର, ଭୌତିକ ଉତ୍ପାଦନ ପାଇଁ ନିହାତି ଆବଶ୍ୟକ । ତେଣୁ, ଏ ସବୁ କାର୍ଯ୍ୟ ମଧ୍ୟ ସମାଜ ଉପଯୋଗୀ ଶ୍ରମ ।

ସୋଭିଏତ ବ୍ୟବସ୍ଥା ପ୍ରତିଷ୍ଠିତ ହେଲା ପର ଠାରୁ ସୋଭିଏତ ଇଉନିଅନର ଜାତୀୟ ଆୟ ମୁଣ୍ଡ ପିଛା ପ୍ରାୟ ୧୯ ଗୁଣ ବୃଦ୍ଧି ପାଇଛି ।

ସୋଭିଏତ ଇଉନିଅନର ଏହି ଜାତୀୟ ଆୟ ବୃଦ୍ଧି କେଉଁ କେଉଁ ବିଷୟ ଯୋଗୁଁ ଘଟିଛି ? ସର୍ବପ୍ରଥମ ଓ ସର୍ବପ୍ରଧାନ ବିଷୟ ହେଉଛି, ଜାତୀୟ ଅର୍ଥନୀତିର ପ୍ରତ୍ୟେକ ବିଭାଗରେ ଶ୍ରମର ଉତ୍ପାଦିକା ଶକ୍ତିର ବୃଦ୍ଧି । ଏହି ଜାତୀୟ ଆୟର ବୃଦ୍ଧି ବିଗରେ ଇଉନିଟ୍ ପ୍ରତି ଉତ୍ପାଦନ ଖର୍ଚ୍ଚର ହ୍ରାସ, ସୁସଂଗତ ଭାବେ କଳକବ୍ଜାର ବ୍ୟବହାର, କଳେଣି ଓ ଅନ୍ୟାନ୍ୟ ଉତ୍ପାଦନ ଉପକରଣମାନଙ୍କର ବ୍ୟବହାରରେ ମିତବ୍ୟୟିତା ବିଶେଷ ଗୁରୁତ୍ୱପୂର୍ଣ୍ଣ ହୁଏ ।

ଏହି ଜାତୀୟ ଆୟକୁ ସମାଜବାଦ ବ୍ୟବସ୍ଥାରେ ବଣ୍ଟନ କରାଯାଏ କିପରି ?

ପୁଞ୍ଜିବାଦ ବ୍ୟବସ୍ଥାରେ ଜାତୀୟ ଆୟର ଅର୍ଦ୍ଧାଧିକ ଭାଗ ମୁଷ୍ଟିମେୟ ଶୋଷକମାନେ ଶୋଷଣ କରନ୍ତି । ସମାଜବାଦୀ ବ୍ୟବସ୍ଥାରେ କର୍ମୀ କେବଳ ହେଉଛନ୍ତି ସମସ୍ତ ଜାତୀୟ ଆୟର ଅଧିକାରୀ । ଏହି ଦୃଷ୍ଟିରୁ ସୋଭିଏତ ଇଉନିଅନର ଜାତୀୟ ଆୟରୁ ତିନ ଚତୁର୍ଥାଂଶ ଉପଭୋଗ ପାଣ୍ଠିକୁ ଚାଲିଯାଏ । ତାହା ଲୋକମାନଙ୍କର ଭୌତିକ ଓ ସାଂସ୍କୃତିକ ଆବଶ୍ୟକତା ପୂରଣରେ ଲାଗେ । ଜାତୀୟ ଆୟର ଅବଶିଷ୍ଟାଂଶ ସଞ୍ଚୟ ପାଣ୍ଠିରେ ରହେ । ତାହା ସମଗ୍ର ଭାବେ ଦେଶର ଅନ୍ୟାନ୍ୟ ଆବଶ୍ୟକତା ପୂରଣ କରେ । ଏହି ସଞ୍ଚିତ ପାଣ୍ଠି ରାଷ୍ଟ୍ର କେଠାଉମ୍ ଫାର୍ମ ଓ କୋଅପରେଟିଭ ସୋସାଇଟିମାନଙ୍କ ହାତରେ ଥାଏ । ଏହା କୃଷି ଓ ଶିଳ୍ପ ଉତ୍ପାଦନର

ପ୍ରସାର କାର୍ଯ୍ୟରେ ନୂଆ ନୂଆ କଳକାରଖାନା, ଡୋଠାବାନ୍ଧ, ସିନେମା ଥିଏଟର, ଡାକ୍ତରଖାନା ଇତ୍ୟାଦିର ନିର୍ମାଣରେ ବ୍ୟୟ କରାଯାଏ । ସ୍ଟେଟ୍ କୋଠରୀ ଫାର୍ମ ଓ କୋଅପରେଟିଭ ସୋସାଇଟିମାନଙ୍କର ଗଚ୍ଛିତ ବା ରକ୍ଷିତ ପାଣ୍ଠି ମଧ୍ୟ ଏହି ସମ୍ବନ୍ଧ ଫଣ୍ଡକୁ ସୃଷ୍ଟି ହୋଇଥାଏ ।

## ୬ । ଲୋକମାନଙ୍କ ମଧ୍ୟରେ ଭାତୃଭାବ —ସମାଜବାଦୀ ସମାଜର ଶକ୍ତି

ସୋଭିଏତ୍ ଇଉନିଅନ ୧୦୦ରୁ ଅଧିକ ଜାତି—ଉପଜାତିମାନଙ୍କର ବାସସ୍ଥଳୀ । ଏହି ଜାତି-ଉପଜାତିସବୁ ଏକ ନିବିଡ଼ ଭାତୃତ୍ୱର ପାରିବାରିକ ବନ୍ଧନରେ ବନ୍ଧା—ଏହି ପାରିବାରିକ ବେଷ୍ଟନୀ ମଧ୍ୟରେ ଜାତି ଉପଜାତିଗୁଡ଼ିକର ସମସ୍ତ ସଭ୍ୟଙ୍କର ସାଧାରଣ ସ୍ୱାର୍ଥ ଆଉ ପ୍ରତ୍ୟେକ ସଭ୍ୟଙ୍କର ନିର୍ଦ୍ଦିଷ୍ଟ ସ୍ୱାର୍ଥ ସଂଗତିମୟ ଭାବେ ସମ୍ମିଳିତ ହୋଇ ରହିଛି ।

ସୋଭିଏତ୍ ଜାତିମାନଙ୍କର ଏହି ପ୍ରକାର ଅଖଣ୍ଡ ଗୋଷ୍ଠୀଭାବ ଅକ୍ଟୋବର ସମାଜବାଦୀ ବିପ୍ଳବ ଓ ସୋଭିଏତ୍ ୟୁନିଅନରେ ସମାଜବାଦର ବିଜୟ ହେତୁରୁ ଏବଂ ଜାତିମାନଙ୍କ ସଂପର୍କରେ ପାର୍ଟିର ଲେନିନବାଦୀ ନୀତି ଯୋଗୁଁ ସୁପ୍ରତିଷ୍ଠିତ ହୋଇଛି ।

### ଜାତିମାନଙ୍କ ସଂପର୍କରେ ଲେନିନ୍‌ଙ୍କ ନୀତି

ବହୁ ଜାତି, ଉପଜାତି ଓ ପ୍ରଜାତିଙ୍କୁ ନେଇ ମନୁଷ୍ୟ ସମାଜ ଗଠିତ । ଶ୍ରେଣୀ ଅସମତା ସହିତ ଶୋଷଣକାରୀ ବ୍ୟବସ୍ଥା, ଜାତିଗତ ଅସାମ୍ୟ, ଜାତୀୟ ଅତ୍ୟାଚାର ଏବଂ ଜାତି ଜାତି ମଧ୍ୟରେ ଶତ୍ରୁତା ଓ ବୈରିଭାବ ଜାତ କରାଏ । କିନ୍ତୁ ଜାତି କାହାକୁ କହନ୍ତି ? ଜାତୀୟ ଅସମତାର ଉଦ୍ଭବ ହୁଏ କିପରି ? କିପରି ବା ତାହାକୁ ଦୂର କରାଯାଇ ପାରେ ?

ଜାତି ହେଲା ଗୋଟାଏ ବୃହତ ଗୋଷ୍ଠୀ ସେହିସବୁ ଲୋକଙ୍କର, ଯେଉଁମାନେ କି ଦୀର୍ଘ ଐତିହାସିକ ବିକାଶ କାଳ ମଧ୍ୟରେ ଅନେକଗୁଡ଼ିଏ ସାଧାରଣ ବିଶେଷତ୍ୱ ବା ବୈଶିଷ୍ଟ ଗୁଣରେ ବିକାଶ ଆଣିଥାନ୍ତି । ଏହି ବୈଶିଷ୍ଟ ଗୁଣଗୁଡ଼ିକ କଣ ? ଗୋଟିଏ ଜାତିର ପ୍ରତ୍ୟେକ ଲୋକ ଗୋଟିଏ ପ୍ରକାର ଭାଷା କହନ୍ତି । ତେବେ ଗୋଟାଏ ପ୍ରକାର ଭାଷା ଭାଷୀ ଲୋକେ ସବୁବେଳେ ସେହି ଗୋଟାଏ ଜାତି ମଧ୍ୟରେ ରହନ୍ତି ନାହିଁ । ଦୃଷ୍ଟାନ୍ତ ସ୍ୱରୂପ, ଇଂରାଜ ଓ ଆମେରିକାର ଲୋକମାନେ ଏକା ଭାଷା ବ୍ୟବହାର କରନ୍ତି । କିନ୍ତୁ ସେମାନେ ଗୋଟାଏ ଜାତି ନୁହନ୍ତି । କାରଣ ପ୍ରଥମତଃ ସେମାନେ

ପୃଥିବୀର ଭିନ୍ନ ଭିନ୍ନ ଅଂଶରେ ବାସ କରନ୍ତି । ଗୋଟାଏ ଜାତିର ଲୋକ ନିର୍ଦ୍ଦିଷ୍ଟ ଗୋଟାଏ ଅଞ୍ଚଳରେ ବାସ କରନ୍ତି । ଆଉ ମଧ୍ୟ ସେମାନେ ଆପଣା ଆପଣା ମଧ୍ୟରେ ଘନିଷ୍ଠ ଅର୍ଥନୈତିକ ସମ୍ବନ୍ଧ ସ୍ଥାପନ କରନ୍ତି ।

ଅତୀତରେ ଯେତେବେଳେ ଅର୍ଥନୈତିକଭାବରେ ଯୋଗାଯୋଗଶୂନ୍ୟ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ରାଜ-ଶାସିତ ଅଞ୍ଚଳମାନଙ୍କୁ ନେଇ ଦେଶ ଗଠିତ ହୋଇଥିଲା, ସେତେବେଳେ 'ଜାତି' ବୋଲି କିଛି ନ ଥିଲା, ପୁଞ୍ଜିବାଦର ବିକାଶ ସଙ୍ଗେ ସଙ୍ଗେ ଏକ ଅଖଣ୍ଡ ବଜାରର ସୃଷ୍ଟି ହେଲା । ଏକ ସାଧାରଣ ଅର୍ଥନୈତିକ ଜୀବନ ଦେଖାଦେଲା । ଫଳରେ ଏହା ସହିତ ହିଁ ଜାତିମାନଙ୍କର ଆବିର୍ଭାବ ଘଟିଲା । ଯେଉଁ ସବୁ ଲୋକେ ଏକା ଅଞ୍ଚଳରେ ବସବାସ କରୁଥିଲେ, ସେମାନେ ଗୋଟାଏ ସାଧାରଣ ଅର୍ଥନୈତିକ ଜୀବନରେ ବଦ୍ଧ ହୋଇ ରହିଲେ ; ଏକ ପ୍ରକାର ଭାଷା କହିଲେ, ତା ସହିତ ସେମାନଙ୍କର ଆହୁରି ମଧ୍ୟ ଗୋଟାଏ ସାଧାରଣ ଚରିତ୍ରଗତ ଗୁଣ—ସାଧାରଣ ନୈତିକ ଓ ମନସ୍ତାତ୍ତ୍ୱିକ ଗୁଣ ଦେଖାଦେଲା । ଏହିସବୁ ଜାତୀୟ ସଂସ୍କୃତି ମଧ୍ୟରେ ପ୍ରକାଶ ପାଇଲା ।

ଏସବୁକୁ ଉପାଦାନ ଭାବରେ ଏକାଠି ବିଚାର କଲେ ଏହା ହିଁ ଏକ ଜାତି ସୃଷ୍ଟି ବିଷୟ ନିର୍ଣ୍ଣୟ କରେ । ଅତଏବ ବିଭିନ୍ନ ପ୍ରକାରର ଜାତି ଓ ଉପଜାତିମାନଙ୍କ ମଧ୍ୟରୁ ଜାତିର ଉଦ୍ଭବ ହୋଇଛି । ଏହା କିନ୍ତୁ ସବୁ ଦେଶରେ ଏକ ସଙ୍ଗରେ ଘଟି ନାହିଁ । ଯେଉଁସବୁ ଦେଶରେ ଆଗ ପୁଞ୍ଜିବାଦର ଉଦ୍ଭବ ହୋଇଛି, ସେଠାରେ ଜାତିମାନେ ଆଗ ରୂପ ଗ୍ରହଣ କରିଛନ୍ତି ।

ଅତି ଉନ୍ନତ ଓ ଅର୍ଥନୈତିକଭାବେ ବଳିଷ୍ଠ ଜାତିମାନଙ୍କର ପୁଞ୍ଜିପତିମାନେ ନିଜ ନିଜ ଦେଶର ଶ୍ରମଜୀବୀ ଲୋକଙ୍କୁ ଶୋଷଣ କରନ୍ତି, ତା ସଙ୍ଗରେ ଆହୁରି ମଧ୍ୟ ଅନ୍ୟ ଜାତି ବସବାସ କରୁଥିବା ଅଞ୍ଚଳକୁ ସବୁ ଦଖଲ କରନ୍ତି । ସେମାନେ ଦୁର୍ବଳ ଓ ଅର୍ଥନୈତିକ ଭାବେ ପଶ୍ଚାତ୍ପଦ ଦେଶମାନଙ୍କୁ ବଳପୂର୍ବକ କବଳିତ ଓ ଅଧୀନସ୍ଥ କରି ଉପନିବେଶମାନଙ୍କରେ ପରିଣତ କରନ୍ତି । ସେହି ସବୁ ଦେଶରୁ ଧନସଂପଦ ଲୁଣ୍ଠନ କରନ୍ତି, ସେ ସବୁରେ ଅର୍ଥନୈତିକ ଓ ସାଂସ୍କୃତିକ ବିକାଶର ପଥ ରୋଧ କରନ୍ତି । ଏହି କାରଣରୁ ଜାତୀୟ ଅସମତା ଓ ଜାତୀୟ ଅତ୍ୟାଚାର ପୁଞ୍ଜିବାଦର ବିକାଶ ସହିତ ଏକ ସଙ୍ଗରେ ଉଦ୍ଭବ ହୋଇଥାଏ । ତାହା ଅନ୍ୟ ଦିଗରେ ଜାତୀୟ ମୁକ୍ତି ଆନ୍ଦୋଳନକୁ ଜନ୍ମ ଦିଏ ।

କମ୍ୟୁନିଷ୍ଟମାନେ ସମସ୍ତ ପ୍ରକାର ଜାତୀୟ ପରାଧୀନତାକୁ ସଦାସର୍ବଦା ବିରୋଧ କରନ୍ତି । ସେମାନେ ପ୍ରତ୍ୟେକ ଜାତିର ଅବାଧ ସ୍ୱାଧୀନ ଜାତୀୟ ବିକାଶର ପୂର୍ଣ୍ଣ ସୁଯୋଗ ସହିତ ଜାତିଜାତି ମଧ୍ୟରେ ସମ୍ପୂର୍ଣ୍ଣ ସମତା ଚାହାନ୍ତି । ଲେନିନବାଦୀ

ପାର୍ଟି, କାରଣ ଝାର ଶାସନ ଓ ପୁଞ୍ଜିବାଦର ଧ୍ୱଂସ ଲାଗି ଏବଂ ସମାଜବାଦର ବିଜୟ ଲାଗି ଯେଉଁ ସଂଗ୍ରାମ କରିଥିଲା ସେହି ସଂଗ୍ରାମ ମଧ୍ୟ ଏକ ସଙ୍ଗରେ ଜାତୀୟ ଅତ୍ୟାଚାର ବିରୋଧରେ ସଂଗ୍ରାମ ଥିଲା, ରୁଷର ଲୋକମାନଙ୍କର ସମତା ଓ ସ୍ୱାଧୀନତା ର ସଂଗ୍ରାମ ଥିଲା ।

ଶହ ଶହ ବର୍ଷ ଧରି ଶୋଷକ ଶ୍ରେଣୀମାନେ ଜାତିମାନଙ୍କ ମଧ୍ୟରେ ଯେଉଁସବୁ ଘୃଣା ବିଦ୍ୱେଷର ନିଆଁକୁ ଜଳାଇ ଖେଳାଇ ରଖିଥିଲେ—ପାର୍ଟି ତାହା ସ୍ଥାନରେ ଭ୍ରାତୃତ୍ୱର ଭାବ ପ୍ରସାରିତ କଲା ।

ସବୁ ପ୍ରଥମରୁ ତାହା ତାର କର୍ଯ୍ୟକ୍ରମର ମୌଳିକ ଦାବୀ ଭାବରେ ଜାତୀୟ ଅତ୍ୟାଚାରର ବିଲୋପ ଆଉ ରାଜନୈତିକ ଓ ସାଧାରଣ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଜାତିମାନଙ୍କର ସାମ୍ୟ ପ୍ରତିଷ୍ଠା ବିଷୟ ଘୋଷଣା କଲା । ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦାବୀ ଆକାରରେ ଉପସ୍ଥାପିତ କଲା, ଜାତିମାନଙ୍କର ଅଲଗା ହୋଇଯାଇ ସ୍ୱତନ୍ତ୍ର ସ୍ୱାଧୀନ ରାଷ୍ଟ୍ର ଗଠନ କରିବାର ଅଧିକାର ସହିତ ଆତ୍ମନିୟନ୍ତ୍ରଣ ଅଧିକାର ରହିବା ଉଚିତ । ଅନ୍ୟ କଥାରେ କହିଲେ, ପ୍ରତ୍ୟେକ ଜାତି ପକ୍ଷରେ ନିଜର ଭାଗ୍ୟ ନିଜେ ନିଷ୍ପତ୍ତି କରିବାର ଅଧିକାର, ଅର୍ଥାତ ତାହା ଏକ ନିର୍ଦ୍ଦିଷ୍ଟ ରାଷ୍ଟ୍ର ମଧ୍ୟରେ ରହିବ କିମ୍ବା ସେଥିରୁ ଅଲଗା ହୋଇ ଆଉ ଏକ ସ୍ୱାଧୀନ ରାଷ୍ଟ୍ର ଗଠନ କରିବ; ଏହି ଅଧିକାର ରହିବା ଆବଶ୍ୟକ ।

ଅବଶ୍ୟ ଆତ୍ମନିୟନ୍ତ୍ରଣର ଅର୍ଥ ନୁହେଁ ଯେ, ଜାତିମାନେ ସବୁକୁ ସବୁ ନିଶ୍ଚୟ ପରସ୍ପରଠାରୁ ଅଲଗା ହୋଇଯିବେ ଏବଂ ଅନେକଗୁଡ଼ିଏ ଛୋଟ ଛୋଟ ସ୍ୱାଧୀନ ରାଷ୍ଟ୍ର ଗଠନ କରିବେ । ପ୍ରକୃତରେ କିନ୍ତୁ ବହୁ ଜାତିର ଭ୍ରାତୃତ୍ୱମୂଳକ ଓ ପରସ୍ପରର ସାହାଯ୍ୟ ସହଯୋଗ ଉପରେ ପ୍ରତିଷ୍ଠିତ ଗୋଟିଏ ରାଷ୍ଟ୍ରର ପରିସର ମଧ୍ୟରେ ରହିବା ଦ୍ୱାରା ସେମାନଙ୍କର ଅର୍ଥନୈତିକ ଓ ସାଂସ୍କୃତିକ ବିକାଶ ସହଜ ହୁଏ, ସମାଜବାଦୀ ସମାଜ ଗଠନ ସୁଗମ ହୁଏ ।

ତେଣୁ ଜାତିମାନଙ୍କର ଆତ୍ମନିୟନ୍ତ୍ରଣ ଅଧିକାର ରହିବା ଉଚିତ, ଏହି ଦାବୀ ସହିତ କମ୍ୟୁନିଷ୍ଟମାନେ, ମାର୍କସବାଦ-ଲେନିନବାଦର ଆଉ ଏକ ଅତି ଗୁରୁତ୍ୱପୂର୍ଣ୍ଣ ନୀତି ଅର୍ଥାତ୍ ସର୍ବହରାର ଆନ୍ତର୍ଜାତୀୟତା,—ଶ୍ରମଜୀବୀମାନଙ୍କର ସାଧାରଣ ଶ୍ରେଣୀ ଶତ୍ରୁ ବିରୁଦ୍ଧରେ ବିଭିନ୍ନ ଜାତିର ଶ୍ରମଜୀବୀମାନଙ୍କର ମିଳିତ ସଂଗ୍ରାମକୁ ଦୃଢ଼ଭାବରେ ପ୍ରକାଶ କଲା ।

କମ୍ୟୁନିଷ୍ଟମାନେ କେବଳ ଜାରଶାହୀ ଓ ରୁଷୀୟ ପୁଞ୍ଜିପତି ଜମିମାଲିକମାନଙ୍କ ଅନୁସୃତ ଅତ୍ୟାଚାର ନୀତି ବିରୁଦ୍ଧରେ ଲଢ଼ି ନ ଥିଲେ, ଅଣରୁଷିୟ ଜାତିମାନଙ୍କର ପୁଞ୍ଜିପତି ଓ ଜମିମାଲିକ ଯେଉଁମାନେ କି ତାଙ୍କ ନିଜର ଜାତି ପ୍ରତି ମମତା ଓ

ଉଦ୍‌ବେଗ ପ୍ରକାଶ କରିବା ଆଳରେ ଅନ୍ୟ ଜାତିମାନଙ୍କ ମଧ୍ୟରେ ଘୃଣା ବିଦ୍ୱେଷ ସୃଷ୍ଟି କରିବାର ଉଦ୍ୟମ କରୁଥିଲେ, ସେମାନଙ୍କ-ବିରୁଦ୍ଧରେ ମଧ୍ୟ ଲଢ଼ି ଥିଲେ ।

ଲେନିନ୍ କହୁଥିଲେ, "ଆମେ ଜାତିମାନଙ୍କର ସ୍ୱେଚ୍ଛାକୃତ ମିଳନ ଚାହୁଁ ; ସେହି ମିଳନ କି, ଏକ ଜାତି ଦ୍ୱାରା ଅନ୍ୟ ଜାତି ଉପରେ କୌଣସି ପ୍ରକାର ବାଧ୍ୟ ବାଧକତାକୁ ପ୍ରଶ୍ରୟ ଦିଏ ନାହିଁ, ସେହି ମିଳନ ପୂର୍ଣ୍ଣ ଆସ୍ଥା ଓ ବିଶ୍ୱାସ ଉପରେ, ଭ୍ରାତୃତ୍ୱମୂଳକ ଏକତାର ସୁସ୍ପଷ୍ଟ ସ୍ୱୀକୃତି ଉପରେ ଏବଂ ପୂରାପୂରି ସ୍ୱେଚ୍ଛାକୃତ ରାଜିନାମା ଉପରେ ପ୍ରତିଷ୍ଠିତ ଥାଏ ।"

ଅତଏବ ଜାତିମାନଙ୍କ ସଂପର୍କରେ କମ୍ୟୁନିଷ୍ଟମାନଙ୍କ ନୀତିର ମୁଖ୍ୟ ବିଷୟ-ଗୁଡ଼ିକ ହେଲା—ସବୁ ଜାତି ପୂରାପୂରି ସମାନ, ପ୍ରତ୍ୟେକ ଜାତି ପ୍ରତ୍ୟେକ ଜାତିର ସମାନସ୍କନ୍ଧ, ଜାତିମାନଙ୍କ ଉପରେ କୌଣସି ପ୍ରକାରର ଅତ୍ୟାଚାରକୁ ଆଦୌ ପ୍ରଶ୍ରୟ ଦିଆଯାଇ ନ ପାରେ । ସେଭଳି ପ୍ରଶ୍ରୟ ଦିଆଯିବା ଅପରାଧମୂଳକ, ଜାତିମାନଙ୍କର ଏକ ବଳିଷ୍ଠ ସଂଗଠନ ବାଧ୍ୟବାଧକତା ସୂତ୍ରରେ ପ୍ରତିଷ୍ଠିତ ହେବ ନାହିଁ, ପ୍ରତିଷ୍ଠିତ ହେବ ସ୍ୱେଚ୍ଛାମୂଳକ ମିଳନ ଯୋଗେ, ସ୍ୱାଧୀନତା ଓ ସମତା ଉପରେ; ଯାହା କି ପୁଞ୍ଜିବାଦର ଧ୍ୱଂସ ପରେ ହିଁ କେବଳ ସମ୍ଭବପର ।

## ସମାନସ୍କନ୍ଧ ଜାତିମାନଙ୍କର ମିଳନ

ସୋଭିଏତ ୟୁନିୟନ ହେଉଛି ପ୍ରଥମ ଦେଶ, ଯିଏ କି ଜାତିମାନଙ୍କର ଅତ୍ୟାଚାରକୁ ପୂରାପୂରି ଲୋପ କଲା । ଜାତିମାନଙ୍କ ମଧ୍ୟରେ ସମତା ପ୍ରତିଷ୍ଠା କଲା, ସ୍ୱାଧୀନ ଜାତିମାନଙ୍କର ଅଭୂତପୂର୍ବ ଭ୍ରାତୃତ୍ୱମୂଳକ ଗୋଷ୍ଠୀ ଗଠନ କଲା । ସୋଭିଏତ୍ ୟୁନିୟନର ସବୁଠାରୁ ଏକ ବିରାଟ କୃତିତ୍ୱ ହେଉଛି, ଏକ ବହୁଜାତି ପୂର୍ଣ୍ଣ ସମାଜବାଦୀ ରାଷ୍ଟ୍ର—ସୋଭିଏତ୍ ସୋସାଲିଷ୍ଟ ରିପବ୍ଲିକମାନଙ୍କର ୟୁନିୟନ ଗଠନ ।

ଅକ୍‌ଟୋବର ବିପ୍ଳବ ପରେ ଯେଉଁ ସୋଭିଏତ୍ ପ୍ରଜାତନ୍ତ୍ରମାନ ଗଢ଼ିଉଠିଥିଲା, ସେସବୁ ନିଜେ ନିଜେ ଏକ ସଂଯୁକ୍ତ ରାଷ୍ଟ୍ର ମଧ୍ୟରେ ମିଳିତ ହେବା ଦିଗରେ ଉଦ୍ୟମଶୀଳ ହେଲେ ।

ଏହା କରିବାରେ ସେସବୁକୁ କିଏ ପ୍ରୋତ୍ସାହିତ କଲା ? ଏ ଦିଗରେ ସର୍ବପ୍ରଥମ ହେଲା—ଅର୍ଥନୈତିକ ବିଷୟ; ପ୍ରଜାତନ୍ତ୍ରଗୁଡ଼ିକ ଦେଖିଲେ ସମାଜବାଦ ନିର୍ମାଣରେ ସଫଳତା ହାସଲ କରିବାକୁ ହେଲେ ସମସ୍ତ ସୋଭିଏତ ପ୍ରଜାତନ୍ତ୍ରର ଆର୍ଥିକ ସମ୍ପଦକୁ ଏକାଠି କରିବାକୁ ପଡ଼ିବ । ଯଦି ସେମାନେ ଏକତ୍ର ଏକ ପରିବାର ଭଳି ବାସ କରନ୍ତି, ତେବେ ଅଧିକ ବିକାଶ ସୁଗମ ହେବ ।

ଆନ୍ତର୍ଜାତୀୟ ଅବସ୍ଥା ଓ ଶତ୍ରୁତାପୂର୍ଣ୍ଣ ପୁଞ୍ଜିବାଦୀ ଦୁନିଆ ବିରୁଦ୍ଧରେ ଆପଣାର ପ୍ରତିରକ୍ଷାକୁ ଶକ୍ତିଶାଳୀ କରିବାର ଆବଶ୍ୟକତା ମଧ୍ୟ ସୋଭିଏତ ପ୍ରଜାତନ୍ତ୍ର-ମାନଙ୍କର ମିଳନକୁ ପ୍ରଣୋଦିତ କରିଥିଲା । ଏକାକୀ କୌଣସି ପ୍ରଜାତନ୍ତ୍ର, ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ବିରୁଦ୍ଧରେ ଆପଣାର ସ୍ୱାଧୀନତା ରକ୍ଷାକରିବାକୁ ସମର୍ଥ ହୋଇ ନ ଥାନ୍ତା ।

ସାମ୍ରାଜ୍ୟବାଦୀମାନଙ୍କର ଆନ୍ତର୍ଜାତୀୟ କୂଟନୀତି ଓ ବେପାର ବାଣିଜ୍ୟ ସଂକ୍ରାନ୍ତ ଚକ୍ରାନ୍ତ ବିରୁଦ୍ଧରେ ସୋଭିଏତ୍ ପ୍ରଜାତନ୍ତ୍ରମାନଙ୍କ ପକ୍ଷରେ ଏକାଠି କାର୍ଯ୍ୟ କରିବାର ମଧ୍ୟ ଆବଶ୍ୟକତା ଥିଲା ।

ସୋଭିଏତ ବ୍ୟବସ୍ଥାର ଖୋଦ୍ ପ୍ରକୃତି ହିଁ ସୋଭିଏତ ପ୍ରଜାତନ୍ତ୍ରମାନଙ୍କୁ ଏକାଠି ମିଳିତ ହେବାକୁ ପ୍ରୋତ୍ସାହିତ କରିଥିଲା । କାରଣ, ସେହି ପ୍ରକୃତି ହେଉଛି ସର୍ବସାଧାରଣ ମାଲିକାନା ଉପରେ ପ୍ରତିଷ୍ଠିତ, ଲୋକମାନଙ୍କ ସମ୍ପର୍କକୁ ଏକତ୍ର ଅଧିକ ଘନିଷ୍ଠତର କରେ ଏବଂ ପାରସ୍ପରିକ ସାହାଯ୍ୟ ସହଯୋଗର ଭିତ୍ତିରେ ସବୁବେଳେ କାର୍ଯ୍ୟକାରୀ ।

ତେଣୁ ୧୯୨୨ରେ ଯେଉଁ ସୋଭିଏତ୍ ପ୍ରଜାତନ୍ତ୍ରମାନେ ଜାର ଶାସିତ ରୁଷ ଅଞ୍ଚଳରେ ଗଢ଼ି ଉଠିଥିଲେ ସେମାନେ ଇଉନିଅନ ଅଫ୍ ସୋଭିଏଟ୍ ସୋସାଲିଷ୍ଟ ରିପବ୍ଲିକ ଗଠନ କରିବା ଲାଗି ମିଳିତ ହେଲେ ।

କମ୍ୟୁନିଷ୍ଟ ପାର୍ଟି ଆଗରେ ଏକ ପ୍ରଧାନ ଲକ୍ଷ୍ୟ ହେଲା, ପୂର୍ବର ଶାସନ ଅମଳର ଲୋକେ ଯେଉଁସବୁ ପ୍ରକୃତଗୁଡ଼ିକ ଅସମତାର ଉତ୍ତରାଧିକାରୀ ହୋଇ ରହିଥିଲେ ତାକୁ ଦୂର କରିବା । ପୂର୍ବର ଅତ୍ୟାଚାରିତ ଲୋକମାନଙ୍କର ଆର୍ଥିକ ଓ ସାଂସ୍କୃତିକ ଅଗ୍ରଗତି ଉପରେ ଏକ ବ୍ୟାପକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଗଲା ।

ଲେନିନ ଶିକ୍ଷା ଦେଇଥିଲେ ଯେ, ଅଗ୍ରଗାମୀ ଉନ୍ନତ ଦେଶସବୁର ସର୍ବହରାଙ୍କ ସାହାଯ୍ୟରେ, ଅର୍ଥନୈତିକଭାବେ ପଶ୍ଚାତ୍‌ପଦ ଯେଉଁ ଲୋକେ ପୁଞ୍ଜିବାଦୀ ବିକାଶର ମଧ୍ୟଦେଇ ଯିବାକୁ ସମୟ ପାଇ ନାହାନ୍ତି, ସେମାନେ ପୁଞ୍ଜିବାଦକୁ ଏଡ଼ି ଦେଇ ବା ଛାଡ଼ିଦେଇ ସମାଜବାଦକୁ ଚାଲିଯାଇ ପାରନ୍ତି ଓ ତାପରେ ସେଠୁ କମ୍ୟୁନିଜମ ବା ସାମ୍ୟବାଦକୁ ଗତି କରି ପାରନ୍ତି ।

ରୁଷୀୟ ଲୋକମାନଙ୍କର ଭ୍ରାତୃତ୍ୱମୂଳକ ସାହାଯ୍ୟ ଓ ବ୍ୟାପକ ଧରଣର ପାରସ୍ପରିକ ସହଯୋଗକୁ ପ୍ରଶଂସା କରିବାକୁ ହେବ, କାରଣ ସେଥିଯୋଗୁଁ ହିଁ ସୋଭିଏତ ସୋସାଲିଷ୍ଟ ରିପବ୍ଲିକ ଇଉନିଅନର ଜନସାଧାରଣ ସଫଳତାର ସହିତ

ତାଙ୍କର ପୂର୍ବ ପଶ୍ଚାତ୍‌ପଦ ଅବସ୍ଥାକୁ ଅତିକ୍ରମ କଲେ । ପ୍ରତ୍ୟେକଟି ସୋଭିଏତ ପ୍ରଜାତନ୍ତ୍ର ଓ ଜାତୀୟ ଅଞ୍ଚଳ ଅର୍ଥନୀତିରେ ମୁଖ୍ୟ ଭୂମିକା ନେଉଥିବା ଅତି ଉଚ୍ଚ ଉନ୍ନତଶୀଳ ଶିଳ୍ପ ସଂଗଠନମାନ ବସାଇ ପାରିଲେ, ଉଚ୍ଚ ଉତ୍ପାଦନଶୀଳ କୃଷି ବ୍ୟବସ୍ଥା ଗଠନ କଲେ ।

ସୋଭିଏତ ପ୍ରଜାତନ୍ତ୍ରଗୁଡ଼ିକର ମଧ୍ୟ ବିରାଟ ସାଂସ୍କୃତିକ ପ୍ରଗତି ସାଧିତ ହୋଇଛି । ବ୍ୟାପକ ଭାବରେ ସ୍କୁଲମାନ ପ୍ରତିଷ୍ଠିତ ହୋଇଛି । ସେଥିରେ ଲୋକମାନଙ୍କର ନିଜ ମାତୃଭାଷାରେ ଶିକ୍ଷା ଦିଆଯାଉଛି । ଥିଏଟର, ସିନେମା ଓ ଅନ୍ୟାନ୍ୟ ସାଂସ୍କୃତିକ ଅନୁଷ୍ଠାନମାନ ଖୋଲାଯାଇଛି ।

ଲୋକମାନଙ୍କ ମଧ୍ୟରେ ସଂହତି ଓ ବନ୍ଧୁତ୍ୱର ପ୍ରତିଷ୍ଠା, ଏହି ଲେନିନବାଦୀ ନୀତି ଦ୍ୱାରା ହିଁ କଲ୍ୟାଣ ସାଧିତ ହୋଇପାରେ, ଯେକୌଣସି ସୋଭିଏତ ପ୍ରଜାତନ୍ତ୍ର ଓ ଜାତୀୟ ଅଞ୍ଚଳ ହେଉଛି ଏହାର ନିଦର୍ଶନ ।

ଆଧୁନିକ ଶିଳ୍ପର ଉଦ୍‌ଭବ, ବୃହତ ଧରଣ ସମାଜବାଦୀ କୃଷିର ସୃଷ୍ଟି ଏବଂ ଜାତୀୟ ଅର୍ଥନୀତିର ସମସ୍ତ ବିଭାଗରେ ନୂତନ ଯାନ୍ତ୍ରିକ ବିଦ୍ୟା ବା ଟେକ୍‌ନିକର ପ୍ରୟୋଗ ଏସବୁ ପ୍ରତ୍ୟେକଟି ଅଣରୁଷୀୟ ପ୍ରଜାତନ୍ତ୍ରରେ ଏକ ଶ୍ରମିକଶ୍ରେଣୀ ଓ ବୁଦ୍ଧିଜୀବୀ ଶ୍ରେଣୀର ଗଠନକୁ ପ୍ରୋତ୍ସାହିତ କରିଛି । ବିପ୍ଳବ ପୂର୍ବରୁ ବାଇଲୋରୁସିଆ, ଆଜରବୈଜାନ, ଆରମେନିଆ, ଉଜ୍‌ବେକିସ୍ଥାନ, ତାଜିକିସ୍ଥାନ ବା ତୁର୍କମାନିଆ ଅଞ୍ଚଳରେ କୌଣସିଠି ହେଲେ ଗୋଟିଏ ଉଚ୍ଚସ୍ତରୀୟ ଶିକ୍ଷା ଅନୁଷ୍ଠାନ ନ ଥିଲା । ଆଜି ସେଠାରେ ହରୁ ପୁଞ୍ଜା ପୁଞ୍ଜା କଲେଜ, ବିଶ୍ୱବିଦ୍ୟାଳୟ ବସିଛି । ସେଥିରେ ଇଞ୍ଜିନିଅର, କୃଷି ବିଶାରଦ, ଡାକ୍ତର, ସ୍କୁଲ ଶିକ୍ଷକ ଆଦି ତାଲିମ୍ ହେଉଛନ୍ତି । ସୋଭିଏତ୍ ସୋସାଲିଷ୍ଟ ରିପବ୍ଲିକ ୟୁନିଅନର ବିଜ୍ଞାନ ଏକାଡେମୀ ଭଳି ୟୁନିଅନ ପ୍ରଜାତନ୍ତ୍ରମାନଙ୍କରେ ବିଜ୍ଞାନ ଏକାଡେମିମାନ ପ୍ରତିଷ୍ଠିତ ହୋଇଛି ।

ତାଜିକିସ୍ଥାନ, ତୁର୍କମାନିଆ, କିରଗିଜିଆ ଓ ଉଜ୍‌ବେକିସ୍ଥାନରେ ସମସ୍ତ ଜନସାଧାରଣ ନିରକ୍ଷର ଥିଲେ, ସେହି ସବୁଠାରେ ସାଂସ୍କୃତିକ ବିପ୍ଳବର ଫଳ ବିଶେଷ ଭାବରେ ସ୍ପଷ୍ଟ ହୋଇ ଉଠିଛି ।

ସୋଭିଏତ ସୋସାଲିଷ୍ଟ ରିପବ୍ଲିକ ୟୁନିଅନର ଲୋକମାନେ ସାହିତ୍ୟ, ସଙ୍ଗୀତ, ଚିତ୍ରକଳା ଓ ଥିଏଟର ଆଦି କ୍ଷେତ୍ରରେ ନିଜ କୃତିତ୍ୱ ଘେନ ଯଥାର୍ଥ ଭାବେ ଗର୍ବିତ । ସେଠାରେ ବହୁ ବିଭିନ୍ନ ପ୍ରକାରର ଜାତିମାନଙ୍କ ଭାଷାରେ ପୁସ୍ତକ, ସଂବାଦପତ୍ର ପତ୍ରିକା ଆଦି ବ୍ୟାପକ ଭାବରେ ପ୍ରକାଶିତ ହେବା, ଏ ସମ୍ପର୍କରେ ବିଶେଷ ଲକ୍ଷଣୀୟ କଥା ।



ଲେନିନଙ୍କର ଲକ୍ଷ୍ୟ : ଜାତି ସମୂହର ମୈତ୍ରୀ

ସୋଭିଏତ୍ ସଂସ୍କୃତି ରୂପରେ ବା ଆକାରରେ ଜାତୀୟତାବାଦୀ, ବିଷୟବସ୍ତୁରେ ବା ଆଧେୟରେ ସମାଜବାଦୀ, ସମସ୍ତ ସୋଭିଏତ ଲୋକଙ୍କର ସଂସ୍କୃତିର ବିଷୟ ବସ୍ତୁ ବା ଆଧେୟ ସମାନ । କିନ୍ତୁ ପ୍ରକାଶର ଆଧାର ବା ରୂପ ବିଭିନ୍ନ । କାରଣ, ପ୍ରତ୍ୟେକ ଜାତିର ନିଜସ୍ୱ ଭାଷା, ଐତିହାସିକ ପରମ୍ପରା ଏବଂ ଦୈନନ୍ଦିନ ଜୀବନର ନିର୍ଦ୍ଦିଷ୍ଟ ଗୁଣମାନ ରହିଛି ।

ସମାଜବାଦୀ ଜାତିମାନଙ୍କ ମଧ୍ୟରେ ନୈତିକ ମୂଲ୍ୟର ବର୍ଦ୍ଧିଷ୍ଣୁ ଆଦାନ ପ୍ରଦାନ ଯୋଗେ ସୋଭିଏତ ସୋସାଲିଷ୍ଟ ରିପବ୍ଲିକ ଇଉନିଅନ ଲୋକଙ୍କର ସାଂସ୍କୃତିକ କ୍ଷେତ୍ରରେ ପାରସ୍ପରିକ ସମୃଦ୍ଧି ଘଟୁଛି । କମ୍ୟୁନିଜମ ବା ସାମ୍ୟବାଦ ନିର୍ମାଣରେ ସାଧାରଣ ଆଦର୍ଶ ପ୍ରତି ପ୍ରତ୍ୟେକ ପ୍ରଜାତନ୍ତ୍ରର ଅବଦାନ ବୃଦ୍ଧି ପାଉଛି । ଶ୍ରେଣୀମାନଙ୍କ ମଧ୍ୟରେ ପାର୍ଥକ୍ୟର ବିଲୋପ ଓ କମ୍ୟୁନିଷ୍ଟ ସାମାଜିକ ସମ୍ପର୍କମାନଙ୍କର ବିକାଶ ହେତୁ ସଂସ୍କୃତି, ନୈତିକତା ଓ ଦୈନନ୍ଦିନ ଜୀବନର କମ୍ୟୁନିଷ୍ଟ ରୂପଗୁଡ଼ିକ ପ୍ରୋତ୍ସାହିତ ହେଉଛି; ଜାତିମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଆସ୍ଥା, ବିଶ୍ୱାସ ଓ ବନ୍ଧୁତା ଆହୁରି ଅଧିକ ସଂହତ ହେଉଛି ।

## ସମାଜବାଦୀ ଜାତିମାନଙ୍କ ମଧ୍ୟରେ ବନ୍ଧୁତ୍ୱ

ସୋଭିଏତ ଇଉନିଅନର ଲୋକେ ସମାଜବାଦ ଓ ସର୍ବହରା ଆନ୍ତର୍ଜାତୀୟତାର ଭାବରେ ଓ ଆଦର୍ଶରେ ମିଳିତ ହୋଇ ନିଜର ସାଧାରଣ ଲକ୍ଷ୍ୟ କମ୍ୟୁନିଜମ୍ ବା ସାମ୍ୟବାଦ ପଥରେ ଏକତାବଦ୍ଧ ହୋଇ କାର୍ଯ୍ୟ କରୁଛନ୍ତି ।

ଜାତି ଜାତି ମଧ୍ୟରେ ସମତା ପ୍ରତିଷ୍ଠା କରିବା ସେମାନଙ୍କ ମଧ୍ୟରେ ସହୋଦର ମୂଳକ ବନ୍ଧୁତ୍ୱକୁ ସୁଦୃଢ଼ କରିବା ଆଉ ସୋଭିଏତ୍ ଦେଶପ୍ରେମ ଆନ୍ତର୍ଜାତୀୟତା ଓ ପାରସ୍ପରିକ ସାହାଯ୍ୟର ଭାବକୁ ଉଚ୍ଛାହିତ କରିବା ଏହି ନୀତିଗୁଡ଼ିକୁ କମ୍ୟୁନିଷ୍ଟ ପାର୍ଟି ଅବିଚଳିତ ଭାବେ ଅନୁସରଣ କରୁଛି ।

ସମାଜବାଦର ଶାନ୍ତିପୂର୍ଣ୍ଣ ନିର୍ମାଣ କାଳରେ ଓ କଠୋର ଯୁଦ୍ଧ ସମୟରେ ଅର୍ଥାତ୍ ଏହି ଉଭୟ ସମୟରେ ସୋଭିଏତ୍ ଲୋକମାନଙ୍କର ବନ୍ଧୁତ୍ୱ ଓ ପାରସ୍ପରିକ ସାହାଯ୍ୟ ଶକ୍ତିମନ୍ତ ହୋଇ ଉଠିଛି । ସୋଭିଏତ୍ ଇଉନିଅନର ଶକ୍ତି, ତାର ବିଶାଳତା ଏବଂ ତାର ବହୁ ମୂଲ୍ୟ ଜାତିତ୍ୱର ସୁଦୃଢ଼ ଭିତ୍ତି ଉପରେ ଲୋକଙ୍କର ଏହି ବନ୍ଧୁତ୍ୱ ପ୍ରତିଷ୍ଠିତ । ଅନେକ ସମୟରେ ଆମେରିକା ସାମ୍ରାଜ୍ୟବାଦୀମାନେ 'ପରାଧୀନ' ସୋଭିଏତ୍ ପ୍ରଜାତନ୍ତ୍ରମାନଙ୍କୁ ମୁକ୍ତ ହେବା ଲାଗି ଆହ୍ୱାନ ଜଣାଇ ଆନ୍ତି । ଏହା ସ୍ପଷ୍ଟ ଯେ ସେମାନେ ବୁଝିପାରନ୍ତି ନାହିଁ ସୋଭିଏତ୍ ନାଗରିକ ମାନେ ସେମାନଙ୍କର ଏହି ଆହ୍ୱାନକୁ କେତେ ଦୂର ଅସମ୍ଭବ, ଅଦ୍ଭୁତ ଓ ହାସ୍ୟାସ୍ପଦ ମନେ କରନ୍ତି ।

ସୋଭିଏତ ଇଉନିଅନର ଲୋକମାନଙ୍କର ଏକତା ଓ ବନ୍ଧୁତ୍ୱ, ସମାଜବାଦୀ ଦେଶମାନଙ୍କର "ଅବିଚ୍ଛେଦ୍ୟ ଗୋଷ୍ଠୀବଦ୍ଧତା ଏବଂ ପୃଥିବୀର ଶ୍ରମିକଶ୍ରେଣୀର ଆନ୍ତର୍ଜାତିକ ଐକ୍ୟ, ଏହି ସମସ୍ତର ସମ୍ମିଶ୍ରଣ ଲୋକଙ୍କ ଶକ୍ତି ବୃଦ୍ଧିର ଏକ ପ୍ରଧାନ କାରଣ ହୋଇଛି । ପୁଞ୍ଜିବାଦ ସହିତ ଐତିହାସିକ ପ୍ରତିଦ୍ୱନ୍ଦ୍ୱିତାରେ ସମାଜବାଦ ପକ୍ଷରେ ଏହା ଗୋଟାଏ ବିରାଟ ସୁଯୋଗ । ପୂର୍ବେ ଜାର ଶାସିତ ରୁଷର ଔପନିବେଶିକ ସୀମାନ୍ତରେ ଅବସ୍ଥିତ ଥିବା ଉଜ୍‌ବେକିସ୍ଥାନର ଏକ ଗ୍ରାମର ଦୃଷ୍ଟାନ୍ତ ଦ୍ୱାରା ଲୋକଙ୍କ ବନ୍ଧୁତ୍ୱର ଏହି ଜୀବନୀ ପ୍ରଦାୟକ ଶକ୍ତିର ପରିଚୟ ମିଳିପାରେ । ଉକ୍ତ ଗ୍ରାମର କୋଠଖ୍ୟଷ ଫାର୍ମର ଚେୟାରମ୍ୟାନ ଅବ୍ଦୁହଜାବର ସୁଖୁସୋଲଭ ଏ ସମ୍ପର୍କରେ କଣ କହିଛନ୍ତି ଦେଖାଯାଉ ।

ସେ କହୁଛନ୍ତି "କେହି ଏସିଆର ମାନଚିତ୍ରକୁ ଦେଖନ୍ତୁ, ସରଦ ରିଆ ନଦୀ ଫରଘାନା ପର୍ବତମାଳା ଦେଇ ପ୍ରବାହିତ ହେଲା ପରେ ଯେଉଁ ସ୍ଥାନରେ ଉତ୍ତର ଆଡ଼କୁ ବୁଲି ଗତି କରିଛି ସେହି ସ୍ଥାନଟିକୁ ବାହାର କରନ୍ତୁ, ଆମର କୋଠଖ୍ୟଷ ଫାର୍ମ ସେହି ବାଙ୍କ ମୁହଁରେ ନଦୀର ଦକ୍ଷିଣ କୂଳରେ ଅବସ୍ଥିତ ।"

"ସେଇଠାରେ ମୋର ଜନ୍ମ, ସେତେବେଳେ ସେ ସ୍ଥାନ କେମିତି ଥିଲା ତାହା ମୋର ବେଶ୍ ମନେ ଅଛି । ନଦୀର ବାମତଟରେ ଥିଲା ଏକ ସୁବିସ୍ତୃତ ପତିତ ଭୂମି, ଅପର ପାର୍ଶ୍ୱରେ ସନ୍ତସନ୍ତିଆ ଜମି ଏବଂ ଦକ୍ଷିଣ ଦିଗରେ ଥିଲା ମରୁଭୂମି, ଆଜି ନଦୀର ଧାରେ ଧାରେ ଆମ ଗ୍ରାମ ପାର୍ଶ୍ୱକୁ ଲାଗି ରହିଛି ଦିଗନ୍ତ ବ୍ୟାପୀ କପା କ୍ଷେତ୍ର, ଅହର

ଆଗକୁ ସବୁଜ କ୍ଷେତ୍ର ଓ ଚୋଟା ବଗିଚ୍ଚ ପଛରେ ଫରଗାବାଦ ଚତୁର୍ଥ ଉଦ୍ୟାନ ଓ ଜଳଭଣ୍ଡାର ଲେନିନ ଇସ୍ପାତ କାରଖାନା ଓ ନୂତନ ନଗର ବେଗଭେଟର ଦୂରତା ମଧ୍ୟ ବେଶୀ ନୁହେଁ । ଅନ୍ୟ ବଗକୁ, ଠିକ୍ ସେଉଁ ନଗୀବୁ ଚେଉଁ ଷ୍ଟ୍ରେଟ୍ ଷ୍ଟେପି ବା ମାଳ ପ୍ରାନ୍ତରର ଆରମ୍ଭ, ସେଠାରେ ବଗଲ୍ଲକୁ ଭେଦ କରି ଲମ୍ବି ଯାଇଛୁ ବଦ୍ୟୁତ୍ ଶକ୍ତିର ଲାଇନ । ପ୍ରଧାନ ରାସ୍ତା ଦେଇ ଛୁଟିଛନ୍ତି ଦଳ ଦଳ ହୋଇ ମଟର ଟ୍ରକ । ଏଠି ସେଠି ସବୁଠାରେ ତୁମେ ଦେଖିବ ନାନା ଯୋଜନାର ନମୀଣ ।”

“ଶିଳ୍ପ ଆଉ କୋଠଶ୍ରଷ୍ଟ ଫାର୍ମର ଏକ ଜୀବନ୍ତ ଚିତ୍ର ଆଙ୍କିଲା ଭଳି ସେ ଦୃଶ୍ୟ । କିନ୍ତୁ ମୋ ପାଇଁ ତ ଠାରୁ ଆହୁରି ଢେର ବେଶୀ ମୋର ଜନ୍ମଭୂମି ଉଜବେକିସ୍ଥାନ ଓ ମୋ ର ଲୋକମାନଙ୍କର ସମଗ୍ର ଇତିହାସ, ବହୁ। ମୋର ହାତର ପାପୁଲି ଭଳି ମୋ ଆଗରେ ମେଲି ଯାଇଛୁ । ମୁଁ ଯେତେବେଳେ ତା’ ପ୍ରତି ଦୃଷ୍ଟି ପକାଏ, ଆମର ପ୍ରଜାତନ୍ତ୍ର ଓ ଆମର ଲୋକମାନଙ୍କ ସଂପର୍କରେ ଆମର କମ୍ୟୁନିଷ୍ଟ ପାର୍ଟି ଓ ଆମର ସୋଭିଏତ୍ ସେ ଜ ବରାଟ ପ୍ରଗତିର ପ୍ରବାହ ସୃଷ୍ଟି କରିଛନ୍ତି, ତାହା ନ ଭାବି ରହି ପାରେ ନାହିଁ ।”

“ପ୍ରାଚୀନ କାଳରେ ବହୁ ବିଖ୍ୟାତ ଭ୍ରମଣକାରୀ ଆମର ଅଞ୍ଚଳ ସମ୍ବନ୍ଧରେ ଅନେକ କଥା ଲେଖି ଯାଇଛନ୍ତି । କିନ୍ତୁ ସେମାନେ ସେଠାରେ ଦେଖିଥିଲେ କଣ ସେତେବେଳେ ୧୯୧୪ରେ ପ୍ରକାଶିତ “ତ ତୁର୍କିସ୍ତାନ ଅଞ୍ଚଳ ଓ ବର୍ତ୍ତମାନ,” ପୁସ୍ତକଟିକୁ ପଢ଼ିଲେ କଣାଯାଏ, ଜଳବାୟୁ କଥା କହିବାକୁ ଯାଇ ଲେଖକ, ଗ୍ରାମ ଉପରେ ବୋହି ଯାଉଥିବା ଗରମ ଝାଞ୍ଜି ପବନ କଥା କହିଛନ୍ତି । ସେ ଲେଖିଛନ୍ତି, “ଗଛରେ ଏଠି ପତ୍ରସବୁ ଶୁଖି ଝଡ଼ିଯାଏ, ଫସଲ ସବୁ ମରିଯାଏ, ଏପରିକି ଭାତରେ ମାଟି ଫାଟିଯାଇ ଆଁ କରେ ।”

“ଏ ବହିଟି ଆମର ଗ୍ରାମ ବିଷୟରେ ଅନେକ କଥା ବର୍ଣ୍ଣନା କରିଛି । ତାହା ଚାଷ ସମ୍ବନ୍ଧରେ ଲେଖିଛି, ଫଳ ଓ ତରଭୁଜ ଅତି ଅଳ୍ପ ପରିମାଣରେ ହୁଏ... ସେମାନେ କପା ଚାଷ ଆରମ୍ଭ କରିଥିଲେ । କିନ୍ତୁ ପଙ୍ଗପାଳ ଆକ୍ରମଣ କାଳକୁ ତାହା ବନ୍ଦ କରିଦେଇଛନ୍ତି, ପଙ୍ଗପାଳ ଗଛ ଆଉ ଫସଲ ସବୁ ନଷ୍ଟ କରି ଦିଅନ୍ତି ।”

“ଆମର ପିଲାମାନେ ପଙ୍ଗପାଳ କଥା କେବଳ ବହିରୁ ଜାଣନ୍ତି । ଆଉ ଆମେ ପଙ୍ଗପାଳଙ୍କ ବିଷୟ ଏକଦମ ଭୁଲି ଗଲୁଣି । କେବେ, ଏବିଆରେ ପଙ୍ଗପାଳମାନଙ୍କର ଜନ୍ମ ଦେବାର ସ୍ଥଳୀକୁ ବହୁବର୍ଷରୁ ମୂଳପୋଛ କରି ଦିଆଯାଇଛି । ସୋଭିଏତ୍ ସରକାର ଏବେ ପଡ଼ୋଶୀ ଦେଶ ଇରାନ ଓ ଅଫଗାନିସ୍ଥାନରେ ସେମାନଙ୍କୁ ଲୋପ କରିବାରେ ସାହାଯ୍ୟ କରୁଛି ।”

"ଗରମ ପବନ ବିଷୟ କଣ ? ସମସ୍ତ ଆସିବ, ଯେତେବେଳେ ବୋଧହୁଏ ତାକୁ ଆୟତ୍ତ କରିନେବୁ । ଏବେ ତାହା ବୋହୁଛି, ଅତି ଗରମ । ଏବେ କିନ୍ତୁ ତା' ପ୍ରତି ଆମର ଭୟ ନାହିଁ, କାହିଁକି ? ଏହି ଗରମ ପବନ ଆଉ ଖରାପ ଜଳବାୟୁ ସତ୍ତ୍ୱେ ୧୨ ବର୍ଷରୁ ଅଧିକ କାଳ ହେଲା ଆମର କପା ଓ ଅନ୍ୟାନ୍ୟ ଫସଲ ଉତ୍ପନ୍ନ ବରାବର ବଢ଼ିବାରେ ଲାଗିଛି, କାହିଁକି ?"

"କାରଣ, ସମାଜବାଦୀ ସ୍ଥିତର ଏଭଳି ବିରାଟ ଶକ୍ତି ରହିଛି ଯେ ପ୍ରାକୃତିକ ଉପାଦାନଗୁଡ଼ିକ ମଧ୍ୟ ଏହା ପାଖରେ ମୁଣ୍ଡ ନୁଆଁଏ । ଆମର ଯୌଥ କୃଷି ବ୍ୟବସ୍ଥାରୁ, ଆମର ଆନନ୍ଦଦାୟକ ସାମୂହିକ ଶ୍ରମରୁ, ଆମର ଉତ୍କୃଷ୍ଟ ଧରଣର କୃଷି ମେସିନ ଯନ୍ତ୍ରପାତିରୁ, ଆଉ କେନ୍ଦ୍ର ଏସିଆରେ ସବୁଠାରୁ ବଳି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଜଳସେଚନ ବ୍ୟବସ୍ଥାରୁ ଏହା ନିଜର ଶକ୍ତି ଆହରଣ କରେ ।"

"ପୂର୍ବକାଳରେ ପାଣି ଲାଗି କେନ୍ଦ୍ର ଏସିଆରେ ରକ୍ତପାତ ଘଟୁଥିଲା । ମୋର ମନେ ଅଛି, ଜଳବଣ୍ଟନ ନେଇ ଆମ ଗାଁରେ କୃଷକମାନଙ୍କ ମଧ୍ୟରେ ଗୋଟାଏ ବଡ଼ ଧରଣର ଲଢ଼େଇ ହୋଇଯାଇଥିଲା । ସାଧାରଣତଃ ଜମିଦାରମାନେ ହିଁ ଏଭଳି ଲଢ଼େଇ ବା ମାରପିଟ୍ ଲାଗି କୃଷକମାନଙ୍କୁ ମତାଉଥିଲେ । ସେତେବେଳେ କେବେହେଲେ କେଉଁଠି ଯଥେଷ୍ଟ ପରିମାଣରେ ଜଳ ନ ଥିଲା ।"

"ବିପ୍ଳବର ଠିକ୍ ପରେ ପରେ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ର ଏସିଆ ଓ ଟ୍ରାନ୍ସକକେସିଆରେ ଜଳସେଚନ ପ୍ରତି ଦୃଷ୍ଟି ପକାଇବାକୁ ଆରମ୍ଭ କଲା । ମୋର ଲେନିନ୍‌ଙ୍କର କଥା ମନେ ପଡ଼ୁଛି । ଅନ୍ୟ ଯେ କୌଣସି ଜିନିଷ ଅପେକ୍ଷା ଜଳସେଚନ ଅଧିକ ପ୍ରୟୋଜନ; ଅନ୍ୟ ଯେ କୌଣସି ଜିନିଷ ଅପେକ୍ଷା ଏହା ହିଁ ସମ୍ପୃକ୍ତ ଅଞ୍ଚଳର ଚେହେରା ବଦଳାଇ ଦେବ, ତାକୁ ପୁନଃଯୌବନ ଦେବ, ତାହା ଅତୀତକୁ ପୋଛିଦେବ ଏବଂ ସମାଜବାଦ ଆଡ଼କୁ ପରିଗମନକୁ ସୁନିଶ୍ଚିତ କରିବ ।"

"ଅଜି ଉଜବେକିସ୍ଥାନକୁ ଅନାଇଲେ କଣ ସବୁ ଦେଖିବାକୁ ମିଳେ ? ବିରାଟ ଉତ୍ତର ଓ ଦକ୍ଷିଣ ଫାରଗନା କେନାଲ୍‌ରୁ ଫାରଗାନା ଉପତ୍ୟକା ଉପରେ ପୂର୍ବରୁ ପଶ୍ଚିମକୁ ବୋହିଯାଉଛି । ଦକ୍ଷିଣ ଓ ଉତ୍ତର ତାସକନ୍ଦ କେନାଲ୍ ଚିରଚିକ୍ ଉପତ୍ୟକା ବାଟେ ପ୍ରବାହିତ ହେଉଛି । ଅମୃତଦରିଆ ନଦୀର ତଳ ମୁହାଁ ଅଞ୍ଚଳରେ ଲେନିନ ପାଖଟା-ଅରିକ୍ ଓ ଅନ୍ୟ କେନାଲ୍‌ମାନ ରହିଛି । ଭାସକା ତାରିଆ ମାଳଭୂମିରେ ଇରସ ଆଙ୍ଗର କେନାଲ୍ ପ୍ରବାହିତ ହେଉଛି ! ଖାଟା-କୁରଗାନ, କୁୟୁ ମଜର ଓ ଅନ୍ୟାନ୍ୟ ଜଳଭଣ୍ଡାରମାନ ଯରଭସନ ଉପତ୍ୟକାର ଚେହେରାକୁ ବଦଳାଇ ଦେଇଛି !"

"ଆମର ଗାଆଁ ସମେତ ସମଗ୍ର ତାଲଡାରଜନ ମାଲଭୂମି ପୂର୍ଣ୍ଣପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛି । ଗୁଳା ଉତ୍ପାଦନକାରୀ ରାଷ୍ଟ୍ର ଫାର୍ମମାନ ଗଢ଼ି ଉଠିଛି । ତା'ର ଫଳ ହୋଇଛି ଯେ, ୧୯୧୩ରେ ଆମର ଅଞ୍ଚଳରେ ୧୦୦୦ ହେକ୍ଟରରୁ କମ୍ ଉଚ୍ଚ ଜମିରେ ଫସଲ ହେଉଥିଲା । ଆଜି ତାଲଡାରଜନ କେନାଲ୍ କଯାଗୃଷ ସକାଶେ ୧୩,୦୦୦ ହେକ୍ଟର ସମେତ ମୋଟ ୨୯,୦୦୦ ହେକ୍ଟର ଜମିକୁ ଜଳ ଯୋଗାଉଛି ।"

"ଗରମ ପବନକୁ ଆଉ ଭୟ ନାହିଁ । ଆଧୁନିକ ଗୃଷ ମେସିନ ପତ୍ରପାତ ଓ ଜଳସେଚନ ବ୍ୟବସ୍ଥା ଆମର ଜମିର ରୂପ ବଦଳାଇ ଦେଇଛି । ତା'ପରେ ଆଗେ ଯେ ପବନ ଯେମିତି ଥିଲା, ଆଜି ଆଉ ସେମିତି ନାହିଁ । ଆମ ପାଖରେ ତାହା ପହଞ୍ଚିଲା ପୂର୍ବରୁ ତାହା ଜଳଭଣ୍ଡାର ଓ ତ୍ରଚୁର ପାଣି ଥିବା ଉପତ୍ୟକାମାନଙ୍କ ଉପରେ ବୋହି ଆସୁଛି ।"

"ଯୁଦ୍ଧ ପୂର୍ବରୁ ଗ୍ରାଣ୍ଡ ଡଉକ୍ ରୋମାନୋଭଙ୍କର ଜମି ଆମ ଗାଆଁ ନିକଟରେ ଥିଲା ! ତାକୁ ଲଗିକରି ଜାର ଅଫିସର ଓ କୁଲାକମାନଙ୍କର ଜମି ଥିଲା । ଗାଆଁରେ ଆମର ଧନୀଗୃଷୀ ଥିଲେ, ଅବଶ୍ୟ ସେମାନେ ସମସ୍ତେ କୃଷକମାନଙ୍କ ଝାଳ, ରକ୍ତ ଓ ଶ୍ରମ ଉପରେ ହିଁ ବଞ୍ଚୁଥିଲେ ।"

ପୂର୍ବୋକ୍ତ ପୁସ୍ତକର ଲେଖକ ବର୍ଣ୍ଣନା କରୁ କରୁ ଲେଖିଛନ୍ତି, ଆମ ଗାଆଁର ଧନୀ ଲୋକମାନେ କୃଷି-ଶ୍ରମିକମାନଙ୍କୁ କୋଟାଏ ସ୍ୱତନ୍ତ୍ର ପ୍ରକାରରେ ମଜୁରି ଲଗାଉ ଥିଲେ, ତାକୁ ଭାଗଗୃଷ କହନ୍ତି । ଲେଖକ ଯଦି ତାକୁ ଏକ ସ୍ୱତନ୍ତ୍ର ନୃଶଂସ ପ୍ରକାର କାମ ବୋଲି କହୁଥାନ୍ତେ, ସତ୍ୟର ନିକଟବର୍ତ୍ତୀ କଥା କହୁଥାନ୍ତେ । ସେହି ପୁରୁଣା ସମୟରେ କ୍ଷେତ ମୂଲିଆ ଥିବା ଏବେ ଆମ କୋଠଗୃଷ ଫାର୍ମର ଜଣେ ସମ୍ମାନିତ ସଦସ୍ୟ କଣ କହୁଛନ୍ତି ଦେଖନ୍ତୁ ! "ଜମି ଗୃଷ କରିବା ଲାଗି ଆମକୁ ଏମିତିକି ତିନି ଭାଗରୁ ଦୁଇ ଭାଗ ପର୍ଯ୍ୟନ୍ତ ଫସଲ ଦେବାକୁ ପଡ଼ୁଥିଲା । ସମଗ୍ର ହୋଜେଣ୍ଡ ଜିଲାରେ ଆମଠାରୁ ବଳି ଆଉ ଅଧିକ ଗରିବ କେହି ନ ଥିଲେ ।"

"ମାତ୍ର ଏହାସବୁ ଚିରଦିନ ପାଇଁ ଯାଇଛି । ଦେବାବାନ ଆଲଗାଟଭ ହେଉଛନ୍ତି ନୂତନ ଉଜବେକ କୃଷକ ଜୀବନର ଏକ ଜୀବନ୍ତ ଆଦର୍ଶ ।"

"ଆମେ ଏକ ଅତ୍ୟାଗୃରିତ ପଶ୍ଚାତ୍ କ୍ଷେତ ମୂଲିଆ ହୋଇ ରହୁଥିଲେ । କମ୍ୟୁନିଷ୍ଟ ପାର୍ଟି, ସୋଭିଏତ୍ ଓ କୋଠଗୃଷ ଫାର୍ମ ତାଙ୍କୁ ଏକ ସ୍ୱାଧୀନ ମୁକ୍ତ ମନୁଷ୍ୟରେ, ଏକ କୋଠଗୃଷୀରେ, ଗୋଷ୍ଠୀଗତ କୋଠ କାମରେ ରତ ଏକ ସକ୍ରିୟ ବ୍ୟକ୍ତିତ୍ୱରେ ପରିଣତ କରିଛି । ଏହା ତାଙ୍କର ଓ ତାଙ୍କ ପୁତ୍ରମାନଙ୍କ କାମକୁ ( ଜଣେ

ଦଳର ନେତା, ଜଣେ ଟ୍ରାକ୍ଟର ଡ୍ରାଇଭର, ଜଣେ କୃଷିବିଶାରଦ) ସମ୍ମାନିତ ଓ ଆନନ୍ଦମୟ କରିଛୁ । ଏହି ଲୋକେ ସବୁ ଦଳ ପାଇଁ, ଦଳର କୋଠଘୃଷ ଫାର୍ମ ପାଇଁ ଏବଂ ଦେଶ ସକାଶେ କାମ କରୁଛନ୍ତି । ଦେଖନ୍ତୁ, ଜଣେ ଲୋକ ଯିଏ କ୍ଷେତ ମଜୁରିଆ ଭାବରେ କାଳ କାଟୁଥିଲା ଏବେ ସେ ଚଳୁଛି କିପରି ? ତାର ନୂତନ ଘର, ଭଲ ଭଲ ଅସବାବ ଜିନିଷପତ୍ର, ରେଡ଼ିଓ, ବିଜୁଳିବତୀ ଏବଂ ଗୋଟାଏ ମଟରକାର ମଧ୍ୟ ରହିଛି ।''

''ଏବେ ଆମ ଗାଆଁ ବାଣ୍ଡରେ ବୁଲିଗଲେ ଦେଖିବ, ସେଠି ୧୬୫୦ ଭିତରୁ ଅଧିକାଂଶ ଘର ସୋଭିଏତ ଅମଳରେ ତିଆରି । ତା ଭିତରୁ ୫୫୦ ଘର ଗତ ୪ବର୍ଷ ଭିତରେ ନିର୍ମିତ । ଏ ଗାଆଁଟି ଥିଲା ଅତି ଦରିଦ୍ର ମାଟିକାନ୍ଥଥିବା ଘରଦ୍ୱାରରେ ପୂର୍ଣ୍ଣ । କେଉଁଥିରେ କାନ୍ଥ ଥିଲା ତ କେଉଁଥିରେ ଛାତ ନଥିଲା । ଗାଆଁର ରାସ୍ତାଗୁଡ଼ାକ ଥିଲା ଅତି ସଂକୀର୍ଣ୍ଣ ବଙ୍କାଟଙ୍କା ଆଉ ଧୂଳିରେ ସେଠି ନିଃଶ୍ୱାସ ରୁନ୍ଧ ହୋଇ-ଯାଉଥିଲା ସବୁବେଳେ । ଏବେ ସେଠି ଏକ ଆଧୁନିକ ଉଜ୍‌ବେକ ଗ୍ରାମ ଗଢ଼ିଉଠିଛି । ରେଡ଼ିଓ ଓ ବିଜୁଳି ଆଲୁଅର ବ୍ୟବସ୍ଥା, ଏକ ସଂସ୍କୃତି ପ୍ରାସାଦ, ସିନେମା, ତିନୋଟି ସ୍କୁଲ, ଡାକ୍ତରଖାନା, ସଂଗୀତ ସ୍କୁଲ ପ୍ରଭୃତି ରହିଛି ।''

''ଆଗେ ସେଠି ପ୍ରତ୍ୟେକେ ମ୍ୟାଲେରିଆ ଭୋଗୁଥିଲେ । ଅନ୍ୟାନ୍ୟ ରୋଗ-ବ୍ୟାଧିରେ ଲୋକେ ପଡ଼ୁଥିଲେ । ଆଜିକାଲି ପିଲାଏ କାହିଁକି ଯୁବକମାନେ ବି ଏମିତିକି ସେସବୁ କେତେ ରୋଗବ୍ୟାଧିର ନାମ ସୁଦ୍ଧା ଜାଣନ୍ତି ନାହିଁ । ଆମେ ମ୍ୟାଲେରିଆକୁ ଏକାବେଳକେ ଲୋପ କରିଦେଇଛୁ । ଆମର କୋଠଘୃଷ ଫାର୍ମର ୧୦୦ ଶଯ୍ୟା ବିଶିଷ୍ଟ ଏକ ଡାକ୍ତରଖାନା ହୋଇଛି । ସେଥିରେ ସମସ୍ତ ଚିକିତ୍ସା ବନ୍ଦୋବସ୍ତ, ଏକ୍ସରେ ବନ୍ଦୋବସ୍ତ, ଫାଷ୍ଟଏଡ଼ ଆମ୍ବୁଲେନସ୍ ବ୍ୟବସ୍ଥା ଆଦି ରହିଛି । ଆଉ ମଧ୍ୟ ପ୍ରସୂତି ଭବନ କିଣ୍ଡରଗାର୍ଟନ ଓ ଶିଶୁଭବନମାନ ଅଛି ।''

''ଏବେ ଏକ ସ୍କୁଲ ମଧ୍ୟରେ ପ୍ରବେଶ କରିବା । ଏଠାରେ ଆମେ ନୂତନ ଉଜ୍‌ବେକ ବୁର୍ଜିଜାସି ହମ ରେଭ କୃଜବାୟେଭ୍, ଇଲ୍‌ଲୁଜୟେଭ୍, କାମିରୋଭ ଓ ଅନ୍ୟାନ୍ୟ ଶିକ୍ଷକମାନଙ୍କୁ ଭେଟିବା, ସେମାନେ ରୁଷୀୟ ଶିକ୍ଷକମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖି ବନ୍ଧୁଭାବରେ କାର୍ଯ୍ୟ କରନ୍ତି । ବିପ୍ଳବ ପୂର୍ବରୁ ଆମ ଗାଆଁରେ ଜଣେ ଅଧେ କେହି ଲେଖିପଢ଼ି ଜାଣି ଥିଲେ କି ନାହିଁ, ଏବେ ଏଠାରେ ୭୫ ଜଣ ସ୍କୁଲ ଶିକ୍ଷକ ଅଛନ୍ତି ।''

''ଆମେ ଜାଣୁ ବାହାରେ ଲୋକ ଅଛନ୍ତି, ଯେଉଁମାନେ ଦାବୀ କରି କହନ୍ତି ଯେ ସୋଭିଏତ ପ୍ରାଚ୍ୟରେ ଲୋକମାନେ ଆଗେ ଯେପରି ଦରିଦ୍ର ଥିଲେ ଏବେ ମଧ୍ୟ

ସେହିପରି ଅଛନ୍ତି । ସେମାନେ ଯାହା ଇଚ୍ଛା ତାହା କହି ପାରନ୍ତି । ଏ ସମ୍ପର୍କରେ ପ୍ରାଚ୍ୟର ପ୍ରବଚନ ମନେ ପଡ଼ିଯାଏ —"କୁକୁର ଗୁଡ଼ିଏ କୁକୁର ଭୁକୁଥାଏ, ଯାତ୍ରୀଦଳ ତା ରାସ୍ତାରେ ଚାଲିଥାଏ ।"

"ମୋର ମନେ ପଡ଼ୁଛି, ଆମ ଗାଆଁରେ ଜଣେ ଯୁବକ ବନ୍ଧ ଉପରୁ ନଈକୁ ଡେଇଁ ପଡ଼ିଥିଲା । ସେତେବେଳେ ମୁଁ ପିଲା, ପରେ ମୁଁ ଶୁଣିଲି ସେ ତାହିକି ଆତ୍ମହତ୍ୟା କରିଥିଲା ।"

"ସେ ସମୟରେ ଲୋକେ କିପରି ବସବାସ କରୁଥିଲେ, ଚଳାପ୍ରଚଳ ହେଉଥିଲେ ତାହା ମନେ ପଡ଼ିଗଲେ ଦୁଃଖ ହୁଏ । ତାଙ୍କ ଭିତରେ ଶତ୍ରୁତା ଲାଗି ରହିଥିଲା । ନିଜର ଗାଆଁ ଛଡ଼ା ଅନ୍ୟ ଏକ ଗାଆଁରୁ ଜଣେ ଯୁବତୀକୁ ବିବାହ କରିବା ଅସମ୍ଭବ ଥିଲା । ଏହି କାରଣରୁ ଯୁବକଟି ନଈକୁ ଡେଇଁପଡ଼ି ପ୍ରାଣତ୍ୟାଗ କରିଥିଲେ ।"

"ବିଭିନ୍ନ ଜାତି ମଧ୍ୟରେ ଖୁବ୍ ଶତ୍ରୁତା ଥିଲା । ଆମ ଗାଆଁ ତାଜିକିସ୍ଥାନ ଓ କିର୍ଘିଜିଆର ସୀମାନ୍ତରେ ! କାଜାଖ ଯାଯାବର ଦଳ ତାର ଅନତି ଦୂରରେ ଘାଁ'ଅସ କରୁଥିଲେ । ଉଜବେକ, ତାଜିକ୍, କିରଘିଜ, କାଜାଖ, ରୁଷୀୟ ଓ ତୁର୍କମାନସ୍ଥ ଲୋକମାନେ ଏକ ସଙ୍ଗରେ, ବେଳେବେଳେ ଏକା ଗାଆଁରେ, ବସବାସ କରୁଥିଲେ ।

"ସାଧାରଣ ଲୋକଙ୍କ ମଧ୍ୟରେ ଶତ୍ରୁତାର କୌଣସି କାରଣ ନ ଥିଲା । ଜମିମାଲିକ ଓ କାରବାରୀ ଔପନିବେଶିକବାଦୀମାନେ ଜଣକ ବିରୁଦ୍ଧରେ ଅନ୍ୟ ଜଣକୁ ମଡ଼ାଇ ଦେଉଥିଲେ । ଉଦାହରଣ ସ୍ୱରୂପ ଯଦି ଗାଁରେ ବିଶେଷ ଜଳାଭାବ ଘଟୁଥିଲା, ତେବେ ଜମିମାଲିକ କହୁଥିଲା—'କେନାଲ ମୁଣ୍ଡ ପାଖକୁ ଯେଉଁ ତାଜିକ୍ ଲୋକ ବାସ କରୁଛି ସେ ଦୋଷୀ !' ଅଥଚ ପ୍ରକୃତରେ ଏଣେ ସେ ନିଜେ କେନାଲରୁ ପାଣି ଯୋଗାଉଥିବା ଲୋକଙ୍କୁ ଲାଞ୍ଚ ଦେଇ ପାଣି ମାରି ନେବାରେ ଲାଗିଥିଲା ।"

"ଏବେ ଏହା ସବୁ ପୁରୁଣା ଇତିହାସର କଥା ହେଲାଣି । ଅଳ୍ପ ଦିନ ତଳେ ଆମ ଗାଆଁରେ ୫ଟି ବିଭାଘର ହୋଇଯାଇଛି । ସେ କଥାଟି ନଈକୁ ଡେଇଁପଡ଼ି ପ୍ରାଣ ହରାଇଥିବା ଯୁବକଟି ବିଷୟ ମୋର ମନେ ପକାଇଦେଲା । ବିଭାଘରସବୁ ବେଶ ଗୋଟାଏ ଜାକଜମକିଆ କାରବାର । ସେଥିରେ ବିଭିନ୍ନ ପ୍ରକାରର ବହୁ ଲୋକ ନିମନ୍ତ୍ରିତ ହୋଇ ଯୋଗ ଦିଅନ୍ତି, ଆଉ ସେଗୁଡ଼ିକ ସ୍ତ୍ରୀ ଜାତି ଅନୁସାରେ ଅଲଗା ଅଲଗା ଧରଣରେ ହୁଏ । ଯେଉଁମାନେ ବାହା ହୋଇଥିଲେ ସେମାନଙ୍କ ମଧ୍ୟରୁ ଜଣେ ଥିଲା ଉଜ୍‌ବେକୀ, ଜଣେ ତାତାର, ଜଣେ ରୁଷୀୟ, ଜଣେ କୋରିଆନ ଓ ଆଉ ଜଣେ ତାଜିକ୍ ।

"କୋଠଗୃହ ଫାର୍ମରେ ମୁଁ ଯେତେବେଳେ ବୈଠକରେ ବସେ, ମୋର ସମ୍ମୁଖରେ 'ଜାତିମାନଙ୍କର ଗୋଟାଏ ପରିବାର' ବା ବହୁଜାତିକ ପରିବାର ଦେଖେ ସେଥିଭିତରେ ମୁଁ ଉଜବେକୀ, ଫେଡେ.ରଭ, ବୋର୍ଡର ସଭ୍ୟ ଓ କମ୍ୟୁନିଷ୍ଟ ଦଳର ମୁଖ୍ୟ ବୃତ୍ତୀୟ, ଏହିଭଳି ଜଣେ ଇଉକ୍ରେନିଆନ, ଜଣେ କାଜଖ, ଜଣେ କାରେକାପାକ, ଜଣେ ତାଜିକ, ଜଣେ ତ.ତାର, ଆମର କୋଠଗୃହ ଫାର୍ମର ୪୮ଟି ଭିନ୍ନ ଭିନ୍ନ ଜାତିର ଲୋକଥାଉଁ ।

"ଏପରିକି ଜାତୀୟତା ପ୍ରତି ସାମାନ୍ୟ ଅପମାନର ସୂଚନା ଆମ ମଧ୍ୟରେ କ୍ୱଚିତ୍ ଅଣୁଥାଏ । ଏହି ଭାବରେ ଅମେ ବଢ଼ିଥାଉଁ । ଅ.ମେ ତ କେବଳ ଏକ କ୍ଷୁଦ୍ର କୋଠଗୃହ ଫାର୍ମର ସଭ୍ୟ, ଜନ୍ମ ଆମଠାରେ ପ୍ରତିଫଳିତ ହେଉଥାଏ, ସୋଭିଏତ ବ୍ୟବସ୍ଥାର ମହାନ କୃତିତ୍ୱ, ଅ.ମର ସକଳ ଶକ୍ତିର ଭିତ୍ତି ଜାତିଜାତି, ଲୋକଲୋକ ମଧ୍ୟରେ ଅବିଚ୍ଛେଦ୍ୟ ଆନ୍ତଃ ଅଭିଙ୍ଗୁର ଲେନିନବାଦୀ ବନ୍ଧୁତ୍ୱ । ଅନ୍ୟ ସମସ୍ତ ଅପେକ୍ଷା ଏହାକୁ ଆମେ ସାଇତି ରଖୁଥାଉଁ ଆମର ନିଧି ଭଳି ।"

ବହୁଭାବରେ, ବହୁ ଜିନିଷରେ ଆମେ ଲୋକଙ୍କ ବନ୍ଧୁତ୍ୱର ପରିଚୟ ପାଉଥାଉଁ । ଆମେ ଦେଖୁଥାଉଁ, ସେହି ବନ୍ଧୁତ୍ୱ ଫୁଟିଉଠେ ଉତ୍କୃଷ୍ଟ ମେସିନ ଓ ଯନ୍ତ୍ରପାତିରେ ଶ୍ରେଷ୍ଠ କୃଷିବିଶାରଦ ରୂପରେ, ଅନ୍ୟ ସହୋଦର ପ୍ରଜାତନ୍ତ୍ରମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତାରେ, ଦୃଷ୍ଟାନ୍ତ ସ୍ୱରୂପ କପାଉତ୍ପାଦନ କରିବାରେ ଅମର ସବୁ ପ୍ରଣାଳୀକୁ ଓ ଉପାୟକୁ ଏକତ୍ର କରିବାରେ । ଅନ୍ୟାନ୍ୟ ସଂସ୍କୃତି, ବିଶେଷକରି ରୁଷୀୟ ସଂସ୍କୃତିକୁ ଧନ୍ୟବାଦ ଯେ, ସେ ସବୁ ଯୋଗେ ସମୃଦ୍ଧି ଲାଭ କରିଛି, ଆମର ଉଜ୍‌ବେକ ସଂସ୍କୃତି ଉନ୍ନତ ଓ ପ୍ରତିଷ୍ଠିତ ହୋଇଛି ।

ଅତୀତରେ ଉଜବେକୀ ସ୍ତ୍ରୀର ଯାହା ଥିଲା, ବର୍ତ୍ତମାନ ସେ ତାହା ଠାରୁ ଭିନ୍ନ । ଏବେ ତାର ସାମୂହିକ ଭାବରେ ଉଦୟ ଘଟିଛି । କୋଠଗୃହର କୃଷକମାନେ ନିଜର ରାଷ୍ଟ୍ରର ସ୍ୱାର୍ଥ ଓ କୋଠଗୃହ ବିଷୟରେ ଆନ୍ତରିକତା ପ୍ରଦର୍ଶନ କରୁଛନ୍ତି, ଏହା ଦେଖିଲେ ହିଁ ଆଜି ମନରେ ଆନନ୍ଦ ଆସୁଛି । ଏହା ସମାଜବାଦୀ ପ୍ରତିଯୋଗିତାମୂଳକ ଆଦର୍ଶ-ଅନୁସରଣକୁ ଜାଗ୍ରତ କରୁଛି । ସାଧାରଣ କର୍ଯ୍ୟକୁ ଦ୍ରୁତ ଗତିରେ ଆଗେଇ ନେବା ଲାଗି ପ୍ରତ୍ୟେକ ଅନ୍ୟକୁ ସାହାଯ୍ୟ କରିବାର ଆବଶ୍ୟକତା ଏହାର ଯୋଗୁଁ ହିଁ ଲୋକେ ଏବେ ଅନୁଭବ କରୁଛନ୍ତି ।

ମତେ ଭଲ ଲାଗେ, ସିର ଦ'ରିୟା ନଦୀର ଉଚ୍ଚ ବନ୍ଧ ଉପରେ ଠିଆ ହୋଇ ଅମର ସୁବିସ୍ତୃତ ଶସ୍ୟ କ୍ଷେତ୍ରକୁ, କଳକାରଖାନା, ବିଦ୍ୟୁତ୍ ଶକ୍ତି କେନ୍ଦ୍ର ଏବଂ ଭବିଷ୍ୟତର ସ୍ଥପତିର ନିର୍ମାଣ ଯୋଜନାମାନଙ୍କୁ ଅନାଇ ରହିବା ଲାଗି ! ସବୁଠୁ

ସୁଖକର ସୁନ୍ଦର ସମସ୍ୱୃତି ହେଲା, ଯେତେବେଳେ କ ସାମ୍ୟବାଦ—ଧନ ସବୁ ସବୁ ସ୍ୱଚ୍ଛ ଆସୁଥାଏ । କ୍ଷେତ ବାଡ଼ିରେ କାର୍ଯ୍ୟରତ ଲୋକମାନଙ୍କର ସ୍ୱର ଆଉ କଳକାରଖାନାର ଦୂରାଗତ ଗୁଂଜନ ଭାସି ଭାସି ଆସୁଥାଏ ଅତି ସ୍ପଷ୍ଟ ଭାବରେ ।

"ସେହି ଭଲ ମୁହୂର୍ତ୍ତରେ ମୋର ଚିନ୍ତା ଧାଏଁ ଭବିଷ୍ୟତ ଆଡ଼କୁ । ମୁଁ ଦେଖେ, ଯେଉଁଠି ଆଜି ପତିତ ଭୂଇଁ ଅଛି, ସେଠି ପ୍ରକାଶ ପାଉଛି ନୂତନ ନୂତନ ସହର, ଦିଗନ୍ତ ପ୍ରସାରୀ ଶ୍ୟାମଳିମା ହଙ୍ଗେରୀ ଷ୍ଟେପିର, ଆଉ ସବୁଜ ସୌନ୍ଦର୍ଯ୍ୟ ଭରା ବାଗବଗିଚା ସବୁ । ଏ ସବୁ ଦିନେ ସତ୍ୟରେ ପରିଣତ ହେବ ହିଁ ହେବ । ଆମେ ଜାତିମାନଙ୍କ ଏକ ବିରାଟ ପରିବାର ମଧ୍ୟରେ ବାସ କରୁଛୁ ଓ କାମ କରୁଛୁ । ଏହା ହିଁ ଆମକୁ ବଳ ଓ ଶକ୍ତି ଯୋଗାଉଛି । ଆମର କମ୍ୟୁନିଷ୍ଟ ପାର୍ଟି ଆମକୁ ନେତୃତ୍ୱ ଦେଇ ପରିଚାଳିତ କରୁଛି । ଲେନିନଙ୍କ ପତାକା ତଳେ ଏହା ହିଁ ଆମକୁ କମ୍ୟୁନିଜମ୍‌ର ନିଶ୍ଚିତ ବିଜୟକୁ ନେଇଯିବ ।

## ୩ । ସମାଜବାଦୀ ଗଣତନ୍ତ୍ର

ବୁର୍ଜୁଆ ପ୍ରଚାରକମାନେ ଜୋର ସହିତ କହନ୍ତି ଯେ, ପୁଞ୍ଜିବାଦୀ ଦୁନିଆରେ ଗଣତନ୍ତ୍ରର ରାଜତି ଚାଲିଛି ।

ସେମାନଙ୍କ ଗଣତନ୍ତ୍ରର 'ମାର୍କାକୁ' ଅର୍ଥାତ୍ ଆକୃତିପ୍ରକୃତିକୁ ଟିକିଏ ପରୀକ୍ଷଣ କରି ଦେଖାଯାଉ ।

'ଗଣତନ୍ତ୍ର' ଶବ୍ଦର ଅର୍ଥ ହେଲା ଲୋକଙ୍କ ଦ୍ୱାରା ଶାସନ । ପୁଞ୍ଜିବାଦୀ ଦେଶର ଅଧିକାଂଶ ଅଧିବାସୀ ଶ୍ରମଜୀବୀ ଲୋକେ ଯଦି କାର୍ଯ୍ୟତଃ ଅଧିକାରରୁ ବଞ୍ଚିତ ହୋଇ ରହନ୍ତି, ତେବେ ପୁଞ୍ଜିବାଦୀ ଦେଶରେ ଲୋକଙ୍କ ଦ୍ୱାରା ଶାସନ ବା ସରକାର ଚାଲେ, ଏ କଥା କିପରି କୁହାଯାଇପାରେ ? ସେଥିରେ ଉତ୍ପାଦନ ଉପକରଣ-ଗୁଡ଼ିକର ମାଲିକ ପୁଞ୍ଜିପତି ଓ ତାଙ୍କର ସବଂଶକ୍ତିମାନ ଏକଚାଟିଆ ଅନୁଷ୍ଠାନ-ଗୁଡ଼ିକ ହାତରେ ହିଁ କ୍ଷମତାର ଡୋର ଥାଏ । ସେହିମାନେ ପୁଞ୍ଜିବାଦୀ ଦେଶମାନଙ୍କରେ ପ୍ରକୃତ ମାଲିକ—ସର୍ବେସର୍ବା । ପ୍ରଜାତନ୍ତ୍ର ହେଉ ବା ରାଜତନ୍ତ୍ର ହେଉ ସମସ୍ତ ପ୍ରକାର ପୁଞ୍ଜିବାଦୀ ଶାସନ ହେଉଛି, ବୁର୍ଜୁଆମାନଙ୍କର ଏକଛତ୍ର ଶାସନ,—ଏହା ସବୁ ଶ୍ରମଜୀବୀ ଲୋକମାନଙ୍କ ବିରୁଦ୍ଧରେ ଉଦ୍ଦିଷ୍ଟ ।

ପୁଞ୍ଜିବାଦୀ ଦେଶମାନଙ୍କରେ ଗଣତନ୍ତ୍ର ପ୍ରକୃତରେ କେବଳ ଶୋଷକମାନଙ୍କର, ତାହା ଶୋଷକମାନଙ୍କ ପାଇଁ ଥାଏ ।

ଲେନିନ୍ କହିଥିଲେ, ବୁର୍ଜୁଆ ଗଣତନ୍ତ୍ର "ସ୍ୱାଧୀନତା—ଅର୍ଥ ପୁଞ୍ଜିବାଦ ଅଧୀନରେ ସ୍ୱାଧୀନତା—ସଙ୍କୀର୍ଣ୍ଣ, ବିକୃତ, ମିଥ୍ୟା ଓ ପ୍ରବଞ୍ଚନାପୂର୍ଣ୍ଣ, ଧନୀ ଲୋକଙ୍କ ଲାଗି ସ୍ୱର୍ଗ, ଶୋଷିତ ଦରିଦ୍ର ଲୋକମାନଙ୍କ ପାଇଁ ଏକ ନାରଖାନା ଏବଂ ଶଠତା ଓ କପଟତା ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ ।"

## ଲୋକଙ୍କ ରାଷ୍ଟ୍ର

ସମାଜବାଦୀ ରାଷ୍ଟ୍ର ହେଉଛି ପ୍ରଥମ ରାଷ୍ଟ୍ର, ଯେଉଁଠାରେ କି ଲୋକ ହିଁ ପ୍ରକୃତରେ ଶାସନ କରନ୍ତି ; ଯେଉଁଠାରେ ଲୋକେ ଦେଶର ଶାସନରେ କେବଳ ନୁହେଁ, ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଓ ଅନ୍ୟ ସମସ୍ୟାମାନର ସମାଧାନରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି । ସମାଜବାଦୀ ସମାଜରେ ସମଗ୍ର ଜୀବନଧାରା ପ୍ରକୃତ ଗଣତନ୍ତ୍ର ଉପରେ ପ୍ରତିଷ୍ଠିତ, ସେହି ଗଣତନ୍ତ୍ର ମଧ୍ୟରେ ରାଜନୈତିକ ସ୍ୱାଧୀନତା ଓ ସାମାଜିକ ଅଧିକାର ନିହିତ ଥାଏ । ପୁଞ୍ଜିବାଦୀ ସମାଜରେ ସେହିସବୁ ଅଧିକାରର ଅଧିକାଂଶ କେବଳ କାଗଜ କଲମରେ ହିଁ ଥାଏ, କିନ୍ତୁ ସମାଜବାଦ ଅଧୀନରେ ତାହା ଦୃଢ଼ ଭାବେ ସୁନିଶ୍ଚିତ ହୁଏ ।

ସୋଭିଏତ୍ ରାଷ୍ଟ୍ରରେ ସର୍ବହରାର ଏକଛତ୍ର ଶାସନର ଉଦ୍ଭବ ଘଟିଥିଲା ।

ଏକଛତ୍ରବାଦର ଅର୍ଥ ହେଲା, ତାହା ସମାଜର ବିପୁଳ ସଂଖ୍ୟକ ଲୋକଙ୍କ ପାଇଁ, ସମସ୍ତ ଶ୍ରମଜୀବୀଙ୍କ ପାଇଁ ପ୍ରକୃତ ଗଣତନ୍ତ୍ର ।

ସର୍ବହରାର ଏହି ଏକଛତ୍ରବାଦ, ସୋଭିଏତ ୟୁନିଅନରେ ସମାଜବାଦ ନିର୍ମାଣର ଶକ୍ତିଶାଳୀ ହତିଆର ଭାବରେ ସମାଜବାଦର ବିଜୟକୁ ସୁନିଶ୍ଚିତ କରିଛି । ସମାଜବାଦର ଗଠନକାଳ ମଧ୍ୟରେ ସର୍ବହରା ଏକଛତ୍ରବାଦର ବି ପରିବର୍ତ୍ତନ ଘଟିଛି । ଶୋଷକ ଶ୍ରେଣୀମାନଙ୍କ ବିଲୋପ ସାଧନ ସହିତ, ତାର ଦମନମୂଳକ କାର୍ଯ୍ୟ ମଉଳି ଯାଇଛି । ଇତି ମଧ୍ୟରେ ସମାଜବାଦୀ ରାଷ୍ଟ୍ରର ମୌଳିକ କାର୍ଯ୍ୟ ଅର୍ଥାତ୍ ଅର୍ଥନୈତିକ, ସାଂଗଠନିକ, ଶିକ୍ଷା ଓ ସାଂସ୍କୃତିକ ନିର୍ଦ୍ଦେଶନ ଓ ପରିଚାଳନା ଆଦିର ପୂର୍ଣ୍ଣ ବିକାଶ ଘଟିଛି, ସର୍ବହରା ଗଣତନ୍ତ୍ର ସମସ୍ତ ଲୋକଙ୍କର ଗଣତନ୍ତ୍ର ଭାବରେ ପ୍ରସାର ଲାଭ କରିଛି ।

ପୁଞ୍ଜିବାଦରୁ କମ୍ୟୁନିଜମ ବା ସାମ୍ୟବାଦର ପ୍ରଥମ ସ୍ତର ସମାଜବାଦକୁ ଯାତ୍ରା କରିବାର ଅସ୍ଥାୟୀ ଅବସ୍ଥା ବା ପରିଗମନର ସମୁଦାୟ ସମୟ ମଧ୍ୟରେ ସର୍ବହରାର ଏକଛତ୍ରବାଦ ଆବଶ୍ୟକ । ସମାଜବାଦର ପୂର୍ଣ୍ଣ ଓ ଚରମ ବିଜୟ ପରେ ହିଁ ଏହାର ଆବଶ୍ୟକତା ରହିବ ନାହିଁ । ସୋଭିଏତ୍ ୟୁନିଅନରେ ପୁଞ୍ଜିବାଦ

ବ୍ୟବସ୍ଥାର ପୂର୍ବପ୍ରଚଳନଜନିତ ସୃଷ୍ଟ ଥିବା ଭଳି ଆଉ କୌଣସି ଶ୍ରେଣୀ ନାହିଁ । ସାମାଜିକ ଓ ରାଜନୈତିକ ଏକତା ସୁପ୍ରତିଷ୍ଠିତ ହୋଇଛି, ଶ୍ରମିକଶ୍ରେଣୀର ମତାଦର୍ଶ ସମସ୍ତ ଜନସାଧାରଣଙ୍କ ମତାଦର୍ଶରେ ପରିଣତ ହୋଇଛି । ଏଭଳି ପରିସ୍ଥିତିରେ ସୋଭିଏତ୍ ସମାଜରେ ଅନ୍ୟ ଲୋକଙ୍କ ଉପରେ ଶ୍ରମିକଶ୍ରେଣୀର ଆଧିପତ୍ୟର ପ୍ରଶ୍ନ ନାହିଁ । ସମାଜବାଦର ବିଜୟ ପରେ ସମାଜ କେବଳ ଶ୍ରମଜୀବୀ ଲୋକମାନଙ୍କୁ ଯେଉଁ କେବଳ ବନ୍ଧୁଭାବାପନ୍ନ ଲୋକମାନଙ୍କୁ ନେଇ ଗଠିତ ହୋଇଛି । ସେମାନଙ୍କର ଗତି ପ୍ରକୃତି ପରସ୍ପର ବଦଳି ଯାଇଛି, ସେଠାରେ କୌଣସି ଲୋକ ଆଉ ଦମନ କରିବାକୁ ନାହିଁ, କି ସର୍ବହରା ଏକଛତ୍ରବାଦର ଆଉ ଆବଶ୍ୟକତା ନାହିଁ ।

ଆଜି ଯେତେବେଳେ ସୋଭିଏତ୍ ୟୁନିଅନରେ ସମାଜବାଦର ସମ୍ପୂର୍ଣ୍ଣ ଓ ଚରମ ବିଜୟ ଘଟିଛି, ସୋଭିଏତ୍ ଲୋକେ ପୂର୍ଣ୍ଣମାତ୍ରାରେ କମ୍ୟୁନିଜମ୍ ବା ସାମ୍ୟବାଦ ଗଠନ କାଳରେ ପଦାର୍ପଣ କରିଛନ୍ତି, ସେତେବେଳେ ସର୍ବହରାର ଏକଛତ୍ରବାଦର ଲକ୍ଷ୍ୟ ସାଧିତ ହୋଇଛି, ଘରୋଇ ପରିସ୍ଥିତି ଦୃଷ୍ଟିରୁ ଦେଶରେ ତାର ଆଉ କୌଣସି ଆବଶ୍ୟକତା ନାହିଁ ।

ସର୍ବହରା ଏକଛତ୍ରବାଦ ରାଷ୍ଟ୍ର ସମଗ୍ର ଲୋକମାନଙ୍କ ରାଷ୍ଟ୍ରରେ ପରିଣତ ହୋଇଛି । ଦେଶର ଅଧିବାସୀମାନଙ୍କ ଇଚ୍ଛା ଆକାଂକ୍ଷା ଓ ସ୍ୱାର୍ଥର ପ୍ରକାଶକାରୀ ଅନୁଷ୍ଠାନ ଭାବରେ ପରିବର୍ତ୍ତିତ ହୋଇଛି । ମାତ୍ର ଏହା ଶ୍ରମିକଶ୍ରେଣୀର ଗୁରୁତ୍ୱକୁ ଆଡ଼େଇ ଦେଉ ନାହିଁ । ଜନରାଷ୍ଟ୍ର ମଞ୍ଚରେ ଏହା ନିଜର ପରିଚାଳନାକାରୀ ଭୂମିକାରେ କାର୍ଯ୍ୟ କରିବାରେ ଲାଗିଛି । ଏହା ସର୍ବାଧିକ ଅଗ୍ରଗାମୀ, ସର୍ବଶ୍ରେଷ୍ଠ ସଂଗଠିତ ଶ୍ରେଣୀ, ସୋଭିଏତ ସମାଜର ନିଷ୍ପତ୍ତିମୂଳକ ଉତ୍ପାଦିକା ଶକ୍ତି, ସାମାଜିକ ରାଜନୈତିକ ଶକ୍ତି ହୋଇ ରହିଛି । ତେବେ ଶ୍ରମିକଶ୍ରେଣୀ ସର୍ବହରାର ଏକଛତ୍ର ଶାସନ କରିଥାରେ ଅଥ ସମାଜକୁ ପରିଚାଳିତ କରୁନାହିଁ ।

ସର୍ବହରାର ଏକଛତ୍ରବାଦୀ ରାଷ୍ଟ୍ର, କମ୍ୟୁନିଜମ୍ ବା ସାମ୍ୟବାଦ ଗଠନର ଯେଉଁ ଐତିହାସିକ ଲକ୍ଷ୍ୟ ସାଧନ ଆରମ୍ଭ କରିଥିଲା, ସୋଭିଏତ୍ ୟୁନିଅନର ଜନରାଷ୍ଟ୍ର ତାହା ହିଁ କାର୍ଯ୍ୟକାରୀ କରୁଛି । ସର୍ବହରା ଏକଛତ୍ରବାଦୀ ରାଷ୍ଟ୍ରରୁ ତାହା ସମଗ୍ର ଜନସାଧାରଣଙ୍କର ବା ଜନରାଷ୍ଟ୍ରରେ ପରିଣତ ହେଉଛି, କମ୍ୟୁନିଜମ୍ ଦିଗରେ ସୋଭିଏତ୍ ସମାଜର ଅଗ୍ରଗତିରେ ଏକ ବିରାଟ ପଦକ୍ଷେପ ; ପୂର୍ବ ପୂର୍ବ ରାଷ୍ଟ୍ର ମଣ୍ଡଳ ପଡ଼ିବାର ପଥରେ, ସାମ୍ୟବାଦୀ ସାଧାରଣ ସ୍ୱାୟତ୍ତ-ଶାସନ ପ୍ରଚଳିତ ହେବା ଦିଗରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ।

ସର୍ବହରା ଏକଛତ୍ରବାଦୀ ରାଷ୍ଟ୍ର, ସମଗ୍ର ଜନଗୋଷ୍ଠୀ ଭାବରେ ବିକାଶ ଲାଭ କରିବା ଫଳରେ ରାଷ୍ଟ୍ର ଦୁର୍ବଳ ହେବା ପରିବର୍ତ୍ତେ ଅଧିକ ସବଳ ହୋଇ ଉଠିଛି, ତାର ସମାଜିକ ଭିତ୍ତି ପ୍ରସାରିତ ହୋଇଛି, ସୋଭିଏତ ସମାଜର ଶୀର୍ଷ ଅଧିକ ଦୃଢ଼ୀଭୂତ ହୋଇଛି, ସମାଜବାଦୀ ଗଣତନ୍ତ୍ର ପୂର୍ଣ୍ଣରୂପେ ପ୍ରସ୍ଫୁଟିତ ହୋଇଛି ।

## ସୋଭିଏତ ୟୁନିଅନର ରାଜନୈତିକ ଭିତ୍ତି

ସୋଭିଏତ୍ ସୋସାଲିଷ୍ଟ ରିପବ୍ଲିକ ୟୁନିଅନର ସମଗ୍ର ଅଞ୍ଚଳରେ ସମସ୍ତ ରାଷ୍ଟ୍ରର କର୍ତ୍ତୃତ୍ୱ ତଳେ ଗ୍ରାମ ଓ ସହର ପ୍ରଭୃତ ସ୍ଥାନୀୟ ସୋଭିଏତ୍‌ଗୁଡ଼ିକରୁ ଆରମ୍ଭ କରି ସୁପ୍ରିମ ବା ସର୍ବୋଚ୍ଚ ସୋଭିଏତ୍ ପର୍ଯ୍ୟନ୍ତ "ଶ୍ରମଜୀବୀ ଲୋକଙ୍କ ପ୍ରତିନିଧିମାନଙ୍କ ସୋଭିଏତ୍" ଦ୍ୱାରା କାର୍ଯ୍ୟକାରୀ ହୁଏ । ସେହି ସୋଭିଏତଗୁଡ଼ିକୁ ନେଇ ସୋଭିଏତ୍ ୟୁନିଅନର ରାଜନୈତିକ ଭିତ୍ତି ଗଠିତ ହୋଇଛି ।

ସୋଭିଏତ୍ ହେଉଛି ଗୋଟିଏ ପ୍ରକାରର ଶାସନ ବ୍ୟବସ୍ଥା ବା ସରକାର, ଏହା ଲୋକମାନଙ୍କ ନିକଟବର୍ତ୍ତୀ, ଲୋକମାନଙ୍କର ପ୍ରିୟ । ସୋଭିଏତଗୁଡ଼ିକର ଜରିଆରେ ହିଁ କେବଳ ଜନତାର ସର୍ବଶ୍ରେଷ୍ଠ ସନ୍ତାନ ସନ୍ତତିମାନେ ଦେଶ ଶାସନ କରନ୍ତି । ଶାସନ ବ୍ୟବସ୍ଥାରେ ଲକ୍ଷ ଲକ୍ଷ ଲୋକଙ୍କର ସକ୍ରିୟ ଅଂଶ ଗ୍ରହଣକୁ ସୋଭିଏତ୍ ସୁନିଶ୍ଚିତ କରିଛି । ସମସ୍ତ ଜାତିମାନଙ୍କୁ ତାହା ଗୋଟିଏ ରାଷ୍ଟ୍ର ମଧ୍ୟରେ ଏକତାବଦ୍ଧ କରିଛି; ଏବଂ ତଦ୍ଦ୍ୱାରା ସେମାନଙ୍କର ସାଧାରଣ ସମସ୍ୟା ସବୁର ସଫଳ ସମାଧାନ ଦିଗରେ ସମ୍ଭାବନାମାନ ଯୋଗାଇ ଦେଇଛି ।

ସୋଭିଏତ୍‌ଗୁଡ଼ିକ ଅସଂଖ୍ୟ ସୂତ୍ରରେ ଲୋକମାନଙ୍କ ସହିତ ବନ୍ଧା । ପ୍ରାୟ ୨୦ ଲକ୍ଷ ହେବ ଶିଳ୍ପ ଶ୍ରମିକ, କୋଠାଘର ଫାର୍ମର ଚାଷୀ, ଓ ଅନ୍ୟାନ୍ୟ ବୃତ୍ତିର ଲୋକେ ହେଉଛନ୍ତି ସୋଭିଏତ୍ ୟୁନିଅନର ସୁପ୍ରିମ ସୋଭିଏତ, ସବୁ ୟୁନିଅନ ଓ ଅଟୋନୋମସ ରିପବ୍ଲିକର ସୋଭିଏତ୍ ଓ ସ୍ଥାନୀୟ ସୋଭିଏତମାନଙ୍କର ସଭ୍ୟ । ତାଙ୍କୁ ନିର୍ବାଚିତ କରିଥିବା ଲୋକମାନଙ୍କ ସହିତ ସେମାନେ ଦୈନନ୍ଦିନ ପ୍ରତ୍ୟକ୍ଷ ସମ୍ପର୍କ ରଖିଥାନ୍ତି । ସ୍ଥାନୀୟ ସୋଭିଏତ୍‌ମାନଙ୍କର ଷ୍ଟାଣ୍ଡିଂକମିଟିର ସଦସ୍ୟ ଭାବରେ ୨୦ ଲକ୍ଷରୁ ଊର୍ଦ୍ଧ୍ୱ ନାଗରିକ, ଅର୍ଥନୈତିକ ଓ ସାଂସ୍କୃତିକ ବିଷୟମାନ ଆଲୋଚନା ଓ ନିଷ୍ପତ୍ତି କରିବାରେ ଅଂଶ ଗ୍ରହଣ କରନ୍ତି ।

ସୋଭିଏତ୍‌ଗୁଡ଼ିକ ହେଉଛି, ଶ୍ରମଜୀବୀ ଲୋକଙ୍କ କ୍ଷମତାର ଅଙ୍ଗ ତଥା ସ୍ୱୟଂଶାସିତ ସଂସ୍ଥା । ଜାତି ଉପଜାତି (Race & nationality) ନିର୍ବିଶେଷରେ ସେଥିକୁ ସବୁ ପ୍ରତିନିଧି ଭାବରେ ନାଗରିକମାନେ ନିର୍ବାଚିତ ହୁଅନ୍ତି ଓ

ତାହା ଜରିଆରେ ଜନସାଧାରଣଙ୍କ କର୍ତ୍ତୃତ୍ୱକୁ ସାବ୍ୟସ୍ତ ଓ କାର୍ଯ୍ୟକାରୀ କରନ୍ତି । ସୋଭିଏତ୍ର ଇଉନିୟନ ଲୋକଙ୍କର ବନ୍ଧୁତ୍ୱ ଓ ସହଯୋଗର; ସୋଭିଏତ୍ର ନାଗରିକମାନଙ୍କର ମହାନ ସ୍ୱତନ୍ତ୍ରତାର ପ୍ରତୀକ ହେଉଛି ଏହି ସବୁ ସୋଭିଏତ୍ ।

ଲୋକଙ୍କ ଦ୍ୱାରା ପ୍ରକୃତ ଶାସନ ବା ସରକାର,—ଏହି ର ପ୍ରକାଶକ ବ ଏହି ସବୁ ।

ସୋଭିଏତ୍ ଇଉନିଅନର ଓ ପୁଂଜିବାଦୀ ଦେଶମାନଙ୍କର ସର୍ବୋଚ୍ଚ ଶାସନକାରୀ ସଂସ୍ଥାଗୁଡ଼ିକୁ ତୁଳନା କରି ଦେଖିଲେ କଥାଟି ଅଧିକ ପରିଷ୍କାର ହେବ । ଆମର ସର୍ବୋଚ୍ଚ ବିଧାନକାରୀ ସଂସ୍ଥା ହେଉଛି, ସୋଭିଏତ୍ ଇଉନିଅନର ସୁପ୍ରିମ ବା ସର୍ବୋଚ୍ଚ ସୋଭିଏତ୍ । କିନ୍ତୁ ଏହାର ସଭ୍ୟ କେଉଁମାନେ ? ସେମାନେ ସମସ୍ତେ ହେଉଛନ୍ତି ଶ୍ରମିକ, କୃଷକ କମ୍ବା ବୃଦ୍ଧିଜୀବୀ । ସୁପ୍ରିମ୍ ସୋଭିଏତ୍ର ଅର୍ଦ୍ଧରୁ ଅଧିକ ସଭ୍ୟ ହେଉଛନ୍ତି ଉତ୍ପାଦନରେ ପ୍ରତ୍ୟକ୍ଷ ଭାବେ ନିଯୁକ୍ତ ଥିବା ଶ୍ରମିକ କମ୍ବା କୃଷକ । କିନ୍ତୁ ପୁଞ୍ଜିବାଦୀ ଦେଶର ପାର୍ଲିଆମେଣ୍ଟରେ ସବୁ ଆସନ ଅଲଂକୃତ କରନ୍ତି କେଉଁମାନେ ? ବ୍ୟାଙ୍କମାଲିକ, ଜମିମାଲିକ ଏବଂ ବଡ଼ ବଡ଼ ପାଉଆର ଅଫିସର ପ୍ରଭୃତି । ଦୃଷ୍ଟାନ୍ତ ସ୍ୱରୂପ : ଆମେରିକା ଯୁକ୍ତରାଷ୍ଟ୍ର କଂଗ୍ରେସରେ ଜଣେ ହେଲେ ଶିଳ୍ପ ଶ୍ରମିକ ବା କୃଷୀ ସଭ୍ୟ ହୋଇନାହିଁ । ଫେଡେରାଲ ଜର୍ମାନୀର ଶତକଡ଼ା ୫୧ ଭାଗ ହେଉଛନ୍ତି ଶ୍ରମିକ; ଅଥଚ ୧୦ ଜଣ ମାତ୍ର ଶ୍ରମିକ ବୁନ୍ଦେଷ୍ଟାଗ୍ରେ ସଦସ୍ୟ । ସେଥିମଧ୍ୟରୁ ଅଧିକାଂଶ ପୂର୍ବ ନାମକୁ ମାତ୍ର ଶ୍ରମିକ ।

ସୋଭିଏତ୍ ନିର୍ବାଚନ ବ୍ୟବସ୍ଥା ସମାଜବାଦୀ ଗଣତନ୍ତ୍ରର ଏକ ଉତ୍କୃଷ୍ଟ ନମୁନା । ସ୍ଥାନୀୟ ସୋଭିଏତ୍ରୁ ସର୍ବୋଚ୍ଚ ସୋଭିଏତ୍ ପର୍ଯ୍ୟନ୍ତ ସମସ୍ତ ଶାସନକାରୀ ସଂସ୍ଥାର ସଭ୍ୟମାନେ ଲୋକମାନଙ୍କ ଦ୍ୱାରା ଗୁପ୍ତ ଭାବରେ ସମାନ ସାର୍ବଜନୀନ ଓ ପ୍ରତ୍ୟକ୍ଷ ଭୋଟ ଅଧିକାର ବଳରେ ନିର୍ବାଚିତ ହୁଅନ୍ତି । ନିର୍ବାଚନକୁ ସଂଗଠିତ ଓ ତଦାରଖ କରିବାରେ ଲୋକେ ହିଁ ଅଂଶ ଗ୍ରହଣ କରନ୍ତି । ଏହି ଉଦ୍ଦେଶ୍ୟରେ ଗଣ ସଂଗଠନମାନଙ୍କର ପ୍ରତିନିଧିଙ୍କୁ ନେଇ ନିର୍ବାଚନ କମିସନମାନ ଗଢ଼ାଯାଏ ।

ସୋଭିଏତ୍ ୟୁନିଅନରେ ପ୍ରାପ୍ତ ବୟସ ସବୁ ଲୋକ ଭୋଟଦାତା ଭୋଟ ଦିଅନ୍ତି । ସୋଭିଏତ୍ର ଜନସାଧାରଣ ନିର୍ବାଚନକୁ ଏକ ସାମାଜିକ କର୍ତ୍ତବ୍ୟ ବୋଲି ଜ୍ଞାନ କରନ୍ତି । ଭୋଟ ଗ୍ରହଣ ଦିନ ହେଉଛି, ସୋଭିଏତ୍ ୟୁନିଅନରେ ଦେଶବ୍ୟାପୀ ଛୁଟିର ଦିନ ।

"ଆମେରିକାସ୍ଥ ଜୀବନ ଧାରାର" ର ଭକ୍ତମାନେ ଗର୍ବ କରନ୍ତି ଯେ, ଆମେରିକାରେ ଦୁଇଦଳ, ଡେମୋକ୍ରାଟ୍ ଓ ରିପବ୍ଲିକାନ ମଧ୍ୟରେ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତା ହୁଏ ।

କିନ୍ତୁ ଏହି ଦୁଇଦଳ ଭିତରେ କଣ ବାସ୍ତବରେ କୌଣସି ପାର୍ଥକ୍ୟ ଅଛି ? ଦୁଇଟିଯାକ ବୁର୍ଜୋଆ ଦଳ, ଶୋଷକଶ୍ରେଣୀ ସ୍ୱାର୍ଥର ରକ୍ଷକ, ଦୁଇଟି ଏକଚାଟିଆ ପୁଞ୍ଜିପତି ଦଳର ପ୍ରତିନିଧି ; ଖୁବ ଡମ୍ଫିଢ଼ୋଫାନ କରି ନିର୍ବାଚନ ସଂଗ୍ରାମରେ ପଶନ୍ତି, ପ୍ରଚୁର ଅର୍ଥ ବ୍ୟୟ କରନ୍ତି; ଲାଞ୍ଚ ମିଛ, ହିଂସା, ଧମକ, ପ୍ରତାରଣା, ପ୍ରବଂଚନା ଏବଂ ମିଥ୍ୟା ପ୍ରତିଶ୍ରୁତି ଆଦିର ଆଶ୍ରୟ ନିଅନ୍ତି ।

ବାସ୍ତବରେ ଶ୍ରମଜୀବୀ ଲୋକମାନଙ୍କ ସ୍ୱାର୍ଥକୁ ପ୍ରକାଶ କରୁଥିବା କମ୍ୟୁନିଷ୍ଟ ଓ ଓ୍ୟାକର୍ସ ପାର୍ଟିର ସଭ୍ୟମାନେ ଯେପରି କୌଣସି ମତେ ପାର୍ଲିଆମେଣ୍ଟକୁ ନିର୍ବାଚିତ ହୋଇ ନ ଆସିବେ, ସେଥିଲାଗି ପୁଞ୍ଜିବାଦୀ ଦେଶମାନଙ୍କରେ ସମସ୍ତ ବ୍ୟବସ୍ଥା ଗ୍ରହଣ କରାଯାଏ ।

ସୋଭିଏତ ଗଣତନ୍ତ୍ରର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ଯେ, "ଶ୍ରମଜୀବୀ ଲୋକ—ସୋଭିଏତର ଡେପୁଟି ବା ପ୍ରତିନିଧିମାନେ," ଭୋଟ ଦାତାମାନଙ୍କର ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବାକୁ ଏବଂ ନିଜ ନିଜ କାର୍ଯ୍ୟ ସଂପର୍କରେ ରିପୋର୍ଟ ଦେବାକୁ ବାଧ୍ୟ । କୌଣସି ସଭ୍ୟ ଯଦି ଲୋକଙ୍କର ବିଶ୍ୱାସଭାଜନ ନ ହୁଏ, ଅର୍ଥାତ୍ ଲୋକଙ୍କ ବିଶ୍ୱାସ ଅନୁଯାୟୀ କାମ ନ କରେ, ତେବେ ତାକୁ ସଭ୍ୟ ପଦରୁ ତାଡ଼ିବା ବା ଫେରାଇ ଆଣିବାର ଓ ତା' ପରିବର୍ତ୍ତେ ଅନ୍ୟ ଜଣକୁ ନିର୍ବାଚିତ କରିବାର ଅଧିକାର ଲୋକଙ୍କର ଅଛି ।

## କାର୍ଯ୍ୟରେ ଗଣତନ୍ତ୍ର

ସୋଭିଏତ୍ ଇଉନିଅନର ସଂବିଧାନ କେବଳ ନାଗରିକମାନଙ୍କ ଅଧିକାର ଘୋଷଣା କରେ ନାହିଁ, ସେ ବାସ୍ତବରେ ନିଶ୍ଚୟତା ପ୍ରଦାନ କରେ ।

ସୋଭିଏତ୍ ଇଉନିଅନର ପ୍ରତ୍ୟେକ ନାଗରିକର କାର୍ଯ୍ୟ କରିବାର ଅଧିକାର ରହିଛି । ଏହାର ଅର୍ଥ କାମରେ ନିଯୁକ୍ତ ହେବା ନିଶ୍ଚିତ ପ୍ରତିଶ୍ରୁତି ବା ଗ୍ୟାରେଣ୍ଟି, କାମର ଗୁଣ ଓ ପରିମାଣ ଅନୁରୂପେ ପାରିଶ୍ରମିକ ବା ପ୍ରାପ୍ୟ ପାଇବାର ପୂର୍ଣ୍ଣ ଅଧିକାର ଅଛି । ପ୍ରତ୍ୟେକ ଲୋକ ଯେ କାମ ପାଇ ପାରୁଛନ୍ତି, ଏହାର କାରଣ, ସେଠାରେ ଏକ ଯୋଜନାବଦ୍ଧ ବର୍ଦ୍ଧିଷ୍ଣୁ ଜାତୀୟ ଅର୍ଥନୀତି ରହିଛି । ଅର୍ଥନୈତିକ ସଂକଟ ଓ ବେକାର ସମସ୍ୟା ଏକାବେଳକେ ଅସମ୍ଭବ କଥା ହୋଇଛି ।

ସୋଭିଏତ୍ ରାଷ୍ଟ୍ର ସବୁ ନାଗରିକଙ୍କୁ ବିଶ୍ରାମ ଲାଭ ବା ଅବସରପ୍ରାପ୍ତି ହେବା ଅଧିକାର ଦେଇଛି । ଶିଳ୍ପ କାରଖାନା, ଅଫିସ ଏବଂ ବେଶାଦାର ଶ୍ରମିକମାନଙ୍କ ପାଇଁ

ଶ୍ରମଦିବସ ୭ ଘଣ୍ଟା କରାଯାଇଛି । କଠିନ ପରିଶ୍ରମ କାମରେ ଶ୍ରମଦିବସ ୬ ଘଣ୍ଟା, ଏପରିକି ୪ ଘଣ୍ଟାକୁ କମାଇ ଦିଆଯାଇଛି । ମଜୁରି ଓ ଦରମା ପାଉଥିବା ଲୋକଙ୍କୁ ନିୟମିତ ଛୁଟି ଛଡ଼ା ପୁରା ମଜୁରି ବା ଦରମା ସହ ବାର୍ଷିକ ଛୁଟି ମିଳୁଛି । ସ୍ୱାସ୍ଥ୍ୟ ନିବାସ, ଛୁଟିନିବାସ, ଆମୋଦ-ଭବନ, ଥିଏଟର, ସିନେମା, ପାଠାଗାର ଗ୍ରନ୍ଥାଗାର, ପାର୍କ ଓ ଷ୍ଟାଡ଼ିୟମ ଆଦି ସମସ୍ତଙ୍କ ଲାଗି ଉନ୍ମୁକ୍ତ ରହିଛି ।

ପ୍ରତ୍ୟେକ ସୋଭିଏତ୍ ନାଗରିକର ବୃଦ୍ଧ ଅବସ୍ଥାରେ ଭରଣପୋଷଣ ଭତ୍ତା ଓ ରୁଗ୍‌ଣ ବା ଅକ୍ଷମ ଅବସ୍ଥାଲାଗି ଭତ୍ତା ପାଇବାର ଅଧିକାର ରହିଛି । ଶିଳ୍ପ କାରଖାନା, ଅଫିସ ଓ ପେଶାଦାର ଶ୍ରମିକମାନଙ୍କ ପାଇଁ ସାମାଜିକ ବୀମା ବା ଇନ୍‌ସୁରେନସ ବ୍ୟବସ୍ଥାର ଖର୍ଚ୍ଚ ରାଷ୍ଟ୍ର ତୁଲାଏ । ବୃଦ୍ଧାବସ୍ଥାରେ, ରୋଗବ୍ୟାଧିରେ କିମ୍ବା କାର୍ଯ୍ୟ କରିବାରେ ଅକ୍ଷମ ହେଲେ ତାହା ଭତ୍ତା ଓ ଅନ୍ୟାନ୍ୟ ସୁବିଧା ଆଦି ପ୍ରଦାନ କରେ । ଏବେ ନିକଟରେ ସୋଭିଏତ୍ ସରକାର ଅଧିକାଂଶ କ୍ଷେତ୍ରରେ ଏହି ପେନସନର ହାର ବିଶେଷ ବୃଦ୍ଧି କରିଦେଇଛି । କୋଠଚାଷୀମାନେ ବୃଦ୍ଧାବସ୍ଥା ଓ ଅକର୍ମଣ୍ୟ ଭତ୍ତା ପାଆନ୍ତି । ଆଜିମଧ୍ୟ ଏହି ସବୁ ପେନସନ ଓ ଭତ୍ତା କୋଠଚାଷ ଫାର୍ମ ଓ ରାଷ୍ଟ୍ର ଫଣ୍ଡରୁ ଦିଆଯାଏ । ଲୋକଙ୍କୁ ଏଥିଲାଗି କିଛି ଦେବାକୁ ହୁଏନାହିଁ । ସୋଭିଏତ୍ ଇଉନିଅନର ପ୍ରତ୍ୟେକ ନାଗରିକକୁ ବିନା ପଇସାରେ ଚିକିତ୍ସା ସୁବିଧା ଯୋଗାଇ ଦିଆଯାଏ ।

ପୁଞ୍ଜିବାଦୀ ଦେଶରେ ସବୁ ଶ୍ରମଜୀବୀ ଲୋକଙ୍କର ପିଲାମାନେ ଉଚ୍ଚ ଶିକ୍ଷା ପାଇବା ଦୂରେ ଥାଉ, ଏପରିକି ମାଧ୍ୟମିକ ଶିକ୍ଷା ପାଇବା ଅତ୍ୟନ୍ତ କଷ୍ଟକର ବ୍ୟାପାର । ଲୋକଙ୍କୁ ଅଜ୍ଞାନ ଅନ୍ଧକାରରେ ରଖିବା ବୁର୍ଜୁଆମାନଙ୍କ ପକ୍ଷରେ ସବୁବେଳେ ଲାଭଜନକ । କାରଣ, ଏହାଦ୍ୱାରା ଲୋକଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବା ସହଜ ହୁଏ । ପୁଞ୍ଜିବାଦୀ ଦେଶରେ ଶ୍ରମିକ ଓ ଚାଷୀମାନଙ୍କର ପିଲାମାନଙ୍କୁ ତାଙ୍କ କାର୍ଯ୍ୟ ସମ୍ପାଦନେ ଯେତିକି ଆବଶ୍ୟକ ସେତିକି ଶିକ୍ଷା ଦିଆଯାଏ ଏବଂ ପୁଞ୍ଜିପତିମାନଙ୍କ ପିଲାଙ୍କୁ ଅଧିକ ମୁନଫା ସୃଷ୍ଟି କରିବା ଲାଗି ଆବଶ୍ୟକୀୟ ଯଥେଷ୍ଟ ଶିକ୍ଷା ଦିଆହୁଏ । ମୁଖ୍ୟତଃ ଅବସ୍ଥାପନ୍ନ କୃଷକମାନଙ୍କ ପିଲାମାନେ ମଧ୍ୟମ ଓ ଉଚ୍ଚଶିକ୍ଷା ପାଇଥାନ୍ତି । ଔପନିବେଶିକ ଦେଶମାନଙ୍କରେ ଅଧିମାତ୍ରାରେ ଅଧିକାଂଶ ଲୋକେ ଏକଦମ ନିରକ୍ଷର ।

ସୋଭିଏତ୍ ଇଉନିଅନରେ ପ୍ରତ୍ୟେକ ନାଗରିକର ଶିକ୍ଷା-ଲାଭର ଅଧିକାର ରହିଛି । ବ୍ୟାପକ ଭାବେ ପ୍ରାଥମିକ, ମାଧ୍ୟମିକ ସ୍କୁଲ ଓ ଉଚ୍ଚ ଶିକ୍ଷାନୁଷ୍ଠାନ ଗଠନ କରାଯାଇ ସବୁଠାରେ ମାତୃଭାଷାରେ ଶିକ୍ଷା ଦେବାର ବ୍ୟବସ୍ଥା ପ୍ରଚଳନ କରାଯାଇଛି । ସମସ୍ତ ଶିକ୍ଷାକୁ ରାଷ୍ଟ୍ରର ଖର୍ଚ୍ଚରେ ବିନା ପଇସାରେ ପ୍ରଦାନ କରିବାର

ପ୍ରୟୋଗ ଦିଆଯାଇ ସେହି ଅଧିକାରକୁ ସୁନିଶ୍ଚିତ କରାଯାଇଛି । ବିଶେଷ ଧରଣର ମାଧ୍ୟମିକ ସ୍କୁଲ କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କର ଅଧିକାଂଶ ଛାତ୍ର ସରକାରଠାରୁ ବୃତ୍ତି ପାଉଛନ୍ତି ।

ସୋଭିଏତ୍ ନାଗରିକମାନଙ୍କର ସାଧାରଣ ସଭା ସମ୍ମିଳନୀ ଓ ଶୋଭାଯାତ୍ରା ଆଦି କରିବାର ସ୍ୱାଧୀନତା ସହିତ ବକ୍ତୃତା ଦେବାର, ସମ୍ବାଦପତ୍ର ପ୍ରକାଶ କରିବାର ଅଧିକାରମାନ ରହିଛି । ଶ୍ରମଜୀବୀ ଲୋକ ଓ ସେମାନଙ୍କ ସଙ୍ଗଠନଗୁଡ଼ିକ ହାତରେ ଛାପଖାନା, କାଗଜ ଭଣ୍ଡାର, ସମ୍ବାଦପତ୍ର, ପ୍ରକାଶନ ପ୍ରତିଷ୍ଠାନ, ଆକାଶବାଣୀ, ଟେଲିଭିଜନ ଓ ସାଧାରଣ କୋଠାବାଡ଼ିମାନ ଅର୍ପଣ କରିବା ଦ୍ୱାରା ସେହି ଅଧିକାର ପୂରଣ ନିଶ୍ଚିତ ହୋଇଛି ।

ବୁର୍ଜୁଆଙ୍କ ଭଡ଼ାଟିଆ ଲେଖକମାନେ କହୁଥାଆନ୍ତି ଯେ, ପୁଞ୍ଜିବାଦୀ ଦେଶରେ- ସବୁ କଥା କହିବାର, ସମ୍ବାଦପତ୍ର ପ୍ରକାଶ କରିବାର ଏବଂ ସଭାସମିତି କରିବାର ଅଧିକାର ରହିଛି । କିନ୍ତୁ ଉଦାହରଣ ସ୍ୱରୂପ ଯଦି ଛପାଖାନା, କାଗଜ ଭଣ୍ଡାର, ପତ୍ରପତ୍ରିକା, ପ୍ରକାଶନ ପ୍ରତିଷ୍ଠାନ ଆଦି ପୁଞ୍ଜିପତିଙ୍କ ହାତରେ ରହେ ତେବେ, ଶ୍ରମିକ-କୃଷୀମାନଙ୍କ ପକ୍ଷରେ ସମ୍ବାଦପତ୍ର ପ୍ରକାଶ କରିବାର ସ୍ୱାଧୀନତା ରହିବ ବା କିପରି ? ପୁଞ୍ଜିପତି ଯେଉଁ 'ଲେଖା' ଲୋଡ଼େ ନାହିଁ, ତାହା ସେ ନିଜ କାଗଜରେ ପ୍ରକାଶ କରିବାକୁ ଅନୁମତି ଦେବ ବା କାହିଁକି ?

ଏହା ସତ ଯେ, ଅନେକ ଦେଶରେ ଶ୍ରମଜୀବୀ ଲୋକଙ୍କର ନିଜର ସମ୍ବାଦପତ୍ର ଓ ପତ୍ରିକା ଆଦି ରହିଛି । ଶ୍ରମଜୀବୀମାନେ ଯେଉଁ ଚାନ୍ଦା ଦିଅନ୍ତି, ସେଥିରେ ତାହା ସବୁ କମ୍ୟୁନିଷ୍ଟ, ଟ୍ରେଡ ୟୁନିୟନ ଓ ଅନ୍ୟାନ୍ୟ ସଙ୍ଗଠନ ପକ୍ଷରୁ ପ୍ରକାଶିତ ହୁଏ । କିନ୍ତୁ ଏହିଭଳି ପ୍ରକାଶନସବୁ ସଦାସର୍ବଦା ଅଭିଯୁକ୍ତ ଓ ଦଣ୍ଡିତ ହୁଏ, ତାକୁ ସବୁ ଜୋରିମାନା ଦେବାକୁ ପଡ଼େ ଓ କେତୋଟି ଏକାବେଳକେ ବନ୍ଦ ଓ ବାଜ୍ୟାପ୍ତ ହୋଇଯାଏ ।

ଲୋକେ ସୋଭିଏତ୍ ୟୁନିୟନରେ ରାଜନୈତିକ କାର୍ଯ୍ୟରେ ଯୋଗ ଦେବାରେ ସମସ୍ତ ସୁବିଧା ଉପଭୋଗ କରନ୍ତି । ସୋଭିଏତ୍ ନାଗରିକମାନେ ବିଭିନ୍ନ ସଙ୍ଗଠନ ଯଥା ଟ୍ରେଡ ୟୁନିୟନ, କୋଅପରେଟିଭ ସୋସାଇଟି, ମହିଳା ସଙ୍ଗଠନ, ବୈଜ୍ଞାନିକ ସଙ୍ଘ ପ୍ରଭୃତିରେ ଏକଜୁଟ ହେବାର କାର୍ଯ୍ୟ ଅଧିକାର ପାଆନ୍ତି । ସବୁଠାରୁ ସକ୍ରିୟ ଓ ଚେତନଶୀଳ ଶ୍ରମିକ, କୃଷକ ଓ ବୁଦ୍ଧିଜୀବୀ ସୋଭିଏତ୍ ୟୁନିୟନ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦିଅନ୍ତି– ସେହି କମ୍ୟୁନିଷ୍ଟପାର୍ଟି ହେଉଛି

ସାଧାରଣ ଓ ରାଷ୍ଟ୍ର ଉଭୟ କ୍ଷେତ୍ରରେ ଶ୍ରମଜୀବୀ ଲୋକମାନଙ୍କ ସମସ୍ତ ସଙ୍ଗଠନର ପରିଚାଳନାକାରୀ ମୌଳିକ କେନ୍ଦ୍ର ଅନୁଷ୍ଠାନ ।

ପୁଞ୍ଜିପତି-ସରକାରସବୁ କାଗଜକଲମରେ ଶ୍ରମଜୀବୀ ଲୋକଙ୍କୁ ଇଉନିଅନ ଓ ଦଳ ଗଠନ କରିବାର ସୁଯୋଗ ଦେଇଥାନ୍ତି । ତେବେ ସମସ୍ତେ ଜାଣନ୍ତି ଯେ ବହୁ ପୁଞ୍ଜିବାଦୀ ଦେଶରେ ଲୋକଙ୍କ ସ୍ୱାର୍ଥର ପ୍ରକୃତ ପ୍ରତିନିଧିରୂପେ ଥିବା କମ୍ୟୁନିଷ୍ଟ ପାର୍ଟିଗୁଡ଼ିକୁ ଅଭିଯୁକ୍ତ ଓ ଦଣ୍ଡିତ କରିଥାନ୍ତି । ଏଣୁ ସେହି ପାର୍ଟିସବୁ ବେଆଇନ ଭାବରେ କାର୍ଯ୍ୟ କରିବାକୁ ବାଧ୍ୟ ହୁଅନ୍ତି । ପୁଞ୍ଜିବାଦୀ ଦେଶରେ ସମସ୍ତ ପ୍ରକାର ଉପାୟରେ ଟ୍ରେଡ୍ ଇଉନିଅନମାନଙ୍କୁ ମଧ୍ୟ ସଂକୁଚିତ କରାଯାଏ । ପ୍ରଗତିଶୀଳ ଟ୍ରେଡ୍ ଇଉନିଅନର କର୍ମୀମାନେ ଶ୍ରମିକମାନଙ୍କ ଅଧିକାରକୁ ସାବ୍ୟସ୍ତ କରିବାପାଇଁ ଠିଆ ହେଲେ, ସେମାନଙ୍କୁ କାମରୁ ବାହାର କରି ଦିଆଯାଏ ଓ କଚେରୀ ଅଦାଲତରେ ସେମାନଙ୍କୁ ଦଣ୍ଡ ଦିଆଯାଏ ।

ସୋଭିଏତ୍ ରାଷ୍ଟ୍ର ଦେଶରୁ ସୋଭିଏତ ସଂଘର ନାଗରିକମାନଙ୍କୁ ନିର୍ଭର ପ୍ରତିଶ୍ରୁତି ବା ଗ୍ୟାରେଣ୍ଟି ଦିଆହୋଇଛି ଯେ ପ୍ରତ୍ୟେକ ଲୋକର 'ଅକ୍ଷୁଣ୍ଣତା' ପ୍ରତ୍ୟେକ ଘରର ଅକ୍ଷୁଣ୍ଣତା ଓ ଚିଠିପତ୍ର ଆଦାନ ପ୍ରଦାନର ବା କଥାବାର୍ତ୍ତାରେ ଗୋପନୀୟତା ସୁରକ୍ଷିତ ରହିବ । ଅର୍ଥାତ୍ ସମାଜ ବିରୋଧୀ ଆଇନ୍ ବିରୋଧୀ ନ ହେଲେ କାହାର ଦେହରେ କି ମନରେ କୌଣସି ଆଞ୍ଚ ଆସିବ ନାହିଁ, କୌଣସି ଘରର ଦଖଲ ଉଚ୍ଛେଦ ହେବ ନାହିଁ, ଚିଠିପତ୍ର ପ୍ରଭୃତି ଯୋଗ ଗୋପନୀୟତାରେ ବ୍ୟାଘାତ ଘଟିବ ନାହିଁ, ଏ ବ୍ୟକ୍ତି ଓ ଗୃହର ଅକ୍ଷୁଣ୍ଣତା ଅଲଂଘ୍ୟ ବୋଲି ବିବେଚିତ ହେବ ।

ଅର୍ଥନୈତିକ, ସାଂସ୍କୃତିକ, ରାଜନୈତିକ, ସରକାରୀ ଓ ଅନ୍ୟାନ୍ୟ ସାର୍ବଜନୀନ କାର୍ଯ୍ୟ ସଂଚାଳନ ସମସ୍ତ କ୍ଷେତ୍ରରେ ସୋଭିଏତ୍ ଇଉନିଅନର ସ୍ତ୍ରୀଲୋକମାନେ ପୁରୁଷମାନଙ୍କ ସହିତ ସମାନ ଅଧିକାର ଉପଭୋଗ କରନ୍ତି । କାମ କରିବା, ଶିକ୍ଷା ପାଇବା, ବିଶ୍ରାମ ଓ ଅବସର ଉପଭୋଗ କରିବାରେ ପୁରୁଷମାନଙ୍କ ସହିତ ସେମାନଙ୍କର ସମାନ ଅଧିକାର ରହିଛି । କାମ ଲାଗି ସେମାନେ ସମାନ ପ୍ରାପ୍ୟ ପାଆନ୍ତି । ରାଷ୍ଟ୍ର, ମା ଓ ପିଲାମାନଙ୍କର ସ୍ୱାର୍ଥ ରକ୍ଷା କରେ, ବହୁ ସନ୍ତାନର ମା ଏବଂ ଅବିବାହିତ ମା ମାନଙ୍କୁ ସାହାଯ୍ୟ ଦିଏ ପୂରା ଦରମାରେ ୧୧୨ ଦିନ ପ୍ରସୂତି ଛୁଟି ଯୋଗାଏ । ସୋଭିଏତ୍ ୟୁନିଅନରେ ସ୍ତ୍ରୀଲୋକ ଓ ଶିଶୁମାନଙ୍କ ଲାଗି ବ୍ୟାପକ ସଂଖ୍ୟାରେ ପ୍ରସୂତି ଭବନ, କ୍ରେଷ୍ଟା କେନ୍ଦ୍ର, ଶିଶୁ ଭବନ, କିଣ୍ଡରଗାର୍ଟେନ ପ୍ରଭୃତି ପ୍ରତିଷ୍ଠିତ ହୋଇଛି ।

ଜାତି ଉପଜାତି ନିର୍ବିଶେଷରେ ସୋଭିଏତ୍ ନାଗରିକମାନଙ୍କର ସବୁ କ୍ଷେତ୍ରରେ ସମାନ ଅଧିକାର ରହିଛି । ନାଗରିକ ଅଧିକାର ଉପରେ କିମ୍ବା ଜାତିବର୍ଣ୍ଣ ଦୃଷ୍ଟିରୁ, ବା ନାଗରିକଙ୍କ ଲାଗି ନିର୍ଦ୍ଦିଷ୍ଟ ଥିବା ସୁବିଧା ସୁଯୋଗ ଉପରେ କୌଣସି ପ୍ରକାର ବାଧା ନିଷେଧ ପ୍ରୟୋଗ ଓ ଜାତି ବର୍ଣ୍ଣଗତ ପ୍ରଭେଦ ବା 'ଅସ୍ପୃଶ୍ୟ' ଭାବର ପ୍ରଚାର ଆଇନ୍ ଅନୁସାରେ ଦଣ୍ଡନୀୟ ହୋଇଛି ।

ସୋଭିଏତ୍ ସମାଜବାଦୀ ରାଷ୍ଟ୍ର ଲୋକମାନଙ୍କର ଅଧିକାର ଓ ସ୍ୱାଧୀନତାକୁ ଦୃଢ଼ ଆଉ ନିଖୁଣ ଭାବେ ରକ୍ଷା କରୁଛି । ଏହା ସମାଜବାଦୀ ବ୍ୟବସ୍ଥାର ଲକ୍ଷଣକୁ ଉଚ୍ଚ ଦୃଢ଼ ଭାବେ ପ୍ରତିଫଳିତ କରୁଛି । ପ୍ରତ୍ୟେକ ଶ୍ରମିକ, ପ୍ରତ୍ୟେକ କୋଠସ୍ୱତ୍ୱ ଫାର୍ମ ଚାଷୀ ଏବଂ ପ୍ରତ୍ୟେକ ସମାଜବାଦୀ ବୁଦ୍ଧିଜୀବୀ ତାର ନାଗରିକ ଅଧିକାର ସ୍ୱାଧୀନତା ସୋଭିଏତ ଆଇନ ଦ୍ୱାରା ନିର୍ଭରଯୋଗ୍ୟ ଭାବେ ସୁରକ୍ଷିତ ବୋଲି ନିର୍ଭର ପ୍ରଣାଳୀରେ କାର୍ଯ୍ୟ କରିପାରୁଛି ।

## ୪ । କମ୍ୟୁନିଷ୍ଟ ପାର୍ଟି, ସୋଭିଏତ ଲୋକଙ୍କର ନେତା

ମାର୍କସବାଦ-ଲେନିନ୍‌ବାଦ ଆମକୁ ଶିକ୍ଷା ଦିଏ ଯେ ସର୍ବହରାର ନିଜର ଏକ ରାଜନୈତିକ ପାର୍ଟି ନ ଥିଲେ ତାହା ଶୋଷକ ଶ୍ରେଣୀର ଶୃଙ୍ଖଳ ଦୂର କରି ପାରିବ ନାହିଁ । କ୍ଷମତା ହାସଲ କରି ସେଥିରେ ପ୍ରତିଷ୍ଠିତ ହୋଇ ପାରିବ ନାହିଁ କି ସମାଜବାଦ ଗଠନ କରିପାରିବ ନାହିଁ ।

ଲେନିନ୍ କହିଥିଲେ, ସଂଗଠନ ଛଡ଼ା ସର୍ବହରାର ଅନ୍ୟ କୌଣସି ଅସ୍ତ୍ର ନାହିଁ । "ଆମକୁ ବିପ୍ଳବୀମାନଙ୍କର ଏକ ସଂଗଠନ ଦିଅ, ଆମେ ରୁଷକୁ ଓଲଟାଇ ଦେବୁ ।" ୧୯୦୨ ରେ ଲେନିନ୍ ଏହି ଭବିଷ୍ୟତ ବାଣୀ ଶୁଣାଇଥିଲେ । ସେ ଯେଉଁ ବଲସେଭିକ ପାର୍ଟି ପ୍ରତିଷ୍ଠା କରିଥିଲେ ତାହାହିଁ ଠିକ୍ ରୁଷକୁ ଓଲଟାଇ ଦେଇଛି । ତାକୁ ଏକ ବିରାଟ ସମାଜବାଦୀ ଦେଶରେ ପରିଣତ କରିଛି ।

### ଜନତାର ଅଗ୍ରଣୀ.

ସୋଭିଏତ୍ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ଏକ ଦୀର୍ଘ ଗୌରବମୟ ପଥ ଅତିକ୍ରମ କରି ଆସିଛି । ପ୍ରଥମ ଅବସ୍ଥାରେ ଏହାର ସଭ୍ୟ ସଂଖ୍ୟା କେତେକ ହଜାର ମାତ୍ର ଥିଲା, ସେହି ସଭ୍ୟମାନେ କଲ୍ଲ ନିଷ୍ଠାପର ନିର୍ଭୀକ, ସାହସୀ, ବିପ୍ଳବୀ ଥିଲେ, ବିଶୁଦ୍ଧ ଆଉ ସଂଗ୍ରାମୀ ସର୍ବହରା ଯୋଦ୍ଧା ଥିଲେ ।

ଜାର କର୍ତ୍ତୃପକ୍ଷ ସେହି ବିପ୍ଳବୀମାନଙ୍କୁ ନାନା ଭାବରେ ଦଣ୍ଡିତ କଲେ, ସେମାନଙ୍କୁ କାରାରୁଦ୍ଧ କଲେ, ସେମାନଙ୍କ ମଧ୍ୟରୁ ଅନେକଙ୍କୁ ନିର୍ବାସିତ କଲେ ଓ ଫାଶି ଖୁଣ୍ଟର ଝୁଲାଇ ଦେଲେ, କିନ୍ତୁ ଏ ସବୁ କିଛି ପାର୍ଟିର ଅଭିବୃଦ୍ଧିକୁ ରୋଧ କରି ପାରିଲା ନାହିଁ । ଶ୍ରମିକଶ୍ରେଣୀ ଉପରେ ତାର ପ୍ରଭାବର ପ୍ରସାରକୁ ବନ୍ଦ କରିପାରିଲା ନାହିଁ । ଯୋଦ୍ଧାମାନେ ଏ ସଂଗ୍ରାମରେ ନିର୍ଯାତିତ ହେଲେ, ନିହତ ହେଲେ. ସେମାନଙ୍କର ଶୂନ୍ୟସ୍ଥାନ ସବୁ ପୂରଣ କରିବା ଲାଗି ନୂଆ ନୂଆ ଯୋଦ୍ଧା ଅଗ୍ରସର ହେଲେ । ଶ୍ରମିକଶ୍ରେଣୀ ଓ ଶ୍ରମଜୀବୀ ଜନତାର ଶ୍ରେଷ୍ଠ ସନ୍ତାନମାନେ ପାର୍ଟିରେ ଯୋଗ ଦେବା ଦ୍ୱାରା ପାର୍ଟିର ବୃଦ୍ଧି ଘଟିଲା । ୧୯୧୭ ର ଫେବୃୟାରୀ ବିପ୍ଳବ ବେଳକୁ ବଲସେଭିକ୍‌ମାନେ ଏକ ଆଇନ ସଂଗତ ପାର୍ଟି ଭାବରେ କାର୍ଯ୍ୟ କଲେ । ସେହି ସମୟକୁ ପାର୍ଟିର ସଭ୍ୟ ସଂଖ୍ୟା ପ୍ରାୟ ୪୦,୦୦୦ରୁ ୪୫, ୦୦୦ ହୋଇ ଉଠିଲା । ସେହି ବର୍ଷ ଠିକ ଅକ୍ଟୋବର ବିପ୍ଳବ ପୂର୍ବରୁ ସଭ୍ୟ ସଂଖ୍ୟା ୨୪୦,୦୦୦ରେ ପହଞ୍ଚିଲା

ସମାଜବାଦୀ ବିପ୍ଳବର ବିଜୟରେ ପାର୍ଟି କ୍ଷମତାକୁ ଆସିଲା ପରେ ସଭ୍ୟ ସଂଖ୍ୟା ଜୋରସୋରରେ ବୃଦ୍ଧି ପାଇବାକୁ ଲାଗିଲା ।

ଉଲ୍ଲେଖ୍ୟ ଯୋଗ୍ୟ ଘଟଣା ହେଉଛି ଯେ ସୋଭିଏତ୍ ୟୁନିଅନର ଇତିହାସରେ ସବୁଠାରୁ କଠିନ ସମୟରେ ସଭ୍ୟ ସଂଖ୍ୟାର ବିଶେଷ ବୃଦ୍ଧି ଘଟିଛି । ବିରାଟ ଦେଶପ୍ରେମୀ ଯୁଦ୍ଧରେ ଯେତେବେଳେ ଦେଶର ଭାଗ୍ୟ ଟଳମଳ ହୋଇ ଉଠିଲା, ଲକ୍ଷ ଲକ୍ଷ ସଂଖ୍ୟାରେ ସୋଭିଏତ୍‌ର ଦେଶପ୍ରେମୀ ରଣକ୍ଷେତ୍ରରେ ଓ ଆଭ୍ୟନ୍ତରୀଣ ଦେଶରକ୍ଷା ସମ୍ପର୍କରେ ଆସି ପାର୍ଟିରେ ଯୋଗ ଦେଲେ । ବହୁ ସଂଖ୍ୟାରେ ପାର୍ଟିର ସଭ୍ୟ ଯୁଦ୍ଧରେ ପ୍ରାଣ ଦେଲେ । ସେହି ସମୟରେ ସଭ୍ୟ ସଂଖ୍ୟା ୧୬୦, ୦୦୦୦ରୁ ଅଧିକ ହେଲା ।—ଯୁଦ୍ଧ ପରଠାରୁ ପାର୍ଟି ବୃଦ୍ଧି ପାଇବାରେ ଲାଗିଛି, ବର୍ତ୍ତମାନ ସଭ୍ୟ ଓ ପ୍ରାର୍ଥୀ ସଭ୍ୟ ସଂଖ୍ୟା ପ୍ରାୟ କୋଟିଏ କୋଡ଼ିଏ ଲକ୍ଷ ହେବ ।

ପାର୍ଟିର ଏହି କ୍ରମଗତ ଅଭିବୃଦ୍ଧିର ଅର୍ଥ ତାହା ଯେ ଲୋକଙ୍କ ବିଶେଷ ବିଶ୍ୱାସ ଭାଜନ ହୋଇଛି, ଏହାର କାରଣ କଣ ? ଏହାର ସର୍ବ ପ୍ରଧାନ କାରଣ ପାର୍ଟି ସବୁବେଳେ ଲୋକଙ୍କର ସ୍ୱାର୍ଥ ଲାଗି ନିଃସ୍ୱାର୍ଥପର ଭାବେ ଲଢ଼ି ଆସୁଛି ।

ପୂର୍ବତନ ରୁଷର ପୁଞ୍ଜିପତି ଜମିମାଲିକମାନଙ୍କର ପାର୍ଟି ଗୁଡ଼ିକ ଅର୍ଥାତ୍ ଯେଉଁ ପାର୍ଟି ସବୁ ଶୋଷକ ଶ୍ରେଣୀମାନଙ୍କର ସ୍ୱାର୍ଥ ରକ୍ଷା କରୁଥିଲେ, ସେହି ପାର୍ଟିକୁ ସବୁ ପୁଞ୍ଜିପତି ଜମିମାଲିକଙ୍କ ସହିତ ଏକାବେଳକେ ମୂଳପୋଛ କରି ଦିଆଗଲା । ସୋସାଲିଷ୍ଟ ରେଭଲ୍ୟୁସନ ଙ୍କ ଓ ମେନସେଭିକଙ୍କ ପେଟି ବୁର୍ଜୁଆ ପାର୍ଟିମାନେ ମଧ୍ୟ

ସୋଭିଏତ ଇଉନିଅନରେ ଅସ୍ତିତ୍ୱ ହରାଇଲେ । ଲୋକମାନେ ଏହିସବୁ ପାର୍ଟିଙ୍କ ବିଶ୍ୱାସଘାତକ ପ୍ରକୃତ ବୁଝି ପାରିଲେ ଓ ସେମାନଙ୍କଠାରୁ ଫେରି ଆସିଲେ । ଦୀର୍ଘଦିନର ଅଭିଜ୍ଞତା ଶ୍ରମିକ କୃଷକମାନଙ୍କୁ ଶିକ୍ଷା ଦେଲା ଯେ କମ୍ୟୁନିଷ୍ଟମାନେ ହିଁ କେବଳ ଲୋକମାନଙ୍କର ପ୍ରକୃତ ସୁଖ ସୁବିଧା ଲାଗି ଲଢ଼ନ୍ତି, ସେହିମାନେ ହିଁ କେବଳ ଲୋକମାନଙ୍କୁ ନିର୍ଭୁଲ ମାର୍ଗରେ ପରିଚାଳିତ କରନ୍ତି ।

ବଲସେଭିକ ପାର୍ଟିର ପ୍ରତିଷ୍ଠା ଦିନୁ ତାର ଲକ୍ଷ୍ୟ ସୁସ୍ପଷ୍ଟ । ୧୯୦୩ରେ ଦ୍ୱିତୀୟ ପାର୍ଟି କଂଗ୍ରେସରେ ଆଗ ଗୋଟିଏ ପ୍ରୋଗ୍ରାମ ଗୃହୀତ ହୋଇଥିଲା । ସେହି ପ୍ରୋଗ୍ରାମ ସମାଜବାଦୀ ସମାଜ ଗଠନ ଲାଗି ପୁଞ୍ଜିର କ୍ଷମତାକୁ ଧ୍ୱଂସ କରି ସର୍ବହରା ଏକଛତ୍ରବାଦ ପ୍ରତିଷ୍ଠା କରିବାକୁ ହେବ, ଏହି ଲକ୍ଷ୍ୟ ସ୍ଥିର କରିଥିଲା । ୧୯୧୭ରେ ମହାନ ଅକ୍ଟୋବର ବିପ୍ଳବର ବିଜୟ କମ୍ୟୁନିଷ୍ଟ ପାର୍ଟି ହାତରେ କ୍ଷମତା ଅର୍ପଣ କଲା । ଲେନିନ ଏଣୁ ଲେଖିଥିଲେ, "ଆମେ ବଲସେଭିକ ପାର୍ଟି ବିଶ୍ୱାସ କଲୁ ଇ ରୁଷକୁ ଦୃଢ଼ଭାବେ ବୁଝାଇ ଦେଇ ପାରିଛୁ । ଆମେ ଦରିଦ୍ରମାନଙ୍କ ପାଇଁ ଧନୀଙ୍କଠାରୁ, ଖଟିଖିଆ ଲୋକମାନଙ୍କ ପାଇଁ ଶୋଷକମାନଙ୍କ ଠାରୁ ଛଡ଼ାଇ ଆଣି ପାରିଛୁ ରୁଷକୁ । ଏବେ ଆମକୁ ଶାସନ କରିବାକୁ ପଡ଼ିବ ରୁଷରେ ।"

୧୯୧୯ରେ ଅଷ୍ଟମ ପାର୍ଟି କଂଗ୍ରେସରେ, ଲେନିନଙ୍କ ନିର୍ଦ୍ଦେଶ ଓ ତାଙ୍କର ପ୍ରତ୍ୟକ୍ଷ ଅଂଶ ଗ୍ରହଣ ଦ୍ୱାରା ଏକ ନୂତନ ପାର୍ଟି ପ୍ରୋଗ୍ରାମର ଚିତ୍ରା କରାଯାଇଥିଲା । ଏହି ପ୍ରୋଗ୍ରାମରେ ପାର୍ଟିର ଲକ୍ଷ୍ୟ ଧାର୍ଯ୍ୟ ହୋଇଥିଲା ସମାଜବାଦ ନିର୍ମାଣ । ସେହି କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବାକୁ ଯାଇ ସୋଭିଏତ୍ ଇଉନିଅନର ଜନସାଧାରଣ ଓ କମ୍ୟୁନିଷ୍ଟ ପାର୍ଟିର ସମସ୍ତ କାର୍ଯ୍ୟର ମୁଖ୍ୟ ଫଳ ହୋଇଥିବ—ସୋଭିଏତ ଇଉନିଅନରେ ସମାଜବାଦର ପୂର୍ଣ୍ଣ ବିଜୟ ।

୧୯୬୧ରେ ୨୨ଶ ପାର୍ଟି କଂଗ୍ରେସ ତୃତୀୟ କାର୍ଯ୍ୟକ୍ରମ, ଏକ କମ୍ୟୁନିଷ୍ଟ ସମାଜ ନିର୍ମାଣର ପ୍ରୋଗ୍ରାମ ଗ୍ରହଣ କଲା ।

କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟ ସମାଜବାଦୀ ସମାଜରେ ଜୀବନର ସମସ୍ତ ଦିଗରେ ବ୍ୟାପ୍ତ ହୋଇଛି । "ପ୍ରତ୍ୟେକ ପଦାର୍ଥ ମନୁଷ୍ୟ ଲାଗି, ମନୁଷ୍ୟର ମଙ୍ଗଳ ନିମନ୍ତେ" ଏହି ମହାନ କମ୍ୟୁନିଷ୍ଟ ସତ୍ରୂତ୍ରମୂଳକ ନୀତିକୁ ଅନୁସରଣ କରି ଚାଲିଛି ।

କମ୍ୟୁନିଷ୍ଟ ପାର୍ଟି ହେଉଛି ସୋଭିଏତ ଲୋକଙ୍କର ଏକମାତ୍ର ରାଜନୈତିକ ପାର୍ଟି । ସୋଭିଏତ ଇଉନିଅନରେ ଗଠିତ ନୂତନ ସାମାଜିକ ବ୍ୟବସ୍ଥାର ମର୍ମ ଅନୁରୂପରେ

ଠିକ୍ ସୋଭିଏତ୍ ରୁଷରେ ଆଉ କୌଣସି ବିରୁଦ୍ଧାତ୍ମକ ଶ୍ରେଣୀ ନାହିଁ । ତେଣୁ ସେଠାରେ ଅନେକଗୁଡ଼ିଏ ପାର୍ଟି ହେବାର କୌଣସି କାରଣ ଆଉ ନାହିଁ । କମ୍ୟୁନିଷ୍ଟ ପାର୍ଟିର ଲକ୍ଷ୍ୟ ହେଉଛି—ସୋଭିଏତ ଲୋକଙ୍କର, ଶିଳ୍ପ କାରଖାନାର ଶ୍ରମିକ, ଯୌଥ ଖମାରର ଚାଷୀ ଓ ବୁଦ୍ଧିଜୀବୀ—ପାର୍ଟିର ସଭ୍ୟ ହୁଅନ୍ତୁ କି ନାହିଁ ସମସ୍ତଙ୍କର ଲକ୍ଷ୍ୟ ।

ପାର୍ଟି ହେଉଛି ସୋଭିଏତ ସମାଜର ପରିଚାଳକ ଶକ୍ତି । ତାର ଗଣସଙ୍ଗଠନର ସର୍ବୋଚ୍ଚ ରୂପ । ବୈପ୍ଳବିକ ତତ୍ତ୍ୱ ସମ୍ବନ୍ଧରେ ସର୍ବୋତ୍କୃଷ୍ଟ ଜ୍ଞାନ ଧରି ତାହା ଏକ ସର୍ବଶ୍ରେଷ୍ଠ ଅଭିଜ୍ଞ ଗଣ ସଙ୍ଗଠନ ଭାବରେ ଶ୍ରମଜୀବୀ ଲୋକଙ୍କର ଅନ୍ୟାନ୍ୟ ଗଣ ସଙ୍ଗଠନକୁ ପରିଚାଳିତ କରେ । ମେହନତକାରୀ ଜନସାଧାରଣଙ୍କୁ ପରିଚାଳିତ କରିବାରେ ପାର୍ଟି ପ୍ରରୋଚନା ଓ ପ୍ରବର୍ତ୍ତନାକୁ ପ୍ରଧାନ ପଦ୍ଧତି ଭାବରେ ବ୍ୟବହାର କରିଥାଏ ।

ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ସୋଭିଏତ ଲୋକଙ୍କର ସୁପରୀକ୍ଷିତ ଅଗ୍ରଣୀ ସଙ୍ଗଠନ । ଏହା ସୋଭିଏତ ଇଉନିଅନର ଅଧିକ ଅଗ୍ରଗାମୀ, ରାଜନୈତିକ ଭାବରେ ଅଧିକ ଚେତନଶୀଳ ଶ୍ରମିକ, ଯୌଥଚାଷୀ ଓ ବୁଦ୍ଧିଜୀବୀ ସଂପ୍ରଦାୟକୁ ଏକତାବଦ୍ଧ କରେ ।

ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି କଣ ସବୁବେଳେ ସମଗ୍ର ଲୋକଙ୍କର ଅଗ୍ରଣୀ ହୋଇ ରହିଥିଲା ?

ନାହିଁ, ସବୁବେଳେ ନ ଥିଲା । ଶ୍ରମିକଶ୍ରେଣୀର ଏକ ଅଗ୍ରଗାମୀ ବାହିନୀ ହିସାବରେ, ତାର ଗଣସଙ୍ଗଠନର ସର୍ବୋଚ୍ଚ ରୂପ ଭାବରେ ତାହା ଜନ୍ମଲାଭ କରିଥିଲା, ଶକ୍ତି ସଞ୍ଚୟ କରିଥିଲା । ଜନ୍ମଲାଭ କରିବା ମୁହୂର୍ତ୍ତରୁ ହିଁ ଏହା ସଦାସର୍ବଦା ଶ୍ରମଜୀବୀ ଲୋକଙ୍କର ମୌଳିକ ଦାବୀକୁ ପ୍ରକାଶ କରି ଆସୁଛି ।

ବୈପ୍ଳବିକ ସଂଗ୍ରାମ ଓ ସମାଜବାଦୀ ନିର୍ମାଣ କାଳରେ ପ୍ରଥମେ ଅଧିକାଂଶ ସୋଭିଏତ୍ ଲୋକଙ୍କୁ ଏବଂ ତାପରେ ସମସ୍ତ ଲୋକଙ୍କୁ ପାର୍ଟି ଶ୍ରମିକଶ୍ରେଣୀର ଲାଇନ ବା ମତ ପ୍ରତି ସମର୍ଥନ ଜଣାଇବା ଉପରେ ଟାଣି ଆଣିବା ପାଇଁ ଅସମ୍ଭବ କାମ କରିଥିଲା । ତାହାର ପରିଚାଳନାରେ ସୋଭିଏତ ଇଉନିଅନ ଶୋଷକ ଶ୍ରେଣୀମାନଙ୍କୁ ଲୋପ କରି ପାରିଥିଲା । ଦେଶର ଅର୍ଥନୈତିକ ଓ ସାମାଜିକ ଜୀବନରେ ପୁରାପୁରି ପରିବର୍ତ୍ତନ ଆସିଥିଲା । ପାର୍ଟିର ନେତୃତ୍ୱରେ ଶ୍ରମିକ ଶ୍ରେଣୀର ନାୟକତ୍ୱର ଉଦ୍ୟମ ଅନ୍ୟାନ୍ୟ ଅସର୍ବହରା ଶ୍ରମଜୀବୀ (କୃଷକ, କାରିଗର, ବୁଦ୍ଧିଜୀବୀ) ସଂପ୍ରଦାୟଙ୍କୁ ଦର୍ଶାଇ ଦେଇଥିଲା, ଶ୍ରମିକଶ୍ରେଣୀର ସ୍ୱାର୍ଥ ଓ ସେମାନଙ୍କର ମୌଳିକ ସ୍ୱାର୍ଥ ଏକ ଓ



**ВСЕГДА С ПАРТИЕЙ!**

ଦ୍ଧୋ କମ୍ୟୁନିଷ୍ଟ ପାର୍ଟିର ଗୋଟିଏ ପୋଷ୍ଟର
ଏଥିରେ ଲେଖାଅଛି—"ପାର୍ଟି ସହିତ ସର୍ବଦା ।"

ଅଛନ୍ତି । ସେଥି ସଙ୍ଗେ ସଙ୍ଗେ ସେମାନଙ୍କ ଚାହିଦାର ଅର୍ଥ ତ କମ୍ୟୁନିଜମର ସମର୍ଥକଙ୍କ ମତ ପ୍ରତି ଆକୃଷ୍ଟ କରିଥିଲା । ଏଣୁ 'କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମାଜର ନିର୍ମାଣ', ଶ୍ରମିକଶ୍ରେଣୀର ଏହି ଲକ୍ଷ୍ୟ ଏବେ ସମସ୍ତ ଜନସାଧାରଣଙ୍କର ଲକ୍ଷ୍ୟ ହୋଇଛି । ସୋଭିଏତ ଇଉନିଅନର ଶ୍ରମଜୀବୀ ମାତ୍ରକେ ପ୍ରତ୍ୟେକେ କମ୍ୟୁନିଷ୍ଟ ପାର୍ଟିର ଦୃଷ୍ଟିକୋଣ ଓ ମତାଦର୍ଶକୁ ଗ୍ରହଣ କରିଛନ୍ତି । ପାର୍ଟିର ନୀତିକୁ ନିଜ ନିଜର ନୀତି ବୋଲି ବିଚାରି ପୂର୍ଣ୍ଣ ପ୍ରାଣରେ ତାକୁ ଅନୁମୋଦନ ଓ ସମର୍ଥନ କରୁଛନ୍ତି । ସେମାନେ ଉପଲବ୍ଧି କରୁଛନ୍ତି ପାର୍ଟି ହେଉଛି ତାଙ୍କର ନେତା, ତାହା ତାଙ୍କ ସ୍ୱାର୍ଥର ପ୍ରକାଶକ ।

ଏହି ସମସ୍ତ ବିଷୟ ସହିତ ସର୍ବହରାର ଏକଛତ୍ରବାଦ ରାଷ୍ଟ୍ର ଯେ ସମସ୍ତ ଲୋକଙ୍କର ରାଷ୍ଟ୍ର ରୂପରେ ବିକାଶ ଲାଭ କରିଛି, ଏହି ଘଟଣାଟି ମଧ୍ୟ ପାର୍ଟିର ପ୍ରକୃତି, ପାର୍ଟିର ସାମାଜିକ ଭିତ୍ତିରେ ସମାଜ ଜୀବନ, ପାର୍ଟିର ଭୂମିକାକୁ ନିର୍ଦ୍ଦିଷ୍ଟ ରୂପେ ପ୍ରଭାବିତ କରିଛି । ସମାଜବାଦର ସଂପୂର୍ଣ୍ଣ ଓ ଚୂଡ଼ାନ୍ତ ବିଜୟ ଫଳରେ ଶ୍ରମିକଶ୍ରେଣୀର କମ୍ୟୁନିଷ୍ଟ ପାର୍ଟି ସମଗ୍ରଭାବେ ସୋଭିଏତ୍ ଜନସାଧାରଣଙ୍କ ପାର୍ଟିରେ ପରିଣତ ହୋଇଛି ।

ଶ୍ରମିକଶ୍ରେଣୀ ପାର୍ଟି ସମଗ୍ର ଲୋକଙ୍କର ପାର୍ଟି ରୂପରେ ବିକାଶ ଲାଭ ହେଉଛି ସୋଭିଏତ ସମାଜର—ବିକାଶର ସ୍ୱାଭାବିକ ପରିଣାମ । ପାର୍ଟିର ସାଂଗଠନିକ ଓ ଶିକ୍ଷାଦାନ କାର୍ଯ୍ୟର ମହାନ୍ ଫଳ, ସୋଭିଏତ୍ ୟୁନିଅନରେ କମ୍ୟୁନିଜମ୍ ନିର୍ମାଣ କରିବା ଦିଗରେ ଉଦ୍ଦେଶ୍ୟର ସାଫଲ୍ୟ ହାସଲର ନିର୍ଭର ପ୍ରତିଶ୍ରୁତି ।

ଏଣୁ, ସମସ୍ତ ଲୋକଙ୍କର ଏକ ରାଜନୈତିକ ସଂଗଠନରେ ପରିଣତ ହେବା ଦ୍ୱାରା ସୋଭିଏତ୍ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ଜନସାଧାରଣଙ୍କ ସହିତ ତାହାର ସଂପର୍କକୁ ଅଧିକ ଦୃଢ଼ୀଭୂତ କରିଛି ଏବଂ ଆହୁରି ଶକ୍ତିଶାଳୀ, ଆହୁରି ସୁଶୃଙ୍ଖଳ ହୋଇ ଉଠିଛି; ସାମାଜିକ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ତାର ପରିଚାଳନାମୂଳକ ଭୂମିକାକୁ ଅଧିକ ବୃଦ୍ଧି କରିଛି ।

ସୋଭିଏତ କମ୍ୟୁନିଷ୍ଟ ପାର୍ଟି ଆଗେ କେବେହେଲେ ଏତେ ଦୂର ଏକତାବଦ୍ଧ ଓ ଶକ୍ତିଶାଳୀ ହୋଇ ନ ଥିଲା, ଏକ ନୂତନ ଦୁନିଆ ଗଢ଼ିବାର କର୍ତ୍ତବ୍ୟ ପୂରଣ କରିବା ଦିଗରେ ଏତେ ଦୂର ଦକ୍ଷତା ଲାଭ କରି ନ ଥିଲା ।

## କମ୍ୟୁନିଷ୍ଟ ପାର୍ଟିର ଶକ୍ତିର ଉତ୍ସ

ଲୋକମାନଙ୍କର ଅଗ୍ରଣୀ ବା ଆଗୁଆ ବାହିନୀ ହେବା ଅର୍ଥ ରାଜନୈତିକଭାବେ ସେମାନଙ୍କର ସବୁଠାରୁ ଚେତନଶୀଳ ଗୋଷ୍ଠୀ ବା ସଂପ୍ରଦାୟ ହେବା ; ଶ୍ରମିକଶ୍ରେଣୀ

ଓ ସମସ୍ତ ଶ୍ରମଜୀବୀ ଲୋକଙ୍କୁ କପାଳ ଓ କେଉଁଆଡ଼କୁ ପରିଚାଳିତ କରାଯିବ ତାହା ହୃଦୟଙ୍ଗମ କରିବା । ଏହା କରିବାକୁ ହେଲେ ପାର୍ଟିର ଏକ ଅଗ୍ରଗାମୀ ବୈପ୍ଳବିକ ତତ୍ତ୍ୱ ରହିବା ଉଚିତ ।

"ବୈପ୍ଳବିକ ତତ୍ତ୍ୱ ବିନା କୌଣସି ବିପ୍ଳବ ହୋଇ ନ ପାରେ," ଏହି କଥା ଲେନିନ୍ କହିଥିଲେ । "ଯେଉଁ ପାର୍ଟି ସର୍ବଶ୍ରେଷ୍ଠ ଅଗ୍ରଗାମୀ ତତ୍ତ୍ୱ ଦ୍ୱାରା ପରିଚାଳିତ, ସେହି ହିଁ କେବଳ ଅଗ୍ରଗାମୀ ଲଢ଼ୁଆ ବାହିନୀର ଭୂମିକା ପୂରଣ କରିପାରେ ।"

ମାର୍କସବାଦୀ ଲେନିନବାଦୀ ଶିକ୍ଷା, ଅବସ୍ଥାକୁ ନିର୍ଭୁଲଭାବେ ବିଶ୍ଳେଷଣ କରିବାରେ, ଘଟଣାବଳୀର ବିକାଶର ଧାରା କେଉଁ ବାଟକୁ ଗତି କରୁଛି ତାହା ଦେଖିବାରେ, ଭବିଷ୍ୟତକୁ ପୂର୍ବରୁ ଜାଣିବାରେ ଏବଂ ଶ୍ରମଜୀବୀ ଲୋକମାନଙ୍କ ସ୍ୱାର୍ଥ ଦୃଷ୍ଟିରୁ ସମାଜକୁ ପରିଚାଳିତ କରିବାରେ ପାର୍ଟିକୁ ସାହାଯ୍ୟ କରିଥାଏ ।

କମ୍ୟୁନିଷ୍ଟ ପାର୍ଟି ଜୀବନର ନିୟମ ହେଲା, କମ୍ୟୁନିଜମ ବା ସାମ୍ୟବାଦର ଭିତ୍ତିରେ ନିର୍ମାଣ ସହିତ ତତ୍ତ୍ୱର ସୃଜନମୂଳକ ବିକାଶ ସାଧନ, ମାର୍କସବାଦ ଲେନିନ୍‌ବାଦର ମହାନ ନୀତିର ଦୃଢ଼ ସୁରକ୍ଷା ଏବଂ ସଂଶୋଧନବାଦୀ ବିକୃତି ଓ ମତାନ୍ଧମୂଳକ କଦର୍ଥ ପ୍ରକାଶ, ଏ ଉଭୟ ବିରୁଦ୍ଧରେ ଅପୋଷହୀନ ସଂଗ୍ରାମ ।

ସୋଭିଏତ୍ ୟୁନିଅନ କମ୍ୟୁନିଷ୍ଟ ପାର୍ଟିର ସୁଦୀର୍ଘ ଅଭିଜ୍ଞତାରୁ ପ୍ରମାଣିତ ହୁଏ ଯେ, ମାର୍କସବାଦୀ-ଲେନିନବାଦୀ ପାର୍ଟିର ଶକ୍ତି ତାର କର୍ମୀ ବା ସଭ୍ୟମାନଙ୍କ ଏକତା ଉପରେ ନିର୍ଭର କରେ । ଏକତା ବିନା ପାର୍ଟି ଶ୍ରମିକଶ୍ରେଣୀକୁ ସମବେତ କରି ପାରି ନ ଥାନ୍ତା କି ସମାଜବାଦୀ ବିପ୍ଳବର ବିଜୟ ପଥରେ ତାକୁ ପରିଚାଳିତ କରି ପାରି ନ ଥାନ୍ତା । ଏକତା ବିନା ପାର୍ଟି ଶୃଙ୍ଖଳା ରକ୍ଷା କରି ପାରି ନ ଥାନ୍ତା, ସମାଜବାଦ ନିର୍ମାଣ କରି ପାରି ନ ଥାନ୍ତା କି ସାମ୍ରାଜ୍ୟବାଦୀ ଆକ୍ରମଣକୁ ପ୍ରତିହତ କରି ପାରି ନ ଥାନ୍ତା ଏବଂ ବ୍ୟାପକ ଭାବରେ କମ୍ୟୁନିଜମ ବା ସାମ୍ୟବାଦ ନିର୍ମାଣ ଆରମ୍ଭ କରି ପାରି ନ ଥାନ୍ତା ।

ପାର୍ଟି ହେଉଛି, ଏକ ସାଧାରଣ ମତ ଆଉ ଏକ ସାଧାରଣ ବିଶ୍ୱ-ଦୃଷ୍ଟିକୋଣ ଯୋଗେ ଏକତାବଦ୍ଧ ଲୋକଙ୍କର ସ୍ୱେଚ୍ଛାମୂଳକ ସଂଗଠନ ।

କମ୍ୟୁନିଷ୍ଟମାନେ କେବଳ ସମାନ ଧରଣର ମତାମତ ପୋଷଣ କରନ୍ତି ନାହିଁ, ପାର୍ଟି ଦ୍ୱାରା ନିର୍ଦ୍ଧାରିତ କର୍ତ୍ତବ୍ୟ ପୂରଣ କରିବାକୁ ଯାଇ ସକ୍ରିୟଭାବେ ତାକୁସବୁ କାର୍ଯ୍ୟ କ୍ଷେତ୍ରରେ ପ୍ରୟୋଗ କରନ୍ତି । ମତାଦର୍ଶଗତ ଐକ୍ୟ ଯଥେଷ୍ଟ ନୁହେଁ । ତାହା

କାର୍ଯ୍ୟତଃ ଗତ ଐକ୍ୟ ଦ୍ୱାରା ପରପୁଷ୍ଟ ହେବା ଉଚିତ । ସବୁ ପାର୍ଟି ସଭ୍ୟଙ୍କ ଉପରେ ବାଧ୍ୟତାମୂଳକ ଏକ ପ୍ରକାରର ଶୃଙ୍ଖଳା ପ୍ରୟୋଗ, ଅର୍ଥାତ୍ ସାଙ୍ଗଠନିକ ଐକ୍ୟ ଦ୍ୱାରା ତାହା ବଳିଷ୍ଠ ହେବା ଉଚିତ । ପାର୍ଟି ନିଜର କର୍ତ୍ତବ୍ୟ କାର୍ଯ୍ୟକାରୀ କରୁଛି— ଏହାର କାରଣ କେବଳ ନୁହେଁ ଯେ, ପାର୍ଟି ନିଜ ଆଗରେ ଥିବା ଲକ୍ଷ୍ୟକୁ ପଷ୍ଟଭାବେ ଦେଖିପାରୁଛି ଏବଂ ଏକ ନିର୍ଭୁଲ ମତ ଅନୁସରଣ କରୁଛି । ଏହାର କାରଣ ବି ହେଉଛି—ପାର୍ଟି ଆଭ୍ୟନ୍ତରୀଣ ଜୀବନକୁ ଦକ୍ଷତାର ସହ ସଂଗଠିତ କରୁଛି । ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ମୌଳିକ ଗଠଣ, କମ୍ୟୁନିଷ୍ଟମାନଙ୍କର କର୍ତ୍ତବ୍ୟ ଓ ପାର୍ଟି ସଂଗଠନର କର୍ତ୍ତବ୍ୟ ପାର୍ଟି ନିୟମାବଳୀରେ ଲିପିବଦ୍ଧ ହୋଇଛି ।

ପାର୍ଟି ନିୟମାବଳୀ ହେଉଛି, ପାର୍ଟି ଜୀବନ ଓ ପାର୍ଟି ଶୃଙ୍ଖଳାର ସୁଦୃଢ଼ ଭିତ୍ତି ।

ସର୍ବୋପରି ପାର୍ଟି ସଭ୍ୟମାନଙ୍କର ଗଠଣ ଓ କାର୍ଯ୍ୟକଳାପ ଦ୍ୱାରା ପାର୍ଟିର ଲଡ଼ୁଆ ଭାବ ନିର୍ଣ୍ଣିତ ହୋଇଥାଏ । ପାର୍ଟି ସଭ୍ୟପଦ ଗ୍ରହଣର ମୌଳିକ ସର୍ତ୍ତ ହେଲା—ପାର୍ଟି ପ୍ରୋଗ୍ରାମ ବା କାର୍ଯ୍ୟକ୍ରମ ଓ ନିୟମାବଳୀକୁ ଗ୍ରହଣ କରିବା । ପାର୍ଟିର ଶକ୍ତି ନିହିତ ଅଛି ତାର ନିଜ ମତର ଐକ୍ୟରେ—କମ୍ୟୁନିଷ୍ଟ ସମାଜ ନିର୍ମାଣ କରିବାର ମହାନ ଲକ୍ଷ୍ୟ ଓ କର୍ତ୍ତବ୍ୟ ଯେଉଁ ସଭ୍ୟମାନେ ଯେ ଏକମତ ହେବ, ଏହି ତଥ୍ୟଟିରେ ।

ପାର୍ଟି ସଭ୍ୟ ହେବାକୁ ହେଲେ, କେବଳ ପାର୍ଟି କାର୍ଯ୍ୟକ୍ରମ ଓ ନିୟମାବଳୀକୁ ଗ୍ରହଣ କରିବା ଯଥେଷ୍ଟ ନୁହେଁ । କମ୍ୟୁନିଷ୍ଟ ପାର୍ଟି କେବଳ ବଡ଼ ବଡ଼ ଲକ୍ଷ୍ୟ ଘୋଷଣା କରେ ନାହିଁ, ସେହି ଲକ୍ଷ୍ୟ ହାସଲ କରିବା ଦିଗରେ ନିରବଚ୍ଛିନ୍ନ ଭାବରେ ବରାବର କାର୍ଯ୍ୟ କରେ । ତେଣୁ ତାହା ଦାବୀ କରେ ଯେ, ପ୍ରତ୍ୟେକ ସଭ୍ୟ ତାର ସମସ୍ତ ଜ୍ଞାନ, ଶକ୍ତି ଓ ଅଭିଜ୍ଞତା କମ୍ୟୁନିଜମ୍-ନିର୍ମାଣ କାର୍ଯ୍ୟରେ ନିୟୋଗ କରିବା ଉଚିତ । କାର୍ଯ୍ୟକ୍ରମ ଓ ନିୟମାବଳୀକୁ ଗ୍ରହଣ କରିବା ଦ୍ୱାରା କମ୍ୟୁନିଜମ ବା ସାମ୍ୟବାଦର ଏକ ସକ୍ରିୟ ନିର୍ମାଣକାରୀ ହେବାକୁ ପ୍ରତ୍ୟେକ କମ୍ୟୁନିଷ୍ଟ ଶପଥ ନିଏ, ସଂକଳ୍ପ କରେ ।

ଏହା ସ୍ପଷ୍ଟ ଯେ, ପାର୍ଟି ସଭ୍ୟମାନେ ଗୋଟିଏ ଗୋଟିଏ ଐକ୍ୟବଦ୍ଧ ସଂଗଠନ ମଧ୍ୟରେ ରହିଲେ ସଫଳଭାବେ ପାର୍ଟି ପ୍ରୋଗ୍ରାମକୁ କାର୍ଯ୍ୟକାରୀ କରି ପାରିବେ । ପାର୍ଟିର ନିୟମାବଳୀ ଏଣୁ କହେ ଯେ, ପ୍ରତ୍ୟେକ ପାର୍ଟି ସଭ୍ୟ ପାର୍ଟିର କୌଣସି ଗୋଟିଏ ସଂଗଠନରେ ରହି ପାର୍ଟିର ନିଷ୍ପତ୍ତିଗୁଡ଼ିକୁ କାର୍ଯ୍ୟକାରୀ କରିବା ଉଚିତ ।

ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ଓ ଅନ୍ୟସବୁ ମାର୍କ୍ସବାଦୀ-ଲେନିନ୍‌ବାଦୀ ପାର୍ଟିର ସାଙ୍ଗଠନିକ ବ୍ୟବସ୍ଥାର ନିର୍ଦ୍ଦେଶକାରୀ ମତ ହେଲା ଗଣତାନ୍ତ୍ରିକ କେନ୍ଦ୍ରବାଦ ।

ଏହାର ଅର୍ଥ, ପ୍ରଥମରେ ତଳୁ ଉପରଯାଏ ସବୁ ନେତୃତ୍ୱକାରୀ ପାର୍ଟି ସଂସ୍ଥା ନିର୍ବାଚିତ ହେବେ । ଦ୍ୱିତୀୟରେ ଏହି ନିର୍ବାଚିତ ପାର୍ଟି ସଂସ୍ଥାସବୁ ପାର୍ଟି ସଂଗଠନମାନଙ୍କୁ ସମୟକୁ ସମୟ ରିପୋର୍ଟ ଦେବ । ତୃତୀୟରେ କର୍ମ ଓ ପଦବୀ ନିର୍ବିଶେଷରେ ସବୁ ପାର୍ଟି ସଭ୍ୟ ଲାଗି କଡ଼ା ପାର୍ଟି ଶୃଙ୍ଖଳା ରହିବ ଓ ବହୁ ସଂଖ୍ୟକ ମତକୁ ଅଳ୍ପ ସଂଖ୍ୟକ ସଭ୍ୟ ମାନିବାକୁ ବାଧ୍ୟ ହେବେ । ଚତୁର୍ଥରେ ଉଚ୍ଚ କମିଟିର ନିଷ୍ପତ୍ତିକୁ ସବୁ ତଳ କମିଟିମାନେ ବାଧ୍ୟତାମୂଳକ ଭାବରେ ଗ୍ରହଣ କରିବେ ।

ଗଣତାନ୍ତ୍ରିକ କେନ୍ଦ୍ରବାଦ ପାର୍ଟିର ନୀତି ସଂକ୍ରାନ୍ତ ସମସ୍ତ ସମସ୍ୟା, କାର୍ଯ୍ୟକଳାପ ଓ ସଭ୍ୟମାନଙ୍କର ଉଦ୍ୟମ-ଉଦ୍‌ଯୋଗ ଯେନ ଆଲୋଚନା କରିବାର ପୂର୍ଣ୍ଣ ସ୍ୱାଧୀନତା ସହିତ ଏକତାବଦ୍ଧ ସଂଗଠିତ କାର୍ଯ୍ୟର ସଂଯୋଗ ଆଣିଥାଏ । ଅର୍ଥାତ୍ ପୂର୍ଣ୍ଣ ଆଲୋଚନା ପରେ ଯାହା ସ୍ଥିରୀକୃତ ହୁଏ, ଏକତାବଦ୍ଧ ସଂଗଠିତ କାର୍ଯ୍ୟ ଦ୍ୱାରା ସଂପନ୍ନ କରାଯାଏ । ଏହା ହେଉଛି, ଗଣତାନ୍ତ୍ରିକ କେନ୍ଦ୍ରବାଦର ମର୍ମ ।

ମାର୍କସବାଦୀ-ଲେନିନ୍‌ବାଦୀ ପାର୍ଟିର ନୀତି ସହିତ ଉପଦଳବାଦ ଓ ଗୋଷ୍ଠୀଗତ କାର୍ଯ୍ୟ ଖାପ ଖାଏ ନାହିଁ । ଏଣୁ ପାର୍ଟି ନିୟମାବଳୀରେ ଏ ସବୁର ପ୍ରକାଶ ବିରୁଦ୍ଧରେ ନିର୍ଦ୍ଦିଷ୍ଟ ବ୍ୟବସ୍ଥାଗତ ପ୍ରତିଶ୍ରୁତି ରହିଛି ।

ପାର୍ଟିକୁ ସୁଦୃଢ଼ କରିବା ଓ ତାର ଐକ୍ୟକୁ ସୁରକ୍ଷିତ କରିବା ଉପରେ, ଲେନିନ୍ ବିଶେଷ ଗୁରୁତ୍ୱ ଦେଇଥିଲେ । ଲେନିନ୍‌ଙ୍କ ଉକ୍ତ ନିର୍ଦ୍ଦେଶ ପ୍ରତି ସତ୍‌ନିଷ୍ଠ ରହି ସୋଭିଏତ କମ୍ୟୁନିଷ୍ଟ ପାର୍ଟି ଯେଉଁ ବିଭିନ୍ନ ଲେନିନ୍‌ବାଦୀ-ବିରୋଧୀ ଦଳ ବା ଗୋଷ୍ଠୀସବୁ କମ୍ୟୁନିଷ୍ଟ ପାର୍ଟିକୁ ମାର୍କସବାଦୀ-ଲେନିନବାଦୀ ପଥରୁ ବିଚ୍ୟୁତ କରେଇବାକୁ ଚେଷ୍ଟା କରୁଥିଲେ, କମ୍ୟୁନିଷ୍ଟ ପାର୍ଟିର ଶୃଙ୍ଖଳାକୁ କ୍ଷୁଣ୍ଣ ଓ ଦୁର୍ବଳ କରି ତାର କର୍ମୀମାନଙ୍କୁ ଶତ୍ରୁଭାବାପନ୍ନ ଗୋଷ୍ଠୀମାନଙ୍କରେ ବିଭକ୍ତ କରି ଖଣ୍ଡବିଖଣ୍ଡ କରିବାକୁ ବସିଥିଲେ, ସେହି ବିରୋଧୀ ଦଳଙ୍କ ବିରୁଦ୍ଧରେ ଦୃଢ଼ ଭାବରେ ସଂଗ୍ରାମ କରିଛି । କମ୍ୟୁନିଷ୍ଟ ପାର୍ଟି ଏହି ଦୃଷ୍ଟିରୁ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ସୁବିଧାବାଦୀ ଓ ଅନ୍ୟାନ୍ୟ ଦଳ ତ୍ୟାଗୀମାନଙ୍କର ମୁଖା ଖୋଲି ଦେଇଥିଲି, ସେମାନଙ୍କୁ ବହିଷ୍କାର କରିଥିଲି ।

ସୋଭିଏତ ୟୁନିଅନରେ ସମାଜବାଦର ବିଜୟ ଓ ସୋଭିଏତ ସମାଜର ସାମାଜିକ ରାଜନୈତିକ ଐକ୍ୟର ଦୃଢ଼ୀକରଣ ହେତୁ ପାର୍ଟି ମଧ୍ୟରେ ଗୋଷ୍ଠୀ ଓ ଉପଦଳ ସ୍ଥିତିର ଭିତ୍ତି ଲୋପ ପାଇଯାଇଛି । ତେବେ ଅଲଗା ଅଲଗା ଭାବରେ 'କେହି କେହି ପାର୍ଟି ଲାଇନ ବିରୁଦ୍ଧରେ ଗତିକରିବାର ସେପରି ସମ୍ଭାବନା ଯେ ନାହିଁ, ତା ନୁହେଁ ।

ତେଣୁ ନିଜର ସଭ୍ୟ ଓ କର୍ମୀମାନଙ୍କର ଐକ୍ୟ ଓ ସଂହତିକୁ ସୁରକ୍ଷିତ କରିବା କାର୍ଯ୍ୟକୁ ପାର୍ଟି ଏକ ପ୍ରଧାନ କର୍ତ୍ତବ୍ୟ ବୋଲି ଗ୍ରହଣ କରିଛି ।

ଲୋକମାନେ ହିଁ ଏକ ନୂତନ ଜୀବନର ପ୍ରକୃତ ନିର୍ମାଣକର୍ତ୍ତା ଓ ପାର୍ଟି ହେଉଛି ତାଙ୍କର ସାମୂହିକ ନେତା ଓ ନିର୍ଦ୍ଦେଶକ । ମାର୍କସବାଦ-ଲେନିନ୍‌ବାଦର ଏହି ମୁଖ୍ୟ ନୀତି ଉପରେ ପାର୍ଟି ତା'ର କାର୍ଯ୍ୟ ପର୍ଯ୍ୟବେକ୍ଷିତ କରେ । ପାର୍ଟିର ସାମୂହିକ ନେତୃତ୍ୱ ଓ ସାମୂହିକ ବିଜ୍ଞତା ହିଁ କେବଳ ଦେଶ ପ୍ରତି ସଠିକ ନେତୃତ୍ୱ ଦେବା, ରାଜନୈତିକ ଅର୍ଥନୈତିକ ଓ ସାଂସ୍କୃତିକ ସମସ୍ୟାମାନଙ୍କର ନିର୍ଭୁଲ ସମାଧାନ ଆଣିବା, ଲୋକମାନଙ୍କ ସହିତ ସଦାସର୍ବଦା ଯୋଗାଯୋଗ ରକ୍ଷିବା ଏବଂ ସେମାନଙ୍କ କାର୍ଯ୍ୟ ଓ ଉଦ୍ୟମଶୀଳତାକୁ ବିକାଶ କରିବା ଦିଗରେ ନିଶ୍ଚୟତା ଆଣିଥାଏ ।

ପାର୍ଟିର ସାଙ୍ଗଠନିକ କାର୍ଯ୍ୟ ସଦାନ୍ତ ସର୍ବଶ୍ରେଷ୍ଠ ନୀତି ହେଲା, ସାମୂହିକ ନେତୃତ୍ୱ —ଜଣେ ସର୍ବସାଧାରଣ ନେତାର ଯେତେ ଜ୍ଞାନ ଓ ଅଭିଜ୍ଞତା ଥାଉ ପଛକେ, ସେ କେବେହେଲେ ସାମୂହିକ ଜ୍ଞାନ ଓ ଅଭିଜ୍ଞତା ସ୍ଥାନରେ ଅଧିକ ଆଉ ନୂତନ ଜ୍ଞାନ ଓ ଅଭିଜ୍ଞତା ପ୍ରତିଷ୍ଠାପିତ କରି ପାରିବ ନାହିଁ । ଯଦି ଜଣେ ନେତା ବାଡ଼ ପକାଇ ସମଷ୍ଟିଠାରୁ ନିଜକୁ ଅଲଗା କରି ରଖେ ଏବଂ ନିଜକୁ ଅଭ୍ରାନ୍ତ ବୋଲି ବିଶ୍ୱରେ. ତେବେ ବିରାଟ ଭୁଲଭ୍ରାନ୍ତି, କଳନାଗତ ପ୍ରମାଦ ଘଟିବା ଅନିବାର୍ଯ୍ୟ ହେବ । ସମଷ୍ଟିକୁ ବେଖାତିର କରିବା ଅର୍ଥ, ପାର୍ଟି ଜୀବନରେ ଲେନିନ୍‌ବାଦୀ ମାନ ଓ ନେତୃତ୍ୱର ନୀତିକୁ ଗୁରୁତର ଭାବେ ଲଙ୍ଘନ କରିବା ।

ମାର୍କସବାଦୀ-ଲେନିନ୍‌ବାଦୀ ପାର୍ଟିସବୁ ବ୍ୟକ୍ତିପୂଜା ବିରୁଦ୍ଧରେ ଦୃଢ଼ଭାବେ ଲଢ଼ନ୍ତି, କାରଣ, ଯେଉଁ ସିଦ୍ଧି ଯେଉଁ ସାଫଲ୍ୟସବୁ ସମସ୍ତ ଜନସାଧାରଣଙ୍କର, ଗୋଟାଏ ଶ୍ରେଣୀର ବା ପାର୍ଟିର କ୍ଷମତା ଓ ଶକ୍ତିର ଅନ୍ତର୍ଭୁକ୍ତ, ତାହାକୁ ସବୁ ଜଣେ ବ୍ୟକ୍ତିଠାରେ ଆରୋପ କରାଯାଇ ବ୍ୟକ୍ତିପୂଜା ଯୋଗେ ତାଙ୍କୁ ଦେବତା କରିଦିଆଯାଏ । ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୨ଶ ପାର୍ଟି କଂଗ୍ରେସରେ ଯେଉଁ ପ୍ରୋଗ୍ରାମ ଓ ନିୟମାବଳୀ ଗୃହୀତ ହୋଇଛି, ସେଥିରେ ସାମୂହିକ ନେତୃତ୍ୱ ଲଙ୍ଘନରୁ ପାର୍ଟିକୁ ସୁରକ୍ଷିତ କରିବା ଲାଗି ଏବଂ ବ୍ୟକ୍ତିଗତ ଅଫିସର କେହି ସାମୂହିକ କଣ୍ଟ୍ରୋଲର ବାହାରକୁ ଖସିଯିବାର ସମ୍ଭାବନା ଦେଖାଦେଲେ, ତାହାକୁ ରୋକିବା ଲାଗି ବ୍ୟବସ୍ଥାମାନ ରଖାଯାଇଛି ।

ଜନସାଧାରଣଙ୍କର ନିଷ୍ପତ୍ତିମୂଳକ ଭୂମିକାକୁ ସ୍ୱୀକାର କରିବା ଏବଂ ବ୍ୟକ୍ତିପୂଜା ବିରୁଦ୍ଧରେ ସଂଗ୍ରାମ କରିବା, ଏହା ସମାଜ ଜୀବନରେ ନେତା ଓ ନେତୃତ୍ୱର ଭୂମିକାକୁ

ଅସ୍ୱୀକାର କରିବା ଦୂରେ ଥାଉ ତାକୁ ନ୍ୟୂନ କରେ ନାହିଁ । ବୈପ୍ଳବିକ ଶ୍ରମିକଶ୍ରେଣୀ ଆନ୍ଦୋଳନର ସମସ୍ତ ଅଭିଜ୍ଞତା ଏବଂ ଲୋକମାନଙ୍କର ସମାଜବାଦ ନିର୍ମାଣ ସଂକ୍ରାନ୍ତ ଅଭିଜ୍ଞତାସବୁ ଦର୍ଶାଇଦିଏ ଯେ, ଅଭିଜ୍ଞ ଓ ସୁଦକ୍ଷ ନେତୃବୃନ୍ଦ ଆନ୍ଦୋଳନର ସମ୍ମୁଖରେ ନ ରହିଲେ ଅଗ୍ରଗତି ସମ୍ଭବ ହେବ ନାହିଁ ।

ଲେନିନ୍ ଏଣୁ ଜୋର ସହିତ କହୁଥିଲେ, ପୂର୍ଣ୍ଣ ମୁକ୍ତି ହାସଲ ଲାଗି ନିଜର କଠୋର ବର୍ଷବ୍ୟାପୀ ସଂଗ୍ରାମ ମଧ୍ୟରେ ଶ୍ରମିକଶ୍ରେଣୀ ଏପରି ନେତୃବୃନ୍ଦ ସୃଷ୍ଟି କରେ, ଯେଉଁମାନେ କି ସର୍ବଜନ ସମ୍ମାନିତ, ବୈପ୍ଳବିକ ଅଭିଜ୍ଞତାରେ ସୁଦକ୍ଷ ଏବଂ ବ୍ୟାପକ ରାଜନୈତିକ ଦୂରଦୃଷ୍ଟି ସଂପନ୍ନ ବ୍ୟକ୍ତି ହୋଇଥାନ୍ତି ।

ଲୋକ ଓ ଲୋକମାନଙ୍କର ସୃଜନଶୀଳ ଶକ୍ତି ଉପରେ ଅଗାଧ ବିଶ୍ୱାସ, ଅନେକସ୍ଥ ଆସ୍ଥା ହେଉଛି କମ୍ୟୁନିଷ୍ଟ ପାର୍ଟିର ଗୁଣଗତ ବୈଶିଷ୍ଟ୍ୟ—ଏହା ହିଁ କମ୍ୟୁନିଷ୍ଟ ପାର୍ଟିକୁ ସେପରି ବୁର୍ଜୁଆ ପାର୍ଟିମାନଙ୍କଠାରୁ ପୃଥକ କରି ଚହ୍ଲାଇ ଦିଏ । କମ୍ୟୁନିଷ୍ଟ ପାର୍ଟିର ଲୋକମାନଙ୍କ ସହିତ ନିବିଡ଼ ସଂପର୍କ ଓ ଏକତା, ଲୋକମାନଙ୍କ ଉପରେ ଅଗାଧ ବିଶ୍ୱାସ ଓ ଗଭୀର ଆସ୍ଥା—ଏସବୁ ମଧ୍ୟରୁ ହିଁ ପାର୍ଟି ଆପଣାର ଅନେକସ୍ଥ ଶକ୍ତି ଆହରଣ କରେ ।

## ପାର୍ଟିର ନିର୍ଦ୍ଦେଶକାରୀ ଭୂମିକାର ଅଭିବୃଦ୍ଧି

ସୋଭିଏତ ୟୁନିଅନରେ କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମାଜର ପୂର୍ଣ୍ଣ ନିର୍ମାଣ କାଳରେ ନେତା ଓ ନିର୍ଦ୍ଦେଶକ ଶକ୍ତି ଭାବରେ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ସେହି ସୋଭିଏତ୍ ସମାଜରେ ଭୂମିକା ଓ ଗୁରୁତ୍ୱର ଅତ୍ୟନ୍ତ ଅଧିକ ଅଭିବୃଦ୍ଧି ବିଶେଷଭାବରେ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଛି । ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି, ସମସ୍ତ ଜନସାଧାରଣଙ୍କ ପାର୍ଟି ରୂପରେ ବିକଶିତ ହୋଇ ଉଠିବାରେ ହିଁ ଏହି ପ୍ରକ୍ରିୟା ବାସ୍ତବ ଆକାରରେ ପ୍ରକଟିତ ହୋଇଛି । ସୋଭିଏତର କମ୍ୟୁନିଷ୍ଟ ପାର୍ଟି ସମସ୍ତ ଲୋକଙ୍କର ଏକ ପାର୍ଟି ଭାବରେ ତାର ସାମାଜିକ ଭିତ୍ତିକୁ ବହୁ ପରିମାଣରେ ବ୍ୟାପକ କରିଛି, ଲୋକମାନଙ୍କ ସହିତ ଘନିଷ୍ଠ ସଂପର୍କ ପ୍ରତିଷ୍ଠା କରିଛି, କମ୍ୟୁନିଷ୍ଟ ସମାଜର ପୁନର୍ଗଠନ ଲାଗି ତାର ଉଦ୍ୟମ ଅଧିକ ଜୋରଦାର କରିଛି ଏବଂ ଲୋକମାନଙ୍କ ଭବିଷ୍ୟତ ସକାଶେ ତାର ଐତିହାସିକ ଦାୟିତ୍ୱକୁ ଅଧିକ ସମୃଦ୍ଧ ଓ ଗଭୀର କରିଛି ।

କମ୍ୟୁନିଜମ୍ ବା ସାମ୍ୟବାଦର ପୂର୍ଣ୍ଣ ଓ ବ୍ୟାପକ ନିର୍ମାଣ କାଳରେ ସୋଭିଏତ୍ ସମାଜରେ ପାର୍ଟିର ଭୂମିକାର ଅଭିବୃଦ୍ଧି କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମାଜ ନିର୍ମାଣର ବର୍ଦ୍ଧିଷ୍ଣୁ ପରିସର ଓ ଜଟିଳତା ମଧ୍ୟରୁ ହିଁ ପ୍ରକାଶ ପାଉଛି ।

ଏହି ଛଡ଼ା ପାର୍ଟିର ଭୂମିକାର ଅଭିବୃଦ୍ଧିର ଅନ୍ୟ ଏକ କାରଣ ହେଉଛି, ଯେଣ କମ୍ୟୁନିଜମ୍ ବା ସାମ୍ୟବାଦ ଦିଗକୁ ଅଗ୍ରସର ହେଲାବେଳେ ସୋଭିଏତ ସମାଜ ଜୀବନର ପ୍ରତ୍ୟେକ ଦିଗରେ ନେତୃତ୍ୱ ଅଧିକରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠୁଛି । କମ୍ୟୁନିଜମ୍ ବା ସାମ୍ୟବାଦର ନିର୍ମାଣ ସାମାଜିକ ବିକାଶର ନିୟମଗୁଡିକର ସଚେତନ ପ୍ରୟୋଗ ଆବଶ୍ୟକ କରୁଛି । ତେଣୁ ସମସ୍ତ ସଫଳତା ବହୁ ପରିମାଣରେ ସମାଜ ଜୀବନରେ ଏକ ନିର୍ଭୁଲ ବିଜ୍ଞାନସମ୍ମତ ବା ବୈଜ୍ଞାନିକ ଭାବେ ପ୍ରତିଷ୍ଠିତ ନେତୃତ୍ୱ ଉପରେ ନିର୍ଭର ରଖୁଛି ।

ଯେଉଁ ପାର୍ଟି ସାମାଜିକ ବିକାଶର ନିୟମକୁ ଭଲଭାବେ ବୁଝେ ଓ ତାକୁ ଦକ୍ଷତାର ସହିତ ପ୍ରୟୋଗ କରେ, ଦେଶର ଆବଶ୍ୟକତା ଓ ଲୋକଙ୍କର ମୁଖ୍ୟ ସ୍ୱାର୍ଥ ଅନୁସାରେ ତାର ମତ ନିର୍ଣ୍ଣୟ କରି ତାକୁ ଅନୁସରଣ କରେ, ସେହି ପାର୍ଟି ହିଁ କେବଳ ଏହି ଭଳି ନେତୃତ୍ୱ ଦେଇପାରେ ।

ସୋଭିଏତ ସୁନିଅନରେ କମ୍ୟୁନିଷ୍ଟ ପାର୍ଟି ସାମ୍ୟବାଦ ନିର୍ମାଣର ଅଭିଜ୍ଞତାକୁ ସାଧାରଣୀକୃତ ଭାବରେ ପ୍ରକାଶ କରୁଛି ଓ ମାର୍କସବାଦ ଲେନିନ୍‌ବାଦ ତତ୍ତ୍ୱର ସୃଜନଶୀଳ ବିକାଶ ଅଣୁଛି ।

କମ୍ୟୁନିଷ୍ଟ ନିର୍ମାଣ କାଳ ମଧ୍ୟରେ ଜନସାଧାରଣଙ୍କ ସୃଜନଶୀଳ କାର୍ଯ୍ୟକଳାପ ଅପରିମେୟ ଭାବେ ବୃଦ୍ଧି ପାଉଛି । ଅଧିକରୁ ଅଧିକ ସଂଖ୍ୟାରେ ଲକ୍ଷ ଲକ୍ଷ ଲୋକ ଦେଶର ଶାସନ ଓ ଉତ୍ପାଦନ ପରିଚାଳନାର କ୍ଷେତ୍ର ମଧ୍ୟକୁ ଟାଣି ହୋଇ ଆସୁଛନ୍ତି । ଲୋକଙ୍କ କାର୍ଯ୍ୟର ସଂଗଠକ ଓ ଅନୁପ୍ରେରକ ଭାବେ ପାର୍ଟିର ଭୂମିକାକୁ ଏହା ସମୃଦ୍ଧ କରୁଛି ।

ପୂର୍ଣ୍ଣ ଓ ବ୍ୟାପକ କମ୍ୟୁନିଷ୍ଟ ବା ସାମ୍ୟବାଦୀ ନିର୍ମାଣ କାଳ ଭିତରେ ସୋଭିଏତ୍ ସମାଜରେ ପାର୍ଟିର ଭୂମିକାର ଅଭିବୃଦ୍ଧି ମଧ୍ୟ ସମାଜବାଦୀ ଗଣତନ୍ତ୍ରର ପ୍ରସାର, ଗଣସଂଗଠନମାନଙ୍କର ବର୍ଦ୍ଧିଷ୍ଣୁ କାର୍ଯ୍ୟ, ସୋଭିଏତ୍ ରିପବ୍ଲିକ ବା ପ୍ରଜାତନ୍ତ୍ରର ଓ ସ୍ଥାନୀୟ ସଂଗଠନଗୁଡ଼ିକର ଅଧିକାରର ପ୍ରସାର ଦ୍ୱାରା ନିର୍ଣ୍ଣୀତ ହେଉଛି ।

କମ୍ୟୁନିଜମ୍ ବା ସାମ୍ୟବାଦ ଦିଗରେ ସୋଭିଏତ୍ ସମାଜ ଅଗ୍ରଗତି କରିବା ସଙ୍ଗେ ସଙ୍ଗେ ଦେଶ ଜୀବନର ସମସ୍ତ କ୍ଷେତ୍ରରେ ସମାଜବାଦୀ ଗଣତନ୍ତ୍ର ଓ ପାର୍ଟିର ନେତୃତ୍ୱ ମିଶିଯାଇ ଏକ ଆହୁ ଅଭିନ୍ନ ହେଉଛି । ଏହି ବାସ୍ତବ ପ୍ରକ୍ରିୟାର ପୃଷ୍ଠଭୂମିରେ, ପୁଞ୍ଜିବାଦୀ ମତାଦର୍ଶବାଦୀଙ୍କର ଦାବୀ—ଗଣତନ୍ତ୍ର ଓ କମ୍ୟୁନିଷ୍ଟ ପାର୍ଟିର

ବର୍ଦ୍ଧିଷ୍ଣୁ ଭୂମିକା ମଧ୍ୟରେ ସଙ୍ଗତ ନାହିଁ—(incompatible) ବୋଲି ମିଥ୍ୟାରେ ପୂର୍ଣ୍ଣ ଅଭିଯୋଗ ଆଉ ହାସ୍ୟକର ନୁହେଁ କି ?

ଘଟଣାବଳୀ ଦର୍ଶାଇଦେଇଛି ଯେ, ସମାଜବାଦୀ ଗଣତନ୍ତ୍ରର ବିକାଶ ଯେତେ ଅଧିକ ଓ ବ୍ୟାପକ ହେଉଛି, ସୋଭିଏତ୍ ସମାଜରେ ପାର୍ଟିର ନିର୍ଦ୍ଦେଶକାରୀ ଭୂମିକା ସେତେ ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ଆବଶ୍ୟକ ହୋଇ ଉଠୁଛି ।

ସୋଭିଏତ୍ ଲୋକଙ୍କ ସଂଗଠନର ସର୍ବୋଚ୍ଚ ରୂପ ହେଲା ପାର୍ଟି । ଏହା ସମଗ୍ର ଜନସାଧାରଣଙ୍କ ସ୍ୱାର୍ଥକୁ ପ୍ରକାଶ କରେ । ତେଣୁ ଏହା ହିଁ କେବଳ ସମସ୍ତ ଗଣସଂଗଠନର ଆଉ ଦେଶର ସମଗ୍ର ଅଧିବାସୀଙ୍କର ଉଦ୍ୟମକୁ ଏକତ୍ରିତ କରିପାରେ ଏବଂ ସେମାନଙ୍କୁ ସର୍ବସାଧାରଣ ଲକ୍ଷ୍ୟ ଦିଗରେ ପରିଚାଳିତ କରିପାରେ ।

ସମାଜର ଜୀବନରେ ପାର୍ଟି-ଭୂମିକାର ଅଭିବୃଦ୍ଧିର ଆଉ ଏକ କାରଣ ହେଉଛି, କମ୍ୟୁନିଜମ୍ ବା ସାମ୍ୟବାଦ ନିର୍ମାଣ କାଳ ଭିତରେ ବୈଜ୍ଞାନିକ ସାମ୍ୟବାଦୀ ତତ୍ତ୍ୱ, ତାର ସୃଜନାତ୍ମକ ବିକାଶ ଓ ପ୍ରଚାରର ଗୁରୁତ୍ୱ ବୃଦ୍ଧି ପାଏ ।

ପୂର୍ଣ୍ଣ ଓ ବ୍ୟାପକଭାବେ କମ୍ୟୁନିଜମ୍ ବା ସାମ୍ୟବାଦ ନିର୍ମାଣର ଯୁଗରେ ସୋଭିଏତ ୟୁନିଅନର ଅନୁପ୍ରବେଶ, ବିପ୍ଳବୀ ଶ୍ରମିକଶ୍ରେଣୀ ଓ ଜାତୀୟ ମୁକ୍ତି ଆନ୍ଦୋଳନର ବ୍ୟାପକ ପ୍ରସାର ଏବଂ ବିଶ୍ୱ ରଙ୍ଗମଞ୍ଚରେ କମ୍ୟୁନିଷ୍ଟ ଓ ପୁଞ୍ଜିବାଦୀ ମତଦର୍ଶବାଦ ମଧ୍ୟରେ ତୀବ୍ର ଓ କଠୋର ସଂଗ୍ରାମ, ପାର୍ଟିର ମତାଦର୍ଶଗତ କାର୍ଯ୍ୟକୁ ଅଧିକ ଜରୁରି, ଅଧିକ ଆବଶ୍ୟକୀୟ କରେ ।

ମତାଦର୍ଶଗତ ଶିକ୍ଷା କ୍ଷେତ୍ରରେ ପାର୍ଟିର ଆଜି ମୁଖ୍ୟ କର୍ତ୍ତବ୍ୟ ହେଲା—ପାର୍ଟିର କାର୍ଯ୍ୟକ୍ରମ ପ୍ରତିଶ୍ରୁତିକୁ ପ୍ରୋତ୍ସାହିତ କରିବା, କମ୍ୟୁନିଜମ୍ ବା ସାମ୍ୟବାଦର ଭୌତିକ ଓ ଟେକ୍‌ନିକାଲ ଭିତ୍ତି ସୃଷ୍ଟି କରିବା, ସାମ୍ୟବାଦୀ ସାମାଜିକ ସଂପର୍କ ପ୍ରତିଷ୍ଠା କରିବା, ନୂତନ ଧରଣରେ ମନୁଷ୍ୟ ସୃଷ୍ଟି କରିବା । ଏଥିଲାଗି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହେଉଛି, ରାଜନୈତିକ ସତର୍କତାର ବୃଦ୍ଧି ଆଣିବା, ସାମ୍ରାଜ୍ୟବାଦୀ ମତାଦର୍ଶ ବିରୁଦ୍ଧରେ ଓ ଲୋକମାନଙ୍କ ମନରେ ଥିବା ଅତୀତର କୁସ୍ଥିତ ଅବଶେଷ ବିରୁଦ୍ଧରେ ଏକ ବ୍ୟାପକ ଅଭିଯାନ ଚଳାଇବା ।

ସଂକ୍ଷେପରେ କହିଲେ, କମ୍ୟୁନିଷ୍ଟ ପାର୍ଟି ଭୂମିକାର ଅଭିବୃଦ୍ଧି ହେଉଛି, ସମାଜବାଦୀ ସମାଜର ଓ ଖୋଦ ପାର୍ଟି ଜୀବନର ଗୋଟାଏ ନିୟମ, ଗୋଟାଏ ଧାରା । କମ୍ୟୁନିଜମ ବା ସାମ୍ୟବାଦର ନିର୍ମାଣ, ପାର୍ଟି ସମ୍ମୁଖରେ ଯେଉଁ ଦାୟିତ୍ୱ

ଉପସ୍ଥାପିତ କରୁଛି ତା'କୁ ସମକକ୍ଷ ବା ଉପଯୋଗୀ ହେବାକୁ ହେଲେ ପାର୍ଟିକୁ ତାର ସମସ୍ତ ସଂଗଠନ ଓ ସଂସ୍ଥାମାନଙ୍କର କାର୍ଯ୍ୟକୁ କ୍ରମାଗତଭାବେ ଉନ୍ନତ କରିବାକୁ ପଡ଼ିବ ।

ପାର୍ଟି ନିଜ ବିକାଶର, ନିଜ ରାଜନୈତିକ ମତାଦର୍ଶଗତ ଓ ସାଙ୍ଗଠନିକ କାର୍ଯ୍ୟର ଏଭଳି ଏକ ନୂତନ, ଉଚ୍ଚତର ପର୍ଯ୍ୟାୟରେ ପ୍ରବେଶ କରିଛି, ଯାହା କମ୍ୟୁନିଜମ୍ ବା ସାମ୍ୟବାଦର ପୂର୍ଣ୍ଣ ଓ ବ୍ୟାପକ ନିର୍ମାଣ ଅନୁଯାୟୀ ସମଞ୍ଜସରେ ଗଢ଼ିଉଠିଛି । ପାର୍ଟି ନିଜ କାର୍ଯ୍ୟର ରୂପ ଓ ପଦ୍ଧତିକୁ କ୍ରମାଗତଭାବେ ଉନ୍ନତ କରିବାରେ ଲାଗିଛି । ଏହା ଫଳରେ ଜନସାଧାରଣଙ୍କ ଉପରେ ତାର ନେତୃତ୍ୱ, କମ୍ୟୁନିଜମ ବା ସାମ୍ୟବାଦ ଭୌତିକ ଓ ଟେକ୍‌ନିକାଲ ଭିତ୍ତି ନିର୍ମାଣରେ ଏବଂ ସମାଜର ନୈତିକ ଜୀବନର ବିକାଶରେ ତାର ନେତୃତ୍ୱ, କମ୍ୟୁନିଜମ ବା ସାମ୍ୟବାଦ ନିର୍ମାଣର ଯୁଗର ବର୍ଦ୍ଧିଷ୍ଣୁ ପ୍ରୟୋଜନୀୟତା ସହିତ ସମତାଳରେ ଗତି କରିପାରିବ ।

ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ଓ ସୋଭିଏତ୍ ଲୋକେ ବିଶ୍ୱ ପ୍ରଗତିର ପୁରୋଭାଗରେ ରହି ଅଗ୍ରସର ହେଉଛନ୍ତି । ସୋଭିଏତ୍ ଲୋକେ ପ୍ରଥମେ ସମାଜବାଦ ନିର୍ମାଣ କରି ଏବେ ସମୁଜ୍ଜ୍ୱଳ କମ୍ୟୁନିଷ୍ଟ ବା ସାମ୍ୟବାଦୀ ଭବିଷ୍ୟତର ପଥ ଆଲୋକିତ କରୁଛନ୍ତି । ସୋଭିଏତ୍ ଇଉନିଅନ ବିଶ୍ୱ ଇତିହାସର ମୁଖ୍ୟ ଗତିପଥର ଏକ ସାଧାରଣ ରୂପରେଖାର ସୂଚନା ଦେଉଛି । ଆଜି ସୋଭିଏତ୍ ଇଉନିଅନ ପ୍ରତି ଦୃଷ୍ଟିପାତ କରି ବିଶ୍ୱର ଜନତା ନିଜର ଭବିଷ୍ୟତ ଦେଖିପାରୁଛି ।

ଏ ସମସ୍ତ ବିଷୟ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ଉପରେ ପ୍ରକାଣ୍ଡ ଐତିହାସିକ ଦାୟିତ୍ୱ ନ୍ୟସ୍ତ କରିଛି । ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ହେଉଛି, ସୋଭିଏତ୍ ଇଉନିଅନରେ କମ୍ୟୁନିଜମ ନିର୍ମାଣର ନେତା ଓ ସଂଗଠକ; ଏହାଛଡ଼ା ଆନ୍ତର୍ଜାତିକ କମ୍ୟୁନିଷ୍ଟ ଓ ଶ୍ରମିକ ଆନ୍ଦୋଳନର ସେନାବାହିନୀ ମଧ୍ୟରେ ଅନ୍ୟତମ । ସୋଭିଏତ୍ ଇଉନିଅନରେ ଅକ୍ଳାନ୍ତ ଉଦ୍ୟମ ଓ ପରିଶ୍ରମ ସହକାରେ କମ୍ୟୁନିଜମ ବା ସାମ୍ୟବାଦ ନିର୍ମାଣ କରିବା ହେଉଛି, ସୋଭିଏତ୍ ଇଉନିଅନର କମ୍ୟୁନିଷ୍ଟ ପାର୍ଟିର ସର୍ବଶ୍ରେଷ୍ଠ ଆନ୍ତର୍ଜାତିକ କର୍ତ୍ତବ୍ୟ । ବିଶ୍ୱର ଶ୍ରମଜୀବୀ ଲୋକମାନଙ୍କ ସମକ୍ଷରେ ଏହା ହିଁ ତାର ମୁଖ୍ୟ ଦାୟିତ୍ୱ । ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ଏହି ସର୍ବୋଚ୍ଚ କର୍ତ୍ତବ୍ୟ ବିଷୟ ଉପଲବ୍ଧି କରିଛି ।

ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ଅର୍ଦ୍ଧଶତାବ୍ଦୀରୁ ଅଧିକ ସମୟର ଇତିହାସ ହେଉଛି ସର୍ବହରା ଆନ୍ତର୍ଜାତୀୟ-ନୀତି ପ୍ରତି ଆନୁଗତ୍ୟର ଆଉ ଆନ୍ତର୍ଜାତୀୟ କର୍ତ୍ତବ୍ୟ ସାଧନର ଦୃଷ୍ଟାନ୍ତ । ପାର୍ଟି ତାର ଜନ୍ମ ଦିନରୁ ନିଜ ଦେଶର ଶ୍ରମଜୀବୀ

ଲେନିନ୍‌ଙ୍କର ବୈପ୍ଳବିକ ସିଦ୍ଧାନ୍ତକୁ ବିଶ୍ୱବ୍ୟାପୀ ବୈପ୍ଳବିକ ଆନ୍ଦୋଳନର ଏକ ଅଖଣ୍ଡ ଅଂଶ ଭାବେ ଗ୍ରହଣ କରିଛି; ସମସ୍ତ ପ୍ରକାର ଜାତୀୟତାବାଦ ଓ ବୃହତ ଜାତିର ଉଗ୍ର ଜାତୀୟତାର ପ୍ରକାଶକୁ ବିରୋଧ କରିଛି । ସବୁ ଦେଶର ସର୍ବହରା ସହିତ ଭ୍ରାତୃତ୍ୱମୂଳକ ଆନ୍ତର୍ଜାତୀୟ ସମ୍ପର୍କକୁ ପ୍ରୋତ୍ସାହିତ କରିଛି ।

ଲେନିନ କହିଥିଲେ ସବୁ ଦେଶର କମ୍ୟୁନିଷ୍ଟ ପାର୍ଟିମାନଙ୍କ ପାଇଁ ବଲସେଭିକ୍‌ବାଦ ହେଉଛି ରଣକୌଶଳର ଏକ ଆଦର୍ଶ । ସୋଭିଏତ୍ ୟୁନିଅନର କମ୍ୟୁନିଷ୍ଟ ପାର୍ଟି, ଜନ ଗଣତନ୍ତ୍ରଗୁଡ଼ିକର ସହୋଦର କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟି-ମାନଙ୍କ ସହିତ ସମାଜବାଦ ନିର୍ମାଣରେ ନିଜର ମୂଲ୍ୟବାନ ଅଭିଜ୍ଞତା ଯୋଗାଇ ଅଂଶ ଗ୍ରହଣ କରୁଛି । ଅନ୍ୟ ଦିଗରେ ସୋଭିଏତ୍ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ଜନଗଣତନ୍ତ୍ରଗୁଡ଼ିକରେ ସମାଜବାଦ ନିର୍ମାଣର ଅଭିଜ୍ଞତା ବିଷୟ ଅଧ୍ୟୟନ କରୁଛି । ସେ ସବୁ ଦେଶରେ ଅର୍ଥନୈତିକ ସାଂସ୍କୃତିକ ବିକାଶର ଉନ୍ନତଶୀଳ ପଦ୍ଧତିକୁ ମଧ୍ୟ ମନଯୋଗର ସହ ଅନୁଶୀଳନ କରୁଛି ।

ସବୁ ଦେଶର ଶ୍ରମଜୀବୀ ଲୋକମାନଙ୍କ ସହିତ ସଂହତି ରକ୍ଷା କରିବା ଲାଗି ଓ ସେମାନଙ୍କ ସହିତ ଦୃଢ଼ ଭ୍ରାତୃତ୍ୱର ଆନ୍ତର୍ଜାତୀୟ ବନ୍ଧନ ପ୍ରତିଷ୍ଠା କରିବା ଲାଗି, ସୋଭିଏତ୍ ଲୋକଙ୍କୁ ସୁଶିକ୍ଷିତ କରିବା, ପାର୍ଟି ଆପଣାର କର୍ତ୍ତବ୍ୟ ବୋଲି ସ୍ୱୀକାର ଗ୍ରହଣ କରିଛି ।

କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପରିଚାଳିତ ହୋଇ, ସୋଭିଏତ୍ ଲୋକମାନେ କମ୍ୟୁନିଜମ୍ ବା ସାମ୍ୟବାଦ ନିର୍ମାଣରେ ସାଫଲ୍ୟଲାଭ କରିବା ଦ୍ୱାରା ଶ୍ରମଜୀବୀ ଓ ପରାଧୀନ ଲୋକମାନଙ୍କୁ ମୁକ୍ତ କରିବାର ମହାନ ଆଦର୍ଶ ପ୍ରତି ବିପୁଳ ସାହାଯ୍ୟଦାନ କରୁଛନ୍ତି । ସାମ୍ରାଜ୍ୟବାଦ ଉପରେ ସେହି ଲୋକମାନଙ୍କ ବିଜୟ ହାସଲରେ ଓ ମୁକ୍ତିଲାଭରେ ସେମାନଙ୍କ ଆସ୍ଥା ଓ ବିଶ୍ୱାସକୁ ଦୃଢ଼ୀଭୂତ କରୁଛନ୍ତି ।

ପାର୍ଟି ପ୍ରୋଗ୍ରାମ ବା କାର୍ଯ୍ୟକ୍ରମ ଘୋଷଣା କରେ, "ସୋଭିଏତ୍ ୟୁନିଅନରେ କମ୍ୟୁନିଷ୍ଟ ପାର୍ଟି ନିୟମାଗତ ଭାବେ ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଆନ୍ଦୋଳନର ଐକ୍ୟକୁ ସୁଦୃଢ଼ ଓ ଶକ୍ତିଶାଳୀ କରିବ; ସମସ୍ତ କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟି ସହିତ ଭ୍ରାତୃତ୍ୱମୂଳକ ବନ୍ଧନକୁ ପ୍ରସାରିତ ଓ ବଳିଷ୍ଠ କରିବ; ଶ୍ରମଜୀବୀ ଲୋକମାନଙ୍କ ସ୍ୱାର୍ଥ ଲାଗି, ଶାନ୍ତି, ଗଣତନ୍ତ୍ର ଓ ସମାଜବାଦ ଲାଗି, ନୂତନ ଯୁଦ୍ଧ ବିପଦ ବିରୋଧୀ ସମ୍ମିଳିତ ସଂଗ୍ରାମରେ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ସମସ୍ତ ସେନାବାହିନୀର ଉଦ୍ୟମ ସହିତ ନିଜର କାର୍ଯ୍ୟକୁ ସଂଯୁକ୍ତ କରିବ ।"

* * * *

ଏବେ ଆମେ ଦେଖିଲେଁ, ସୋଭିଏତ୍ ଲୋକେ କପରି ଏକ ସମାଜବାଦୀ ସମାଜ ନିର୍ମାଣ କରୁଛନ୍ତି ଓ ତାହା କପରି ସୁସଗଠିତ ହେଉଛି । ପରବର୍ତ୍ତୀ କଥନରେ କମ୍ୟୁନଷ୍ଟ ବା ସାମ୍ୟବାଦୀ ସମାଜର ଗଠ ଓ ତାର ନିର୍ମାଣର ମୌଳିକ କର୍ତ୍ତବ୍ୟଗୁଡ଼ିକ ବିଷୟରେ ଆଲୋଚନା କରିବା ।





# ଚତୁର୍ଥ ଅଧ୍ୟାୟ

# ସମାଜବାଦରୁ ସାମ୍ୟବାଦକୁ

## ୧ । ସାମ୍ୟବାଦର ଭୌତିକ ଓ ଟେକ୍‌ନିକାଲ ଭିତ୍ତି ସ୍ଥାପନ

ସାମ୍ୟବାଦୀ ବା କମ୍ୟୁନିଷ୍ଟ ସମାଜ ତାର ବିକାଶ କାଳରେ ଦୁଇଟି ସ୍ତର ଦେଇ ଗତି କରିଥାଏ । ଏଥିରୁ ପ୍ରଥମ ବା ନିମ୍ନ ସ୍ତରଟିକୁ 'ସମାଜବାଦ' କହନ୍ତି । ଦ୍ୱିତୀୟ ବା ଉଚ୍ଚ ସ୍ତରକୁ 'ସାମ୍ୟବାଦ' ବୁଝାଯାଏ । ଆମେ ଏହାକୁ ଭିନ୍ନ ସ୍ୱରରେ ମଧ୍ୟ କହିପାରୁ—ସମାଜବାଦ ହେଉଛି ଅସମ୍ପୂର୍ଣ୍ଣ ସାମ୍ୟବାଦ; ନୂତନ ସମାଜର ପ୍ରଥମ ପର୍ଯ୍ୟାୟ, ଯେପର୍ଯ୍ୟନ୍ତ ଯାହାର ପୂର୍ଣ୍ଣ ବିକାଶ ଘଟି ନାହିଁ ।

ସାମ୍ୟବାଦ କଣ ? ତାର ମୁଖ୍ୟ ରୂପଗୁଡ଼ିକ କଣ ?

ସୋଭିଏତ୍ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ପ୍ରୋଗ୍ରାମରେ କୁହାଯାଇଛି, "ସାମ୍ୟବାଦ ହେଉଛି, ଉତ୍ପାଦନ ଉପକରଣର ଗୋଟିଏ ପ୍ରକାରର ସର୍ବସାଧାରଣ ସ୍ୱତ୍ୱାଧିକାର ଓ ସମାଜର ସମସ୍ତ ସଦସ୍ୟମାନଙ୍କ ପୂର୍ଣ୍ଣ ସାମାଜିକ ସମତା ଯେଉ ଏକ ଶ୍ରେଣୀହୀନ ସାମାଜିକ ବ୍ୟବସ୍ଥା, ଏଥିରେ ଲୋକମାନଙ୍କର ସର୍ବାଙ୍ଗୀନ ବିକାଶ ସହିତ ବିଜ୍ଞାନ ଓ କାରିଗରି ବିଦ୍ୟାର କ୍ରମାଗତ ପ୍ରଗତି ଯୋଗେ ଉତ୍ପାଦିକା ଶକ୍ତି ସବୁ

ବୃଦ୍ଧି ପାଇବ, ସଂଘବଦ୍ଧ — ସମ୍ପଦର ସମସ୍ତ ଉତ୍ସ ଅଧିକ ପ୍ରାଚୁର୍ଯ୍ୟପୂର୍ଣ୍ଣ ଭାବରେ ଉତ୍ସାରିତ ହେବ; ପ୍ରତ୍ୟେକେ ନିଜର ସାମର୍ଥ୍ୟ ଅନୁସାରେ ଦେବେ ଓ ପ୍ରତ୍ୟେକେ ନିଜର ଆବଶ୍ୟକତା ଅନୁଯାୟୀ ପାଇବେ" ଏହି ମହାନ ନୀତି କାର୍ଯ୍ୟକାରୀ ହେବ । ସାମ୍ୟବାଦ ହେଉଛି ସ୍ୱାଧୀନ ଓ ସାମାଜିକ ଭାବେ ସଚେତନ ଶ୍ରମଜୀବୀ ଲୋକମାନଙ୍କର ଏକ ଉଚ୍ଚ ସୁସ୍ଥ ସଂଗଠିତ ସମାଜ, ଯେଉଁଥିରେ କି ସାଧାରଣ ସ୍ୱାୟତ୍ତ ଶାସନ ପ୍ରତିଷ୍ଠିତ ହେବ,—ଯେଉଁ ସମାଜରେ ସମାଜର ମଙ୍ଗଳ ଲାଗି ଶ୍ରମ କରିବା ପ୍ରତ୍ୟେକର ମୁଖ୍ୟ ପ୍ରୟୋଜନୀୟତା ହେବ । ପ୍ରତ୍ୟେକେ ଓ ସବୁ ଲୋକେ ଏହି ଆବଶ୍ୟକତା ଉପଲବ୍ଧି କରିବେ । ଲୋକମାନଙ୍କର ସର୍ବାଧିକ କଲ୍ୟାଣ ଦିଗରେ ପ୍ରତ୍ୟେକ ଲୋକର ସାମର୍ଥ୍ୟ ନିୟୋଜିତ ହେବ ।"

ଦେଖାଯାଉଥିବା ସମ୍ଭାବନାକୁ ଓ ବୈଜ୍ଞାନିକ ହିସାବ କିତାବ ସବୁ ବିଷୟରକୁ ନିଆଯାଇ ସୋଭିଏତ୍ ୟୁନିଅନରେ କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକ୍ରମରେ କୁହାଯାଇଛି ଯେ ମୁଖ୍ୟତଃ ଆସନ୍ତା ୨୦ ବର୍ଷ ମଧ୍ୟରେ, ପ୍ରାୟ ୧୯୮୦ ବେଳକୁ, ସୋଭିଏତ୍ ୟୁନିଅନରେ କମ୍ୟୁନିଷ୍ଟ ପାର୍ଟି ଗଠିତ ହେବ ।

କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମାଜ ଗଠନ ଲାଗି ତିନୋଟି ମୌଳିକ କାର୍ଯ୍ୟର ସମ୍ପାଦନ ପ୍ରୟୋଜନ । ପ୍ରଥମରେ ସାମ୍ୟବାଦର ଭୌତିକ ଓ ଟେକ୍‌ନିକାଲ ଭିତ୍ତି ସ୍ଥାପନ, ଦ୍ୱିତୀୟରେ କମ୍ୟୁନିଷ୍ଟ ବା ସାମ୍ୟବାଦୀ ସାମାଜିକ ସମ୍ପର୍କର ପ୍ରତିଷ୍ଠା, ତୃତୀୟରେ କମ୍ୟୁନିଷ୍ଟ ସାମ୍ୟବାଦୀ ସମାଜର ଶ୍ରେଷ୍ଠ ଚେତନଶୀଳ ନିର୍ମାଣକାରୀ ଓ ସଦସ୍ୟ ନୂତନ ମନୁଷ୍ୟ ଗଠନ ବା ନୂତନ ମନୁଷ୍ୟଙ୍କୁ ଶିକ୍ଷା ପ୍ରଦାନ ।

ଏହି ତିନୋଟି କାର୍ଯ୍ୟ ଘନିଷ୍ଠ ଭାବେ ପରସ୍ପର ସହିତ ସଂଯୁକ୍ତ, ସମାଜବାଦୀ ସମାଜକୁ ସାମ୍ୟବାଦୀ ସମାଜରେ ରୂପାନ୍ତରିତ କରିବାର ଗୋଟିଏ ମାତ୍ର ପ୍ରକ୍ରିୟାର ତିନୋଟି ଦିଗ ମାତ୍ର ।

## ସୋଭିଏତ ୟୁନିଅନର ମୁଖ୍ୟ ଅର୍ଥନୈତିକ କାର୍ଯ୍ୟ

କମ୍ୟୁନିଜମ ବା ସାମ୍ୟବାଦର ଭୌତିକ ଓ ଟେକ୍‌ନିକାଲ ଭିତ୍ତି ସ୍ଥାପନ ହେଉଛି ନୂତନ ସମାଜ ନିର୍ମାଣ ଦିଗରେ ପ୍ରଧାନ ଓ ନିଷ୍ପତ୍ତିମୂଳକ ବ୍ୟବସ୍ଥା ।

ଏହି ବ୍ୟବସ୍ଥା ପ୍ରଧାନ ଓ ନିଷ୍ପତ୍ତିମୂଳକ କାହିଁକି ? କାରଣ ସାମ୍ୟବାଦର ଭୌତିକ ଓ କାରିଗରୀ ଭିତ୍ତି ହିଁ କେବଳ ସମାଜକୁ ନିମ୍ନଲିଖିତ ବିଷୟଗୁଡ଼ିକ ସମ୍ପର୍କରେ ସମର୍ଥ କରେ ।

ସଂଗ୍ରହରେ ଏହା ଉତ୍ପାଦିକା ଶକ୍ତିମାନଙ୍କର ଅତୁଳନୀୟ ବିକାଶ ହାସଲ କରାଏ ଏବଂ [illegible] ଉତ୍ପାଦନଶୀଳତାକୁ ସୁନିଶ୍ଚିତ କରାଏ । ଲୋକମାନଙ୍କ ଉନ୍ନତ ଧରଣର [illegible] ଯୋଗାଏ ଏବଂ ଶ୍ରମକୁ ସୁଖମୟ, ଆନନ୍ଦଉଲ୍ଲାସମୟ ହନ୍ଦିକମୟ ଓ ସୃଜନଶୀଳ ଉଦ୍ୟମରେ ପରିଣତ କରାଏ ।

ଦ୍ୱିତୀୟରେ, ମନୁଷ୍ୟର ସମସ୍ତ ଆବଶ୍ୟକତାର ପୂରଣ ପର୍ଯ୍ୟନ୍ତ ଭୌତିକ ପଦାର୍ଥର ଉତ୍ପାଦନକୁ ପ୍ରସାରିତ କରାଏ, ଲୋକମାନଙ୍କର ସର୍ବୋଚ୍ଚ ଜୀବନ ଧାରଣର ମାନର ବ୍ୟବସ୍ଥା ଯୋଗାଏ । ଭବିଷ୍ୟତରେ ଆବଶ୍ୟକତା-ଅନୁଯାୟୀ ବଣ୍ଟନକୁ ଗଢ଼ କରିବା ଦିଗରେ ଅସ୍ଥାୟୀ ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥାର ଆୟୋଜନ ଅଛେ ।

ତୃତୀୟରେ, ଶ୍ରେଣୀହୀନ ସମାଜ ସୃଷ୍ଟି ଲାଗି ସହର ଓ ମଫସଲ ମଧ୍ୟରେ, ଏବଂ ଶାରୀରିକ ଓ ମାନସିକ କାର୍ଯ୍ୟରେ ଥିବା ମୁଖ୍ୟ ପାର୍ଥକ୍ୟଗୁଡ଼ିକ ଲୋପ ଆଣି ନୂତନ ମାନବକୁ ସୁଶିକ୍ଷିତ କରିବା ସହାଶେ ଧୀରେ ଧୀରେ ସମାଜବାଦୀ ସମ୍ପର୍କଗୁଡ଼ିକୁ ସାମ୍ୟବାଦୀ ସମ୍ପର୍କରେ ରୂପାନ୍ତରିତ କରାଏ ।

ସାମ୍ୟବାଦ ବା କମ୍ୟୁନିଜମର ଭୌତିକ ଓ କାରିଗରି ଭିତ୍ତି ନିର୍ମାଣ ମଧ୍ୟରେ ହିଁ ସୋଭିଏତ୍ ୟୁନିୟନ ପୁଞ୍ଜିବାଦ ସହିତ ଅର୍ଥନୈତିକ ପ୍ରତିଦ୍ୱନ୍ଦ୍ୱିତାରେ ବିଜୟ ଲାଭ କରିବ, ଯେ କୌଣସି ଆକ୍ରମଣକାରୀ ତାକୁ କମ୍ବା ସମାଜବାଦୀ ଦୁନିଆକୁ ଆକ୍ରମଣ କରିବାକୁ ସାହାସ କଲେ ସେହି ଆକ୍ରମଣକାରୀଙ୍କୁ ଦଳି ଦେବା ସହାଶେ ଦେଶର ପ୍ରତିରକ୍ଷା ବ୍ୟବସ୍ଥାକୁ ସଦାସର୍ବଦା ଉଚ୍ଚ ସ୍ତରରେ ରଖି ପାରିବ ଏବଂ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ପ୍ରତିବିପ୍ଳବ-ରପ୍ତାନି-କାର୍ଯ୍ୟକୁ ପ୍ରତିରୋଧ କରିବ, ବିପ୍ଳବକୁ ପରାସ୍ତ କରିବା ଲକ୍ଷ୍ୟରେ ଅନ୍ୟ ଦେଶମାନଙ୍କ ଉପରେ ସେମାନଙ୍କର ଆକ୍ରମଣକୁ ପ୍ରତିହତ କରିବ ।

କମ୍ୟୁନିଜମ୍ ବା ସାମ୍ୟବାଦର ସେହି ଭୌତିକ ଓ କାରିଗରି ଭିତ୍ତି ସ୍ଥାପନର ଅର୍ଥ କଣ ?

ଏହାର ଅର୍ଥ ହେଲା, ଦେଶରେ ସଂପୂର୍ଣ୍ଣ ବିଦ୍ୟୁତୀକରଣ ଆଣିବା, ଏହାର ଭିତ୍ତିରେ ଜାତୀୟ ଅର୍ଥନୀତିର ସମସ୍ତ କ୍ଷେତ୍ରରେ କାରିଗରି ବିଦ୍ୟାର ଓ ସାମାଜିକ ଉତ୍ପାଦନଗତ ସଂଗଠନର ଉନ୍ନତ ବିଧାନ କରିବା । ଉତ୍ପାଦନ ପ୍ରକ୍ରିୟାରେ ସର୍ବାଙ୍ଗୀନ ବ୍ୟାପକ ଯାନ୍ତ୍ରିକୀକରଣ ସୃଷ୍ଟି କରିବା ଓ ସେଥିରେ ଅଧିକ ପରିମାଣରେ ସ୍ୱୟଂକ୍ରିୟତାର ସଂଯୋଗ ଆଣିବା

ନୂତନ ସୁଦକ୍ଷ ଉତ୍ପାଦନ ବସ୍ତୁଗୁଡ଼ିକର ସର୍ବାଧିକ ବିକାଶ ସାଧନ କରିବା, କାର୍ଯ୍ୟ ଅର୍ଥନୀତିରେ ସ୍ୱୟଂକ୍ରିୟ ପ୍ରକ୍ରିୟାଗୁଡ଼ିକର ଓ ସ୍ୱୟଂକ୍ରିୟ ପଦାର୍ଥର ବହୁଳ ବ୍ୟବହାର ଆଣିବା । ନୂତନ ପ୍ରକାରର ଶକ୍ତି ଓ କଞ୍ଚାମାଲ ( କଞ୍ଚାମାଲ ) ବ୍ୟବହାର କରିବା; ପ୍ରାକୃତିକ, ଭୌତିକ ଓ ଲୋକଶକ୍ତି - ସମ୍ବଳକୁ ସବୁ ଦିଗରେ ଯୁକ୍ତିଯୁକ୍ତ ଭାବେ ପ୍ରୟୋଗ କରିବା; ବିଜ୍ଞାନ ଓ ଉତ୍ପାଦନର ସାଙ୍ଗଠନିକ ମିଶ୍ରଣ ସୃଷ୍ଟି କରିବା ଓ ବୈଜ୍ଞାନିକ ଏବଂ କାରିଗରି ବିଦ୍ୟାର ଅଗ୍ରଗତିକୁ କ୍ଷିପ୍ରତର କରିବା, ଲୋକମାନଙ୍କର ସାଂସ୍କୃତିକ ଓ କାରିଗରି ଅଗ୍ରଗତିକୁ ବୃଦ୍ଧି କରିବା; ଶ୍ରମର ଉତ୍ପାଦନଶୀଳତାରେ ସର୍ବାଧିକ ଉନ୍ନତ ପୁଞ୍ଜିପତି ଦେଶମାନଙ୍କୁ ଅତିକ୍ରମ କରିବା ସାମ୍ୟବାଦୀ ବ୍ୟବସ୍ଥାର ବିକାଶ ଲାଗି ଏହା ମୁଖ୍ୟଭାବରେ ଆବଶ୍ୟକ ।

ପ୍ରଶ୍ନ କରାଯାଇପାରେ, ସୋଭିଏତ୍ ଲୋକେ କଣ ବୃହତ ଧରଣର ମେସିନ ଯନ୍ତ୍ରପାତି ଉପରେ ପ୍ରତିଷ୍ଠିତ ଶିଳ୍ପ କାରଖାନାମାନ ନିର୍ମାଣ କରୁ ନାହାନ୍ତି ? ସେମାନେ କଣ ଅତି ଆଧୁନିକ ଟେକ୍‌ନୋଲୋଜି ବା କାରିଗରି ବିଦ୍ୟା ପ୍ରୟୋଗ କରୁ ନାହାନ୍ତି ? ସେମାନେ କଣ ଶ୍ରମିକମାନଙ୍କର ଦକ୍ଷତା ଓ ଉତ୍ପାଦନଶୀଳତାର ବୃଦ୍ଧି ଆଣି ନାହାନ୍ତି ?

ଅବଶ୍ୟ ଏସବୁ ସୋଭିଏତ୍‌ରେ ସଫଳତାର ସହିତ ସମ୍ପନ୍ନ କରାଯାଉଛି । ସମସ୍ତ ସୋଭିଏତ୍ ଶାସନ କାଳ ମଧ୍ୟରେ ସାମ୍ୟବାଦର ଉଚ୍ଚତର ପର୍ଯ୍ୟାୟକୁ ଯିବା ଲାଗି ଭୌତିକ ଓ ନୈତିକ ପୂର୍ବାବସ୍ଥାମାନ ସୃଷ୍ଟି କରାଯାଇଛି । କିନ୍ତୁ ବର୍ତ୍ତମାନ ସୋଭିଏତ୍ ଇଉନିଅନରେ ଯାହା ଅଛି ତାହା ସାମ୍ୟବାଦକୁ ସିଧାସଳଖ ଯିବା ଲାଗି ଓ " ପ୍ରତ୍ୟେକ ନିଜ ନିଜର ସାମର୍ଥ୍ୟ ଅନୁସାରେ ଦେବେ ଓ ପ୍ରତ୍ୟେକେ ନିଜ ନିଜର ଆବଶ୍ୟକତା ଅନୁଯାୟୀ ପାଇବେ," ଏହି ନୀତିର ପ୍ରୟୋଗ ସକାଶେ ଯଥେଷ୍ଟ ନୁହେଁ । ଏବେ ସୋଭିଏତ୍ ଲୋକେ ଆହୁରି ଅଧିକ ଶକ୍ତିଶାଳୀ ଭୌତିକ ଓ କାରିଗରି ଭିତ୍ତି ସୃଷ୍ଟି କରିବାର କର୍ତ୍ତବ୍ୟର ସମ୍ମୁଖୀନ । ସେଥିଲାଗି ସମସ୍ତ ଅବସ୍ଥା ମଧ୍ୟ ରହିଛି ।

ସେହି ସବୁ ଅବସ୍ଥା କଣ ?

ସର୍ବ ପ୍ରଥମ ହେଲା; ସୋଭିଏତ୍ ୟୁନିଅନରେ ସବୁଠାରୁ ବଳି ଅତ୍ୟନ୍ତ ପ୍ରଗତିଶୀଳ ସାମାଜିକ ବ୍ୟବସ୍ଥା, ସମାଜବାଦ,—ଯାହାର କି ସୁବିଶାଳ ବା ପ୍ରକାଣ୍ଡ ସୃଜନଶୀଳ ଶକ୍ତି ରହିଛି, ତାହାର ବିଦ୍ୟମାନତା ।

ପୁଞ୍ଜିବାଦକୁ ତାର ବର୍ତ୍ତମାନ ସ୍ତରର ଶିଳ୍ପ ଉତ୍ପାଦନରେ ପହଞ୍ଚିବା ଲାଗି ଦେଢ଼ ଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟ ଲାଗିଥିଲା । ସୋଭିଏତ ଇଉନିଅନ ସେହି ପଥକୁ ପଚିଶ ବର୍ଷରୁ କମ୍ ସମୟ ମଧ୍ୟରେ ଅତିକ୍ରମ କରିଛି, ପୁଣି ସେହି ସମୟରୁ ଅଧେ

ସମସ୍ତ କରିଛି ତାହା ହଠାତ୍ର ନର ଦଅଁ ହୋଇଥିବା ଯୁଦ୍ଧରେ ଓ ପରେ ତା ନିଜର ଅବଧାନରେ ଓ ପୁନଃନିର୍ମାଣରେ ।—ଏହା ହେଉଛି ସମାଜବାଦୀ ଅର୍ଥନୀତିର ଦ୍ରୁତ ଅଭିବୃଦ୍ଧିର ପରିଚୟ ।

ଅଧିକ ଭାବେ କହିଲେ,—ସମାଜବାଦରୁ ମିଳୁଥିବା ଶକ୍ତିଶାଳୀ ଭିତ୍ତି ଉପରେ ସାମ୍ୟବାଦ ବା କମ୍ୟୁନିଜମର ଭୌତିକ ଓ କାରିଗରି ଭିତ୍ତି, ଗଠିତ ହେଉଛି ।

ସୋଭିଏତ୍ ୟୁନିଅନରେ ଅତି ଉନ୍ନତ ଧରଣର ଶିଳ୍ପ ଶ୍ରେଷ୍ଠ କାରିଗର ସଂଖ୍ୟା ଏବଂ ପୃଥିବୀର ସବୁଠାରୁ ବଳି ପ୍ରଗତିଶୀଳ ବିଜ୍ଞାନ ରହିଛି । ସାମ୍ୟବାଦୀ ନିର୍ମାଣର ଯେକୌଣସି କର୍ତ୍ତବ୍ୟ ସମ୍ପାଦନ କରିବା ଦିଗରେ ସମର୍ଥ ସୋଭିଏତ ୟୁନିଅନରେ ଅତି ଚମତ୍କାର ସୃଜକ କର୍ମକର୍ତ୍ତାମାନେ ଅଛନ୍ତି ।

ପୃଥିବୀ ପୃଷ୍ଠରେ, ସମୁଦ୍ର ବକ୍ଷରେ, ଅନ୍ତରୀକ୍ଷରେ, ସୋଭିଏତ୍ ଲୋକଙ୍କ ହସ୍ତ ଓ ମସ୍ତିଷ୍କର ମହାନ୍ କୃତିତ୍ୱ ଦେଖିବାକୁ ମିଳୁଛି । ବହୁ ପ୍ରକାରର ସୋଭିଏତ୍ ମେସିନ୍, ଯନ୍ତ୍ରପାତି, ଶକ୍ତି-ଚାଳିତ ଟରବାଇନ୍ ଓ ସ୍ୱୟଂଚାଳିତ ଯନ୍ତ୍ର ଆଦି ଅଗ୍ରଗାମୀ ପୁଞ୍ଜିବାଦୀ ଦେଶମାନଙ୍କଠାରୁ କାରିଗରିରେ ଅଧିକ ଉନ୍ନତ । ପୃଥିବୀର ସବୁ ବୃହତ ଯାନ୍ତ୍ରିକ ଓ ସ୍ୱୟଂଚାଳିତ ବ୍ଲଷ୍ଟ ଓ ଖୋଲା ଫର୍ଣ୍ଣେସ୍, ବ୍ଲୁମିଙ୍ଗ ମିଲ ରୋଲିଙ୍ଗ ମିଲ୍ମାନ ନିର୍ମିତ ହେଉଛି । ତେଲ ଉତ୍ତୋଳନ ଓ ଗ୍ୟାସ କୂପ ଖନନ ସନ୍ଧାନେ ସୋଭିଏତର ଟର୍ବୋ-ଡ୍ରିଲ ଓ ଇଲେକ୍ଟ୍ରିକ୍ ଡ୍ରିଲ ପୃଥିବୀରେ ସବୁଠାରୁ ବଳି ଉତ୍କୃଷ୍ଟ ।

ପ୍ରଥମେ ସୋଭିଏତ୍ ୟୁନିଅନକୁ ଜଳ ବିଦ୍ୟୁତ କେନ୍ଦ୍ରମାନ ନିର୍ମାଣ କରିବା ଲାଗି ଆମେରିକା ଓ ଅନ୍ୟାନ୍ୟ ବିଦେଶୀ ପରାମର୍ଶଦାତା ଓ ବିଶେଷଜ୍ଞମାନଙ୍କୁ ଭଡ଼ା ସୂତ୍ରରେ ଆଣିବାକୁ ପଡ଼ିଥିଲା । ଏବେ ସୋଭିଏତ୍ ଲୋକେ ଯେଉଁ ବିଦ୍ୟୁତ୍ କେନ୍ଦ୍ରମାନ ନିର୍ମାଣ କରୁଛନ୍ତି, ପୃଥିବୀରେ ତାହା ଅତୁଳନୀୟ ।—ପୁଞ୍ଜିବାଦୀ ଦେଶର ବିଶେଷଜ୍ଞମାନେ ସେ ବିଷୟ ଜାଣିବାକୁ ଓ ଅନୁଶୀଳନ କରିବାକୁ ଆସୁଛନ୍ତି ।

ସୋଭିଏତ୍ ଜେଟ୍ ଓ ଟର୍ବୋପ୍ରପ ବିମାନଗୁଡ଼ିକ ପୃଥିବୀରେ ସର୍ବଶ୍ରେଷ୍ଠ ବୋଲି ସ୍ୱୀକୃତ ହୋଇଛି । ପ୍ରଥମ ପରମାଣୁ ବିଦ୍ୟୁତ୍ କେନ୍ଦ୍ର ଓ ପରମାଣୁ ଚାଳିତ ତୁଷାରଭଙ୍ଗକାରୀ ଜାହାଜ ସୋଭିଏତରେ ନିର୍ମିତ ହୋଇଥିଲା । ଆମର ଅନ୍ତରୀକ୍ଷ ପରିଭ୍ରମଣରେ ସୋଭିଏତ୍ ବୈଜ୍ଞାନିକ ହେଉଛି ସର୍ବପ୍ରଥମ । ସୋଭିଏତ୍ ଇଉନିଅନର ଗ୍ରହ-ଚନ୍ଦ୍ର-ସମ୍ବଳିତ ମନୁଷ୍ୟ ହସ୍ତର ସୃଷ୍ଟିକୁ ଚନ୍ଦ୍ରବକ୍ଷରେ ସ୍ଥାପନ କରିବା ଦିଗରେ ସୋଭିଏତ ଲୋକମାନେ ହିଁ ସର୍ବ ପ୍ରଥମ ।



ସୋଭିଏତ୍ ପାରମାଣବିକ ବିଦ୍ୟୁତ୍ କେନ୍ଦ୍ରର କଣ୍ଟ୍ରୋଲ୍-ବୋର୍ଡ ।

ସୋଭିଏତ୍ ଅନ୍ତରୀକ୍ଷଚାରୀମାନଙ୍କର ଏହି ଅତି ଚମତ୍କାର ଉଲ୍ଲେଖନୀୟ ଅନ୍ତରୀକ୍ଷ-ଯାତ୍ରା କଣ ବିଜ୍ଞାନ ଓ ଇଞ୍ଜିନିୟରିଙ୍ଗ୍ ବିଦ୍ୟାର ବିଶେଷ ଉନ୍ନତି ବିନା ସମ୍ଭବ ହୋଇଥାନ୍ତା ? ନୁହେଁ, ନିଶ୍ଚୟ ନୁହେଁ ।

ସୋଭିଏତ୍ ଅନ୍ତରୀକ୍ଷ ଯାନ ବହୁ ବିଜ୍ଞାନ ଓ ସମସ୍ତ ପ୍ରକାର ଇଂଜିନିଅରିଂର ଅତି ଆଧୁନିକ ସାଫଲ୍ୟ ଓ କୃତିତ୍ୱକୁ ନେଇ ଗଠିତ । ଏହା ସୋଭିଏତର ପ୍ରଗତିଶୀଳ କାରିଗରି ଓ ବୈଜ୍ଞାନିକ ଚିନ୍ତାଧାରାର ଓ ଅତି ଉଚ୍ଚ ଶିଳ୍ପ-ଦକ୍ଷତାର ନିଦର୍ଶନ ।

ସୋଭିଏତ୍ ୟୁନିଅନରେ କମ୍ୟୁନିଜମର ଏହି ଭୌତିକ ଓ ଟେକ୍ନିକାଲ୍ ଭିତ୍ତି ଗଠନ ଲାଗି ଏକ ପ୍ରଧାନ ଅବସ୍ଥା ବା ସର୍ତ୍ତ ହୋଇ ରହିଛି ଲେନିନ୍‌ବାଦୀ ପାର୍ଟିର ନେତୃତ୍ୱ ।

କମ୍ୟୁନିଷ୍ଟ ପାର୍ଟି ହିଁ ହେଉଛି ସୋଭିଏତ ସମାଜରେ ନେତୃତ୍ୱଦାୟୀ ଶକ୍ତି । ଏହା ଅର୍ଥନୈତିକ ବିକାଶମୂଳକ ଯୋଜନାର ବୈଜ୍ଞାନିକ ଅବତାରଣାକୁ ଓ ତାର ସମ୍ପାଦନାକୁ ସୁନିଶ୍ଚିତ କରୁଛି, ଜନସାଧାରଣଙ୍କୁ ସମବେତ କରୁଛି ଏବଂ ସେମାନଙ୍କୁ ଦୃଢ଼ ବିଶ୍ୱାସର ସହ କମ୍ୟୁନିଜମ୍‌ର ମାର୍ଗରେ ନେଇଯାଉଛି ।

ସୋଭିଏତ ୟୁନିଅନରେ ଯୋଜନାବଦ୍ଧ ଭାବେ ପରିକଳ୍ପିତ ଲକ୍ଷ୍ୟ ନେଇ ଅର୍ଥନୀତି, ବିଜ୍ଞାନ ଓ ସଂସ୍କୃତି ଆଦିର ପ୍ରତ୍ୟେକ ବିଭାଗ ବିକାଶ ଲାଭ କରୁଛି, ଏବଂ

ଏହା ସବୁ ଗୋଟିଏ ଗୋଟିଏ ଅଙ୍ଗ ଭାବରେ ପ୍ରତ୍ୟେକ ପ୍ରତ୍ୟେକର ପରିପୂରକ ହୋଇଛନ୍ତି । ଏହି ପ୍ରକାରର ବିକାଶ କେବଳ ମାର୍କସବାଦ-ଲେନିନ୍‌ବାଦ ଦ୍ୱାରା ଆବିଷ୍କୃତ ସାମାଜିକ ପ୍ରଗତିମୁଖୀ ନିୟମଗୁଡ଼ିକର ଯଥାର୍ଥ ପ୍ରୟୋଗ ଜରିଆରେ ହିଁ ସମ୍ଭବପର । ଏହି କାରଣରୁ ହିଁ ମାର୍କସବାଦ-ଲେନିନ୍‌ବାଦ ଦ୍ୱାରା ସୁଶିକ୍ଷିତ ଓ ସୁସଜ୍ଜିତ ପାର୍ଟିର ନେତୃତ୍ୱ କମ୍ୟୁନିଜମ ନିର୍ମାଣରେ ସାଫଲ୍ୟ ଦିଗରେ ଏକ ଅପରିହାର୍ଯ୍ୟ ସର୍ତ୍ତ ହୋଇଛି ।

## ଉତ୍ପାଦନ ଶକ୍ତିର ପ୍ରବଳ ଅଗ୍ରଗତି

ସାମ୍ୟବାଦର ଭୌତିକ ଓ କାରିଗରି ଭିତ୍ତି ନିର୍ମାଣ ଲାଗି ମାର୍ଗ ନିରୂପଣ କରିବାବେଳେ ପାର୍ଟି ସମାଜର ବିକାଶ କ୍ଷେତ୍ରରେ ଉତ୍ପାଦନ ଶକ୍ତିର ନିର୍ଣ୍ଣୟକାରୀ ଭୂମିକା ସମ୍ବନ୍ଧରେ ମାର୍କସବାଦୀ-ଲେନିନ୍‌ବାଦୀ ଶିକ୍ଷା ଦ୍ୱାରା ପରିଚାଳିତ ହୁଏ । ସାମ୍ୟବାଦରେ ଭୌତିକ ଓ ଟେକ୍‌ନିକାଲ ବା କାରିଗରି ଭିତ୍ତିର ନିର୍ମାଣ ସୋଭିଏତ୍ ଇଉନିଅନର ଉତ୍ପାଦନ ଶକ୍ତିର ଶକ୍ତି ଓ ପରିସରର ଅଭୂତପୂର୍ବ ଭାବେ ବୃଦ୍ଧି ଆଣିବ । ମାତ୍ର ଆଧୁନିକ ଉତ୍ପାଦନର ସମସ୍ତ ଦିଗର ଯଥା—ଶକ୍ତିର କେନ୍ଦ୍ରଗୁଡ଼ିକ, ଶ୍ରମର ଯନ୍ତ୍ରପାତି, ଶ୍ରମର ବିଷୟବସ୍ତୁର ଓ ଶ୍ରମିକମାନଙ୍କର ସାଂସ୍କୃତିକ ଓ କାରିଗରି ସ୍ତରଗୁଡ଼ିକର ମଧ୍ୟ ଦ୍ରୁତ ବିକାଶ ଏଥି ପୂର୍ବରୁ ସମ୍ଭବ ହୋଇଥିବା ଆବଶ୍ୟକ ।

ବିଦ୍ୟୁତୀକରଣ ହେଲା ସାମ୍ୟବାଦୀ ସମାଜ ନିର୍ମାଣରେ ମେରୁଦଣ୍ଡ । ଲେନିନ୍ କହିଥିଲେ, "କମ୍ୟୁନିଜମ୍ ହେଉଛି, ସୋଭିଏତ୍ ଶକ୍ତି ଯୁକ୍ତ ସମଗ୍ର ଦେଶର ବିଦ୍ୟୁତୀକରଣ ।" ଏହାର ଅର୍ଥ କମ୍ୟୁନିଜମ୍ ବା ସାମ୍ୟବାଦର ବିଜୟ ଲାଗି ଦୁଇଟି ନିଷ୍ପତ୍ତିମୂଳକ ସର୍ତ୍ତ ବା ବ୍ୟବସ୍ଥା ଏକାନ୍ତ ଆବଶ୍ୟକ; ଏକରେ, ଶ୍ରମଜୀବୀ ଲୋକଙ୍କର ଶାସନ, ଦୁଇରେ, ଅତି ଉଚ୍ଚ ଉନ୍ନତଶୀଳ ଭୌତିକ ଓ କାରିଗରି ଭିତ୍ତି ।

ସୋଭିଏତ୍ ୟୁନିଅନ ବିଦ୍ୟୁତୀକରଣ ଦିଗରେ ବିପୁଳ ଅଗ୍ରଗତି ହାସଲ କରିଛି । ୧୯୧୩ ସାଲ ତୁଳନାରେ ତାର ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ୨୦୦ ଗୁଣରୁ ଅଧିକ ବୃଦ୍ଧି ପାଇଛି । ପୃଥିବୀରେ ଅତୁଳନୀୟ ବହୁ ସଂଖ୍ୟକ ତାପ-ବିଦ୍ୟୁତ ଓ ଜଳବିଦ୍ୟୁତ କେନ୍ଦ୍ର ନିର୍ମିତ ହୋଇଛି ଓ ହେଉଛି । ୧୯୫୮ ସାଲରେ ଭଲଗା ନଦୀରେ ଲେନିନ ଜଳବିଦ୍ୟୁତ୍ ଷ୍ଟେସନ କାର୍ଯ୍ୟକାରୀ ହେଲା । ଏହାର ବିଦ୍ୟୁତଉତ୍ପାଦନ ଶକ୍ତି, ଯୁକ୍ତରାଷ୍ଟ୍ର ଆମେରିକାରେ କୋଲମ୍ବିଆ ନଦୀ ଉପରେ ନିର୍ମିତ ପୃଥିବୀର ଦ୍ୱିତୀୟ ସର୍ବ ବୃହତ ଜଳବିଦ୍ୟୁତ ଷ୍ଟେସନ ଗ୍ରାଣ୍ଡ କୁଲିର ଶକ୍ତିଠାରୁ ଅଧିକ ।

ପୁଣି ଏହାଠାରୁ ଆହୁରି ଅଧିକ ଶକ୍ତିଶାଳୀ କେନ୍ଦ୍ରମାନ ୟେନିସି, ଅଙ୍ଗାରା, ଓବ ଓ ଅନ୍ୟାନ୍ୟ ସୋଭିଏତ୍ ନଦୀରେ ନିର୍ମିତ ହେଉଛି । ଏଥିରୁ ପ୍ରତ୍ୟେକଟି ବିଦ୍ୟୁତ



ସୋଭିଏଟ୍ ୟୁନିଅନର ଗୋର୍କି ମୋଟର୍ କାରଖାନାର
ଏକ ସ୍ୱୟଂକ୍ରିୟ ବିଭାଗ ।

ଷ୍ଟେସନ, ନଦୀଓ, ଜଳ 'ବିଦ୍ୟୁତ' ଉତ୍ପାଦନ କେନ୍ଦ୍ରରେ ମୋଟ ଯେତେ ପରିମାଣରେ ବିଦ୍ୟୁତ ଶକ୍ତି ଉତ୍ପନ୍ନ ହୁଏ, ସେତିକ ଲେଖାଏଁ ଉତ୍ପନ୍ନ କରିବେ।

ଏବେ ସୋଭିଏତ୍ ୟୁନିଅନ ପୂର୍ଣ୍ଣପୂର ବିଦ୍ୟୁତୀକରଣ ବ୍ୟବସ୍ଥା ଅବଲମ୍ବନ କରିଛି, ଅର୍ଥାତ୍ ଶିଳ୍ପର ପ୍ରତ୍ୟେକ ବିଭାଗରେ ପରିବହନ, କୃଷି, ସହର ଓ ସେବାମୂଳକ ପ୍ରତିଷ୍ଠାନମାନଙ୍କରେ ବିଦ୍ୟୁତ ଶକ୍ତି ପ୍ରୟୋଗ କରୁଛି। ସୋଭିଏତ ୟୁନିଅନରେ ୧୯୮୦ ବେଳକୁ ବିଦ୍ୟୁତ ଶକ୍ତିର ବ୍ୟବହାର ପ୍ରତ୍ୟେକ ଶିଳ୍ପଶ୍ରମିକ ପ୍ରତି ୮।୯ ଗୁଣ ବୃଦ୍ଧି ପାଇବ। ଏହାର ଅର୍ଥ, ପ୍ରତ୍ୟେକ ଶ୍ରମିକ ବର୍ଷକୁ ୨୧,୦୦୦ କିଲୋୱାଟ୍ ଘଣ୍ଟାରୁ ଅଧିକ ବିଦ୍ୟୁତ ଶକ୍ତି ବ୍ୟବହାର କରିବ। ଅନ୍ୟ ଭାଷାରେ କହିଲେ, ପ୍ରତ୍ୟେକ ସୋଭିଏତ୍ ଶ୍ରମିକର ୧୪୦ ଟିରୁ ଊର୍ଦ୍ଧ୍ୱ ଭୃତ୍ୟ-ବାହନ ବିଦ୍ୟୁତ ଅଶ୍ୱ ରହିବ।

ବିଦ୍ୟୁତ ଶକ୍ତି ଉତ୍ପାଦନ ୮।୯ ଗୁଣ ବୃଦ୍ଧି ପାଇବ ଓ ୧୯୮୦ ବେଳକୁ ୨,୭୦୦,୦୦୦—୩,୦୦୦,୦୦୦ କିଲୋୱାଟ୍ ଘଣ୍ଟାରେ ପହଞ୍ଚିବ। ଏହା ୧୯୬୧ରେ ସମସ୍ତ ପୁଞ୍ଜିବାଦୀ ଦେଶରେ ଉତ୍ପନ୍ନ ହୋଇଥିବା ବିଦ୍ୟୁତ ଶକ୍ତିର ପ୍ରାୟ ଶତକଡ଼ା ୫୦ ଭାଗରୁ ଅଧିକ ହେବ।

ଏହି ବିଦ୍ୟୁତୀକରଣ ଫଳରେ ଉତ୍ପାଦନର ସବୁ କ୍ଷେତ୍ରରେ ଯାନ୍ତ୍ରିକୀକରଣ ଓ ସ୍ୱୟଂକ୍ରିୟତାର ପ୍ରଚଳନ ସମ୍ଭବପର ହେବ। ସ୍ୱୟଂକ୍ରିୟତାର ବିରାଟ ଗୁରୁତ୍ୱ ହେଉଛି ଯେ, ତାହା ସର୍ବ ପ୍ରଥମେ କାର୍ଯ୍ୟକୁ ସହଜ କରିବ, ତାର ଉତ୍ପାଦନଶୀଳତାର ପ୍ରବଳ ବୃଦ୍ଧିକୁ ସୁନିଶ୍ଚିତ କରିବ ଏବଂ ଶ୍ରମର ପ୍ରକୃତିକୁ ମୌଳିକ ଭାବେ ପରିବର୍ତ୍ତନ କରିଦେବ। ସମାଜବାଦୀ ଶ୍ରମକୁ ସାମ୍ୟବାଦୀ ବା କମ୍ୟୁନିଷ୍ଟ ଶ୍ରମରେ ପରିଣତ କରିବା ଦିଗରେ ଏହା ହିଁ ହେଲା ଭୌତିକ ଭିତ୍ତି।

ବହୁ ଆଧୁନିକ ସୋଭିଏତ କଳକାରଖାନା ଓ ଫାକ୍ଟ୍ରିମାନଙ୍କରେ ଶ୍ରମର ବସ୍ତୁସମସ୍ତକୁ ମନୁଷ୍ୟର ହସ୍ତ ସ୍ପର୍ଶ କରେ ନାହିଁ, ପ୍ରତ୍ୟେକ ଜିନିଷ ସ୍ୱୟଂକ୍ରିୟ ମେସିନ୍ ଦ୍ୱାରା କରାଯାଏ। ତାହା ମେସିନକୁ ଜିନିଷ ଯୋଗାଇଦିଏ, ତାକୁ ଯନ୍ତ୍ର ସାହାଯ୍ୟରେ ତିଆରି କରିଦିଏ। ତାହାର ଜିନିଷର ଗୁଣକୁ ପରୀକ୍ଷା କରେ, ସେଗୁଡ଼ିକୁ ତେଲ ଦେଇ ଠିକ୍ କରିଦିଏ। ଶେଷରେ ସେ-ସବୁକୁ ବନ୍ଧାବନ୍ଧି କରି ପ୍ୟାକ୍ କରେ। ଏହିସବୁ କାରଖାନା ବେଶ ପ୍ରଶସ୍ତ ଓ ଆଲୋକିତ—ଭବିଷ୍ୟତ ଫାକ୍ଟୋରୀମାନଙ୍କର ଅବିକଳ ପ୍ରତିରୂପକ ବା ନମୁନା ଏହାଙ୍କୁ ହିଁ ଲେନିନ ମନୁଷ୍ୟ ଯୋଗ୍ୟ ଗବେଷଣାଗାର ବୋଲି ବର୍ଣ୍ଣନା କରିଥିଲେ।

ସ୍ୱୟଂକ୍ରିୟତା ଅମଳରେ ଶ୍ରମିକର ଶ୍ରମ କେବଳ ଅତି ଜଟିଳ ସ୍ୱୟଂକ୍ରିୟ ଯନ୍ତ୍ରପାତିକୁ ଯଥାସ୍ଥାନରେ ଠିକ୍ ଠାକ୍ ସଜାଡ଼ିବ । ତା ପରେ ତାର ନିରବଚ୍ଛିନ୍ନ ଉତ୍ପାଦନର ସ୍ରୋତକୁ ଚଳାଇ ରଖିବ ଓ ସ୍ୱୟଂକ୍ରିୟ ମେସିନକୁ କଣ୍ଟ୍ରୋଲ୍ କରିବ ।

ଏହା କଣ ଶାରୀରିକ ନା ମାନସିକ କାର୍ଯ୍ୟ ? ଏଠାରେ ଶାରୀରିକ, ମାନସିକ ଉଭୟର କାର୍ଯ୍ୟ ଏକାଧାରରେ ସମ୍ମିଳିତ । ଏହି ସ୍ୱୟଂକ୍ରିୟ ଉତ୍ପାଦନ ଶାରୀରିକ ଓ ମାନସିକ କାର୍ଯ୍ୟକୁ ଏକତ୍ର ଅଧିକ ନିବିଡ଼ କରିବ, ଏବଂ ସେସବୁ ଭିତରେ ଥିବା ପାର୍ଥକ୍ୟକୁ ଲୋପ କରିବ ।

ପୁଞ୍ଜିବାଦ ଅଧୀନରେ ଶ୍ରମିକମାନେ ସ୍ୱୟଂକ୍ରିୟତା ବିଷୟରେ ଆଗ୍ରହୀ ନୁହନ୍ତି, କାରଣ ତାହା ତାଙ୍କର କାମ ପ୍ରତି ବିପଦ ସୃଷ୍ଟି କରେ ଏବଂ ବେକାର ସମସ୍ୟା ବୃଦ୍ଧି କରେ । ସମାଜବାଦ ଅଧୀନରେ କିନ୍ତୁ ସମାଜର ସମସ୍ତ ଲୋକେ ଏ ସମ୍ବନ୍ଧରେ ଆଗ୍ରହଶୀଳ । ସମାଜବାଦୀ ଦେଶମାନଙ୍କରେ ଯୋଜନା ଅନୁଯାୟୀ ଏହି ସ୍ୱୟଂକ୍ରିୟତା ପ୍ରଚଳନ କରାଯାଉଛି । ଯେଉଁ ସବୁ କ୍ଷେତ୍ରରେ ବିଶେଷ ଲାଭଜନକ ଶ୍ରମକୁ ଏହା ସହଜ କରିପାରୁଛି ଓ ଶ୍ରମର ଉତ୍ପାଦନଶୀଳତାର ବୃଦ୍ଧି ଆଣି ପାରୁଛି, ସେଠାରେ ପ୍ରଥମେ ଏହାକୁ କାର୍ଯ୍ୟକାରୀ କରାଯାଉଛି ।

ସାମ୍ୟବାଦ ଅଧୀନରେ ଏହି ସ୍ୱୟଂକ୍ରିୟତା ସମସ୍ତ ନାଗରିକ ଲାଗି ଏକ ସମୃଦ୍ଧ ଓ ସାଂସ୍କୃତିକ ଜୀବନ ପାଇଁ ପରିସ୍ଥିତି ସୃଷ୍ଟି କରୁଛି ।

ଯଦିଓ ସୋଭିଏତ ୟୁନିଅନର ଅତ୍ୟନ୍ତ ସମୃଦ୍ଧିଶାଳୀ ସମ୍ବଳ—କଞ୍ଚାମାଲ, ଜାଳେଣି ଓ ଅନ୍ୟାନ୍ୟ ପଦାର୍ଥ ରହିଛି, ଏହା ମନୁଷ୍ୟକୃତ ପଦାର୍ଥର ଉତ୍ପାଦନ, ସର୍ବୋପରି ରାସାୟନିକ ଶିଳ୍ପର ଉତ୍ପାଦନକୁ ଦ୍ରୁତଭାବେ ପ୍ରସାରିତ କରିବାରେ ଲାଗିଛି, ସାମ୍ୟବାଦର ଭୌତିକ ଓ କାରିଗରୀ ଭିତ୍ତି ନିର୍ମାଣ ଦିଗରେ ଏହା ଏକ ପ୍ରଧାନ ସର୍ତ୍ତ ବା ଅବସ୍ଥା ।

ମନୁଷ୍ୟକୃତ ପଦାର୍ଥର ପ୍ରୟୋଗ ଲାଗି ଅସାଧାରଣ ପ୍ରକାରରେ ଅତି ପ୍ରଶସ୍ତ କ୍ଷେତ୍ର ପଡ଼ିଛି । ଏହା ସବୁ ଗୃହଶିଳ୍ପ ଓ ନିର୍ମାଣ କାର୍ଯ୍ୟରେ ବ୍ୟବହୃତ ହେଉଛି, ଅଧିକରୁ ଅଧିକ ହାରରେ କପଡ଼ା କଳ, ଘରର ଅସବାବପତ୍ର ତିଆରି ଓ ଅନ୍ୟାନ୍ୟ ଶିଳ୍ପରେ ଲାଗୁଛି । କାଠ, ଧାତୁ ପଦାର୍ଥ ଓ ଅନ୍ୟାନ୍ୟ ଜିନିଷ ବଦଳରେ ଶସ୍ତା, ହାଲୁକା ଓ କାର୍ଯ୍ୟକାରୀ ମନୁଷ୍ୟକୃତ ଅନ୍ୟ ପଦାର୍ଥମାନ ଲୋକେ ଗ୍ରହଣ

କରୁଛନ୍ତି । ଖଣିଜସାର ଓ କୀଟନାଶକ ରାସାୟନିକ ଦ୍ରବ୍ୟମାନ ବ୍ୟାପକଭାବେ କୃଷିକ୍ଷେତ୍ରରେ ବ୍ୟବହୃତ ହେଉଛି ।

ଦ୍ରୁତ ବୈଜ୍ଞାନିକ ଓ କାରିଗରିବିଦ୍ୟାର ପ୍ରଗତି ହେଉଛି ସାମ୍ୟବାଦ ନିର୍ମାଣର ଭୌତିକ ଓ ଟେକ୍ନିକାଲ ଭିତ୍ତି ନିର୍ମାଣଲାଗି ଏକ ଅନ୍ୟତମ ମୌଳିକ ପ୍ରୟୋଜନ । ଏହି ପ୍ରଗତି ମନୁଷ୍ୟ ହାତରେ ଅଧିକ ଉନ୍ନତ ଓ ଶକ୍ତିଶାଳୀ ଟେକ୍ନୋଲଜି ନ୍ୟସ୍ତ କରୁଛି ଏବଂ ପ୍ରକୃତିର ଶକ୍ତି ଉପରେ ତାର କର୍ତ୍ତୃତ୍ୱକୁ ଏକ ନୂତନ ସ୍ତରକୁ ନେଇଯାଉଛି ।

ବିଜ୍ଞାନ ସଦାସର୍ବଦା ଉତ୍ପାଦନକୁ ସର୍ବସ୍ୱଭାବେ ପ୍ରଭାବିତ କରିଛି । ପଦାର୍ଥ-ବିଦ୍ୟା, ରସାୟନ ବିଦ୍ୟା, ଗଣିତ ବିଦ୍ୟା ଓ ଅନ୍ୟାନ୍ୟ ବୈଜ୍ଞାନିକ ଆବିଷ୍କାର ସମାଜବାଦୀ ଉତ୍ପାଦନରେ ସର୍ବଦା ଅଧିକରୁ ଅଧିକ ଭୂମିକା ଗ୍ରହଣ କରୁଛି । ବ୍ୟାପକ-ଭାବରେ ପରୀକ୍ଷାମୂଳକ ଗବେଷଣା କାର୍ଯ୍ୟ, କଳକାରଖାନା ଓ ବୈଜ୍ଞାନିକ ଅନୁଷ୍ଠାନ ମଧ୍ୟରେ ଅଧିକ ଘନିଷ୍ଠ ଯୋଗାଯୋଗ ଅଛି । କାର୍ଯ୍ୟ ନିଯୁକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ଇଞ୍ଜିନିୟର ଆଉ ଟେକ୍ନିସିଆନମାନଙ୍କର ସଂଖ୍ୟାଧିକତା ବୃଦ୍ଧି ପାଉଛି । ସାମ୍ୟବାଦର ଭୌତିକ ଓ ଟେକ୍ନିକାଲ ଭିତ୍ତି ନିର୍ମାଣ ଦିଗରେ ଏହା ସବୁ ଆବଶ୍ୟକୀୟ ଅବସ୍ଥା ସୃଷ୍ଟି କରୁଛି ।

ସୋଭିଏତ ୟୁନିଅନରେ ବିଜ୍ଞାନ ଅଧିକରୁ ଅଧିକ ଏକ ପ୍ରତ୍ୟକ୍ଷ ଉତ୍ପାଦକ-ଶକ୍ତିରେ ପରିଣତ ହେଉଛି ।

ଆଧୁନିକତମ ମେସିନ ଯନ୍ତ୍ରପାତିକୁ ଚଳାଇବାକୁ ହେଲେ ଓ ବୈଜ୍ଞାନିକ କୃତିତ୍ୱଗୁଡ଼ିକର ପୂର୍ଣ୍ଣ ସଦ୍‌ବ୍ୟବହାର କରିବାକୁ ଗଲେ ଶ୍ରମିକମାନଙ୍କୁ ବହୁବିଧ ଜ୍ଞାନ ଆହରଣ କରିବାକୁ ହେବ । ସେଥିଯୋଗୁଁ ବିଜ୍ଞାନ, ସଂସ୍କୃତି ଓ ଅର୍ଥନୀତିର ସମସ୍ତ ବିଭାଗମାନଙ୍କରେ ସୁଦକ୍ଷ କାର୍ଯ୍ୟନିର୍ବାହୀ ବ୍ୟକ୍ତିମାନଙ୍କୁ ତାଲିମ କରିବା ଦିଗରେ ବିଶେଷ ଦୃଷ୍ଟି ଦିଆଯାଉଛି ।

ସୋଭିଏତ ଅମଳରେ ଶ୍ରମିକମାନଙ୍କର କାରିଗରି ଜ୍ଞାନ ବହୁ ପରିମାଣରେ ବଢ଼ିଯାଇଛି, ସମଗ୍ର ଶ୍ରମିକଶ୍ରେଣୀ ମଧ୍ୟରେ ସୁଦକ୍ଷ ଶ୍ରମିକମାନଙ୍କ ସଂଖ୍ୟା ଅର୍ଦ୍ଧାଧିକ ହୋଇଛି । ୧୯୨୮ରେ ସୋଭିଏତ ଜାତୀୟ ଅର୍ଥନୀତିରେ ପ୍ରାୟ ୧,୦୮,୦୦୦ ଇଞ୍ଜିନିୟର ଓ ଟେକ୍ନିସିଆନ ନିଯୁକ୍ତ ଥିଲେ । ୧୯୬୩ରେ ସେମାନଙ୍କର ସଂଖ୍ୟା ୩,୦୦୦,୦୦୦ରୁ ଅଧିକ ହୋଇଥିଲା । ଇଂଜିନିୟର ଓ ଟେକ୍ନିସିଆନଙ୍କୁ ଶିକ୍ଷିତ ଓ

ଚାଳନ କରିବାରେ ସୋଭିଏତ୍ ୟୁନିଅନ, ଯୁକ୍ତରାଷ୍ଟ୍ର ଆମେରିକା ପ୍ରଭୃତି ଅତି ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କୁ ଟପି ଯାଇଛି ।

ତେବେ ସୋଭିଏତ୍ ଲୋକେ ପ୍ରଶଂସା ପାଇ ହାତ ବାନ୍ଧି ବସି ଯାଇନାହାନ୍ତି । ସବୁ ସମୟରେ କାର୍ଯ୍ୟନିର୍ବାହୀ ଲୋକଙ୍କର ଶିକ୍ଷା ଓ ତାଲିମର ପରିସର ଓ ସେମାନଙ୍କର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ୧୯୬୧ରୁ ୧୯୮୦, ଏହି ୨୦ ବର୍ଷ ମଧ୍ୟରେ ଉଚ୍ଚ ଓ ମାଧ୍ୟମିକ ଶିକ୍ଷା ପାଇଥିବା ୩ କୋଟିରୁ ଊର୍ଦ୍ଧ୍ୱ ବିଶେଷଜ୍ଞ ଶିଳ୍ପ, ନିର୍ମାଣ, କୃଷି, ପରିବହନ, ଯୋଗାଯୋଗ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ କ୍ଷେତ୍ର ଲାଗି ଟ୍ରେନିଂ ବା ତାଲିମ ପାଇ ପାରିବେ ।

## ଗୁରୁ ଶିଳ୍ପର ନେତୃତ୍ୱକାରୀ ଭୂମିକା

ଉତ୍ପାଦନର ଉପକରଣମାନଙ୍କ ଉତ୍ପନ୍ନ କରୁଥିବା ଶିଳ୍ପମାନଙ୍କର ଦ୍ରୁତ ପ୍ରସାରକୁ ପ୍ରୋତ୍ସାହିତ କରିବା,—କମ୍ୟୁନିଷ୍ଟ ପାର୍ଟିର ଏହି ନୀତି ଫଳରେ ସୋଭିଏତ୍ ୟୁନିଅନର ସମସ୍ତ ଅର୍ଥନୈତିକ କୃତିତ୍ୱ ସମ୍ଭବପର ହୋଇପାରିଛି । ଏବେ ସୋଭିଏତ ୟୁନିଅନ କମ୍ୟୁନିଷ୍ଟ ପାର୍ଟି ସାମ୍ୟବାଦ ନିର୍ମାଣକୁ ପରିଚାଳିତ କଲାବେଳେ କୋଡ଼ିଏ ବର୍ଷିଆ ଯୋଜନାରେ ସେହିସବୁ ବିଭାଗର ଅଭିବୃଦ୍ଧିକୁ ଅଗ୍ରାଧିକାର ଦେଇଛି । ଗୁରୁଶିଳ୍ପ ବିକାଶର ଉଦ୍ଦେଶ୍ୟ ହେଲା, ଜାତୀୟ ଅର୍ଥନୀତିର ସମସ୍ତ କ୍ଷେତ୍ର ବା ବିଭାଗକୁ କାରିଗରି ବିଦ୍ୟାରେ ପୁନର୍ସଜ୍ଜିତ କରିବା । ସେସବୁ ବିଭାଗଗୁଡ଼ିକ ହେଲା ଖାଉଟି ଦ୍ରବ୍ୟ ଉତ୍ପନ୍ନକାରୀ ଶିଳ୍ପ କାରଖାନା, କୃଷି, ନିର୍ମାଣ, ପରିବହନ, ଯୋଗାଯୋଗ ଓ ଅନ୍ୟାନ୍ୟ ବିଭାଗ, ଯାହା ସବୁ ଲୋକଙ୍କର କାର୍ଯ୍ୟ ଚଳାଇଥାଏ— ବେପାର ବଣିଜ, ସର୍ବସାଧାରଣ ଭୋଜନାଳୟ, ସ୍ୱାସ୍ଥ୍ୟ, ଗୃହ ନିର୍ମାଣ ଓ ସର୍ବସାଧାରଣ ବ୍ୟାବହାରିକ ବ୍ୟବସ୍ଥା ।

ଏହି ୨୦ ବର୍ଷ ମଧ୍ୟରେ ରସାୟନ, ଶିଳ୍ପ, ଜାଳେଣି ଶକ୍ତି ଉତ୍ପାଦନ ଓ ଧାତୁ ଶିଳ୍ପ, ଇଞ୍ଜିନିଅରିଂ ଓ ଅନ୍ୟ ଗୁରୁଶିଳ୍ପ ସବୁ ଦ୍ରୁତ ଗତିରେ ପ୍ରସାରିତ ହେବ । ଧାତୁ ହେଉଛି, ଆଧୁନିକ ଶିଳ୍ପର ମେରୁଦଣ୍ଡ । ସେଥି ମଧ୍ୟରେ ଲୁହା ଓ ଇସ୍ପାତ୍ ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଓ ଅତି ବ୍ୟାପକ ଭାବେ ବ୍ୟବହୃତ ଧାତୁ ।

ଲୁହାପଥର ସମ୍ପଦରେ ଓ ତାର ଉତ୍ପାଦନରେ ସୋଭିଏତ ୟୁନିଅନର ସ୍ଥାନ ପୃଥିବୀରେ ସର୍ବ ପ୍ରଥମ । ମୁଣ୍ଡ ପିଗ୍ ଲୌହ-ପିଣ୍ଡ ଓ ଇସ୍ପାତ ଉତ୍ପାଦନରେ ଏହା ଅତି ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କୁ ଦ୍ରୁତ ଭାବରେ ଅତିକ୍ରମ କରିଯାଉଛି ।

୧୯୧୩ରେ ୪.୩ ନିୟୁତ ଟନ, ୧୯୪୦ରେ ୧୮.୩ ନିୟୁତ ଟନ ଇସ୍ପାତ ଉତ୍ପାଦନ କରୁଥିଲାବେଳେ ୧୯୬୪ରେ ୮୪ ନିୟୁତ ଟନ ଉତ୍ପାଦନ କରିଥିଲା । ୧୯୮୦ରେ ସୋଭିଏତ୍‌ର ଇସ୍ପାତ ଉତ୍ପାଦନ ୨୫୦ ନିୟୁତ ଟନରେ ପହଞ୍ଚିବ । ଏଠି ଆମେ ଦେଖୁଁ ଯେ, ୧୯୬୦ରେ ସମସ୍ତ ପୁଞ୍ଜିବାଦୀ ଦେଶ ମିଶି ୨୩୨ ନିୟୁତ ଟନ ଲୁହାପଥର ଉତ୍ପାଦନ କରୁଥିଲେ ।

ଏହି ୨୦ ବର୍ଷ ମଧ୍ୟରେ ଗୁରୁଶିଳ୍ପର ଏକ ଅତି ଗୁରୁତ୍ୱପୂର୍ଣ୍ଣ ବିଭାଗ—ରାସାୟନିକ ବିଭାଗ—ଦ୍ରୁତ ବେଗରେ ବିକାଶ ଲାଭ କରିବ । ଅନ୍ୟ ସମସ୍ତ ଶିଳ୍ପ ତୁଳନାରେ ଏହା ୩ ଗୁଣ ଅଧିକ ବେଗରେ ବୃଦ୍ଧି ପାଇବ ଓ ଉତ୍ପାଦନ ପ୍ରାୟ ୧୭ ଗୁଣ ହେବ । ବହୁ କ୍ଷେତ୍ରରେ କୃତ୍ରିମ ରାସାୟନିକ ବା ସିନ୍ଥେଟିକ ପଦାର୍ଥମାନ ଗୁଣରେ ଓ କାର୍ଯ୍ୟକାରିତାରେ ଧାତୁ, କାଠ, ତୁଳା, ଚମଡ଼ା ପ୍ରଭୃତିଠାରୁ ଉତ୍କୃଷ୍ଟ ଏବଂ ତାହା ଏହି ସବୁ ଦ୍ରବ୍ୟ ସ୍ଥାନରେ ବ୍ୟବହୃତ ହେବ ।

ଧାତୁ ଶିଳ୍ପ ଓ ରାସାୟନିକ ଶିଳ୍ପର ପ୍ରସାର ଇଞ୍ଜିନିଅରିଂ ଶିଳ୍ପର ଦ୍ରୁତ ବିକାଶକୁ ସୁଯୋଗ ଦେବ । ୧୯୬୧ରୁ ୧୯୮୦ ମଧ୍ୟରେ ଇଞ୍ଜିନିଅରିଂ ଓ ଧାତୁ ଶିଳ୍ପର ଉତ୍ପନ୍ନ ୧୦।୧୧ ଗୁଣ ବୃଦ୍ଧି ପାଇବ, ସ୍ୱୟଂକ୍ରିୟ ଓ ଅର୍ଦ୍ଧ-ସ୍ୱୟଂକ୍ରିୟ ଶିଳ୍ପ ସମୂହର ଉତ୍ପନ୍ନ ୬୦ ଗୁଣରୁ ଅଧିକ ପ୍ରସାରିତ ହେବ । ଏହି ୨୦ ବର୍ଷ ମଧ୍ୟରେ ୨୮୦୦ ନୂତନ ଇଞ୍ଜିନିଅରିଂ ଓ ଧାତୁ ଶିଳ୍ପର କାରଖାନାମାନ ନିର୍ମିତ ହେବ, ୧୯୦୦ଟି ପୁନର୍ଗଠିତ ହେବ ।

ତେବେ ସମାଜବାଦୀ ସମାଜରେ ଗୁରୁଶିଳ୍ପର ବିକାଶ ହିଁ କେବଳ ନିଜର ଲକ୍ଷ୍ୟ ନୁହେଁ କି ହୋଇ ନ ପାରେ । ଜାଳେଣି, ବିଦ୍ୟୁତ ଶକ୍ତି, ଧାତୁ, ମେସିନ, କଞ୍ଚାମାଲ ଓ ରସାୟନ ଦ୍ରବ୍ୟ ପ୍ରଭୃତିର ଆବଶ୍ୟକତା ରହିଛି । କାରଣ, ଖାଉଟି ଦ୍ରବ୍ୟ ତିଆରି କରିବାରେ ସେସବୁ ନିହାତି ଆବଶ୍ୟକ ।

ଗୁରୁଶିଳ୍ପ କ୍ଷେତ୍ରରେ ଦୁଇ ପ୍ରକାରର ଉଦ୍ୟୋଗ ରହିଛି । ଦେଖାଯାଉଛି—ଗୋଟିଏ ହେଉଛି ଉତ୍ପାଦନର ଉପକରଣ ତିଆରି କରୁଥିବା ପ୍ରତିଷ୍ଠାନ ଲାଗି ଉତ୍ପାଦନ ଉପକରଣ ପ୍ରସ୍ତୁତକାରୀ ଉଦ୍ୟୋଗ, ଅନ୍ୟଟି ହେଉଛି—ଲଘୁ ଶିଳ୍ପ କାରଖାନା, ଖାଦ୍ୟ, ଶିଳ୍ପ, କୃଷି, ଗୃହ ନିର୍ମାଣ, ସଂସ୍କୃତି ଓ ଲୋକଙ୍କ ସେବା ଅନୁଷ୍ଠାନର ସମସ୍ତ ଆବଶ୍ୟକତା ପୂରଣକାରୀ ଉଦ୍ୟୋଗ ।

ପ୍ରଥମେ ସୋଭିଏତ୍ ୟୁନିଅନରେ ଯେତେବେଳେ ଗୁରୁଶିଳ୍ପ ନିର୍ମାଣ ହେଲା, ଉତ୍ପାଦନର ଉପକରଣ ତିଆରି ଲାଗି ପ୍ରଥମୋକ୍ତ ଶିଳ୍ପ ପ୍ରତିଷ୍ଠାନର ବିକାଶ

ଭିତରେ ଗୁରୁତ୍ୱ ଦିଆଗଲା । ଏବେ ଏକ ଶକ୍ତିଶାଳୀ ଗୁରୁଶିଳ୍ପ ସୃଷ୍ଟି ହୋଇପାରିଛି । ସୋଭିଏତ ଦେଶରେ ଏହି ଦ୍ୱିଗୁଣିତ ଶିଳ୍ପ ପ୍ରତିଷ୍ଠାନରେ ପ୍ରଧାନତଃ ପୁଞ୍ଜି ବିନିଯୋଗ କରିବାକୁ ସମର୍ଥ ହୋଇଛନ୍ତି । ଏହାଦ୍ୱାରା ସେମାନେ ଅଧିକ ବେଗରେ ଖାଉଟି ଦ୍ରବ୍ୟର ଉତ୍ପାଦନ ବୃଦ୍ଧି କରି ପାରୁଛନ୍ତି ।

ଏହି ୨୦ ବର୍ଷ ମଧ୍ୟରେ ଲଘୁଶିଳ୍ପ, ଖାଦ୍ୟ ଶିଳ୍ପ, କୃଷି, ଗୃହ ନିର୍ମାଣ, ସ୍ୱାସ୍ଥ୍ୟ ଓ ଲୋକଙ୍କ ସେବାମୂଳକ କାର୍ଯ୍ୟ ଲାଗି ମେସିନ ଯନ୍ତ୍ରପାତି ଉତ୍ପାଦନ ୧୩ ଗୁଣ ବୃଦ୍ଧି ପାଇବ । ଖାଉଟି ଦ୍ରବ୍ୟ ଉତ୍ପାଦନ ୧୯୬୧-୭୦ରେ ୨.୫ ଗୁଣ ଏବଂ ୧୯୬୧-୮୦ରେ ପ୍ରାୟ ୫ ଗୁଣ ବୃଦ୍ଧି ପାଇବ ।

## ବିପୁଳ କୃଷି

ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ପ୍ରୟୋଜନୀୟ ପଦାର୍ଥର ପ୍ରାଚୁର୍ଯ୍ୟ ବିନା କମ୍ୟୁନିଜମ ବା ସାମ୍ୟବାଦ କଳ୍ପନା କରି ଯାଇ ନ ପାରେ । କିନ୍ତୁ ଲୋକମାନଙ୍କୁ ଖାଦ୍ୟ ଓ ଶିଳ୍ପଗୁଡ଼ିକୁ କଞ୍ଚାମାଲ ଯୋଗାଇ ପାରିବା ଭଳି ଅତି ଉନ୍ନତଶୀଳ କୃଷି ବିନା କମ୍ୟୁନିଷ୍ଟ ପ୍ରାଚୁର୍ଯ୍ୟର ପ୍ରଶ୍ନ ଉଠି ନ ପାରେ । ଆଉ ମଧ୍ୟ, କୃଷିରେ ଉତ୍ପାଦନ ଶକ୍ତିର ଦ୍ରୁତ ଅଗ୍ରଗତି ଯୋଗେ କୃଷି-ଶ୍ରମର ଉତ୍ପାଦନଶୀଳତା ବୃଦ୍ଧି ଦ୍ୱାରା ହିଁ, ଗ୍ରାମାଞ୍ଚଳରେ ସାମ୍ୟବାଦୀ ସମ୍ପର୍କ ପ୍ରତିଷ୍ଠା ଦିଗରେ ପ୍ରସ୍ତୁତି ସମ୍ଭବପର ହେବ ।

କୃଷି ଉତ୍ପାଦନ କ୍ଷେତ୍ରରେ ଜାତୀୟ ଅର୍ଥନୀତି ଓ ଲୋକମାନଙ୍କର ଅନବରତ ବୃଦ୍ଧି ପାଉଥିବା ପ୍ରୟୋଜନୀୟତାକୁ ସବୁ ସଂପୂର୍ଣ୍ଣ ଭାବେ ପୂରଣ କରିବା ଦୃଷ୍ଟିରୁ ସୋଭିଏତ କୃଷି ୧୯୬୦ ତୁଳନାରେ ୧୯୭୦ ବେଳକୁ ୨.୫ ଗୁଣ ଏବଂ ୧୯୮୦ ବେଳକୁ ୩.୫ ଗୁଣ ପ୍ରସାର ଲାଭ କରିବ । ଏହି ବୃଦ୍ଧି ଫଳରେ ସମସ୍ତ ପ୍ରକାର କୃଷିଜାତ ଉତ୍ପାଦନରେ ପ୍ରାଚୁର୍ଯ୍ୟ ସୃଷ୍ଟି ହେବ ।

କୃଷି କ୍ଷେତ୍ରରେ ଏହି ଅଗ୍ରଗତି ସାଧନର ପ୍ରଧାନ ମାର୍ଗ ହେଲା ଅନବରତ ଜମିରୁ ଅଧିକ ଫସଲ କରିବା, ସମସ୍ତ ପ୍ରକାର ଫସଲ ଉତ୍ପନ୍ନ ବୃଦ୍ଧି କରିବା, ଗୃହପାଳିତ-ପଶୁଜାତ ଦ୍ରବ୍ୟାଦିର ଉତ୍ପନ୍ନରେ ବୃଦ୍ଧି ଆଣିବା ।

ସୋଭିଏତ କୃଷି ଏବେ ଶକ୍ତିଶାଳୀ ମେସିନ ଯନ୍ତ୍ରପାତିରେ ସଜ୍ଜିତ । ଜାର ଶାସିତ ରୁଷର ପ୍ରଧାନ କୃଷି ଯନ୍ତ୍ରପାତି ଓ ମୁଖ୍ୟ ଚାଳନାକାରୀ ଘୋଡ଼ା ଓ କାଠ ଲଙ୍ଗଳ ସ୍ଥାନରେ ଏବେ କଳଲଙ୍ଗଳ, ଟ୍ରାକ୍ଟର, କମ୍ବାଇନ ଓ ଟ୍ରକ ମଟର ଆଦି ବ୍ୟବହୃତ ହେଉଛି । ଅଧିକାଂଶ ଚାଷବାସ କାର୍ଯ୍ୟ ମେସିନ ଓ ଯନ୍ତ୍ର ଆଦି ସାହାଯ୍ୟରେ

ସଂପନ୍ନ ହେଉଛି । ପଶୁପାଳନ କ୍ଷେତ୍ରରେ ମଧ୍ୟ ବ୍ୟାପକଭାବେ ମେସିନ ବ୍ୟବହୃତ ହେଉଛି । କିନ୍ତୁ କୃଷିଜାତ ଉତ୍ପନ୍ନକୁ ଦଶଗୁଣ ବା ବିଶଗୁଣ ବୃଦ୍ଧି କରିବାକୁ ହେଲେ, ଫାର୍ମ-ମେସିନ ଓ ଯନ୍ତ୍ରପାତିର ବହୁଗୁଣ ବୃଦ୍ଧି ଆଣିବାକୁ ହେବ, କୃଷିକୁ ବିଦ୍ୟୁତ୍‌କରଣ କରିବାକୁ ପଡ଼ିବ, ଗୋଟିଏ କାର୍ଯ୍ୟର ଯାନ୍ତ୍ରିକୀକରଣ ଆଣିବାଠାରୁ ସବୁ ଦିଗରୁ ସମସ୍ତ ଶ୍ରମ ପ୍ରକ୍ରିୟାର ଯାନ୍ତ୍ରିକୀକରଣ ଆଣିବାକୁ ହେବ ।

କୃଷିର ଅଧିକ ଯାନ୍ତ୍ରିକୀକରଣ, ସଂଯୁକ୍ତ ସ୍ୱ ବ୍ୟବସ୍ଥାର ପ୍ରଚଳନ ଓ ସବୁ କ୍ଷେତ୍ରରେ ଯନ୍ତ୍ରର ବ୍ୟବହାର ଅତି ଉଚ୍ଚ ଧରଣର ଆର୍ଥନୀତିକ ଓ କାରୁକୌଶଳ (ଟେକ୍‌ନିକ୍) ଦୃଷ୍ଟିରୁ ସୁଦକ୍ଷ ଯନ୍ତ୍ରପାତିର ପ୍ରୟୋଗ ଇତ୍ୟାଦି ହେଉଛି, କୃଷି ଶ୍ରମର ଉତ୍ପାଦକତା ବୃଦ୍ଧିର ଅସଲ ଭିତ୍ତି ।

ସୋଭିଏତ୍ ୟୁନିଅନରେ କୃଷିର ଦ୍ରୁତ ବିଦ୍ୟୁତୀକରଣ ଚାଲିଛି । ସମସ୍ତ ରାଷ୍ଟ୍ର ଫାର୍ମ ଓ କୋଠବୃଷ ଫାର୍ମକୁ ରାଷ୍ଟ୍ର ବିଦ୍ୟୁତ୍ ଶକ୍ତି ଲାଇନରୁ ଓ ଗ୍ରାମ୍ୟ ବିଦ୍ୟୁତ୍ ଷ୍ଟେସନମାନଙ୍କରୁ ଯାବତୀୟ ଉତ୍ପାଦନ କାର୍ଯ୍ୟ ସକାଶେ ଓ ଗୃହର ଆବଶ୍ୟକତା ମେଣ୍ଟାଇବା ଲାଗି ବିଦ୍ୟୁତ୍ ଯୋଗା ହୋଇ ପାରିବ ।

ସୋଭିଏତ ୟୁନିଅନରେ କୃଷିରେ ପ୍ରତି ଦିଗରେ ଯଥାର୍ଥ ଭାବେ ରସାୟନିକ ବ୍ୟବସ୍ଥାର ପ୍ରୟୋଗ ଚାଲିଛି । ଖଣିଜସାର, କୀଟନାଶକ ଓ ରୋଗନାଶକ ଦ୍ରବ୍ୟ ଆଦି ଯୋଗାଇଦେବାର ବ୍ୟବସ୍ଥା ହେଉଛି ।

କୃଷିର ଉତ୍ପାଦନ ବୃଦ୍ଧି ଲାଗି ସବୁଠାରୁ କାର୍ଯ୍ୟକାରୀ ପନ୍ଥା ଭାବରେ ଖଣିଜସାର ଉତ୍ପାଦନ ବୃଦ୍ଧି ପ୍ରତି ବିଶେଷ ଧ୍ୟାନ ଦିଆଯାଉଛି । ସୋଭିଏତ୍ ୟୁନିଅନ ୧୯୭୦ ବେଳକୁ ବାର୍ଷିକ ଖଣିଜ ସାର ଉତ୍ପାଦନ ୮୦ ନିୟୁତ ଟନକୁ ବୃଦ୍ଧି କରିବାକୁ ଚାହେଁ । ଏଥିଲାଗି ନୂଆ ନାଇଟ୍ରେଟ ଫସଫେଟ ଓ ପଟାସ୍ ସାର କାରଖାନା ନିର୍ମାଣ କରୁଛି ଓ ବର୍ତ୍ତମାନ କାର୍ଯ୍ୟ କରୁଥିବା କାରଖାନାକୁ ପ୍ରସାରିତ କରୁଛି ।

ସବୁ ଦିଗରୁ କୃଷି ଉତ୍ପାଦନର ଯାନ୍ତ୍ରିକୀକରଣ, ବିଦ୍ୟୁତୀକରଣ ଓ ରସାୟନୀକରଣ ହେଉଛି ବିକାଶଶୀଳ କୃଷି ବ୍ୟବସ୍ଥା ଗଠନ ସକାଶେ ପ୍ରଧାନ ଏକ ଭୌତିକ ଓ କାରୁକୌଶଳଗତ ବା ଟେକ୍‌ନିକାଲ ପ୍ରୟୋଜନୀୟତା । ଶକ୍ତିଶାଳୀ ଶିଳ୍ପଗୁଡ଼ିକ ସହିତ ଏକ ସଂଗରେ ବିଭିନ୍ନମୁଖୀ ଓ ଉପଯୁକ୍ତ କୃଷିର ବିକାଶ, କମ୍ୟୁନିଜମ ବା ସାମ୍ୟବାଦ ଦିଗକୁ ପରିଗମନ ଲାଗି ମୂଳଭିତ୍ତି ପ୍ରସ୍ତୁତ କରିବ ।

## ପ୍ରଗତିର ପ୍ରଧାନ ସର୍ତ୍ତ

କ୍ରମାଗତଭାବେ ଶ୍ରମ ଉତ୍ପାଦକତାର ଅଭିବୃଦ୍ଧି କରିଆସିବା ହିଁ କମ୍ୟୁନିଷ୍ଟ ବା ସାମ୍ୟବାଦ ନିର୍ମାଣର ସୁବିଶାଳ ପ୍ରୋଗ୍ରାମକୁ କାର୍ଯ୍ୟକାରୀ କରିବା ଏବଂ ଭୌତିକ ଓ ନୈତିକ ସଂପଦର ପ୍ରାଚୁର୍ଯ୍ୟ ସୃଷ୍ଟି କରିବା ସମ୍ଭବପର । ଲେନିନ ଦର୍ଶାଇଥିଲେ, "ଶେଷ ଆଲୋଚନାରୁ ଦେଖାଯାଏ, ନୂତନ ସାମାଜିକ ବ୍ୟବସ୍ଥାର ବିଜୟ ଲାଗି ଶ୍ରମର ଉତ୍ପାଦକତା ହିଁ ସବୁଠାରୁ ବଳି ଗୁରୁତ୍ୱପୂର୍ଣ୍ଣ ପ୍ରଧାନ ବିଷୟ ।"

ପ୍ରତ୍ୟେକଟି ନୂତନ ସାମାଜିକ ବ୍ୟବସ୍ଥା ପୂର୍ବବର୍ତ୍ତୀ ବ୍ୟବସ୍ଥାକୁ ଆପୃଷ୍ଠ କରେ, ହଟି ଯାଏ; କାରଣ, ତାହା ଉନ୍ନତ ଧରଣର ସାମାଜିକ ଶ୍ରମ ଉତ୍ପାଦକତା ସୃଷ୍ଟି କରେ । ପୁଞ୍ଜିବାଦ ସାମନ୍ତବାଦର ସ୍ଥାନ ଗ୍ରହଣ କରିଥିଲା । କାରଣ, ତାହା ଉଚ୍ଚତର ଶ୍ରମ-ଉତ୍ପାଦକତାକୁ ସୁନିଶ୍ଚିତ କରିଥିଲା । ଏହି ଭଳି କାରଣ ଯୋଗୁଁ ପୁଞ୍ଜିବାଦ କମ୍ୟୁନିଜମ ବା ସାମ୍ୟବାଦ ଦ୍ୱାରା ପରାସ୍ତ ହେବ; ସାମାଜିକ-ଶ୍ରମର ଉଚ୍ଚତର ଉତ୍ପାଦକତା ଯେଉଁ ନୂତନ ଏକ ସମାଜର ପ୍ରତିଷ୍ଠା, ପୁଞ୍ଜିବାଦରେ କେବେହେଲେ କଳ୍ପନା କରି ଯାଇ ନ ପାରେ ।

ଏହି ୨୦ ବର୍ଷ ମଧ୍ୟରେ ସୋଭିଏତ୍ ୟୁନିଅନର ମୋଟ ଜାତୀୟ ଉତ୍ପନ୍ନ ପ୍ରାୟ ୫ ଗୁଣ ବୃଦ୍ଧି ପାଇବ, ଅଥଚ ଏହି ସମସ୍ତ ଭିତରେ ଶ୍ରମିକମାନେ ସଂଖ୍ୟାରେ ଶତକଡ଼ା ୪୦ ଭାଗ ଅଧିକ ହେବେ । ଏହି ପରିକଳ୍ପିତ ଉତ୍ପନ୍ନର ପ୍ରସାର ସାଧିତ ହେବ କିପରି ? ଏହା ସର୍ବୋପରି ସାମାଜିକ ଶ୍ରମର ଉତ୍ପାଦକତାର ବୃଦ୍ଧି ଦ୍ୱାରା ହିଁ ସମ୍ଭବ ହୋଇ ପାରିବ ।

ଉତ୍ପାଦକତା ବୃଦ୍ଧିର ଅର୍ଥ ହେଲା, କମ ଶ୍ରମ ଖର୍ଚ୍ଚ କରି ଅଧିକ ଉତ୍ପନ୍ନ ହାସଲ କରିବା । ଲୋକମାନଙ୍କର ଜୀବନଧାରଣରେ ମାନର ଉନ୍ନତି ବିଧାନ ଲାଗି ଏହା ହିଁ ହେଲା ପ୍ରଧାନ ଅର୍ଥନୈତିକ କାରଣ ବା ବ୍ୟବସ୍ଥା ।

ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ପ୍ରୋଗ୍ରାମର ଆହ୍ୱାନ ହେଉଛି— ୨୦ ବର୍ଷ ମଧ୍ୟରେ ଶ୍ରମର ଉତ୍ପାଦକତାକୁ ଶିଳ୍ପ କ୍ଷେତ୍ରରେ ୪ ରୁ ୪.୫ ଗୁଣ ଓ କୃଷି କ୍ଷେତ୍ରରେ ୫ ରୁ ୬ ଗୁଣ ବୃଦ୍ଧି କରିବାକୁ ହେବ । ଜାତୀୟ ଆୟ ବୃଦ୍ଧିର ଦଶ ଭାଗରୁ ନଅ ଭାଗ ଏହି ଉଚ୍ଚ ଶ୍ରମ ଉତ୍ପାଦକତା ଯୋଗେ ହିଁ ଲଭ୍ୟ ହେବ ।

ଏପରି ଏକ ଦ୍ରୁତ ଉତ୍ପାଦକତା ବୃଦ୍ଧି ହାସଲ ହେବ କିପରି ?

ସର୍ବ ପ୍ରଥମେ ନୂତନ ଟେକ୍ନୋଲଜି ବା କାରିଗରୀ ବିଦ୍ୟା ଏବଂ ଶିଳ୍ପ କ୍ଷେତ୍ରରେ ବର୍ଦ୍ଧିତ ହାରରେ ବିଦ୍ୟୁତ୍ ଶକ୍ତିର ବ୍ୟବହାର ଜରିଆରେ ହିଁ ଏହା ହାସଲ ହେବ । ଆମର ଏ ଯୁଗରେ, ଟେକ୍ନୋଲଜିର ଅଗ୍ରଗତି ସ୍ତରରେ, ଯାହାର ଉଚ୍ଚତର ଟେକ୍ନୋଲଜି ଅଛି, ସେହି କେବଳ ବିଜୟ ଲାଭ କରେ । ସେହି କାରଣରୁ, ସୋଭିଏତ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ଦେଶର ଦ୍ରୁତ ବିଦ୍ୟୁତୀକରଣ ପାଇଁ ବ୍ୟାପକ ଯାନ୍ତ୍ରିକୀକରଣ ଓ ସ୍ୱୟଂକ୍ରିୟତାର ପ୍ରୟୋଗ ଆଉ ନୂତନ ଟେକ୍ନୋଲଜି ଆୟତ୍ତ କରିବାକୁ ସମର୍ଥ ଥିବା ଲୋକଙ୍କର ଶିକ୍ଷା ଓ ତାଲିମର ବ୍ୟବସ୍ଥା ସକାଶେ ବିଶେଷ ଉଦ୍ୟମ କରୁଛି ।

ଉତ୍ପାଦନର ଉନ୍ନତ ସଂଗଠନ ମଧ୍ୟ ଶ୍ରମର ଉତ୍ପାଦକତା ବୃଦ୍ଧିରେ ବିଶିଷ୍ଟ ଭୂମିକା ଗ୍ରହଣ କରେ । ଲେନିନ୍ ସବୁଠାରୁ ଦକ୍ଷ ସଂଗଠନ ଜରିଆରେ ଶ୍ରମର ଉଚ୍ଚ ଉତ୍ପାଦନଶୀଳତା ହାସଲ କରିପାରିବା ସହିତ କମ୍ୟୁନିଜମ୍‌ର ବିଜୟ ସଂପୃକ୍ତ ଓ ସଂଯୁକ୍ତ ବୋଲି ଯେ ଧରିଥିଲେ, ତାହା କୌଣସି ଗୋଟାଏ ଆକସ୍ମିକ ଘଟଣା ନଥିଲା । କାରଣ କମ୍ୟୁନିଜମ୍ ବା ସାମ୍ୟବାଦର ଭୌତିକ ଓ ଟେକ୍ନିକାଲ ଭିତ୍ତି ସୃଷ୍ଟି କରିପାରିବା କେବଳ ମେସିନ ଯନ୍ତ୍ରପାତି, ବିଦ୍ୟୁତ୍ ଶକ୍ତି, କଞ୍ଚାମାଲ ଓ ଜାଳେଣି ଆଦିର ପରିମାଣଗତ ବୃଦ୍ଧିକୁ ପୂର୍ବରୁ ସୂଚିତ କରେ ନାହିଁ; ଉତ୍ପାଦନର ଅଧିକ ସମ୍ମିଳିତ ଅଖଣ୍ଡ ସଂଗଠନ ଏବଂ ଗଣତାନ୍ତ୍ରିକ କେନ୍ଦ୍ରବାଦର ଭିତ୍ତି ଉପରେ ପ୍ରତିଷ୍ଠିତ ଉନ୍ନତ ଧରଣର ପରିଚାଳନାକୁ ମଧ୍ୟ ସୂଚିତ କରେ ।

ଯୋଜନାର ଉନ୍ନୟନ ଓ ଜିନିଷପତ୍ରର ଯୋଗାଣ, ଠିକ୍‌ଠିକ୍ ହିସାବର ବ୍ୟବହାର ଆଉ କଠୋର ମିତବ୍ୟୟିତା ମଧ୍ୟ ଉନ୍ନତ ଧରଣର ସଂଗଠନର ଅନ୍ତର୍ଭୁକ୍ତ ।

ଉତ୍ପାଦନ କ୍ଷେତ୍ରରେ ବିଶେଷତ୍ୱ ହାସଲ ଓ ସହଯୋଗ ଏବଂ ଦକ୍ଷତା ସହକାରେ ପୁଞ୍ଜି ବିନିଯୋଗ ମଧ୍ୟ ଶ୍ରମ ଉତ୍ପାଦକତା ବୃଦ୍ଧି ଦିଗରେ ଗୁରୁତ୍ୱପୂର୍ଣ୍ଣ କଥା ।

ଉତ୍ପାଦିକା ଶକ୍ତିର ପ୍ରତିଷ୍ଠା ନେଇ, ଦେଶ ଭିତରେ ସ୍ଥାନ ନିର୍ବାଚନ ନେଇ, ସାମାଜିକ ଶ୍ରମ ସଂଚୟ କରିବା, ବଡ଼ ବଡ଼ ସହରମାନଙ୍କରେ ଅତିରିକ୍ତ ଭିଡ଼କୁ ଦୂର କରିବା, ସମାନ ଭାବରେ ବିଭିନ୍ନ ଅଞ୍ଚଳରେ ବିକାଶ ଘଟାଇବା ଏବଂ ବର୍ତ୍ତମାନ ଉପସ୍ଥିତ ସହର ଓ ମଫସଲର ପାର୍ଥକ୍ୟକୁ ଲୋପ କରିବା, ଏସବୁ ଦୃଷ୍ଟିରୁ ସୋଭିଏତ ୟୁନିଅନର ବିଭିନ୍ନ ଅଞ୍ଚଳରେ ଉତ୍ପାଦନୀ ଶକ୍ତିଗୁଡ଼ିକର ପ୍ରତିଷ୍ଠା ସକାଶେ ସ୍ଥାନ

ଅନୁରୂପଣରେ ଉନ୍ନତ ବଧାନ ଯେଉଁ ସେଇଁ ସବୁ ବ୍ୟବସ୍ଥା କାର୍ଯ୍ୟକାରୀ କରାଯାଉଛି, ସେଗୁଡ଼ିକ ଅତି ଗୁରୁତ୍ୱପୂର୍ଣ୍ଣ ।

ସମସ୍ତ ରକ୍ଷା ଦୃଷ୍ଟିରୁ, ସେହି ପ୍ରାକୃତିକ ସଂପଦର ବ୍ୟବହାର ପ୍ରତି ଅସାଧାରଣ ଦୃଷ୍ଟି ଦିଆଯିବ—ଯେଉଁ ପ୍ରାକୃତିକ ସଂପଦ ଅଧିକ ଦ୍ରୁତ ବେଗରେ କମ ଅର୍ଥ ଓ ଶ୍ରମର ବିନିଯୋଗରେ ବିକଶିତ ହୋଇପାରିବ ଏବଂ ଅର୍ଥନୈତିକ ଦିଗରୁ ଅଧିକ କଲ୍ୟାଣ ବା ଲାଭ ଆଣି ପାରିବ । ଉରାଲ ପର୍ବତମାଳାର ପୂର୍ବ ଭାଗର ବହୁ ଅଞ୍ଚଳରେ, ସାଇବେରିଆ ଓ ସୁଦୂର ପ୍ରାଚ୍ୟରେ ଏହି ସବୁ ବ୍ୟବସ୍ଥା ହେଉଛି । ଏହି ଅଞ୍ଚଳମାନଙ୍କରେ ସୋଭିଏତ୍ ୟୁନିଅନର ୭୫ ଭାଗ କୋଇଲା ଗଚ୍ଛିତ ରହିଛି, ଶତକଡ଼ା ୮୦ ଭାଗ ଯାଏ ଜଳବିଦ୍ୟୁତ୍ ଶକ୍ତି ଅଛି, ଶତକଡ଼ା ୮୦ ଭାଗ କାଠ ବା ଜଙ୍ଗଲ ସଂପଦ, କୈାହାତିରିକ୍ତ ଧାତୁ ଓ ଅନ୍ୟାନ୍ୟ ମୂଲ୍ୟବାନ ଧାତୁ ଦ୍ରବ୍ୟର ପ୍ରଧାନ ପ୍ରାଧାନ ସଂସ୍ଥା, ଲୁହା ପଥର, ରସାୟନିକ କଞ୍ଚାମାଲ ଓ ନିର୍ମାଣ ଉପଯୋଗୀ ସମସ୍ତ ପ୍ରକାର ପଦାର୍ଥ ରହିଛି ।

ନିକଟ ଭବିଷ୍ୟତରେ ସାଇବେରିଆ ସୋଭିଏତ୍ ୟୁନିଅନର ସର୍ବ ବୃହତ୍ ଶିଳ୍ପାଞ୍ଚଳ ହୋଇ ଉଠିବ ।

ଶିଳ୍ପ ଓ କୃଷିକୁ ଯୁକ୍ତିଯୁକ୍ତ ଭାବେ ସଂଯୁକ୍ତ କରିବା ଉପରେ ଲେନିନଙ୍କର ନିର୍ଦ୍ଦେଶ କମ୍ୟୁନିଜମ୍ ବା ସାମ୍ୟବାଦର ଭୌତିକ ଓ ଟେକ୍‌ନିକାଲ ଭିତ୍ତି ନିର୍ମାଣର ପ୍ରକ୍ରିୟା ମଧ୍ୟରେ କାର୍ଯ୍ୟକାରୀ ହେବ । ଏହି ଲକ୍ଷ୍ୟରେ ଗ୍ରାମାଞ୍ଚଳମାନଙ୍କରେ ଶିଳ୍ପର ବିକାଶ ଲାଗି ସର୍ବୋପରି କୃଷିଜାତ କଞ୍ଚାମାଲକୁ ଶିଳ୍ପୋପଯୋଗୀ କରିବା ଓ ଖାଉଟି ଦ୍ରବ୍ୟ ତିଆରି କରିବା ଲାଗି ବ୍ୟବସ୍ଥାମାନ ଗ୍ରହଣ କରାଯାଉଛି ।

## ମନୁଷ୍ୟର ମଙ୍ଗଳ ପାଇଁ

୧୯୬୦ ତୁଳନାରେ ୧୯୮୦ରେ ସୋଭିଏତ୍ ୟୁନିଅନରେ ଶିଳ୍ପ ଉତ୍ପାଦନ ୬ ଗୁଣରୁ କମ ବୃଦ୍ଧି ପାଇବ ନାହିଁ । କୃଷି ଉତ୍ପାଦନ ପ୍ରାୟ ୩.୫ଗୁଣ ବୃଦ୍ଧି ପାଇବ । ଏହାର ଅର୍ଥ—ଆଜିର ସୋଭିଏତ ଇଉନିଅନ କଳେ ଶିଳ୍ପକ୍ଷେତ୍ରରେ ଆଉ ୫ଟି ଓ କୃଷିକ୍ଷେତ୍ରରେ ଆଉ ୨ଟି ଅଧିକ ସୋଭିଏତ୍ ଇଉନିଅନ ଗଢ଼ି ଉଠିବ । ଅଣ-ସମାଜବାଦୀ ଦେଶସବୁ ଯେତେ ମୋଟ ଶିଳ୍ପ ଦ୍ରବ୍ୟ ଉତ୍ପାଦନ କରୁଛନ୍ତି, ୧୯୮୦ ରେ ସୋଭିଏତ୍ ଇଉନିଅନ ଏହା ଠାରୁ ପ୍ରାୟ ଦୁଇଗୁଣ ଶିଳ୍ପ ଦ୍ରବ୍ୟ ଉତ୍ପାଦନ କରିବ ।

ଜନସାଧାରଣଙ୍କ ଜୀବନଧାରଣ ମାନକୁ ଉନ୍ନତତର କରିବାରେ, ସେମାନଙ୍କ ଭୌତିକ ଓ ଆତ୍ମିକ ପ୍ରୟୋଜନୀୟତାକୁ ଅଧିକ ଶକ୍ତିଶାଳୀ କରି ତାକୁ ସବୁ ଅଧିକରୁ ଅଧିକ ପୂରଣ କରିବାରେ ହିଁ ସୋଭିଏତ୍ ଇଉନିଅନ କମ୍ୟୁନିଷ୍ଟ ପାର୍ଟିର ସମସ୍ତ କାର୍ଯ୍ୟର ମର୍ମ ଓ ଅନ୍ତପ୍ରସ୍ଥ ଫୁଟି ଉଠୁଛି । ଲୋକମାନଙ୍କ ପାଇଁ ଉଦ୍‌ବେଗ ଆଉ ଆକୁଳତା, ସେମାନଙ୍କର କଲ୍ୟାଣ ସାଧନ ପାଇଁ ଆଗ୍ରହ, କମ୍ୟୁନିଷ୍ଟ ଅର୍ଥନୀତି ରଚନାର ସମସ୍ତ ପ୍ରୋଗ୍ରାମ ବା କାର୍ଯ୍ୟକ୍ରମରେ ଫଳଶ୍ରୁତ ହୋଇ ଓତପ୍ରୋତ ହୋଇ ରହିଛି ।

କୋଇଲା, ଲୌହ, ବିଦ୍ୟୁତ୍ ଶକ୍ତି ଆଦିର ଉତ୍ପାଦନ ହେଉ, କିମ୍ବା ଜୋତା ତିଆରି, ମେଷ ପାଳନ ବା ମକାନ୍ ନିର୍ମାଣ ହେଉ, ଅର୍ଥନୀତିର ଯେକୌଣସି ବିଭାଗର ବିକାଶ ସୋଭିଏତ୍ ଲୋକମାନଙ୍କର ଜୀବନଧାରଣ ମାନକୁ ଉନ୍ନତ କରିବାରେ ସାହାଯ୍ୟ କରୁଛି । କମ୍ୟୁନିଜମର ଭୌତିକ ଓ ଟେକ୍ନିକାଲ ଭିତ୍ତି ନିର୍ମାଣର ପ୍ରକ୍ରିୟା ମଧ୍ୟରେ ସୋଭିଏତ୍ ଲୋକମାନଙ୍କର ଜୀବନଧାରଣ ମାନ ଦ୍ରୁତଭାବରେ ବୃଦ୍ଧି ପାଇବା ନିଶ୍ଚିତ ହୋଇଛି ।

କମ୍ୟୁନିଜମ୍ ବା ସାମ୍ୟବାଦ ତାର ଆଦର୍ଶ ବଳରେ ଲକ୍ଷ ଲକ୍ଷ ଲୋକଙ୍କୁ ମାର୍କ୍ସବାଦ-ଲେନିନ୍‌ବାଦର ପତାକା ତଳକୁ ଆକର୍ଷଣ କରିବାରେ ଲାଗିଛି । ଉତ୍ପାଦନୀ ଶକ୍ତିମାନଙ୍କର ଦ୍ରୁତ ବିକାଶ, ଭୌତିକ ଓ ସାଂସ୍କୃତିକ ସ୍ତରରେ ବିରାଟ ଅଗ୍ରଗତି ଏବଂ ଶାନ୍ତିପୂର୍ଣ୍ଣ ସୁଖମୟ ଜୀବନ ଗଠନ ଲାଗି ଅନୁକୂଳ ଅବସ୍ଥାର ସୃଷ୍ଟି, ଏହା ହିଁ ହେଲା ସର୍ବ ପ୍ରଥମ ଆଦର୍ଶ । ସୋଭିଏତ୍ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ନିଜର ଅର୍ଥନୈତିକ ବିକାଶ ସମ୍ବନ୍ଧୀୟ ଦୃଷ୍ଟାନ୍ତ ଯୋଗେ—ଲୋକଙ୍କର ସୁଖ ଓ ମଙ୍ଗଳ ସକାଶେ ଜୀବନର ପୁନର୍ଗଠନ ସମ୍ବନ୍ଧୀୟ ଉଦାହରଣ ଯୋଗେ—ବିଶ୍ୱ ଇତିହାସର ଗତିଧାରା ଉପରେ ଉତ୍ତରୋତ୍ତର ବୈପ୍ଳବିକ ପ୍ରଭାବପାତ ଆଣିବାକୁ ହିଁ ଆନ୍ତର୍ଜାତୀୟ କର୍ତ୍ତବ୍ୟ ବୋଲି ବିଚାରେ ।

ସୋଭିଏତ୍ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ଏକ ଯୁଗାନ୍ତକାରୀ ତାତ୍ପର୍ଯ୍ୟପୂର୍ଣ୍ଣ କର୍ତ୍ତବ୍ୟ ଉପସ୍ଥାପିତ କରିଛି । ସେହି କର୍ତ୍ତବ୍ୟ ହେଉଛି, ତୁଳନାରେ ଯେକୌଣସି ପୁଞ୍ଜିବାଦୀ ଦେଶଠାରୁ ବଳି ସୋଭିଏତ ୟୁନିଅନରେ ସର୍ବୋଚ୍ଚ ଜୀବନଧାରଣର ମାନ ହାସଲ କରିବାକୁ ହେବ ।

ଲୋକମାନଙ୍କର ଜୀବନଧାରଣର ମାନ,—ସାଧାରଣତଃ ସେମାନଙ୍କର ପ୍ରକୃତ ଆୟ, ଉପଭୋଗ ଦ୍ରବ୍ୟର ପରିମାଣ ଓ ନିଦର୍ଶନ, ଶ୍ରମ-ଅବସର ସମସ୍ୟା, ବସବାସ ଗୃହର ଅବସ୍ଥା, ଶିକ୍ଷା, ସ୍ୱାସ୍ଥ୍ୟ ଓ ସାଂସ୍କୃତିକ ସାହାଯ୍ୟ ବ୍ୟବସ୍ଥା ଏବଂ ସାମାଜିକ ନିରାପତ୍ତା ଦ୍ୱାରା ନିର୍ଣ୍ଣୀତ ହୁଏ ।

ଏହି ଜୀବନଧାରଣର ମାନ ସଂପର୍କୀୟ ପ୍ରଶ୍ନଟି 'ଜୀବନର ଅବସ୍ଥା' ତୁଳନାରେ ଏକ ଅତି ସଂକୀର୍ଣ୍ଣ ଧାରଣାର କଥା । କାରଣ, ଲୋକଙ୍କର ସ୍ଥିତିଗତର ମୂଲ୍ୟାୟନରେ ପ୍ରଧାନ ନିଷ୍ପତ୍ତିମୂଳକ ପ୍ରଶ୍ନ ହେଉଛି ସାମାଜିକ ବ୍ୟବସ୍ଥା, ଏହା ଏଥିର ଅନ୍ତର୍ଭୁକ୍ତ ନୁହେଁ । ପୁଞ୍ଜିବାଦ ତୁଳନାରେ ଜୀବନଧାରଣ ବ୍ୟବସ୍ଥାରେ ସମାଜବାଦର ଉତ୍କର୍ଷ ସୋଭିଏତ୍ର ଲୋକମାନଙ୍କୁ ବିପୁଳ ସୁବିଧା ସୁଯୋଗ ଯୋଗାଏ । ସମାଜରେ ସୋଭିଏତ୍ ଲୋକମାନଙ୍କର ସ୍ଥିତିଗତିକୁ ସବୁଠାରୁ ଉଚ୍ଚ ଉନ୍ନତ ପୁଞ୍ଜିବାଦୀ ଦେଶର ଶ୍ରମଜୀବୀ ଲୋକଙ୍କ ସ୍ଥିତିଗତି ସହିତ ତୁଳନା କରାଯାଇ ନ ପାରେ ।

ସୋଭିଏତ୍‌ର ଲୋକେ ଏବଂ ଅନ୍ୟାନ୍ୟ ସମାଜବାଦୀ ରାଷ୍ଟ୍ରର ଲୋକେ ଯେଉଁ ସବୁ ଅଧିକାର ଓ ସୁବିଧା ସୁଯୋଗ ଉପଭୋଗ କରନ୍ତି, ତାହା ପୁଞ୍ଜିବାଦ ଅଧୀନରେ କଳ୍ପନା ସୁଦ୍ଧା କରାଯାଇ ନ ପାରେ । ଶୋଷଣରୁ ମୁକ୍ତି, ଉତ୍ପାଦନ ଉପକରଣ ଉପରେ ସର୍ବସାଧାରଣ ମାଲିକାନା, ପ୍ରକୃତ ଗଣତାନ୍ତ୍ରିକ ଚରିତ୍ରର ସାମାଜିକ ଓ ରାଜନୈତିକ ବ୍ୟବସ୍ଥା, ପ୍ରକୃତରେ ଲୋକଙ୍କର ଶାସନ ଏବଂ ସେମାନେ ଯେ ତାଙ୍କ ଦେଶର ମାଲିକ ସେ ସମ୍ବନ୍ଧରେ ତାଙ୍କର ବାସ୍ତବ ଅନୁଭବ, କାମ ଅନୁଯାୟୀ ଭୌତିକ ଓ ନୈତିକ ସୁଖ ସୁବିଧାର ବଣ୍ଟନ, ଜାତୀୟ ଅସମତା, ସମାଜିକ ଗୋଷ୍ଠୀଗତ ପ୍ରଥା ଓ ଅନ୍ୟାନ୍ୟ ବାଧା ପ୍ରତିବନ୍ଧକର ଅସ୍ତିତ୍ୱହୀନତା, ଭବିଷ୍ୟତ ଉପରେ ଗଭୀର ଆସ୍ଥା ଏବଂ ସନ୍ତାନମାନଙ୍କ ଉଜ୍ଜ୍ୱଳ ଭବିଷ୍ୟତ ସମ୍ବନ୍ଧରେ ଦୃଢ଼ ବିଶ୍ୱାସ—ଏହି ସମସ୍ତ ବିଷୟ କେବଳ ସମାଜବାଦ ଅଧୀନରେ ହିଁ ସମ୍ଭବପର ।

କାର୍ଯ୍ୟ କରିବା, ବିଶ୍ରାମ ଓ ଅବସର ଉପଭୋଗ କରିବା, ଶିକ୍ଷା ଲାଭ କରିବା ଓ ଦେଶର ଶାସନରେ ସକ୍ରିୟଭାବେ ଅଂଶ ଗ୍ରହଣ କରିବା ଆଦି ସୋଭିଏତ୍ ନାଗରିକମାନଙ୍କର ଯେଉଁସବୁ ଅଧିକାର ରହିଛି, ସେହିସବୁ ଅଧିକାର ସହିତ ଅଣ-ସମାଜବାଦୀ ଦେଶର ଶ୍ରମିକମାନେ ଭୋଗ କରୁଥିବା ଅଧିକାରକୁ, ଏମିତିକି ଅତି ସାମାନ୍ୟ ଭାବରେ ହେଲେ ସୁଦ୍ଧା, କଣ ତୁଳନା କରାଯାଇପାରେ ? ଏବେ ନିମ୍ନଲିଖିତ ଉଦାହରଣ ପ୍ରତି ଦୃଷ୍ଟି ଦିଆଯାଉ ।

ମେହନତକାରୀ ଲୋକମାନଙ୍କ ସକାଶେ ବେକାରୀ ଏକ ନିଷ୍ଠୁର ଆତଙ୍କ ଓ ବିପତ୍ତି । ପୁଞ୍ଜିବାଦୀ ବ୍ୟବସ୍ଥାର ଏହା ଚିର ସହଚର । ବେକାର ଲୋକେ ଯେ କେବଳ ଦୁଃଖ ଦାରିଦ୍ର୍ୟରେ ସଢନ୍ତି, ଏହା କେବଳ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କଥା ନୁହେଁ । ପୁଞ୍ଜିବାଦ କାର୍ଯ୍ୟ କରିବାର ସୁଯୋଗରୁ ମନୁଷ୍ୟକୁ ବଞ୍ଚିତ

ଲଭ ନୈତକ ଭାବେ ତାଙ୍କୁ ପଙ୍ଗୁ କରେ, କଳୁଷିତ କରେ, ମନୁଷ୍ୟର ଚରିତ୍ରକୁ ଦୁର୍ନୀତିମସ୍ତ କରେ, କଳଙ୍କିତ କରେ । ସମାଜବାଦୀ ସମାଜରେ ଏହା କଳ୍ପନାତୀତ ଦେଖିବାକୁ ମିଳେ ନାହିଁ, କି କେବେ ମିଳିବ ନାହିଁ । ବେକାର ସମସ୍ୟାର ବିଲୋପ, ଶ୍ରମଜୀବୀ ଲୋକଙ୍କ ପ୍ରତି ସମ୍ମାନ, ଧନ ସଂପତ୍ତି ପରିବର୍ତ୍ତେ କାମ ସମାଜ ପ୍ରତି ଉପଯୋଗିତା ଏସବୁ ଦ୍ୱାରା ଲୋକଙ୍କର ସ୍ଥାନାସନର ନିର୍ଦ୍ଧାରଣ,—ଏହା ହେଲା ସମାଜବାଦରେ ମିଳୁଥିବା ସୁଯୋଗ ।

ଏହା ସବୁ ବୁର୍ଜୁଆ ସମାଜର ସାଧାରଣ ଲୋକ ପକ୍ଷରେ ସ୍ୱପ୍ନ ।

ଉତ୍ପାଦନ କ୍ଷେତ୍ରରେ ଲୋକଙ୍କ ଭିତରେ ଥିବା ସଂପର୍କ ବିଷୟ ଦେଖାଯାଉ:—ସମାଜବାଦୀ ଦେଶରେ କଳକାରଖାନାର କାମକୁ ଦେଖିଲେ ପୁଞ୍ଜିବାଦୀ ଦୁନିଆର ଯେକୌଣସି ନିରପେକ୍ଷ କୁସଂସ୍କାରମୁକ୍ତ ମନର ଲୋକ ବିସ୍ମିତ ହେବ —ସେଠାରେ ଶ୍ରମିକମାନଙ୍କ ମଧ୍ୟରେ ପ୍ରକୃତରେ ଏକ ନୂତନ ବନ୍ଧୁତ୍ୱ ଓ କମ୍ରେଡ୍ ସମ୍ପର୍କ ଅଛି । ସେଭଳି ବନ୍ଧୁତ୍ୱ ଓ ସମ୍ପର୍କ ପୁଞ୍ଜିବାଦ ଅଧୀନରେ କେବଳ କାହିଁକି, ଆଦୌ ସମ୍ଭବପର ନୁହେଁ ।

ସେହି ବାଂକ୍ତ ଅଦ୍ଭୁତ ଦେଖି ପାରିବ—ପ୍ରତ୍ୟେକ ସୋଭିଏତ୍ ଶ୍ରମିକ ସଭା ସମିତି ଓ ବୈଠକରେ ବା ସମ୍ବାଦପତ୍ରରେ ଫାକ୍ଟିର ପରିଚାଳକ କର୍ମକର୍ତ୍ତା-ମାନଙ୍କ ସମାଲୋଚନା କରେ, ନିଜର ପ୍ରସ୍ତାବ ଗ୍ରହଣ ଲାଗି ଦାବୀ କରେ; ଟ୍ରେଡ୍ ୟୁନିଅନ ଓ ଅନ୍ୟାନ୍ୟ ଗଣସଂଗଠନ ଆଗରେ ଶ୍ରମର ସୁରକ୍ଷା ଓ କାର୍ଯ୍ୟପ୍ରଣାଳୀ, ଓ ବସବାସଗୃହବ୍ୟବସ୍ଥାର ଉନ୍ନତି ବିଧାନ ସମ୍ପର୍କରେ, ଅଧିକ ବିଶ୍ରାମ ଭବନ ନିର୍ମାଣ, ସ୍ୱାସ୍ଥ୍ୟ ନିବାସର ଆୟୋଜନ ଓ ଶ୍ରମିକଙ୍କ ଲାଗି ସେସବୁର ଉପଯୋଗ ସମ୍ପର୍କରେ ପ୍ରଶ୍ନମାନ ଉପସ୍ଥାପିତ କରେ । ସମାଜବାଦୀ ଫାକ୍ଟିଗୁଡ଼ିକରେ ଥିବା ବାତାବରଣକୁ ସେହି ବାଂକ୍ତ ନିଶ୍ଚୟ ପ୍ରଶଂସା କରିବ । ତାକୁ ଆଶ୍ଚର୍ଯ୍ୟ ଲାଗିବ ଯେ, ଜଣେ ଶ୍ରମିକ କପରି ତା ନିଜ ବିଭାଗର ସର୍ବୋଚ୍ଚ କର୍ମକର୍ତ୍ତା ତତ୍ତ୍ୱାବଧାରକଙ୍କଠାରୁ କମ୍ରେଡ୍ ଭାବରେ, ବନ୍ଧୁ ଭାବରେ ପରାମର୍ଶ ଦେଉଛି ଓ ପାଉଛି, କପରି ଜଣେ ଶ୍ରମିକ ନିଜର ନୂତନ ଅବିଷ୍କାରମାନ ଆଉ ଲୁଚାଇ ରଖୁନାହିଁ, ତାର ସଙ୍ଗୀ ଶ୍ରମିକମାନଙ୍କୁ ତାହା ଜଣାଇ ଦେଉଛି ।

ପୁଞ୍ଜିବାଦୀ ଦେଶମାନଙ୍କରୁ ଆସିଥିବା ଲୋକ ବିଶ୍ୱାସ କରି ପାରିବ ନାହିଁ ଯେ, ମିନସ୍କ ମଟର ଟ୍ରାକ୍ଟର କାରଖାନାରେ ସୁପ୍ରିମ ବା ସର୍ବୋଚ୍ଚ ସୋଭିଏତ୍ର ସଦସ୍ୟ ଓ ସ୍ଥାନୀୟ ସୋଭିଏତ୍ର ୩୮ ଜଣ ସଭ୍ୟ ରହିଛନ୍ତି । ପ୍ରତ୍ୟେକ ଦୁଇଜଣ

ଶ୍ରମିକଙ୍କ ମଧ୍ୟରୁ ଜଣେ ଅନ୍ତତଃ କୌଣସି ନା କୌଣସି ଏକ ସାଧାରଣ ଅଫିସ ଓ ଅନୁଷ୍ଠାନ—ସୋଭିଏତ୍, ପାର୍ଟି, ସଂଘ କମ୍ୟୁନିଷ୍ଟ ଲିଗ୍, ଟ୍ରେଡ୍ ୟୁନିଅନ କମିଟି, ସ୍ଥାୟୀ ବା ସାମୟିକ ଉତ୍ପାଦନ ସମ୍ମିଳନୀ ପରିଚାଳନାର କାମରେ ମଙ୍ଗ କନ୍ଟ୍ରୋଲ କରିବା ଲାଗି କମିଶନ ଇତ୍ୟାଦିର ସଭ୍ୟ ।

ସଂକ୍ଷେପରେ କହିଲେ, ସୋଭିଏତ୍ ଶ୍ରମିକମାନେ ଯେଉଁ ସୁବିଧା ଓ ଅଧିକାରମାନ ଉପଭୋଗ କରନ୍ତି ସେ-ସବୁଥିରେ ସେମାନେ ଏତେ ଅଭ୍ୟସ୍ତ ଯେ ତାହା ଆଉ ସେମାନଙ୍କ ଆଖିରେ ପଡେ ନାହିଁ, ଅଥଚ ତାହାହିଁ ପୁଞ୍ଜିବାଦୀ ଦେଶର ଶ୍ରମିକମାନଙ୍କ ମଧ୍ୟରେ ଈର୍ଷା ଓ ପ୍ରଶଂସା ଜନ୍ମାଏ ।

ପୁଞ୍ଜିବାଦୀ ଦେଶମାନଙ୍କରେ ମାଲିକ ଶ୍ରମିକଙ୍କୁ ମେସିନ୍‌ର ଗୋଟାଏ ଲମ୍ବ ବା ଅଂଶ ବୋଲି ଭାବେ, ଗୋଟାଏ ସାଧାରଣ ହତିଆରରେ ପରିଣତ କରିବାକୁ ଉଦ୍ୟମ କରେ । କାରଣ, ଶ୍ରମିକ ହିଁ ମାଲିକ ଲାଗି ମୁନାଫାର ପାହାଡ଼ ସୃଷ୍ଟି କରେ । ପୁଞ୍ଜିବାଦୀ ଦେଶଗୁଡ଼ିକରେ ଶ୍ରମିକକୁ ଯେ କୌଣସି ମୁହୂର୍ତ୍ତରେ ତଡ଼ାଯାଇ-ପାରେ । ଅବଶ୍ୟ ସେଠାରେ ଫାକ୍ଟ୍ରିର ପରିଚାଳନା ସଂପର୍କରେ କେହି ତାର ମତାମତ ଲୋଡ଼ିବାକୁ ଯାଏ ନାହିଁ, ତାର ବସବାସ ଗୃହର ଉନ୍ନତି ଆଣେ ନାହିଁ, ଅସୁସ୍ଥତା ସମୟରେ ତାକୁ ଉକ୍ତ ନ ସାହାଯ୍ୟ ଦିଏନାହିଁ, ସ୍ୱାସ୍ଥ୍ୟ ନିବାସରେ ସ୍ଥାନ ଯୋଗାଏ ନାହିଁ—ଏମିତି ଅନେକ ଅନେକ କାମ ତା ପାଇଁ କରିବାକୁ ବାହାରେନାହିଁ ।

ଶ୍ରମିକମାନଙ୍କ ଜୀବନଧାରଣ ଅବସ୍ଥାର ଯେକୌଣସି ଦିଗ ପ୍ରତି ଦୃଷ୍ଟି ପକାଅ, ଦେଖିବ, ପ୍ରତ୍ୟେକ କ୍ଷେତ୍ରରେ ପୁଞ୍ଜିବାଦୀ ସମାଜ ତୁଳନାରେ ସମାଜବାଦୀ ସମାଜରେ ନିର୍ବାଧ ଓ ନିର୍ବିବାଦୀସ୍ୱ ସୁବିଧା-ସୁଯୋଗମାନ ରହିଛି । ତାହା ସମାଜବାଦୀ ବ୍ୟବସ୍ଥା ହିଁ ଯୋଗାଇଦେଉଛି, ପୁଞ୍ଜିବାଦ ଅଧୀନରେ ଆଦୌ ସମ୍ଭବପର ନୁହେଁ ।

ଏହା ଯଦି ହୁଏ, ସୋଭିଏତ୍ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ତେବେ କାହିଁକି ଲୋକଙ୍କ ଜୀବନଧାରଣ ମାନ କ୍ଷେତ୍ରରେ ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କୁ ଟପିଯିବା ଲାଗି ଲକ୍ଷ୍ୟ ରଖିଛି ତାହାକୁ କର୍ତ୍ତବ୍ୟରୂପେ ଉପସ୍ଥାପିତ କରୁଛି, କାରଣ, ଉନ୍ନତର ସୂଚନା ଦେଉଥିବା, ପ୍ରଥମତଃ, କେତେକ ଦ୍ରବ୍ୟର ମୁଣ୍ଡ ପିଛା ଉତ୍ପାଦନରେ ସୋଭିଏତ୍ ୟୁନିଅନ ଏବେ ବି ପୁଞ୍ଜିବାଦୀ ଦେଶମାନଙ୍କର ପଛରେ ପଡ଼ିଛି, କିନ୍ତୁ ଉନ୍ନତିର ଅନ୍ୟାନ୍ୟ କେତେକ ନିଷ୍ପତ୍ତିମୂଳକ ସୂଚନାକୁ ବିଚାର କଲେ, ଏହା ଅନେକ କ୍ଷେତ୍ରରେ ସବୁଠାରୁ ସମୃଦ୍ଧିଶାଳୀ ପୁଞ୍ଜିବାଦୀ ଦେଶଙ୍କୁ ବହୁଦିନୁ ଟପିଗଲଣି ।

ସ୍ୱାସ୍ଥ୍ୟରକ୍ଷା ଦିଗରେ ସୋଭିଏତ୍ ୟୁନିଅନ ସେହି ପୁଞ୍ଜିବାଦୀ ଦେଶଙ୍କୁ ସବୁ ବଳି ଯାଇଛି । ଯେ କୌଣସି ପୁଞ୍ଜିବାଦୀ ଦେଶ ତୁଳନାରେ ସୋଭିଏତ୍ ୟୁନିଅନରେ ପ୍ରତ୍ୟେକ ୧୦୦୦ ଲୋକଙ୍କ ପିଛା ଡାକ୍ତରଙ୍କ ସଂଖ୍ୟା ଅଧିକ । ସୋଭିଏତ୍ର ନାଗରିକ-ମାନେ ବିନା ଖର୍ଚ୍ଚରେ ଚିକିତ୍ସାର ସୁବିଧା ପାଆନ୍ତି, ଅଥଚ ପୁଞ୍ଜିବାଦୀ ଦେଶମାନଙ୍କରେ ଚିକିତ୍ସା ଦିଗରେ ଲୋକର ଖର୍ଚ୍ଚର ପରିମାଣ ଖୁବ୍ ବେଶୀ । ଦୃଷ୍ଟାନ୍ତ ସ୍ୱରୂପ, ଆମେରିକାରେ ଡାକ୍ତରଙ୍କୁ ଡାକିଲେ ଗୋଟାଏ ଗୋଟାଏ ଭିଜିଟ୍ ବା ଥରୁଟିଏ ପରିଦର୍ଶନ ପାଇଁ, ୭ ଡୋଲାର ବା ୫୩୦ ଦେବାକୁ ପଡ଼େ । ଗୋଟାଏ ଅନ୍ତ୍ରକୋଷ ବା ହାର୍ଣ୍ଣିଆ ଅପରେସନ ପାଇଁ ୧୦୦୦ ଡୋଲାର ବା ୫୦୦୦ ଟଙ୍କାରୁ ଅଧିକ ପଡ଼େ । ଗୋଟାଏ ଆପେନଡ଼ିକ୍ସ ଅପରେସନ ପାଇଁ ୪ ଶହରୁ ୫ ଶହ ଡୋଲାର ବା ଦୁଇ ହଜାରରୁ ଅଢ଼େଇ ହଜାର ଟଙ୍କା ଦେବାକୁ ହୁଏ । ପ୍ରସୂତି ଭବନରେ ୭ ଦିନ ରହିଲେ ୫ ଶହରୁ ୬ ଶହ ଡୋଲାର ବା ଅଢ଼େଇରୁ ତିନି ହଜାର ଟଙ୍କା ଖର୍ଚ୍ଚ ଦେବାକୁ ହୁଏ । ଏଇଥିପାଇଁ ଆମେରିକାର ଶ୍ରମିକମାନେ କହନ୍ତି ଯେ, ବେମାର ଭଲ 'ବିଳାସ' କରିବାକୁ ସେମାନେ ଅକ୍ଷମ ।

ବସବାସ ଗୃହ ବ୍ୟବସ୍ଥା ପ୍ରତି ଦୃଷ୍ଟି ଦିଆଯାଉ ! ଆମେରିକା ବା ଫ୍ରାନ୍ସରେ, ବ୍ରିଟେନ ବା ଇଟାଲିରେ ପ୍ରତ୍ୟେକ ୧ ହଜାର ଲୋକଙ୍କ ପାଇଁ ବର୍ଷକୁ ଯେତେ ସଂଖ୍ୟକ ଗୃହ ନିର୍ମିତ ହୁଏ, ସୋଭିଏତ୍ ୟୁନିଅନରେ ତାର ଦ୍ୱିଗୁଣ ନିର୍ମିତ ହେବାର ଦେଖାଯାଏ । ସୋଭିଏତ୍ ୟୁନିଅନରେ ଘରଭଡ଼ା ପରିବାର ଆୟର ଶତକଡ଼ା ୫ ଭାଗ ମାତ୍ର ହେଲାବେଳେ ପୁଞ୍ଜିବାଦୀ ଦେଶରେ ତାହା ପରିବାରର ସମସ୍ତ ଆୟର ଏକ ତୃତୀୟାଂଶ ବା ତହିଁରୁ ଅଧିକ ହୁଏ । ତେଣୁ ପୁଞ୍ଜିବାଦୀ ଦେଶରେ ଅନେକ ଶ୍ରମିକ ଯେ ସାଧାରଣ ବ୍ୟବସ୍ଥା ନ ଥିବା ଅତି ଜଘନ୍ୟ ଘରେ ରହନ୍ତି, ସେଥିରେ ବା ଆଶ୍ଚର୍ଯ୍ୟ ହେବାର କଣ ଅଛି ? ପୁଞ୍ଜିବାଦୀ ଦେଶଗୁଡ଼ିକ ମଧ୍ୟରେ ସବୁଠାରୁ ବଳି ବିଭବଶାଳୀ ଆମେରିକାର ସହରରେ ସବୁ ବସବାସ କରୁଥିବା ଲୋକଙ୍କ ଭିତରୁ ଏକ ତୃତୀୟାଂଶ ଲୋକ ଏହିପରି ଘରମାନଙ୍କରେ ରହନ୍ତି ।

ଶିକ୍ଷା, ସଂସ୍କୃତି, ସାମାଜିକ ନିରାପତ୍ତା ଇତ୍ୟାଦି ଲୋକଙ୍କ ଜୀବନଧାରଣର ମାନର ପ୍ରଧାନ ସୂଚକ । ଏସବୁ ଦିଗରେ ସୋଭିଏତ୍ ୟୁନିଅନ ସବୁଠାରୁ ଉନ୍ନତ ପୁଞ୍ଜିବାଦୀ ଦେଶକୁ ଉଲ୍ଲେଖଯୋଗ୍ୟ ଭାବେ ଅତିକ୍ରମ କରିଯାଇଛି ।

ଜୀବନଧାରଣ ମାନରେ ପୁଞ୍ଜିବାଦୀ ଦେଶମାନେ ସୋଭିଏତ୍ ୟୁନିଅନଠାରୁ ଉଚ୍ଚରେ ଅଛନ୍ତି,—ଏ କଥା, କୁହାଗଲା ବେଳେ ବୁଝିବାକୁ ହେବ ଯେ,

ଏହା ପୁଞ୍ଜିବାଦୀ ଦେଶମାନଙ୍କର ସବୁ ଲୋକଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ । କାରଣ, ଦୃଷ୍ଟାନ୍ତ ସ୍ୱରୂପ, ଆମେରିକାରେ ମୁଣ୍ଡ ପିଛା ମାଂସ, ଦୁଧ, ଅଣ୍ଡା, ଲୁଗାପଟା ଓ ଜୋତା ଆଦିର ବ୍ୟବହାର ସୋଭିଏତ୍ ୟୁନିଅନଠାରୁ ଅଧିକ । କିନ୍ତୁ ଏହି ହାରାହାରି ତଥ୍ୟ କିପରି ହିସାବରେ ବାହାରି କରାଯାଏ ? ସେମାନେ ମୂଖ୍ୟତଃ ଶ୍ରମିକମାନଙ୍କ ଆୟକୁ ନେଇ, ତାକୁ ପୁଞ୍ଜିପତିମାନଙ୍କ ଅାୟ ସହିତ ଯୋଗ କରିଦିଅନ୍ତି ଏବଂ ସେହି ମୋଟ ଯୋଗଫଳକୁ ଦେଶର ସର୍ବମୋଟ ଲୋକ ସଂଖ୍ୟା ଦ୍ୱାରା ଭାଗ କରିଦିଅନ୍ତି ।

ଆମେରିକା ଭଳି ଦେଶ, ଯେଉଁଠି କି ପୁଞ୍ଜିପତି ଓ ଶ୍ରମିକର ଆୟ ମଧ୍ୟରେ ଆକାଶ ପାତାଳ ପ୍ରଭେଦ, ସେଠାରେ କଣ ଏହି ହିସାବ ପ୍ରକୃତ ଅବସ୍ଥାକୁ ପ୍ରତିଫଳିତ କରେ ? ନା, ତାହା କରେ ନାହିଁ ।

ପୁଞ୍ଜିବାଦର ରକ୍ଷକମାନେ ସ୍ୱୀକାର କରନ୍ତି ଯେ, ଆମେରିକାରେ ଲକ୍ଷ ଲକ୍ଷ ଲୋକ ଜୀବନଧାରଣର ସର୍ବନିମ୍ନ ଜିନିଷମାନ ପାଇ ପାରନ୍ତି ନାହିଁ । ଆମେରିକାର ଭୂତପୂର୍ବ ରାଷ୍ଟ୍ରପତି ଜନ ଏଫ୍. କେନେଡି କହିଥିଲେ ଯେ, ପ୍ରତ୍ୟେକ ରାତିରେ ଏକ କୋଟି ୭୫ ଲକ୍ଷ ଲୋକ ଅନାହାରରେ ଶୁଅନ୍ତି; ଦେଢ଼କୋଟି ପରିବାର ଯେଉଁ ଗୃହରେ ସବୁ ବସବାସ କରନ୍ତି, ତାହାର ସ୍ତର ସାଧାରଣ ସ୍ତରଠାରୁ ଊଣା ଏବଂ ୭୦ ଲକ୍ଷ ପରିବାର ଯେମିତି ହେଉ ମୁଠାଏ ଖାଇ ବଞ୍ଚିବା ପାଇଁ ପ୍ରାଣପଣେ ଲାଗିଛନ୍ତି ।

ସାମାଜବାଦ ଓ ସାମ୍ୟବାଦ ଅଧୀନରେ ଜାତୀୟ ଆୟ ଯେତେ ଅଧିକ ହେବ, ସବୁ ଲୋକଙ୍କର ଉନ୍ନତି ଓ କଲ୍ୟାଣ ସେତେ ବେଶୀ ଓ ବ୍ୟାପକ ହେବ । ଜାତୀୟ ଆୟର ବୃଦ୍ଧି, ଜୀବନଧାରଣ ମାନର ବିକାଶର ଅତି ମୌଳିକ ଓ ଅତି ସାଧାରଣ ପ୍ରକାଶ । ସମାଜବାଦ ଅଧୀନରେ ସମସ୍ତ ଜାତୀୟ ଆୟର ମାଲିକ ହେଉଛନ୍ତି ଶ୍ରମିକଶ୍ରେଣୀ । ତାର ପ୍ରାୟ ତିନି ଚତୁର୍ଥାଂଶ ସେମାନଙ୍କ ନିଜସ୍ୱ ପ୍ରୟୋଜନୀୟତା ପୂରଣ ଲାଗି ନିଯୁକ୍ତ ହୁଏ । କୋଡ଼ିଏ ବର୍ଷିଆ ଯୋଜନାରେ ଜାତୀୟ ଆୟକୁ ୫ ଗୁଣ ବୃଦ୍ଧି କରିବାପାଇଁ ଡାକ ଦିଆଯାଇଛି ।

କୋଡ଼ିଏ ବର୍ଷ ମଧ୍ୟରେ ମୁଣ୍ଡ ପିଛା ପ୍ରକୃତ ଆୟ ୩.୫ ଗୁଣରୁ ଅଧିକ ବୃଦ୍ଧି ପାଇବ । ମଜୁରି ବୃଦ୍ଧି, ଟିକସର ବିଲୋପ ଏବଂ ସାଧାରଣ ଉପଭୋଗ ପାଣ୍ଠିରୁ ମିଳୁଥିବା ପ୍ରାପ୍ୟ ଓ ସାହାଯ୍ୟ ଦ୍ୱାରା ଏହି ଉପରୋକ୍ତ ବୃଦ୍ଧି ହାସଲ କରିହେବ ।




ସ୍ଲୋଗାନରେ ଲେଖାଯାଇଛି :—
"ସାମ୍ୟବାଦର ଆଦର୍ଶ ବିଜୟମଣ୍ଡିତ ହେବ ।"

ଜୋଡ଼ିଏ ବର୍ଷ ମଧ୍ୟରେ ହିଁ ଧରଣର ଭଲ ଭଲ ଲୁଗାପଟା ଓ ଜୋତା ଆଦିର ଉତ୍ପାଦନ ଓ ବିକ୍ରୟ ବିଶେଷ ଭାବେ ପ୍ରସାର ଲାଭ କରିବ । ଗୁଣ, ପରିମାଣ ଏବଂ ପ୍ରକାରଗତ ବିଭିନ୍ନତା ଦୃଷ୍ଟିରୁ ମଧ୍ୟ ତାହାସବୁ ସୋଭିଏତ୍ ଲୋକଙ୍କର ସମସ୍ତ ପ୍ରୟୋଜନୀୟତାକୁ ସଂପୂର୍ଣ୍ଣରୂପେ ପୂରଣ କରିପାରିବ ଏବଂ ବିଭିନ୍ନ ପ୍ରକାରର ରୁଚିକୁ ସନ୍ତୁଷ୍ଟ କରିପାରିବ । ଘରର ଆସବାବ, ଅନ୍ୟ ଜିନିଷପତ୍ର ପ୍ରଭୃତିର ଓ ସଂସ୍କୃତିର ପ୍ରୟୋଜନକୁ ସବୁ ପୂରଣ କରୁଥିବା ଦେଡ଼ାର ରେଡ଼ିଓ, ଟେଲିଭିଜନ, ରେଫ୍ରିଜରେଟର ଓ ଲୁଗ ଧୂଆ କଳ ଇତ୍ୟାଦି ୧୦ ଗୁଣ ବୃଦ୍ଧି ପାଇବ । ଫଳରେ, ସୋଭିଏତ୍ ୟୁନିଅନ ହେବ ଏପରି ଏକ ଦେଶ, ସମଗ୍ର ପୃଥିବୀରେ ଯାହା ହେବ ସବୁଠାରୁ ବଳି ଜୀବନଧାରଣ ଦଶା; ଯାହାର ଲୋକମାନଙ୍କର ଉପାର୍ଜନ ହେବ ସବୁଠାରୁ ଅଧିକ ଏବଂ ସେଇଠାରେ ପୁଣି ଶ୍ରମ-ଦିବସ ହେବ ସବୁଠାରୁ ବଳି ସଂକ୍ଷିପ୍ତ । ସମସ୍ତ ଦୃଷ୍ଟିରୁ ସବୁ କଳକାରଖାନା ଓ ଅଫିସ ଆଦିରେ ଶ୍ରମ-ଦିବସ ହେବ ୬ ଘଣ୍ଟା ଓ ସପ୍ତାହରେ ଗୋଟିଏ ଦିନେ ଛୁଟିର ; କମ୍ପା ସପ୍ତାହକୁ ୫ ଦିନ ଶ୍ରମ ଦିବସରେ ୩୫ ଘଣ୍ଟା କାର୍ଯ୍ୟ ଓ ଦୁଇଦିନ ଛୁଟି । ଯେଉଁମାନେ ଭୂଗର୍ଭରେ ବା କଷ୍ଟକାରକ ଅବସ୍ଥା ଭିତରେ କାର୍ଯ୍ୟ କରିବେ, ସେମାନଙ୍କର ଶ୍ରମଦିବସ ହେବ ୫ ଘଣ୍ଟା ଓ ସପ୍ତାହକୁ ଦିନେ ଛୁଟି ପାଇବେ ସେମାନେ କମ୍ପା ସପ୍ତାହକୁ ୫ ଦିନ ମଧ୍ୟରେ ୩୦ ଘଣ୍ଟା ମାତ୍ର କାର୍ଯ୍ୟ କରିବେ ସେମାନେ ।

ସ୍ତ୍ରୀଲୋକମାନେ ବହୁ ଘରକରଣା ବାସନମାଜିଆ କାମରୁ ମୁକ୍ତ ହେବେ । ସେମାନଙ୍କ ପାଖରେ ଅଧିକରୁ ଅଧିକ ଘରକରଣା ଜିନିଷପତ୍ର ରହିବ, ବ୍ୟାପକଭାବେ ସାଧାରଣ ଭୋଜନଶାଳାମାନ ପ୍ରତିଷ୍ଠିତ ହେବ । ସେଠାରେ ପ୍ରତ୍ୟେକ ଲୋକ ସ୍ୱଳ୍ପ ଦରରେ ସୁସ୍ୱାଦୁ ଓ ବିଭିନ୍ନ ପ୍ରକାରର ଖାଦ୍ୟ ପାଇପାରିବ, ଘର ରୋଷେଇର କୌଣସି ଆବଶ୍ୟକତା ରହିବ ନାହିଁ । ଲଣ୍ଡ୍ରି ବା ଲୁଗାଧୂଆ ଦୋକାନ ପ୍ରଭୃତି ଅନ୍ୟାନ୍ୟ ସେବାକାର୍ଯ୍ୟ ପ୍ରତିଷ୍ଠାନସବୁ ବିସ୍ତାର ଲାଭ କରିବ । ସଂସ୍କୃତି ଓ ଅନ୍ୟାନ୍ୟ ସେବା ଓ ସାହାଯ୍ୟକାରୀ ଦିଗରୁ ଗ୍ରାମାଞ୍ଚଳମାନ ଧୀରେ ଧୀରେ ସହରର ନିକଟବର୍ତ୍ତୀ ହେବେ ।

## ସୋଭିଏତ୍ ଯୋଜନାର ବାସ୍ତବ କାର୍ଯ୍ୟକାରିତା

ସୋଭିଏତ୍ ୟୁନିଅନ କମ୍ୟୁନିଷ୍ଟ ପାର୍ଟି ପ୍ରୋଗ୍ରାମରେ କମ୍ୟୁନିଜମ୍ ନିର୍ମାଣ ପାଇଁ ଯେଉଁ ଯୋଜନାର ଚିତ୍ର ଅଙ୍କନ କରାଯାଇଛି, ଦେଶର ପ୍ରକୃତ ସୁପ୍ତ ଶକ୍ତି ମଧ୍ୟରୁ ହିଁ ତାହାର ଉଦ୍‌ଭବ ଘଟିଛି । ଏହା ଦର୍ଶାଇ ଦେଉଛି, ସମାଜବାଦୀ ଶିଳ୍ପ, କୃଷି ଓ ବିଜ୍ଞାନ ଅତି କଠିନ ଓ ଜଟିଳ କର୍ତ୍ତବ୍ୟର ସମକକ୍ଷ ହୋଇପାରେ ।

ଅର୍ଥନୈତିକ ବିକାଶର ବେଗକୁ ଅଧିକ ଗତିଶୀଳ କରିବା ଅବଶ୍ୟ ବାଞ୍ଛନୀୟ । କିନ୍ତୁ ଉତ୍ପାଦନକୁ ପ୍ରସାରିତ କଲାବେଳେ ଲୋକମାନଙ୍କ କେବଳ ସେମାନଙ୍କ ଇଚ୍ଛା ଉପରେ ନିର୍ଭର କରିବାକୁ ନୁହେଁ, କେବେହେଲେ ଏହି ଦାଆଯାଇ ନ ପରେ ଏଭଳି, ବାସ୍ତବ ଅର୍ଥନୈତିକ ନିୟମଗୁଡ଼ିକ ଦ୍ୱାରେ ମଧ୍ୟ ନିର୍ଭର କରିବାକୁ ହେବ ।

ଯଦି ହିସାବ ବା ଅଟକଳ କରି ଦେଖାଯାଏ ଯେ, ବର୍ଷକୁ ଶିଳ୍ପ ଉତ୍ପାଦନ ଶତକଡ଼ା ୯, ୧୦ ଭାଗ ବୃଦ୍ଧି ପାଇପାରେ, ତେବେ ଯୋଜନା ତିଆରି କଲାବେଳେ ଏହି ସ୍ତରକୁ ଅତିକ୍ରମ କରି ଅଧିକ ଯୋଜନା କରିବା ଅନୁଚିତ ହେବ । କାରଣ, କମ୍ୟୁନିଜମ୍ ନିର୍ମାଣ ପୂର୍ବରେ ଓ ସାମାଜିକ ପରିବର୍ତ୍ତନ ନିର୍ଦ୍ଧାରଣ କରିବାରେ ବାସ୍ତବ ଅବସ୍ଥା ଓ ସୁପ୍ତଶକ୍ତିକୁ ବିଶେଷଭାବେ ବିଚାରକୁ ନେବାକୁ ପଡ଼ିବ ।

କମ୍ୟୁନିଜମ୍ ଦିଗରେ ପରିଗମନକୁ ଜୋରଦାର କରିବା ଲାଗି ସାମାଜିକ ରୂପାନ୍ତରର ଆବଶ୍ୟକୀୟ ପର୍ଯ୍ୟାୟଗୁଡ଼ିକୁ ଡେଇଁଯିବା, ସମାଜବାଦ ଓ ସାମ୍ୟବାଦ ସ୍ତରରେ ବିକାଶର ସାମାଜିକ ବସ୍ତୁଗତ ନିୟମମାନଙ୍କୁ ଏଡ଼ି ଦେବା, ଠିକ୍ ନୁହେଁ । କାରଣ, ଏହା ସବୁ ଅନିବାର୍ଯ୍ୟ ଭାବେ ଭୁଲ୍ ତ୍ରୁଟି ଓ ବିଫଳତା ଆଡ଼କୁ ଘେନିଯିବ ।

କମ୍ୟୁନିଜମର ଲକ୍ଷ୍ୟ ଅତି ଆକର୍ଷଣୀୟ । ଯେ କେହି ତାକୁ ଅତି ଚଞ୍ଚଳ କାର୍ଯ୍ୟକାରୀ କରିବାକୁ ଇଚ୍ଛା କରିବେ । କିନ୍ତୁ ଇଚ୍ଛାଟା କେବଳ ଯଥେଷ୍ଟ ନୁହେଁ । ଲୋକଙ୍କୁ ବାସ୍ତବ ସମ୍ଭାବନାରୁ ବସ୍ତୁଗତ ଅବସ୍ଥାରୁ ହିଁ ଆଗେଇବାକୁ ହେବ, ସାମାଜିକ ବିକାଶର ନିୟମମାନଙ୍କୁ ବିଚାରକୁ ନେବାକୁ ପଡ଼ିବ । ସର୍ବପ୍ରଥମେ ଉତ୍ପାଦନର ପ୍ରସାର ଆଣିବା, ଶ୍ରମ ଉତ୍ପାଦନଶୀଳତାକୁ ବୃଦ୍ଧି କରେଇବା ଏବଂ ସମାଜର ସମ୍ପଦକୁ ସମୃଦ୍ଧ କରିବା ଆବଶ୍ୟକ ।

ପ୍ରକୃତରେ ବିପ୍ଳବୀ ହେବାକୁ ହେଲେ, ଲୋକ ପକ୍ଷରେ ସମାଜବାଦ ଓ ସାମ୍ୟବାଦର ନିର୍ମାଣକୁ ପରିଚାଳିତ କରୁଥିବା ବସ୍ତୁଗତ ନିୟମମାନଙ୍କୁ ଆଡ଼େଇ ଯିବା ଉଚିତ ନୁହେଁ । ତାକୁ ଆଗ ଏହି ନିୟମଗୁଡ଼ିକ ବିଷୟରେ ଗଭୀର ଜ୍ଞାନଲାଭ କରିବାକୁ ହେବ ଓ ଏଗୁଡ଼ିକୁ ନିର୍ଭୁଲ ଭାବେ ପ୍ରୟୋଗ କରିବାକୁ ପଡ଼ିବ ।

କମ୍ୟୁନିଜମ ନିର୍ମାଣ ଲାଗି ଭୌତିକ ଓ ନୈତିକ ପୂର୍ବାବସ୍ଥାମାନ ପ୍ରସ୍ତୁତ ଓ ପରିପକ୍ୱ ହେଲାବେଳେ ହିଁ ସୋଭିଏତ୍ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ନିର୍ମାଣଗତ ସମସ୍ୟାକୁ ସବୁ ଉପସ୍ଥାପିତ କରିଛି ଓ ତାକୁ ସମାଧାନ କରୁଛି । ଏହା

ସେଭ ମାତ ଅନୁସାଗ୍ନା କାର୍ଯ୍ୟ କରୁଛୁ, ସେହ ମାତ ହେଉଛୁ, ସମାଜ ପକ୍ଷରେ ଆବଶ୍ୟକୀୟ ପର୍ଯ୍ୟାୟମାନ ଡେଇଁ ପଡ଼ିବା ଉଚିତ ନୁହେଁ କି ଆହୁରି ଛାଡ଼ିଦେଇ ଅଗ୍ରଗତିକୁ ରୋକ ଅଟକାଇ ଦେଇ ହାତବାନ୍ଧି ବସିଯିବା ଠିକ୍ ନୁହେଁ ।

ସୋଭିଏତ୍‌ର କେଉଁ ବର୍ଷିଆ ଯୋଜନାର ବିଶେଷତ୍ୱ ହେଉଛୁ ଯେ, ଏହାର ସମସ୍ତ ମହାନ ବର୍ଣ୍ଣିତ୍ୟ ଆଉ ଅତି ବ୍ୟାପକ ପରିସର ସତ୍ତ୍ୱେ ଏହା ହେଉଛୁ ପୂରାପୂରି ଏକ କାର୍ଯ୍ୟକାରୀ ବାସ୍ତବ ପ୍ରୋଗ୍ରାମ, ଏହା ବୈଜ୍ଞାନିକ ଭିତ୍ତିରେ ପ୍ରସ୍ତୁତ ହୋଇଛୁ । ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ଏହି ପ୍ରୋଗ୍ରାମ ଯେ ସମ୍ପୂର୍ଣ୍ଣ ବାସ୍ତବ ଓ କାର୍ଯ୍ୟକାରୀ, ଏହା ଅକାଟ୍ୟ ତଥ୍ୟାବଳୀ ଓ ଅର୍ଥନୈତିକ ଗଣନା ଦ୍ୱାରା ପ୍ରତିପାଦିତ ହୋଇଛୁ ।

ସୋଭିଏତର ଲୋକେ, ଅନ୍ୟାନ୍ୟ ଦେଶରେ ଥିବା ତାଙ୍କର ବନ୍ଧୁମାନେ ଏବଂ ତାଙ୍କର ଶତ୍ରୁମାନେ ମଧ୍ୟ ଭଲ ଭାବେ ଜାଣନ୍ତି ଯେ, ସୋଭିଏତ୍ ଇଉନିଅନର ତଥ୍ୟ-ମୂଳକ ପ୍ରସ୍ତାବ ଓ ଯୋଜନାଠାରୁ ବଳି ପୃଥିବୀରେ ଆଉ ଅଧିକ ସଠିକ ପ୍ରକୃତ ତଥ୍ୟମୂଳକ ପ୍ରସ୍ତାବ, ଅଧିକ ବାସ୍ତବ ଯୋଜନା, କେଉଁଠି ନାହିଁ ।

## ୬ । ସାମ୍ୟବାଦୀ ସାମାଜିକ ସମ୍ପର୍କର ବିକାଶ

କମ୍ୟୁନିଜ୍ମ ବା ସାମ୍ୟବାଦୀ ସମାଜ ଦିଗରେ ପରିଗମନ, ଉତ୍ପାଦନର କେବଳ ଏକ ବିରାଟ ଅଗ୍ରଗତିକୁ ବୁଝାଏ ନାହିଁ, ତାହା ସମାଜବାଦୀ ସାମାଜିକ ସମ୍ପର୍କର ଉତ୍ତରୋତ୍ତର ଉନ୍ନତି ଏବଂ କ୍ରମାନ୍ୱୟରେ ଧୀରେ ଧୀରେ ସେଗୁଡ଼ିକର ସାମ୍ୟବାଦୀ ବା କମ୍ୟୁନିଷ୍ଟ ସମ୍ପର୍କଗତ ବିକାଶକୁ ସୂଚାଏ ।

ଏ ସାମାଜିକ ସମ୍ପର୍କ ଗୁଡ଼ିକ କଣ ?

ଲୋକମାନେ ତାଙ୍କର ଦୈନନ୍ଦିନ ଜୀବନ ଓ କାର୍ଯ୍ୟ ଭିତରେ ପ୍ରତ୍ୟେକେ ପ୍ରତ୍ୟେକ ସହିତ ବିଭିନ୍ନ ପ୍ରକାର ସମ୍ବନ୍ଧ ଓ ସମ୍ପର୍କରେ ଆବଦ୍ଧ ହୁଅନ୍ତି, ଯଥା ଉତ୍ପାଦନଗତ, ରାଜନୈତିକ, ମତାଦର୍ଶଗତ ଏବଂ ଅନ୍ତର୍ଜାତୀୟ ସମ୍ପର୍କରେ ଏବଂ ଗୋଷ୍ଠୀଗତ ଓ ପାରିବାରିକ ଦୈନନ୍ଦିନ ସମ୍ବନ୍ଧରେ ସଂଯୁକ୍ତ ହୁଅନ୍ତି । କିନ୍ତୁ ଏସବୁ ସମ୍ପର୍କ ମଧ୍ୟରେ ଉତ୍ପାଦନ ସମ୍ପର୍କ ହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ।

ସମାଜବାଦରୁ ସାମ୍ୟବାଦକୁ ପରିଗମନ କାଳରେ ପୂର୍ଣ୍ଣ ସାମାଜିକ-ଅର୍ଥ-ନୈତିକ ସାମ୍ୟ, ଓ ପରସ୍ପର ପ୍ରତି ଭ୍ରାତୃତ୍ୱପୂର୍ଣ୍ଣ ମୈତ୍ରୀ ଉପରେ ପ୍ରତିଷ୍ଠିତ, ବହୁମୁଖୀ

ବିକାଶ ବଳରେ ସ୍ୱାଧୀନ ଲୋକଙ୍କର ବନ୍ଧୁତ୍ୱ ଓ ସହଯୋଗରେ ଗଠିତ, ସମାଜବାଦୀ ସମ୍ପର୍କ ହିଁ ଧୀରେ ଧୀରେ ସାମ୍ୟବାଦୀ ସମ୍ପର୍କରେ ପରିଣତ ହୁଏ ।

ଏହି ସମାଜବାଦୀ ସମ୍ପର୍କ ବିକାଶ ଲାଭ କରେ କିପରି, ଉନ୍ନତ ହୁଏ ଏବଂ ଧୀରେ ଧୀରେ ସାମ୍ୟବାଦୀ ସମ୍ପର୍କରେ ପରିଣତ ହୁଏ ବା କିପରି ? ଉତ୍ପାଦନ ଉପକରଣମାନଙ୍କର ମାଲିକାନାର ରୂପ ବା ଚରିତ୍ରରେ, ଅର୍ଥାତ୍, ଯାହା ଉତ୍ପାଦନର ଓ ଅନ୍ୟାନ୍ୟ ସାମାଜିକ ସମ୍ପର୍କର ସାରମର୍ମକୁ ବିଶଦଭାବରେ ପ୍ରକାଶ କରେ ସେହି ରୂପ ବା ଚରିତ୍ରରେ, ଯେଉଁ ନିର୍ଦ୍ଦିଷ୍ଟ ପରିବର୍ତ୍ତନମାନ ଘଟେ ତାହା ବା କି ପ୍ରକାରର ?

## ଗୋଟାଏ ପ୍ରକାରର କମ୍ୟୁନିଷ୍ଟ ସମ୍ପତ୍ତି

ଆମେ ପୂର୍ବରୁ କହିଛୁ ଯେ, ସମାଜବାଦରେ ଉତ୍ପାଦନ ଉପକରଣଗୁଡ଼ିକ ଉପରେ ଦୁଇ ପ୍ରକାରର ସର୍ବସାଧାରଣ ମାଲିକାନା ରହିଛି; ରାଷ୍ଟ୍ରୀୟ, ଆଉ କୋଅପରେଟିଭ ଓ କୋଠଗୃହ ଫାର୍ମ ସମ୍ପତ୍ତିର । ଦୁଇଟିଯାକର ଚରିତ୍ର ସମାଜବାଦୀ, ତେଣୁ ଦୁଇଟି ପରସ୍ପରର ବିରୋଧୀ ନୁହନ୍ତି ।

ଯଦିଓ ରାଷ୍ଟ୍ରୀୟ କୋଅପରେଟିଭ ଓ କୋଠଗୃହ ଫାର୍ମ ସମ୍ପତ୍ତିର ପ୍ରକୃତ ସମାନ, ତଥାପି ସେଗୁଡ଼ିକ ମଧ୍ୟରେ ପାର୍ଥକ୍ୟ ରହିଛି । ଉତ୍ପାଦନର ଉପକରଣଗୁଡ଼ିକ କେତେଦୂର ସମାଜବାଦୀ ହୋଇପାରିଛି, ତାହାଦ୍ୱାରା ହିଁ ଉକ୍ତ ପାର୍ଥକ୍ୟ ପ୍ରକଟିତ ହେଉଛି । ସମସ୍ତ ଲୋକେ ହେଉଛନ୍ତି ରାଷ୍ଟ୍ରୀୟ ପ୍ରତିଷ୍ଠାନରେ ଥିବା ଉତ୍ପାଦନ ଉପକରଣଗୁଡ଼ିକର ମାଲିକ, କିନ୍ତୁ କୋଅପରେଟିଭରେ, ଦୃଷ୍ଟାନ୍ତ ସ୍ୱରୂପ, କୋଠଗୃହ ଫାର୍ମମାନଙ୍କରେ ସବୁ ଲୋକେ ଉତ୍ପାଦନ ଉପକରଣର ମାଲିକ ନୁହନ୍ତି; ନିର୍ଦ୍ଦିଷ୍ଟ ଗୋଟିଏ ଦଳର ବା ଗୋଷ୍ଠୀର ଲୋକେ ଅର୍ଥାତ୍ କୋଠଗୃହ ଫାର୍ମର ସଭ୍ୟମାନେ ହେଉଛନ୍ତି ମାଲିକ ।

ସାମ୍ୟବାଦ ଅଧୀନରେ ଉତ୍ପାଦନ ଉପକରଣଗୁଡ଼ିକର ମାଲିକାନା ଏବଂ ଶିଳ୍ପ ଓ କୃଷିର ସମସ୍ତ ଉତ୍ପନ୍ନ ଗୋଟାଏ ପ୍ରକାରର ରୂପ ନେବ । ତାହା ସମଗ୍ର ଭାବେ ସମଗ୍ର ଲୋକଙ୍କର କମ୍ୟୁନିଷ୍ଟ ସମ୍ପତ୍ତି ରୂପରେ ହିଁ ପ୍ରକାଶ ପାଇବ । ରାଷ୍ଟ୍ରୀୟ ଫାର୍ମ, କୋଠଗୃହ ଫାର୍ମ ଓ କୋଅପରେଟିଭ ସମ୍ପତ୍ତି ସମସ୍ତ ଅନୁସାରେ ପରେ ଏକ ସ୍ତରରେ ପହଞ୍ଚିବ ଯେ, ସେସବୁ ଏକତ୍ର ମିଶିଯାଇ ଗୋଟାଏ ପ୍ରକାର କମ୍ୟୁନିଷ୍ଟ ସମ୍ପତ୍ତିରେ ପରିଣତ ହେବ ।

ଏହା କାର୍ଯ୍ୟତଃ ହାସଲ ହେବ କପରି ?

ସର୍ବପ୍ରଥମେ କୋଠଗୃହ ଫାର୍ମ ଓ କୋଅପରେଟିଭ ସମ୍ପତ୍ତିକୁ ସମାଜବାଦୀ ସ୍ତରକୁ ଉନ୍ନୀତ କରି ରାଷ୍ଟ୍ରୀୟ ସମ୍ପତ୍ତିର ସ୍ତରକୁ ଆଣିବାକୁ ହେବ ।

କୋଠଗୃହ ଫାର୍ମସବୁ ଉତ୍ପାଦକ-ଶକ୍ତି ଗୁଡ଼ିକର ବୃଦ୍ଧି ଓ ଅଧିକ ସଦ୍‌ବ୍ୟବହାର ହେତୁ ଉତ୍ପାଦନର ସଂଗଠନକୁ ଉନ୍ନତରୁ ଉନ୍ନତ କରି, ଉତ୍ପାଦକା ଶକ୍ତିସବୁର ଦ୍ରୁତ ଅଭିବୃଦ୍ଧି ଆଣି ଏବଂ କାମ ଅନୁଯାୟୀ ପ୍ରାପ୍ୟ ବଣ୍ଟନର ନୀତିକୁ ଠିକ୍ ଠିକ୍ ପାଳନ କରି, ସାମ୍ୟବାଦ ଦିଗକୁ ଅଗ୍ରସର ହୋଇ ପାରିବେ । ଏହି ଭାବରେ କୋଠଗୃହ ଫାର୍ମସବୁ ଜନଜନର ଉତ୍ପାଦନ ସମ୍ପର୍କ, ଶ୍ରମର ପ୍ରକୃତି ଏବଂ ସଭ୍ୟମାନଙ୍କର ଭୌତିକ ଓ ସାଂସ୍କୃତିକ ସ୍ତର ଯେପରି ଅଧିକରୁ ଅଧିକ ପରିମାଣରେ ସାମ୍ୟବାଦୀ ପ୍ରକାରର ଉଦ୍ୟୋଗ ପ୍ରତିଷ୍ଠାନରେ ପରିଣତ ହେବେ ।

କୋଠଗୃହ ଫାର୍ମରେ ଉତ୍ପାଦନ ପ୍ରସାର ପାଇବା ହେତୁ ଓ କୃଷିର ସମସ୍ତ ବିଭାଗ ସର୍ବଦା ଅଧିକରୁ ଅଧିକ ସମାଜବାଦୀ ହେବା ହେତୁ, ସର୍ବସାଧାରଣ ସତ୍ତ୍ୱାଧିକାର-ଭୁକ୍ତ ଅର୍ଥନୀତିରୁ କୋଠଗୃହୀମାନଙ୍କର ସମସ୍ତ ପ୍ରୟୋଜନୀୟତା ପୂରଣ କରାଯିବା ସମ୍ଭବପର ହେବ । କୋଠଗୃହୀମାନଙ୍କ ପକ୍ଷରେ ନିଜର ପନିପରିବା ଖର୍ଚ୍ଚ ଲାଗି ଛୋଟ ଛୋଟ ବଗିଚା ରଖିବା ବା ଗୋରୁଗାଈ ପାଳିବାର ଆବଶ୍ୟକତା ରହିବ ଧୀରେ ଧୀରେ ଲୋପ ପାଇବ । କାରଣ, କୋଠଗୃହ ଫାର୍ମରୁ ଦୁଧ, ମାଂସ, ପନିପରିବା ଓ ଅନ୍ୟାନ୍ୟ ଖାଦ୍ୟ ଜିନିଷ ମିଳିବା ଅଧିକ ସୁବିଧାଜନକ ହେବ ।

କୋଠଗୃହ ଫାର୍ମଗୁଡ଼ିକର ଅର୍ଥନୈତିକ ପ୍ରଗତି ଫଳରେ ମୂଲ୍ୟ ନିର୍ଦ୍ଧାରଣ, ସଙ୍ଗଠନ ଏବଂ ଶ୍ରମରେ ପାରିଶ୍ରମିକ-ପ୍ରଦାନକୁ ପ୍ରଚଳିତ ରାଷ୍ଟ୍ରଫାର୍ମଗୁଡ଼ିକର ସ୍ତରକୁ ଘେନି ଆସିହେବ, ସେହିଭଳି ରୂପ ଦେଇ ହେବ ଏବଂ ପ୍ରତି ମାସରେ ସୁନିର୍ଦ୍ଦିଷ୍ଟ ଭାବେ ପ୍ରତ୍ୟେକଙ୍କର ପ୍ରାପ୍ୟ ଦେବା ସମ୍ଭବ ହେବ । ଲୋକ-କଲ୍ୟାଣକର କାର୍ଯ୍ୟ, ଅର୍ଥାତ୍ ସର୍ବସାଧାରଣ ଭୋଜନାଳୟ, ଶିଶୁସଦନ ଓ ଅନ୍ୟାନ୍ୟ ଅନୁଷ୍ଠାନ ଭଳି ବ୍ୟବସ୍ଥା ସବୁର ଉନ୍ନତି ଓ ପ୍ରସାର ଆଣିହେବ ।

ସାମ୍ୟବାଦ ବା କମ୍ୟୁନିଜିମ ଦିଗରେ କୋଠଗୃହ ଫାର୍ମଗୁଡ଼ିକର ଅଗ୍ରଗତି ସମ୍ବନ୍ଧରେ ଅ-ବଣ୍ଟନୀୟ ସମ୍ପଦର ଗୁରୁତ୍ୱପୂର୍ଣ୍ଣ ଭୂମିକା ଦେଖାଯାଏ । ଏହିସବୁ ଅବଣ୍ଟନୀୟ ସମ୍ପଦ ହେଉଛି—ଉତ୍ପାଦନର ପ୍ରଧାନ ପ୍ରଧାନ ଯନ୍ତ୍ରପାତି, (ଟ୍ରାକ୍ଟର କଳଲଙ୍ଗଳ

ଓ ଅନ୍ୟାନ୍ୟ କୃଷି ଯନ୍ତ୍ର ଉପକରଣ) କୋଠକୃଷି ଫାର୍ମର ପ୍ରତିଷ୍ଠାନ, ଗୃହପାଳିତ ଓ କୃଷିକାର୍ଯ୍ୟ ଗାଈଗୋରୁ ଘୋଡ଼ା ପ୍ରଭୃତି, କୋଠକୃଷି ଫାର୍ମର ଉତ୍ପନ୍ନ ସଂସ୍କୃତି, ଓ ଅନ୍ୟାନ୍ୟ ଘରବାଡ଼ି ଅନୁଷ୍ଠାନ କ୍ଲବ୍, ଡାକ୍ତରଖାନା, ଶିଶୁ ସଦନ ପ୍ରଭୃତି ।

ଏହି ଅବଣ୍ଟନୀୟ ସମ୍ପଦସବୁ ରାଷ୍ଟ୍ରର ନିରବଚ୍ଛିନ୍ନ ସାହାଯ୍ୟ ଫଳରେ ଗଢ଼ିଉଠିଛି । ଜମିମାଲିକ ଓ ଧନୀକୃଷୀଙ୍କଠାରୁ ରାଷ୍ଟ୍ର ଯେଉଁ ସବୁ ସମ୍ପଦ ବାଜ୍ୟାପ୍ତ କରିଥିଲା, ତାହା କୋଠକୃଷି ଫାର୍ମମାନଙ୍କୁ ଦାନ କରିଛି । ଯାବତ୍ ଚନ୍ଦ୍ରାର୍କେ ବିନା ମୂଲ୍ୟରେ ସେମାନଙ୍କୁ ସ୍ଥାୟୀ ଭାବେ ଜମି କୃଷିକରିବାକୁ ଦେଇଛି ଏବଂ ସେମାନଙ୍କୁ କୃଷି ଯନ୍ତ୍ରପାତି, ରାସାୟନିକ ସାର ଆଦି ଯୋଗାଉଛି । ଟ୍ରାକ୍ଟର, କମ୍ବାଇନ୍ ଓ ଅନ୍ୟାନ୍ୟ କୃଷି ଯନ୍ତ୍ରପାତି ଆଦି ଅଧିକାଂଶ ଅବଣ୍ଟନୀୟ ସମ୍ପଦ ରାଷ୍ଟ୍ରର ଶିଳ୍ପ ସହିତ ଘନିଷ୍ଠ ଭାବେ ସଂପୃକ୍ତ । ସେହି ମେସିନ ଯନ୍ତ୍ରପାତିର, ସେଗୁଡ଼ିକର ଦରକାରୀ ଅଂଶ ବା ପାର୍ଟସ୍, ବିଦ୍ୟୁତ୍ ଶକ୍ତି ଓ ଜାଳେଣିର ଟେକ୍‌ନିକାଲ ରକ୍ଷଣାବେକ୍ଷଣ ପ୍ରତ୍ୟକ୍ଷଭାବେ ରାଷ୍ଟ୍ର ପ୍ରତିଷ୍ଠାନ ଦ୍ୱାରା ସମ୍ପନ୍ନ ହେଉଛି ।

ତେଣୁ ଏହି ଅବଣ୍ଟନୀୟ ସମ୍ପଦସବୁ ବିଶେଷ କରି କେବଳ କୋଠକୃଷି ଫାର୍ମସବୁର ସମ୍ପତ୍ତି ନୁହେଁ, ଏହା ସମସ୍ତ ଲୋକଙ୍କର ସମ୍ପତ୍ତି । ଏହା ରାଷ୍ଟ୍ରର ସମଗ୍ର ଲୋକଙ୍କର ସାହାଯ୍ୟ ଦ୍ୱାରା ଗଠିତ ହୋଇଛି ଓ କ୍ରମାଗତ ବୃଦ୍ଧି ପାଉଛି । ଏଥିରେ କେବଳ ନିର୍ଦ୍ଦିଷ୍ଟ ଦଳେ କୃଷୀଙ୍କର ଶ୍ରମ ଓ ସମ୍ବଳର ବିନିଯୋଗ ହେଉନାହିଁ, ସମସ୍ତ ଲୋକଙ୍କର ଶ୍ରମ ଓ ସମ୍ବଳର ବିନିଯୋଗ ଘଟୁଛି ।

ଏହି ଅବଣ୍ଟନୀୟ ସମ୍ପଦର ବୃଦ୍ଧି ଘଟିବା ସଙ୍ଗେ ସଙ୍ଗେ କୋଠକୃଷି ଫାର୍ମ ସମ୍ପତ୍ତି ରାଷ୍ଟ୍ର ସମ୍ପତ୍ତିରେ ମିଳିତ ହେବ ଏବଂ ସର୍ବାଶେଷରେ ସମଗ୍ର ଲୋକଙ୍କର କମ୍ୟୁନିଷ୍ଟ ସମ୍ପତ୍ତିରେ ପରିଣତ ହେବ ।

ଆନ୍ତଃକୋଠକୃଷି ଫାର୍ମଗୁଡ଼ିକରେ ବିଭିନ୍ନ ରୂପର ଉତ୍ପାଦନ ସମ୍ପର୍କ, ସେସବୁ ମଧ୍ୟରେ ବିଭିନ୍ନ ରକମର ସହଯୋଗ, ନିକଟରେ ଏବେ ବ୍ୟାପକ ହୋଇଉଠିଛି । କୋଠକୃଷି ଫାର୍ମସବୁ ବିଦ୍ୟୁତ୍ ଶକ୍ତି କେନ୍ଦ୍ରର ପ୍ରତିଷ୍ଠା, ସାଂସ୍କୃତିକ ଓ ଜନ କଲ୍ୟାଣ ଅନୁଷ୍ଠାନ ଗଠନ, ପ୍ରାଥମିକ ଭାବେ ଶିଳ୍ପ-ଜିନିଷ ତିଆରି କରିବାର କାରଖାନା ନିର୍ମାଣ, କୃଷିଜାତ ଦ୍ରବ୍ୟଗୁଡ଼ିକର ସଞ୍ଚୟ ଓ ତାର ପରିବହନ ଏବଂ ଗୃହ ନିର୍ମାଣ ଉପଯୋଗୀ ଜିନିଷପତ୍ର ତିଆରି ଆଦି ଯାବତୀୟ କାର୍ଯ୍ୟ, ମିଳିତ ଭାବେ କରୁଛନ୍ତି । ଏହିସବୁ କାର୍ଯ୍ୟ କୋଠକୃଷି ଫାର୍ମମାନଙ୍କ ମଧ୍ୟରେ

ଅର୍ଥନୈତିକ ବନ୍ଧନ ବା ସମ୍ପର୍କକୁ ପ୍ରସାରିତ କରୁଛି, କୋଠଗୃହ ଫାର୍ମ ସମ୍ପତ୍ତିର ସମାଜବାଦୀ ପ୍ରକୃତିର ମାତ୍ରା ବୃଦ୍ଧି କରୁଛି ଏବଂ ତାହାକୁ ରାଷ୍ଟ୍ର ସମ୍ପତ୍ତିର ନିକଟବର୍ତ୍ତୀ କରୁଛି । ଏହା ମଧ୍ୟ ଏକ ପକ୍ଷରେ କୋଠଗୃହ ଫାର୍ମ, ଅନ୍ୟ ପକ୍ଷରେ ରାଷ୍ଟ୍ର ଫାର୍ମ ଓ ଅନ୍ୟାନ୍ୟ ରାଷ୍ଟ୍ର ପ୍ରତିଷ୍ଠାନ ସହିତ ଉତ୍ପାଦନ ଯୋଗାଯୋଗ ଦୃଢ଼ୀଭୂତ ହେବା ଦ୍ୱାରା ସହଜସାଧ୍ୟ ହେଉଛି ।

କୋଠଗୃହ ଫାର୍ମସବୁର ଉତ୍ପାଦିକାଶକ୍ତିର ବିକାଶ, ସେଗୁଡ଼ିକର ଅବଣ୍ଟନୀୟ ସମ୍ପତ୍ତିର ବୃଦ୍ଧି, ଆନ୍ତଃ କୋଠଗୃହ ଫାର୍ମ ଉତ୍ପାଦନ ଯୋଗାଯୋଗ ସମ୍ପର୍କର ଦୃଢ଼ ସଙ୍ଗଠନ, କୋଠଗୃହ ଫାର୍ମ ଆଉ ରାଷ୍ଟ୍ରଫାର୍ମ ଓ ଅନ୍ୟାନ୍ୟ ରାଷ୍ଟ୍ର ପ୍ରତିଷ୍ଠାନ ମଧ୍ୟରେ ସହଯୋଗ ସୃଷ୍ଟି—ଏହିସବୁ ହେଲା କମ୍ୟୁନିଜମ ବା ସାମ୍ୟବାଦ ଦିଗରେ କୋଠଗୃହ ଫାର୍ମର ଅଗ୍ରଗତି ସକାଶେ, କୋଠଗୃହ ଓ କୋଅପରେଟିଭ ସମ୍ପତ୍ତିକୁ ରାଷ୍ଟ୍ରୀୟ ସମ୍ପତ୍ତିର ନିକଟବର୍ତ୍ତୀ କରି ତାହା ସହିତ ସଂଯୁକ୍ତ କରିବାର ପ୍ରଧାନ ଉପାୟ ।

ଯେତେବେଳେ ଆମେ ସମ୍ପତ୍ତିର ସବୁ ଆକୃତି ପ୍ରକୃତିର ବିକାଶ କଥା କହୁଁ, ଆମେ କେବଳ କୋଅପରେଟିଭ ଓ କୋଠଗୃହ ସମ୍ପତ୍ତିକୁ ରାଷ୍ଟ୍ର ସମ୍ପତ୍ତିର ସ୍ତରକୁ ଉନ୍ନୀତ କରିବାର କଥା କହୁ ନାହିଁ, ଆମେ ମଧ୍ୟ ରାଷ୍ଟ୍ର ସମ୍ପତ୍ତିକୁ ଆହୁରି ଅଧିକ ଉନ୍ନତ କରିବାପାଇଁ କହୁ । କିନ୍ତୁ ଏହା କାର୍ଯ୍ୟକାରୀ କରାଯିବ କେମିତି ? ସର୍ବପ୍ରଥମେ ଅତି ଆଧୁନିକ ବୈଜ୍ଞାନିକ ଓ ଟେକ୍ନୋଲଜିକାଲ ଉଦ୍ଭାବନର ପ୍ରୟୋଗ, ବୃହତ୍ ସ୍ତରରେ ଶିଳ୍ପ ପ୍ରତିଷ୍ଠାନମାନ ଗଠନ, ଚଳନ୍ତି ଶିଳ୍ପ ପ୍ରତିଷ୍ଠାନଗୁଡ଼ିକର ପ୍ରସାର ଓ ପୁନର୍ଗଠନ ଏବଂ ସେ ସବୁର ଯନ୍ତ୍ରପାତି ଓ ଜିନିଷପତ୍ରର ଆଧୁନିକୀକରଣ ଓ ନୂତନୀକରଣ ଦ୍ୱାରା ଏହା ସମ୍ପନ୍ନ ହୋଇ ପାରିବ । ଶିଳ୍ପ କାରଖାନା ଗୁଡ଼ିକୁ ଅଧିକ ଯଥାର୍ଥ ସ୍ଥାନରେ ପ୍ରତିଷ୍ଠା କରିବା ଦ୍ୱାରା ଅର୍ଥନୈତିକ ଅଞ୍ଚଳସବୁର ଅଖଣ୍ଡ ବିକାଶ ଓ ବିଭିନ୍ନ ଦିଗରେ ବିଶେଷୀକରଣ କାର୍ଯ୍ୟ ସୁନିଶ୍ଚିତ ହେବ; ବଡ଼ ବଡ଼ ସହରମାନଙ୍କର ଅତିରିକ୍ତ ଜନଗହଳି ବା ଘନବସତି ବିଦୂରିତ ହେବ ।

ସହର ଓ ଗ୍ରାମାଞ୍ଚଳମାନଙ୍କ ମଧ୍ୟରେ ରହିଥିବା ମୁଖ୍ୟ ପାର୍ଥକ୍ୟମାନ ଦୂର କରିବାରେ ଓ ବିଭିନ୍ନ ଅଞ୍ଚଳର ବିକାଶ ସ୍ତରକୁ ସମାନ କରିବାରେ ଏହା ସାହାଯ୍ୟକାରୀ ହେବ । ଉତ୍ପାଦନ କ୍ଷେତ୍ରରେ ଉତ୍ପାଦିକାଶକ୍ତିର ବିଶେଷୀକରଣର ପ୍ରସାର, ସହଯୋଗ ଓ ସଂପୃକ୍ତ ଶିଳ୍ପ ପ୍ରତିଷ୍ଠାନମାନଙ୍କର ସମ୍ମିଶ୍ରଣ ଦ୍ୱାରା ରାଷ୍ଟ୍ର ସମ୍ପତ୍ତି ସାମ୍ୟବାଦୀ ବା କମ୍ୟୁନିଷ୍ଟ ସମ୍ପତ୍ତିରେ ପରିଣତ ହେବା ଦିଗରେ ପଥ ଉନ୍ମୁକ୍ତ ହେବ ।

# ସାମ୍ୟବାଦ ଓ ଶ୍ରମ

ଉତ୍ପାଦନ ଶକ୍ତିର ସ୍ତର ଓ ସମୃଦ୍ଧିର ରୂପ, ଶ୍ରମର ପ୍ରକୃତିକୁ ଓ ଉତ୍ପାଦନ ପ୍ରକ୍ରିୟା ଭିତରେ ଲୋକମାନଙ୍କର ସମ୍ପର୍କକୁ ନିର୍ଣ୍ଣୟ କରେ ।

ଉତ୍ପାଦନ ଶକ୍ତିଗୁଡ଼ିକ ସାମ୍ୟବାଦ ବା କମ୍ୟୁନିଜମ ଅମଳରେ ସମାଜବାଦ ଅପେକ୍ଷା ଅଧିକ ବିକାଶ ଲାଭ କରିବା ହେତୁରୁ ସାମ୍ୟବାଦୀ ଶ୍ରମ ମଧ୍ୟ ସମାଜବାଦୀ ସମାଜର ଶ୍ରମ ତୁଳନାରେ ମୌଳିକଭାବେ ପୃଥକ ହୋଇପଡ଼ିବ ।

କିନ୍ତୁ ଏହା ପୃଥକ ହେବ କେଉଁ ଭାବରେ ? ସାମ୍ୟବାଦ ବା କମ୍ୟୁନିଜମ ଅମଳରେ ମନୁଷ୍ୟ ସର୍ବତୋମୁଖୀ ବିକାଶ ଲାଭ କରିବ; ତା'ର ସମସ୍ତ ଶକ୍ତି, ସାମର୍ଥ୍ୟ ଓ ସହଜାତ ଗୁଣ ପୂର୍ଣ୍ଣଭାବେ ବିକଶିତ ହୋଇଉଠିବ, ତା'ର ଶ୍ରମ ଅଧିକ ମାତ୍ରାରେ ଉତ୍ପାଦନଶୀଳ ହେବ । ଲୋକମାନଙ୍କର ସାମାଜିକ ଚେତନା ବିଶେଷ ପରିମାଣରେ ବୃଦ୍ଧି ପାଇବ । ସେମାନେ ସମଗ୍ର ସମାଜ ସକାଶେ ସେଯର ସର୍ବାଧିକ ଭାବେ ଉପଯୋଗୀ ହୋଇପାରିବେ, ସେହି ଇଚ୍ଛା ଆକାଂକ୍ଷା ଦ୍ୱାରା ନିଜ ନିଜ କର୍ମରେ ପ୍ରଣୋଦିତ ହେବେ, ଶ୍ରମ ଗୋଟାଏ ଅଭ୍ୟାସରେ ପରିଣତ ହେବ: ପ୍ରତ୍ୟେକ ଲୋକ-ଜୀବନର ଏକ ପ୍ରଧାନ ପ୍ରୟୋଜନୀୟ ବିଷୟ ହେବ ।

ଲେନିନ୍ ଲେଖିଥିଲେ, "କଡ଼ାକଡ଼ି ସଂକୀର୍ଣ୍ଣ ଅର୍ଥରେ କହିବାକୁ ଗଲେ, କମ୍ୟୁନିଷ୍ଟ ବା ସାମ୍ୟବାଦୀ ଶ୍ରମ ହେଉଛି ସମାଜର ସୁଖ ସୁବିଧା ପାଇଁ ବିନା ମୂଲ୍ୟରେ କରାଯାଉଥିବା ଶ୍ରମ । ଏହି ଶ୍ରମ ଏକ ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ଭାବରେ କରାଯାଏ ନାହିଁ, କେବଳ ଉତ୍ପନ୍ନ ଦ୍ରବ୍ୟ ହାସଲ କରିବା ଉଦ୍ଦେଶ୍ୟରେ କରାଯାଏ ନାହିଁ, ପୂର୍ବରୁ ପ୍ରତିଷ୍ଠିତ ଓ ଆଇନ ନିର୍ଦ୍ଧାରିତ ରେଟ୍ ଅନୁଯାୟୀ କରାଯାଏ ନାହିଁ । ଏହା ହେଉଛି ସ୍ୱେଚ୍ଛାମୂଳକ ଶ୍ରମ, ଏ ଶ୍ରମ କରାଯାଏ କୌଣସି ପ୍ରାପ୍ୟ ବା ପୁରସ୍କାରର ଆଶା ରଖା ନ ଯାଇ, କୌଣସି ପ୍ରାପ୍ୟ ବା ପୁରସ୍କାରର ସର୍ତ୍ତ ବିନା—ଏ ଶ୍ରମ କରାଯାଏ ! ସର୍ବସାଧାରଣଙ୍କ ମଙ୍ଗଳ ଓ କଲ୍ୟାଣ ଲାଗି କାମ କରିବାର ଅଭ୍ୟାସ ଯୋଗୁଁ, ସର୍ବସାଧାରଣଙ୍କ ମଙ୍ଗଳ ଓ କଲ୍ୟାଣ ଲାଗି କାମ କରିବାର ଆବଶ୍ୟକତାର ସଚେତନ ଉପଲବ୍ଧି ( ଯାହାକି ଅଭ୍ୟାସରେ ପରିଣତ ହୁଏ ) ଯୋଗୁଁ—ଏକ ସ୍ୱାସ୍ଥ୍ୟବାନ ଶରୀର ଲାଗି ଏହା ପ୍ରୟୋଜନୀୟ ହେବା ଯୋଗୁଁ ।

ଶ୍ରମକୁ ଧୀରେ ଧୀରେ ଜୀବନର ପ୍ରଧାନ ପ୍ରୟୋଜନୀୟଭାବରେ ପରିଣତ କରିବା ଦିଗରେ ସମାଜବାଦ ପୂର୍ବାବସ୍ଥା ସୃଷ୍ଟି କରି ସାରିଥାଏ । କିନ୍ତୁ ଏହି ଲକ୍ଷ୍ୟ

ସ୍ଫୁରଣ ଲାଗି ନିଷ୍ପତ୍ତିମୂଳକ ପଦକ୍ଷେପ କମ୍ୟୁନିଜମ୍ ବା ସାମ୍ୟବାଦ ନିର୍ମାଣ କାଳରେ ହିଁ ନିଆଯିବ ।

ଉତ୍ପାଦନକୁ ସର୍ବତ୍ର ସ୍ୱୟଂକ୍ରିୟ ଓ ଯାନ୍ତ୍ରିକୀକୃତ କରିବା ସଙ୍ଗେ ଏବଂ ଶ୍ରମଜୀବୀ ଲୋକମାନଙ୍କର ସାଂସ୍କୃତିକ ଓ ଟେକ୍‌ନିକାଲ ପ୍ରଗତି ସଙ୍ଗେ ସୋଭିଏତ୍ ୟୁନିଅନ ଏକ ବ୍ୟାପକ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଛି । କମ୍ୟୁନିଜମ୍ ବା ସାମ୍ୟବାଦ ନିର୍ମାଣ କାଳରେ ପୂର୍ବତନ ଶ୍ରମ ବିଭାଗର ଅବଶେଷ, ମାନସିକ ଓ ଶାରୀରିକ ଶ୍ରମ ମଧ୍ୟରେ, ଶ୍ରମିକ ଓ କୃଷକଙ୍କର ଶ୍ରମ ମଧ୍ୟରେ, ଦକ୍ଷ ଓ ଅଦକ୍ଷ ଶ୍ରମ ମଧ୍ୟରେ ଥିବା ପାର୍ଥକ୍ୟ ସବୁ ଧୀରେ ଧୀରେ ଲୋପ ପାଇବାରେ ଲାଗିଛି । ଟେକ୍‌ନୋଲଜିକାଲ ପ୍ରଗତି ଓ ଶ୍ରମିକମାନଙ୍କର ସାଂସ୍କୃତିକ ଓ ଟେକ୍‌ନିକାଲ ଅଗ୍ରଗତି ଶ୍ରମର ଉତ୍ପାଦିକତାକୁ କ୍ରମାଗତ ଭାବେ ବୃଦ୍ଧି କରୁଛି । ଏହା ଦ୍ୱାରା ଶ୍ରମ ଦିବସ ପାଞ୍ଚ ବା ଚାରି ଘଣ୍ଟାକୁ କମାଇ ଦେବା ଓ ସମୟ କ୍ରମେ ତାକୁ ଆହୁରି ଅଧିକ କମ୍ କରିବା ସମ୍ଭବପର ହେବ । ଲୋକମାନେ ତାଙ୍କର ଅବସର ସମୟ ଆଳସ୍ୟରେ ଅତିବାହିତ କରିବେ ନାହିଁ । ତାହାକୁ ସେମାନେ ବିଜ୍ଞାନ, ଉଦ୍ଭାବନ, କଳା, ସାହିତ୍ୟ, ସଙ୍ଗୀତ ଓ କ୍ରୀଡ଼ା ଆଦିରେ ବିନିଯୋଗ କରିବେ ।

କମ୍ୟୁନିଜମ୍ ବା ସାମ୍ୟବାଦ ଅମଳରେ ଶ୍ରମ ହେବ ସ୍ୱାଧୀନ ସ୍ୱେଚ୍ଛାମୂଳକ । ଏହା ସମାଜର ସବୁ ସଭ୍ୟଙ୍କର ଏକ ଅଭ୍ୟାସରେ ପରିଣତ ହେବ । ପ୍ରତ୍ୟେକ ଲୋକ ସୃଜନଶୀଳ ପ୍ରଚେଷ୍ଟା ମଧ୍ୟରେ ସୁଖ, ଆନନ୍ଦ ଓ ସନ୍ତୋଷ ଲାଭ କରିବ ।

ପ୍ରଶ୍ନ କରାଯାଇ ପାରେ, ଏମିତି ଜଣ ଲୋକ ରହିବେ ନାହିଁ, ଯିଏ କି ସାମ୍ୟବାଦୀ ସମାଜରୁ ସମସ୍ତ ଜିନିଷପତ୍ର ପାଇବେ ଅଥଚ ତା ପରିବର୍ତ୍ତେ କିଛି ଦେବେ ନାହିଁ, ଅର୍ଥାତ୍ ତା ପରିବର୍ତ୍ତେ କୌଣସି ହେଲେ କୌଣସି କାମ କରିବେ ନାହିଁ ?

ଏପରି ଆଶଙ୍କା କରିବାର କାରଣ ନାହିଁ, ସାମ୍ୟବାଦ ଅମଳରେ ଲୋକଙ୍କୁ ବିହନ ବୁଣିବାକୁ କି ଫସଲ କାଟିବାକୁ ପଡ଼ିବ ନାହିଁ, କେବଳ ଖାଇବାକୁ ପିଇବାକୁ ମିଳୁଥିବ, ଏପରି ଧାରଣା କରିବା ଭୁଲ । କମ୍ୟୁନିଜମ୍ ବା ସାମ୍ୟବାଦ ଆଳସ୍ୟ ଓ ପରଶ୍ରମବିମୁଖତାର ଏକ ସମାଜ ନୁହେଁ । କମ୍ୟୁନିଜମ୍ ବା ସାମ୍ୟବାଦ ଅର୍ଥ ଶ୍ରମ, ଅବଶ୍ୟ । "ଯିଏ କାମ କରିବ ନାହିଁ, ସେ ଖାଇବ ନାହିଁ," ଏହି ମହାନ୍ ନ୍ୟାୟୋଚିତ ନୀତି, କମ୍ୟୁନିଜମ୍ ଅଧୀନରେ କାର୍ଯ୍ୟକାରୀ ହେବ ଓ ସମସ୍ତେ ଏହା ମାନି ଚଳିବେ ।

କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମାଜରେ ମନୁଷ୍ୟ କାମ କରିବାରୁ ବିରତ ହେବ ନାହିଁ କି ତାର ସମାଜିକ ଚେତନା ବା ସାଧାରଣ ମତାମତ, ତାକୁ କାମରୁ ଓହରି ଯିବାକୁ ବା ଅପସରି ଯିବାକୁ ଗ୍ରହଣ ହେବ ନାହିଁ ।

## ବଣ୍ଟନ କ୍ଷେତ୍ରରେ କମ୍ୟୁନିଷ୍ଟ ନୀତି

ଉତ୍ପାଦନ ଶକ୍ତି ବିକାଶ ଲାଭ କରିବା ସଙ୍ଗେ ସଙ୍ଗେ ଭୌତିକ ଓ ସାଂସ୍କୃତିକ ସୁଖ ସୁବିଧା ବଣ୍ଟନ କ୍ଷେତ୍ରରେ ସମାଜିକ ସମ୍ପର୍କର ମଧ୍ୟ ଉନ୍ନତି ଘଟିବ ।

ସମାଜବାଦ ଅଧୀନରେ ଲୋକେ ନିଜ ନିଜ କାମର ଗୁଣ ଓ ପରିମାଣ ଅନୁସାରେ ଭୌତିକ ଜିନିଷପତ୍ର ପାଇଥାନ୍ତି । ଅନ୍ୟ ଭାଷାରେ କହିଲେ, ସମାଜବାଦ ଅଧୀନରେ ସମାନ କାମ ଲାଗି ସମାନ ପ୍ରାପ୍ୟ ମିଳିବାର ନୀତି ବଳବତ୍ତର ରହେ । ଏହି ନ୍ୟାୟୋଚିତ ନୀତି ଶ୍ରମଜୀବୀ ଲୋକଙ୍କୁ ଏପରି ଅବସ୍ଥାରେ ରଖେ ଯେ, ସେଥିରେ ତାଙ୍କର ଭୌତିକ ସୁଖ ଓ ଉନ୍ନୟନ, ସେମାନଙ୍କର ନିଜର କର୍ମ-ଦକ୍ଷତା ଓ ପରିଶ୍ରମ ଉପରେ ନିର୍ଭର କରେ ।

ସମାଜବାଦୀ ବଣ୍ଟନ ନୀତିର ବିଶେଷ ତାତ୍ପର୍ଯ୍ୟ ହେଲା ଯେ, ତାହା ମନୁଷ୍ୟର ଶୋଷଣକୁ ଦୂର କରେ । ଜଣେ ଅନ୍ୟ ଜଣର ଶ୍ରମର ଫଳକୁ ଶୋଷଣ ଓ ଅପହରଣ କରି ପାରେ ନାହିଁ । କିନ୍ତୁ ଏହି ନୀତି ତଥାପି ଅର୍ଥନୈତିକ ଅସମତାକୁ ସମ୍ପୂର୍ଣ୍ଣ ଲୋପ କରି ଦିଏ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ, ସମାନ ଦକ୍ଷତାର ଦୁଇ ଜଣ ଶ୍ରମିକ ସମାନ ପରିମାଣରେ ଉତ୍ପନ୍ନ ଉତ୍ପାଦନ କରି ସମାନ ମଜୁରି ପାଆନ୍ତି । ସେମାନଙ୍କ ମଧ୍ୟରୁ ଜଣେ ହୁଏତ ବହୁ-କୁଟୁମ୍ବୀ, ତା' ଉପରେ ବହୁ ଲୋକ ନିର୍ଭର କରନ୍ତି । ଆଉ ଜଣଙ୍କର ହୁଏତ କେହି ନାହିଁ । ତେଣୁ ଦୁହେଁ ସମାଜକୁ ସମାନ ପରିମାଣ ଶ୍ରମ ଦାନ କଲେ ବି ଦୁହିଁଙ୍କର ଭୌତିକ ସ୍ତର ବା ଷ୍ଟାଣ୍ଡାର୍ଡ଼ ଯେ ସମାନ ହୁଏ ନାହିଁ ।

କମ୍ୟୁନିଜମ ବା ସାମ୍ୟବାଦ ଅଧୀନରେ ଭୌତିକ ସ୍ତର ବା ଷ୍ଟାଣ୍ଡାର୍ଡ଼ରେ ଅସମତା ଲୋପ ପାଇବ ।

"ପ୍ରତ୍ୟେକେ ଆପଣାର ସାମର୍ଥ୍ୟ ଅନୁସାରେ ଦେବେ, ପ୍ରତ୍ୟେକେ ଆପଣାର ଆବଶ୍ୟକତା ଅନୁସାରେ ପାଇବେ," କମ୍ୟୁନିଷ୍ଟ ବା ସାମ୍ୟବାଦୀ ବଣ୍ଟନର ଏହି ସର୍ବୋଚ୍ଚ ନୀତି କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମାଜରେ ପ୍ରଚଳିତ ହେବ ।

କିନ୍ତୁ କିପରି ଓ କେବେ, ବଣ୍ଟନର ଏହି କମ୍ୟୁନିଷ୍ଟ ନୀତିକୁ ଗ୍ରହଣ କରିବା ସମ୍ଭବପର ହେବ ? ପ୍ରତ୍ୟେକ ଲୋକ ଚାହିଁବେ ଯେ, ଯେତେ ଶୀଘ୍ର ହୋଇ ପାରେ ସେତେ ଶୀଘ୍ର ଏହି ନୀତି କାର୍ଯ୍ୟକାରୀ ହେଉ, କିନ୍ତୁ ଏହି କାମନା ତ ଯଥେଷ୍ଟ ହେବ ନାହିଁ । ସେଥିଲାଗି ଯଥାର୍ଥ ଉପଯୁକ୍ତ ବସ୍ତୁଗତ ଅବସ୍ଥା ଆବଶ୍ୟକ ହେବ ।

ସମାଜ ତରତର ହେବା ଉଚିତ ନୁହେଁ । ସମୟ ଆସିବା ପୂର୍ବରୁ, ଆଗେଇ ଯିବା ଅବସ୍ଥା ପରିପକ୍ୱ ହେବା ଆଗରୁ କମ୍ୟୁନିଷ୍ଟ ବଣ୍ଟନ ନୀତି ପ୍ରବର୍ତ୍ତନ କରି ବସିବା ଉଚିତ ନୁହେଁ । ଆବଶ୍ୟକତା ଅନୁଯାୟୀ ବଣ୍ଟନର ନୀତି ପ୍ରବର୍ତ୍ତନ କରିବାକୁ ହେଲେ ସର୍ବ ପ୍ରଥମେ ଭୌତିକ ସୁଖ ସୁବିଧା ଓ ଆବଶ୍ୟକତା ପୂରଣ କରି ଭଳି ପ୍ରାଚୁର୍ଯ୍ୟ ସୃଷ୍ଟି କରିବାକୁ ହେବ । ଆଉ ମଧ୍ୟ, ଗୁରୁତ୍ୱପୂର୍ଣ୍ଣ ହେଉଛି, ଲୋକଙ୍କର ସାଂସ୍କୃତିକ ସାମାଜିକ ଚେତନାର ଏଭଳି ବିକାଶ ଘଟାଇବାକୁ ହେବ, ତାହାକୁ ଏଭଳି ସ୍ତରକୁ ଘେନି ଯିବାକୁ ହେବ ଯେ, ସମାଜର ପ୍ରତ୍ୟେକ ସଭ୍ୟ ନିଜର ପୂର୍ଣ୍ଣ ଶକ୍ତି ସାମର୍ଥ୍ୟ ଦେଇ କାମ କରି ପାରିବ ଓ ନିଜର ପ୍ରୟୋଜନୀୟତାର ଯଥାର୍ଥ ତୁଷ୍ଟି ପରିପୂରଣ ଲାଗି ପ୍ରକୃତରେ ଯାହା ଆବଶ୍ୟକ, ତାହାହିଁ ସମାଜରୁ ଗ୍ରହଣ କରିବ ।

କମ୍ୟୁନିଜମ୍ ବା ସାମ୍ୟବାଦର ଭୌତିକ ଓ ଟେକନିକାଲ ଭିତ୍ତି ଗଠିତ ହେବା ସଙ୍ଗେ ସଙ୍ଗେ ସୋଭିଏତ୍ ୟୁନିଅନ ପୃଥିବୀରେ ସବୁଠାରୁ ଶକ୍ତିଶାଳୀ ଉତ୍ପାଦନ ଶକ୍ତି ଲାଭ କରିବ । ତାହା ଦ୍ୱାରା ଲୋକମାନଙ୍କୁ ଯେକୌଣସି ପୁଞ୍ଜିବାଦୀ ଦେଶ ତୁଳନାରେ ଉଚ୍ଚତର ଜୀବନଧାରଣର ମାନ ଯୋଗାଇ ଦେବାରେ ସମର୍ଥ ହେବ, ଖାଦ୍ୟ, ବସ୍ତ୍ର ଓ ବାସଗୃହ ଆଦି କ୍ଷେତ୍ରରେ ଲୋକମାନଙ୍କର ଆବଶ୍ୟକତାକୁ ସମ୍ପୂର୍ଣ୍ଣ ଭାବେ ପୂରଣ କରିବ । ଏହା ଫଳରେ କମ୍ୟୁନିଷ୍ଟ ବା ସାମ୍ୟବାଦୀ ବଣ୍ଟନ ବ୍ୟବସ୍ଥାକୁ ପରିଗମନ କରିବାପାଇଁ ଭୌତିକ ପୂର୍ବାବସ୍ଥା ସୃଷ୍ଟି ହେବ ।

ଆବଶ୍ୟକତା ଅନୁସାରେ ବଣ୍ଟନ, ଏହି ସ୍ତରକୁ ଯିବା ଦିଗରେ ଅବସ୍ଥା ସୃଷ୍ଟି କରିବା ପାଇଁ କାମ ଅନୁସାରେ ବଣ୍ଟନର ନୀତିକୁ ଅଧିକ ଉନ୍ନତ ଓ ବିକଶିତ କରିବା ଦରକାର ଏବଂ ଭୌତିକ ଉତ୍ପାଦ ସୃଷ୍ଟି ସଂକ୍ରାନ୍ତ ଲେନିନ୍‌ବାଦୀ ନୀତିକୁ ଠିକ୍ ଠିକ୍ ପାଳନ କରିବା ଉଚିତ ।

ଯଦି ସମାଜ ଏହି ନୀତିରୁ ବିଚ୍ୟୁତ ହୁଏ ଓ ଜୀବନଧାରଣରେ ପ୍ରୟୋଜନୀୟ ବସ୍ତୁ ସମସ୍ତଙ୍କୁ ସମାନ ଭାବରେ ବଣ୍ଟନ କରେ, ତେବେ ତାହା ଦକ୍ଷତାକୁ ଉନ୍ନତ କରିବାରେ ଓ ଉତ୍ପନ୍ନକୁ ବୃଦ୍ଧି କରିବାରେ ଶ୍ରମିକର ସମସ୍ତ ଆଗ୍ରହକୁ ନଷ୍ଟ କରିଦେବ । ସମସ୍ତଙ୍କୁ ସମାନ କରିବାକୁ ଯିବା ଦ୍ୱାରା ସେମାନେ କିଛି କରିବାକୁ ଚାହାନ୍ତି ନାହିଁ–

ଅଥଚ ନିଷ୍ଠାର ସହ କାମ କରୁଥିବା ଲୋକଙ୍କ ସହିତ ସମାନ ଭାବରେ ସମସ୍ତ ଭଲ ଜିନିଷ ପାଇବାକୁ ବସନ୍ତି, ସମାଜ ସେହି ଅଳସୁଆ ଲୋକଙ୍କ ହାତ ମୁଠାରେ ପଶିବ ।

ଭୌତିକ ଆଗ୍ରହ ସୃଷ୍ଟି କରିବାର ଲେନିନ୍‌ବାଦୀ ନୀତିକୁ ପ୍ରୟୋଗ କରିବା ଦ୍ୱାରା ହିଁ ସମାଜ ଶ୍ରମିକମାନଙ୍କ ଦକ୍ଷତାକୁ କ୍ରମାଗତ ଭାବେ ବୃଦ୍ଧି କରିପାରେ, ସେମାନଙ୍କର ଉତ୍ପାଦନ କୋଟାର ପୂରଣ ବା ଅଧିକ ପୂରଣ ଆଣିପାରେ ଏବଂ ବିଜ୍ଞାନ ଓ ଟେକ୍‌ନୋଲୋଜି କ୍ଷେତ୍ରରେ ଅଗ୍ରଗତି ହାସଲ କରିପାରେ ।

ଏହି ଭୌତିକ ଆଗ୍ରହ ସୃଷ୍ଟି ବ୍ୟବସ୍ଥାର ଆବଶ୍ୟକତାକୁ ଏଡ଼ିଦେବା ଅର୍ଥ, ଜୀବନର ପ୍ରତ୍ୟେକ ଜଟିଳତାକୁ ବିଚାରକୁ ନ ନେବା ଏବଂ କମ୍ୟୁନିଷ୍ଟ ନିର୍ମାଣର ସମଗ୍ର ଆଦର୍ଶକୁ ପଣ୍ଡ କରିଦେବା ।

“ଆବଶ୍ୟକତା ଅନୁଯାୟୀ ବଣ୍ଟନ”, ଏହି ସାମ୍ୟବାଦୀ ବା କମ୍ୟୁନିଷ୍ଟ ନୀତିକୁ ଯିବା ଲାଗି “କାମ ଅନୁଯାୟୀ ବଣ୍ଟନ” ଏହି ସମାଜବାଦୀ ନୀତି ସମସ୍ତ ପୂର୍ବାବସ୍ଥା ସୃଷ୍ଟି କରିବାରେ ସାହାଯ୍ୟ କରେ । ଏହା ଶ୍ରମର ଉତ୍ପାଦକତା ଓ ସମାଜର ସମ୍ପଦ-ବୃଦ୍ଧିକୁ ଉଦ୍ଦୀପିତ କରେ, ଶ୍ରମିକମାନଙ୍କୁ ସାଂସ୍କୃତିକ ଓ ଟେକ୍‌ନିକ କ୍ଷେତ୍ରରେ ଅଗ୍ରଗତି କରିବା ଲାଗି ବାଧ୍ୟ କରେ । କାମ ଅନୁଯାୟୀ ବଣ୍ଟନ, ସମାଜର ସମସ୍ତ ସଭ୍ୟଙ୍କ ମଧ୍ୟରେ ସେମାନଙ୍କର ସାମର୍ଥ୍ୟ ଅନୁସାରେ କାମ କରିବାର ଅଭ୍ୟାସକୁ ଉଦ୍ରେକ କରେ ।

ଅନ୍ୟ କଥାରେ କହିଲେ, ଆମେ ସମସ୍ୟାର ଯେକୌଣସି ଦିଗ ନେଉ ପଛେ, ତାର କେବଳ ଗୋଟିଏ ମାତ୍ର ସମାଧାନ ରହିଛି । ତାହା ହେଉଛି—ଯଦି ସମାଜ, କାମ ଅନୁସାରେ ବଣ୍ଟନର ସମାଜବାଦୀ ନୀତି ଦୃଢ଼ଭାବରେ ପ୍ରୟୋଗ କରେ, ତେବେ ଯାଇ ବଣ୍ଟନର ସାମ୍ୟବାଦୀ ବା କମ୍ୟୁନିଷ୍ଟ ନୀତି ଦିଗକୁ ପରିଗମନ କରିବା ସମ୍ଭବପର ହେବ ।

କାମର ଗୁଣ ଓ ପରିମାଣକୁ ବିଚାର କରି ନ ଯାଇ, ଅବାଧରେ ବିନାମୂଲ୍ୟରେ ସର୍ବସାଧାରଣ ଉପଭୋଗ ପାଣ୍ଠି ଜରିଆରେ ଭୌତିକ ଓ ଆତ୍ମିକ ସୁଖ ସୁବିଧାର ବଣ୍ଟନ ସୋଭିଏତ ୟୁନିୟନରେ ସଦାସର୍ବଦା ଅଧିକରୁ ଅଧିକ ଗୁରୁତ୍ୱ ଲାଭ କରୁଛି । ଶିଶୁସଦନ ଓ ଶିଶୁମାନଙ୍କର ରକ୍ଷଣାବେକ୍ଷଣ, ଶିକ୍ଷା ସ୍ୱାସ୍ଥ୍ୟର ସୁବିଧା, ଭତ୍ତା ପେନସନ ଓ ଛାତ୍ରବୃତ୍ତି ପ୍ରଭୃତି ଏଥିର ଅନ୍ତର୍ଗତ ।

ଏବେ ସୋଭିଏତ ଇଉନିୟନର ସବୁ ଲୋକେ ସମାଜର ବ୍ୟୟରେ, ବିନାମୂଲ୍ୟରେ ବା ଅତି କମ ଦେୟରେ ଭୌତିକ ଓ ସାଂସ୍କୃତିକ ସୁଖ ସୁବିଧା ଉପଭୋଗ

କରୁଛନ୍ତି । ୨୪୦ ଲକ୍ଷରୁ ଅଧିକ ଲୋକ ରାଷ୍ଟ୍ର, କୋଠାଘର ଫାର୍ମ ଓ ଗଣ ସଙ୍ଗଠନମାନଙ୍କରୁ ପେନସନ ବା ଭତ୍ତା ପାଉଛନ୍ତି । ୩୭୦ ଲକ୍ଷ ଛାତ୍ର ସ୍କୁଲମାନଙ୍କରେ ମାଗଣାରେ ଅଧ୍ୟୟନ କରୁଛନ୍ତି । ଉଚ୍ଚ ଶିକ୍ଷାନୁଷ୍ଠାନ, ବିଶ୍ୱବିଦ୍ୟାଳୟ ଓ ଉଚ୍ଚ ମାଧ୍ୟମିକ ଅନୁଷ୍ଠାନମାନଙ୍କରେ ବିଶେଷ ଶିକ୍ଷା ଲାଭ କରୁଥିବା ୫୫ ଲକ୍ଷ ଛାତ୍ର ରାଷ୍ଟ୍ରରୁ ବୃତ୍ତି ପାଉଛନ୍ତି । ହଷ୍ଟେଲମାନଙ୍କରେ ସେମାନଙ୍କ ଲାଗି ବସବାସର ବ୍ୟବସ୍ଥା ଯୋଗାଇ ଦିଆଯାଇଛି । ୧୦୦ ଲକ୍ଷରୁ ଊର୍ଦ୍ଧ୍ୱ ସଂଖ୍ୟକ ଶିଶୁଙ୍କୁ ଶିଶୁ ଭବନ, କିଣ୍ଡରଗାର୍ଟେନ, ଶିଶୁ ସଦନ ଆଦିରେ ଲାଳନ କରାଯାଉଛି । ୧୨୦ ଲକ୍ଷରୁ ଊର୍ଦ୍ଧ୍ୱ ସଂଖ୍ୟକ ଅଫିସ ଓ କଳକାରଖାନାର ଶ୍ରମିକ ଓ କୋଠଘର ଫାର୍ମର ଚାଷୀ ନିଜ ନିଜର ପିଲାମାନଙ୍କ ସହିତ ପ୍ରତିବର୍ଷ ରାଷ୍ଟ୍ର ସ୍ୱାସ୍ଥ୍ୟ ନିବାସ ବା ସାନାଟୋରିୟମ୍‌ରେ କି ବିଶ୍ରାମ ଭବନ, ଗ୍ରୀଷ୍ମ ଶିବିର ପ୍ରଭୃତିରେ ସାମାଜିକ ବୀମା ଫଣ୍ଡ ଓ କୋଠଘର ଫାର୍ମମାନଙ୍କ ଖର୍ଚ୍ଚରେ ଛୁଟିଦିନ ସବୁ କଟାଇ ପାରୁଛନ୍ତି । ବଡ଼ ବଡ଼ ପରିବାରରେ ଥିବା ଓ ଏକାକିନୀ ରହୁଥିବା ପ୍ରାୟ ୭୦ ଲକ୍ଷ ମାଆ ରାଷ୍ଟ୍ର ଭତ୍ତା ପାଉଛନ୍ତି ।

ଭବିଷ୍ୟତରେ ଏହି ସର୍ବସାଧାରଣ ପାଣ୍ଠିର ସ୍ଥାନ ଆହୁରି ଅଧିକ ବୃଦ୍ଧି ପାଇବ । ୧୯୮୦ରେ ଏହି ସର୍ବସାଧାରଣ ପାଣ୍ଠି ଲୋକମାନଙ୍କ ଆୟର ପ୍ରାୟ ଅଧାଅଧି ହୋଇଯିବ । ଭବିଷ୍ୟତରେ ସର୍ବସାଧାରଣ ପାଣ୍ଠି ବ୍ୟାପକ ଭାବେ ପ୍ରଚଳିତ ହେବ, ପ୍ରଭାବ ବିସ୍ତାର କରିବ ଏବଂ ପରେ ଭୌତିକ ଓ ସାଂସ୍କୃତିକ ସୁଖ ସୁବିଧା ବଣ୍ଟନର ଏକମାତ୍ର ଆଧାର ହେବ ।

କମ୍ୟୁନିଜମ ବା ସାମ୍ୟବାଦ ଅଧୀନରେ ଯଦିଓ ଏହି ସର୍ବସାଧାରଣ ପାଣ୍ଠି ବଣ୍ଟନର ଏକମାତ୍ର ଆଧାର ସ୍ଥଳ ହେବ, ତଥାପି ନିଜସ୍ୱ ସମ୍ପତ୍ତି ସ୍ୱାଭାବିକ ଭାବେ ଲୋପ ପାଇବ ନାହିଁ । ଲୁଗା, ଜାମା, ଜୋତା ଓ ଅନ୍ୟାନ୍ୟ ଜିନିଷ ଲୋକଙ୍କର ନିଜ ମାଲିକତ୍ୱରେ ରହିବ । କିନ୍ତୁ ସମାଜର ପ୍ରତ୍ୟେକ ସଭ୍ୟ ଏହିସବୁ ପଦାର୍ଥ ନିଜର ଆବଶ୍ୟକତା ଅନୁସାରେ ବିନା ମୂଲ୍ୟରେ ବା ମାଗଣାରେ ସର୍ବସାଧାରଣ ପାଣ୍ଠିରୁ ପାଇବେ ।

## ସାମାଜିକ ପାର୍ଥକ୍ୟ ଲୋପ ହେବ

କମ୍ୟୁନିଜମ ବା ସାମ୍ୟବାଦ ହେଉଛି, ଶ୍ରେଣୀହୀନ ସମାଜ । ସମାଜବାଦୀ ସମାଜ ହେଉଛି—ପୁଞ୍ଜିପତି, ଜମିମାଲିକ, ବଣିକ, ବେପାରି ଓ ଧନୀ ଚାଷୀ ଆଦି ଶୋଷକ ଶ୍ରେଣୀମାନଙ୍କ କବଳରୁ ମୁକ୍ତ ହୋଇଥିବା ସମାଜ । ଏଥିରେ ମନୁଷ୍ୟ ଦ୍ୱାରା ମନୁଷ୍ୟର ଶୋଷଣ ଆଉ ନାହିଁ । ଏହା ଜାତୀୟ ଅତ୍ୟାଚାର କଣ ଜାଣେ ନାହିଁ । ଏହି

ସମାଜବାଦୀ ସମାଜରେ ଲୋକ ଲୋକ ମଝରେ ସମ୍ପର୍କଗୁଡ଼ିକ ପରସ୍ପର ସାହାଯ୍ୟ ଓ ବନ୍ଧୁତ୍ୱପୂର୍ଣ୍ଣ ସହଯୋଗ ଉପରେ ପ୍ରତିଷ୍ଠିତ ରହେ ।

ସମାଜବାଦୀ ସମାଜରେ ଦୁଇଟି ମିତ୍ର ଓ ବନ୍ଧୁଭାବାପନ୍ନ ଶ୍ରେଣୀ ଥାଏ—ଶ୍ରମିକ ଶ୍ରେଣୀ, କୋଠଖିଆ ଫାର୍ମର କୃଷକଶ୍ରେଣୀ । ବୁଦ୍ଧିଜୀବୀମାନେ ଏମାନଙ୍କ ସହିତ ଘନିଷ୍ଠ ଭାବେ ବନ୍ଧା । ଅତୀତର ସମସ୍ତ ଇତିହାସରେ କେବେ କେଉଁଠି ଜଣା ନ ଥିବା ଏକାବେଳକେ ଏକ ନୂତନ ସମ୍ପର୍କ ଏହି ଶ୍ରମିକ ଶ୍ରେଣୀ, କୃଷକ ଶ୍ରେଣୀ ଓ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ପ୍ରତିଷ୍ଠିତ ହୋଇଛି । ଏମାନେ ଦୃଢ଼ ଭାବେ ସଂଯୁକ୍ତ ସ୍ୱାଧୀନ ସେହି ଲୋକଙ୍କର ପ୍ରତିନିଧିତ୍ୱ କରନ୍ତି, ଯେଉଁ ଲୋକେ ମିଳିତ ଭାବେ ବ୍ୟାପୃତ ରହିଛନ୍ତି ସାମ୍ୟବାଦ ନିର୍ମାଣରେ ।

ଶ୍ରମିକଶ୍ରେଣୀ ଓ କୃଷକମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟ, ସୋଭିଏତ ଇଉନିଅନରେ ମୁଖ୍ୟତଃ ଦୂର ହୋଇଗଲାଣି । କିନ୍ତୁ କେତେକ ପାର୍ଥକ୍ୟ ମୁଖ୍ୟ ବା ମୌଳିକ ନ ହେଲେ ବି ରହିଛି । ସମାଜବାଦୀ ସମ୍ପତ୍ତିର ଦୁଇ ପ୍ରକାରର ରୂପ ଦ୍ୱାରା ତାହା ସର୍ବୋପରି ନିର୍ଦ୍ଧାରିତ ହେଉଛି । ଶ୍ରମିକମାନେ ଯେଉଁ ଶିଳ୍ପ ପ୍ରତିଷ୍ଠାନରେ କାମ କରୁଛନ୍ତି, ତାହା ପୂରାପୂରି ସମଗ୍ର ଲୋକଙ୍କର ସମ୍ପତ୍ତି । ଅପର ପକ୍ଷରେ କୋଠଖିଆମାନେ ଯେଉଁ ଫାର୍ମମାନଙ୍କରେ କାମ କରୁଛନ୍ତି, ତାହା ଶ୍ରମଜୀବୀ ଲୋକଙ୍କର ଗୋଷ୍ଠୀଏ ଚୋଷ୍ଠୀର । ଶ୍ରମିକ ଓ କୃଷକମାନଙ୍କ ମଧ୍ୟରେ ଶ୍ରମର ପାଣିଶ୍ରମିକ ପଦ୍ଧତିରେ ପାର୍ଥକ୍ୟ ରହିଛି । ଏହି ସବୁ ଶ୍ରେଣୀ ଓ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ, ଅର୍ଥାତ୍ ହାତରେ କାମ କରୁଥିବା ଓ ମସ୍ତିଷ୍କ ଦ୍ୱାରା କାମ କରୁଥିବା ଶ୍ରମିକମାନଙ୍କ ଭିତରୁ ପାର୍ଥକ୍ୟ ଲୋପ ପାଇ ନାହିଁ ।

ସୋଭିଏତ ଇଉନିଅନ, ତାର ବିକାଶର ଏପରି ଏକ ପର୍ଯ୍ୟାୟରେ ଏବେ ଉପନୀତ ହୋଇଛି ଯେ, ତାହା ପ୍ରତ୍ୟକ୍ଷ ଭାବେ ସମସ୍ତ ସାମାଜିକ ପାର୍ଥକ୍ୟ ଲୋପ କରିବାର ସମସ୍ୟା ସମାଧାନ କରୁଛି । ଏକ ଶ୍ରେଣୀହୀନ କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମାଜ ଗଠନ କରିବାରେ ଲାଗିଛି ।

ସମାଜବାଦୀ ସମ୍ପତ୍ତିର ଉପରୋକ୍ତ ଦୁଇଟିଯାକ ରୂପ ପରସ୍ପର ଅତି ନିକଟ-ବର୍ତ୍ତୀ ହେବା ଓ ପରେ ଏକତ୍ର ମିଶିଯିବା ଫଳରେ ଶ୍ରମିକଶ୍ରେଣୀ ଓ କୃଷକମାନଙ୍କ ମଧ୍ୟରେ ରହିଥିବା ପାର୍ଥକ୍ୟ ପୂରାପୂରି ଲୋପ ହେବାର ଭିତ୍ତି ନିର୍ମିତ ହେବ । ନିୟମବଦ୍ଧ ଭାବେ ଶ୍ରମିକ ଓ କୋଠଖିଆମାନଙ୍କର ସାଂସ୍କୃତିକ ଓ ଟେକ୍‌ନିକାଲ ଅଗ୍ରଗତି ହିଁ ଶ୍ରମିକ, କୃଷକ ଓ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟକୁ ଲୋପ

'ପାଇବା ବାଟକୁ ଦେଖାଇବ । ସେ ଉନ୍ନତ ସମାଜ ଧରଣର ଅଧିକରୁ ଅଧିକ ସାମାଜିକ ସମରୂପ ବା ସମନ୍ୱୀକୃତ ଲାଭ କରୁଛି ଏବଂ ଏହି ପ୍ରକ୍ରିୟା କମ୍ୟୁନିଜମ ବା ସାମ୍ୟବାଦ ଅଧୀନରେ ପୂର୍ଣ୍ଣାଙ୍ଗ ହେବ । ସେତେବେଳେ, ଲେନିନ କହିଲେ ଭଳି, କେବଳ ଉତ୍ପାଦନକାରୀ ଶ୍ରମଜୀବୀ ଲୋକମାନେ ରହିବେ, ସେମାନଙ୍କ ମଧ୍ୟରେ କୌଣସି ପ୍ରକାରର ସାମାଜିକ ପାର୍ଥକ୍ୟ ରହିବ ନାହିଁ ।

ଲେନିନ କହିଥିଲେ—ଶ୍ରେଣୀସବୁ ଲୋପ କରିବାକୁ ହେଲେ ଜମିମାଲିକ, ପୁଞ୍ଜିପତି ଓ ଅନ୍ୟାନ୍ୟ ଶୋଷକଙ୍କୁ କେବଳ ଦୂରୀଭୂତ କରିବା ଆବଶ୍ୟକ ନୁହେଁ, ସହର ଓ ମଫସଲ ମଧ୍ୟରେ, ମାନସିକ ଓ ଶାରୀରିକ ଶ୍ରମ ମଧ୍ୟରେ ଥିବା ଦ୍ୱନ୍ଦ୍ୱ, ବିରୋଧ ବା ପ୍ରତ୍ୟନ୍ଦ୍ୱକୁ ମଧ୍ୟ ଲୋପ କରିବାକୁ ହେବ । ପୁଞ୍ଜିବାଦୀ ସମାଜରେ ଥିବା ସାମାଜିକ ଅସାମ୍ୟର ପୂନସ୍ଥିର ପ୍ରକାଶ ଭିତରେ ଏହି ବିରୋଧ ବା ପ୍ରତ୍ୟନ୍ଦ୍ୱ ହେଉଛି ଅନ୍ୟତମ ।

ସହର ଓ ମଫସଲ ମଧ୍ୟରେ ଥିବା ପୂର୍ବର ଅଚଳ ଚଡ୍ଡାକୁ ସମାଜବାଦ ଭରପୂର କରି ଦେଇଛି । ସେଗୁଡ଼ିକ ମଧ୍ୟରେ ତଥାପି ରହିଯାଇଥିବା ଅବଶିଷ୍ଟ ବିଶେଷ ପାର୍ଥକ୍ୟସବୁ ଧୀରେ ଧୀରେ ଦୂର ହେବାରେ ଲାଗିଛି । କୃଷିକ୍ଷେତ୍ରରେ ଯନ୍ତ୍ରପାତି ପ୍ରଚଳନର ଓ ରସାୟନ ପ୍ରୟୋଗର ଖୁବ ଜୋରରେ ବୃଦ୍ଧି ପାଉଛି । ତାହା କୃଷି-ଶ୍ରମର ପ୍ରକୃତିକୁ ବଦଳାଇ ଦେଉଛି ଓ ତାକୁ ବିଭିନ୍ନ ପ୍ରକାରର ଶିଳ୍ପ-ଶ୍ରମରେ ପରିବର୍ତ୍ତିତ କରୁଛି । ବିଦ୍ୟୁତୀକରଣ, ଯାହାକି ଉତ୍ପନ୍ନକୁ ବଢ଼ାଏ ଆଉ ଲୋକଙ୍କ ଜୀବନକୁ ଉନ୍ନତ କରେ ତାହା, ସହର ଓ ମଫସଲକୁ ପରସ୍ପରର ନିକଟବର୍ତ୍ତୀ କରିବାରେ ଏକ ବିରାଟ ଭୂମିକା ଗ୍ରହଣ କରୁଛି । ରେଡ଼ିଓ ଓ ଟେଲିଭିଜନ ସମେତ ଗଣ-ପ୍ରଚାର ପନ୍ଥାଗୁଡ଼ିକ ସହର ଓ ମଫସଲ ଅଧିବାସୀଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ସାଂସ୍କୃତିକ କାର୍ଯ୍ୟକ୍ରମରେ ପାର୍ଥକ୍ୟକୁ ଦୂର କରୁଛି । ଆଧୁନିକ ଯାତାୟତ, ଯୋଗାଯୋଗ ବ୍ୟବସ୍ଥା ଲୋକମାନଙ୍କ ମଧ୍ୟରୁ ଦୂରତ୍ୱକୁ କମାଇ ଦେଇ ଯୋଗାଯୋଗ ସଂପର୍କକୁ ବୃଦ୍ଧି କରୁଛି ।

ସୋଭିଏତ୍ କୃଷକର ଆକୃତିପ୍ରକୃତି ସମଗ୍ରଭାବରେ ଧୀରେ ଧୀରେ ବଦଳି ଯାଉଛି । ୧୯୧୩ରେ ରୁଷରେ ଉଚ୍ଚ ବା ବିଶେଷ ମାଧ୍ୟମିକ ଶିକ୍ଷା ଲାଭ କରିଥିବା ଲୋକଙ୍କ ସଂଖ୍ୟା ଥିଲା ପ୍ରାୟ ୨,୯୦,୦୦୦ । ସେମାନଙ୍କ ମଧ୍ୟରୁ ଅତି ଅଳ୍ପ ସଂଖ୍ୟକ ଥିଲେ ଗ୍ରାମାଞ୍ଚଳର ପ୍ରାଇମେରି ଶିକ୍ଷକ ବା ଧର୍ମଯାଜକ । ଏବେ ଉଚ୍ଚଶିକ୍ଷା ଲାଭ କରିଥିବା ୭,୦୦,୦୦୦ରୁ ଊର୍ଦ୍ଧ୍ୱ ସଂଖ୍ୟକ ଲୋକ ସୋଭିଏତର ଗ୍ରାମାଞ୍ଚଳମାନଙ୍କରେ ଅଛନ୍ତି । ସେଠାରେ ଲକ୍ଷ ଲକ୍ଷ ଲୋକ ନୂଆ ନୂଆ ଧନ୍ଦା ଶିକ୍ଷା କରି ଟ୍ରାକ୍ଟର ଡ୍ରାଇଭର, କମ୍ବାଇନ୍ ଚାଳକ, ଇଞ୍ଜିନିୟର ଓ ଇଲେକ୍ଟ୍ରିକ୍ ମିସ୍ତ୍ରୀ ଆଦି ହେଲେଣି ।



ଏଇ ଯେଉଁ ଲୋକଟି ଦଣ୍ଡାୟମାନ ହୋଇ ଲମ୍ବା ଏକ ବୃହଦାକାର
ଇଞ୍ଜିନ୍ ମେସିନ୍‌କୁ ନିୟନ୍ତ୍ରଣ କରୁଛି, ତାକୁ ଜଣେ ଶ୍ରମିକ
ବୋଲି କହିବା କଠିନ, କାରଣ କାମ ବେଳେ ସେ
ବେଶୀ ସମୟ ମାନସିକ ଶ୍ରମରେ
ନିଯୁକ୍ତ ଥାଏ ।

ଟେକ୍‌ନିକାଲ୍ ଜ୍ଞାନର ସ୍ତରରେ ସୋଭିଏତ୍ କୃଷକମାନେ କଳ କାରଖାନା ଶ୍ରମିକଙ୍କ ପାଖକୁ ଲାଗି ଆସିଲେଣି ।

ମାନସିକ ଓ ଶାରୀରିକ ଶ୍ରମ ମଧ୍ୟରେ ଯେଉଁ ଆକାଶ ପାତାଳ ପ୍ରଭେଦ ଥିଲା ଓ ଯାହା ପୁଞ୍ଜିବାଦୀ ଦେଶମାନଙ୍କରେ ସଦାସର୍ବଦା ଲାଗିରହିଛି, ସମାଜବାଦ ତାକୁ ଲୋପ କରି ଦେଲାଣି । ଶ୍ରମିକ ଓ କୋଠକୃଷୀମାନଙ୍କ ମଧ୍ୟରୁ ସୋଭିଏତ୍ ବୁଦ୍ଧିଜୀବୀ ସବୁ ଜନ୍ମ ଲାଭ କରୁଛନ୍ତି ଓ ଲୋକଙ୍କ ସେବାରେ ଆତ୍ମନିୟୋଗ କରୁଛନ୍ତି ।

ସମାଜବାଦ, ମାନସିକ ଓ ଶାରୀରିକ ଶ୍ରମିକମାନଙ୍କ ମଧ୍ୟରେ ରହିଥିବା ପୂର୍ବର ବିଦ୍ୱେଷ ବା ଶତ୍ରୁତାକୁ ଲୋପ କରି ଦେଇଛି । ସୋଭିଏତ୍ ବ୍ୟବସ୍ଥା ଜନସାଧାରଣଙ୍କୁ ଅଜ୍ଞାନ ଅନ୍ଧକାର ଭିତରୁ ଟାଣି ଆଣିଛି ଏବଂ ସମସ୍ତ ସାଂସ୍କୃତିକ ସଂପଦକୁ ଲୋକମାନଙ୍କ ହାତରେ ଅର୍ପଣ କରିଛି ।

କିନ୍ତୁ ସମାଜବାଦୀ ଅବସ୍ଥାରେ ମଧ୍ୟ ମାନସିକ ଓ ଶାରୀରିକ ଶ୍ରମିକମାନଙ୍କ ଭିତରେ ଏକ ବିଶେଷ ପାର୍ଥକ୍ୟ ଥାଏ । ଶ୍ରମିକ ଓ କୋଠକୃଷୀମାନଙ୍କ ମଧ୍ୟରୁ ଏକ ବିରାଟ ଅଂଶ ଶାରୀରିକ ପରିଶ୍ରମରେ ଲିପ୍ତ ରହନ୍ତି, କିନ୍ତୁ ଅନ୍ୟ ଦିଗରେ ବୈଜ୍ଞାନିକ, ଇଞ୍ଜିନିୟର, ଟେକନିସିଆନ, କୃଷି ବିଶାରଦ ଓ ଅନ୍ୟ ବୁଦ୍ଧିଜୀବୀମାନେ ଉତ୍ପାଦନ ସଂଗଠନ, ପରିଚାଳନା ଏବଂ ବିଜ୍ଞାନ, ସଂସ୍କୃତି ଆଦିର ବିକାଶରେ ଲାଗିଥାନ୍ତି । ଶାରୀରିକ ଶ୍ରମରେ ନିଯୁକ୍ତ ଥିବା ଅଧିକାଂଶ ଲୋକଙ୍କର ସାଂସ୍କୃତିକ ସ୍ତର ମାନସିକ ଶ୍ରମରେ ନିଯୁକ୍ତ ଥିବା ଲୋକଙ୍କର ସାଂସ୍କୃତିକ ସ୍ତର ତୁଳନାରେ ନ୍ୟୂନ ।

କିନ୍ତୁ ଏହିସବୁ ପାର୍ଥକ୍ୟ, ସମାଜବାଦରୁ କମ୍ୟୁନିଜିମ୍ ବା ସାମ୍ୟବାଦକୁ ପରିଗମନ ମଧ୍ୟରେ ଧୀରେ ଧୀରେ ଲୋପ ପାଇଯିବ ।

ମାନସିକ ଓ ଶାରୀରିକ କାର୍ଯ୍ୟ ମଧ୍ୟରେ ଥିବା ଏହି ପାର୍ଥକ୍ୟକୁ ସବୁ ଲୋପ କରିବା ଦିଗରେ ପ୍ରଧାନ ଆବଶ୍ୟକୀୟ ବିଷୟ ହେଉଛି, ସବୁକ୍ଷେତ୍ରରେ ଯନ୍ତ୍ରପାତିର ପ୍ରଚଳନ, ବିଦ୍ୟୁତୀକରଣ, ଓ ଉତ୍ପାଦନର ସ୍ୱୟଂକ୍ରିୟତାର ପ୍ରୟୋଗ । ଏହା ଶ୍ରମର ପ୍ରକୃତିକୁ ମୌଳିକ ଭାବେ ବଦଳାଇ ଦେବ । ଏଥିଲାଗି ଲୋକଙ୍କର ସାଧାରଣ ଶିକ୍ଷାର ସ୍ତର ଓ ଟେକ୍‌ନିକାଲ୍ ଜ୍ଞାନର ବିକାଶ ବିଶେଷ ଭାବେ ଦରକାର । ଏଣୁ ଉଚ୍ଚ ମାତ୍ରାରେ ଯାନ୍ତ୍ରିକୀକରଣ ଓ ସ୍ୱୟଂକ୍ରିୟତା ଫଳରେ ଶ୍ରମିକ ଓ କୋଠକୃଷୀମାନଙ୍କର ଶ୍ରମ, ସର୍ବାଦୌ ଇଞ୍ଜିନିୟର, ଟେକ୍‌ନିସିଆନ, କୃଷି ବିଶାରଦ ଓ ଅନ୍ୟ ବୁଦ୍ଧିଜୀବୀ-ମାନଙ୍କ ଶ୍ରମର ନିକଟବର୍ତ୍ତୀ ହେବାରେ ଲାଗିଛି ।

ସୋଭିଏତ୍ ୟୁନିଅନରେ ଏବେ ୧୦ କୋଟି ୬୦ ଲକ୍ଷ ଶ୍ରମଜୀବୀ ଲୋକଙ୍କ ମଧ୍ୟରୁ ଅଧେ ଉଚ୍ଚ ବା ମାଧ୍ୟମିକ ଶିକ୍ଷା ପାଇଛନ୍ତି । ସେଠାରେ ଆଜି ଏବେ

ଦେଶବ୍ୟାପୀ ନିରକ୍ଷରତାର ସମସ୍ୟା ସମାଧାନ କରାଯାଇ ନାହିଁ, ସମସ୍ତ ସ୍ତରେ ଜନ-ସାଧାରଣଙ୍କ ଉଚ୍ଚ ଶିକ୍ଷା ଓ ଟେକ୍‌ନିକାଲ ଜ୍ଞାନ ହାସଲର ସମସ୍ୟା ସମାଧାନ କରାଯାଉଛି ।

ବିଶ୍ୱବିଦ୍ୟାଳୟ ଓ ଶିକ୍ଷା ଅନୁଷ୍ଠାନମାନଙ୍କ ଛଡ଼ା ସୋଭିଏତ୍ ୟୁନିଅନରେ ବହୁ ସଂଖ୍ୟକ ସାନ୍ଧ୍ୟ ଶିକ୍ଷା ଅନୁଷ୍ଠାନ ଓ ଡାକ ଯୋଗେ ଶିକ୍ଷା ପାଇବାର ପ୍ରତିଷ୍ଠାନମାନ ରହିଛି । ସେଥିରେ ଲକ୍ଷ ଲକ୍ଷ ଶ୍ରମିକ ସେମାନଙ୍କ କାମ ନ ଛାଡ଼ି ଶିକ୍ଷା ପାଉଛନ୍ତି । କଳକାରଖାନା, ଫ୍ୟାକ୍‌ଟ୍ରି ଓ କୋଠଗୃହ ଫାର୍ମମାନଙ୍କରେ ପ୍ରତିଷ୍ଠିତ ବିଶେଷ ଧରଣର କଲେଜ-ସ୍କୁଲ, ଟେକ୍‌ନିକାଲ ଓ କୃଷିଶିକ୍ଷା ସମ୍ବନ୍ଧୀୟ ବିଦ୍ୟାଳୟରେ ଲକ୍ଷ ଲକ୍ଷ ଶ୍ରମିକ ଓ କୋଠଗୃହୀ କୃଷକ ଅତିରିକ୍ତ ଜ୍ଞାନ ଆହରଣ କରୁଛନ୍ତି । ୧୯୬୭ ଆରମ୍ଭ ବେଳକୁ ସୋଭିଏତ୍ ୟୁନିଅନରେ ଶିଶୁ ଓ (ନିୟମିତ ଶିକ୍ଷା ପାଉଥିବା ଓ କାମ କରି ଅଧିକା ଟେକ୍‌ନିଂ ଓ ଶିକ୍ଷା ପାଉଥିବା)ବୟସ୍କ ଲୋକେ ମିଶି ୭୫୦ ଲକ୍ଷ ଲୋକ ଅଧ୍ୟୟନ କରୁଥିଲେ ।

ଚତୁର୍ଦ୍ଦିଗରେ ପ୍ରସାରିତ ଏହି ସାଧାରଣ ଓ ବୃତ୍ତିଗତ ଶିକ୍ଷା ବ୍ୟବସ୍ଥା ସବୁ ବିଭାଗର ଅର୍ଥନୀତି ଲାଗି ସୁଦକ୍ଷ ଲୋକ ଯୋଗାଇ ଦେଉଛି ଓ ଲୋକମାନଙ୍କର ବୃତ୍ତି ସାଂସ୍କୃତିକ ବିକାଶର ଅଗ୍ରଗତିକୁ ସୁଗମ କରୁଛି ।

ଉତ୍ପାଦନ ଟେକ୍‌ନିକ୍‌ର ବିକାଶ ଓ ସାଂସ୍କୃତିକ ଅଗ୍ରଗତି ଅଦକ୍ଷ ବା ଅକୁଶଳୀ ଶ୍ରମର ବିଲୋପ ଘଟିବାକୁ ତ୍ୱରିତ କରେ । ମନୁଷ୍ୟ ଚିନ୍ତା ଓ ଭାବନାରେ ଆତ୍ମିକ କ୍ଷେତ୍ରରେ ଉନ୍ନତ ହୁଏ, ତାର ଆଗ୍ରହର ପରିସର ପ୍ରସାରିତ ହୁଏ, ଶକ୍ତି ସାମର୍ଥ୍ୟ ଓ ପ୍ରତିଭାର ବିକାଶ ଲାଗି ସେ ଉତ୍ତରୋତ୍ତର ସୁଯୋଗ ପାଏ ।

ସାମ୍ୟବାଦୀ ନିର୍ମାଣ କାଳରେ ଶ୍ରେଣୀ ପାର୍ଥକ୍ୟ ଧୀରେ ଧୀରେ ଲୋପ ପାଇବ, ଆଉ ମଧ୍ୟ ସହର ମଫସଲ ମଧ୍ୟରେ, ଶାରୀରିକ ଓ ମାନସିକ କାମ କରୁଥିବା ସମସ୍ତ ଶ୍ରମିକଙ୍କ ମଧ୍ୟରେ ଥିବା ବିଶେଷ ପାର୍ଥକ୍ୟସବୁ ଲୋପ ପାଇବ । ଉତ୍ପାଦନ—ଉପକରଣରେ ସମସ୍ତେ ସମାନ ଉପଯୋଗ କରିପାରିବେ – ଭୌତିକ ଓ ଆତ୍ମିକ ସୁଖ ସୁବିଧାର ବଣ୍ଟନ କ୍ଷେତ୍ରରେ ସମସ୍ତେ ପୂରାପୂରି ସମାନ ହେବେ ଏବଂ ସମାଜରେ ସମସ୍ତେ ସମାନ ସ୍ଥାନ ଲାଭ କରିବେ ।

ଦୈନନ୍ଦିନ ଜୀବନରେ ନାରୀ-ଜାତିର ଅସମାନ ଅବସ୍ଥାର ଅବଶେଷ ପୂରାପୂରି ଲୁପ୍ତହେବ, ସମସ୍ତ ସାମାଜିକ ଓ ଜୀବନ ଧାରଣର ପରିବେଶ ତାଙ୍କୁ ମାତୃତ୍ୱର ଆନନ୍ଦ ସହିତ ସାମାଜିକ ଶ୍ରମରେ ସର୍ବ ସାଧାରଣ କାର୍ଯ୍ୟ ଓ କଳା ଆଉ ବିଜ୍ଞାନରେ ଅଂଶ ଗ୍ରହଣ କରିବାରେ ସମର୍ଥ କରିବ । ବୈଷୟିକ ବିଚାରରୁ ରହିତ ହୋଇ ପାରସ୍ପରିକ, ସ୍ନେହ, ପ୍ରେମ ଓ ବନ୍ଧୁତ୍ୱ ହେବ ପାରିବାରିକ ସଂପର୍କର ଭିତ୍ତି ପ୍ରସ୍ତର ।

## ରାଷ୍ଟ୍ରଠାରୁ କମ୍ୟୁନିଷ୍ଟ ସ୍ୱାୟତ୍ତ ଶାସନ

ସମାଜବାଦୀ ସମାଜରେ, ରାଷ୍ଟ୍ର ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ସବୁ ସଂପ୍ରଦାୟର ଲୋକମାନଙ୍କ ସେନ ଓ ନାଗରିକମାନଙ୍କର ବହୁବିଧ ବିଚିତ୍ର ଜୀବନ ଓ କ୍ରିୟାକଳାପରେ ବ୍ୟାପ୍ତ ରହି ଏହା ହେଉଛି ଏକ ବ୍ୟାପକ ରାଜନୈତିକ ସଂଗଠନ ।

ରାଷ୍ଟ୍ରର ସ୍ୱଭାବ ଓ ପ୍ରକୃତି, ସମାଜର ଶ୍ରେଣୀ ଗଠନ ସହିତ ଘନିଷ୍ଠ ଭାବେ ସଂଯୁକ୍ତ । ରାଷ୍ଟ୍ର ଏକ ଚିରନ୍ତନ ଅନୁଷ୍ଠାନ ନୁହେଁ । ସମୟ ଥିଲା, ଯେତେବେଳେ କୌଣସି ରାଷ୍ଟ୍ର ନ ଥିଲା । ଶ୍ରେଣୀଗୁଡ଼ିକର ଉଦ୍‌ଭବ ସହିତ ତାର ଅଭ୍ୟୁତ୍ଥାନ ଘଟିଲା । ଶ୍ରେଣୀଗୁଡ଼ିକର ବିଲୋପ ସହିତ ରାଷ୍ଟ୍ର ମଧ୍ୟ ଲୋପ ପାଇଯିବ ।

ପୁଞ୍ଜିବାଦୀ ସମାଜରେ ରାଷ୍ଟ୍ର ଶୋଷକ ଶ୍ରେଣୀର ସେବାରେ ଲାଗେ, ଶ୍ରମିକଶ୍ରେଣୀକୁ ଦମନ କରେ, ସମାଜରେ ଶୋଷକଶ୍ରେଣୀର ପ୍ରଭୁତ୍ୱକୁ, ଅଧିପତ୍ୟକୁ, ସୁନିଶ୍ଚିତ କରେ । ସେହି ସମାଜରେ ରାଷ୍ଟ୍ର ବୁର୍ଜୁଆମାନଙ୍କର ଏକଛତ୍ର ଶାସନର ଏକ ଅସ୍ତ୍ର ବ୍ୟତୀତ ଅନ୍ୟ କିଛି ହୁଏ ନାହିଁ । ସଂଖ୍ୟାଗରିଷ୍ଠମାନଙ୍କ ଉପରେ ସଂଖ୍ୟାଲଘୁ-ମାନଙ୍କର ରାଜତ୍ୱ ହିଁ ହୁଏ ।

ସମାଜବାଦୀ ବିପ୍ଲବ ବୁର୍ଜୁଆ ରାଷ୍ଟ୍ର କଳକୁ ଭାଙ୍ଗି ଦିଏ, ଧ୍ୱଂସ କରିଦିଏ । ଏକ ନୂତନ ସର୍ବହରା ରାଷ୍ଟ୍ର ସୃଷ୍ଟି କରେ । ସେହି ନୂତନ ରାଷ୍ଟ୍ର ଶ୍ରମିକ ଶ୍ରେଣୀର ସେବାରେ ଲାଗେ । ସମାଜବାଦ ନିର୍ମାଣ ହୁଏ ତାର ଲକ୍ଷ୍ୟ । ପୁଞ୍ଜିବାଦରୁ ସାମ୍ୟବାଦ ବା କମ୍ୟୁନିଜମର ପ୍ରଥମ ସ୍ତର ସମାଜବାଦକୁ ପରିଗମନ କାଳରେ ରାଷ୍ଟ୍ର ସର୍ବହରାର ଏକଛତ୍ର ଶାସନରେ ଏକ ଅସ୍ତ୍ର ବ୍ୟତୀତ ଅନ୍ୟ କିଛି ନୁହେଁ । ଏଭଳି ରାଷ୍ଟ୍ର ସମାଜର ଶୋଷକ ଶ୍ରେଣୀର ଅବଶେଷ ସଂଖ୍ୟାଲଘୁମାନଙ୍କ ଉପରେ ସଂଖ୍ୟାଗରିଷ୍ଠମାନଙ୍କର ପ୍ରଭୁତ୍ୱ ବା ଅଧିପତ୍ୟର ପ୍ରକାଶ ହିଁ ହୁଏ ।

ସମାଜବାଦର ବିଜୟ ସହିତ ସମାଜରେ ଶୋଷକ ଶ୍ରେଣୀ ରହୁ ନ ଥିବା ହେତୁ ସବୁ ସମ୍ପ୍ରଦାୟର ଲୋକଙ୍କ ମଧ୍ୟରେ ସାମାଜିକ ସମଭାବ, ସଂହତି ଓ ଅବିଚ୍ଛେଦ୍ୟ ଐକ୍ୟ ଗଢ଼ିଉଠେ । ସର୍ବହରାର ଏକଛତ୍ର ଶାସନରେ ରାଷ୍ଟ୍ର ଜନତାର ରାଷ୍ଟ୍ରରେ ପରିଣତ ହୁଏ । ଅଧିକ ସାମ୍ୟବାଦୀ ବା କମ୍ୟୁନିଷ୍ଟ ସମାଜ ନିର୍ମାଣ କାଳ ମଧ୍ୟରେ ଏହି ଜନତାର ରାଷ୍ଟ୍ର କମ୍ୟୁନିଷ୍ଟ ବା ସାମ୍ୟବାଦୀ ସ୍ୱାୟତ୍ତ ଶାସନର ରାଷ୍ଟ୍ର ରୂପେ ବିକାଶ ଲାଭ କରେ ।

ସାମ୍ୟବାଦ ବା କମ୍ୟୁନିଜମର ପୂର୍ଣ୍ଣ ନିର୍ମାଣ ପର୍ଯ୍ୟନ୍ତ, ସର୍ବହରାର ଏକଛତ୍ର ଶାସନ, ସର୍ବହରା ଏକଛତ୍ର ରାଷ୍ଟ୍ର, ତିଷ୍ଠି ରହିବା ଆବଶ୍ୟକ—ଏହା ଦାବୀ କରିବା

ଭୁଲ । ଏହାର ଅର୍ଥ, ଲେନିନବାଦକୁ ବିକୃତ କରିବା । ସୋଭିଏତ ଇଉନିଅନରେ କାହା ଉପରେ ସର୍ବହରାର ଏକଚ୍ଛତ୍ର ଶାସନ କାଏମ କରାଯିବ, କୋଠଗୃହ ଫାର୍ମର କୃଷୀ ନା ଜନତାର ବୁର୍ଜିଜୀବୀମାନଙ୍କ ଉପରେ ? ବୁଝିବା ଲାଗି ଗୋଟିଏ ପ୍ରଶ୍ନ କଲେ ଯଥେଷ୍ଟ ହେବ ଯେ ସମାଜବାଦର ଜୟ ପରେ ଯେତେବେଳେ ଶ୍ରମଜୀବୀ ଲୋକେ ବା ବନ୍ଧୁଭାବାପନ୍ନ ଶ୍ରେଣୀସବୁ ସଂପୂର୍ଣ୍ଣ ପରିବର୍ତ୍ତିତ ପ୍ରକୃତି ଧରିଛନ୍ତି, ସେତେବେଳେ କିଏ ବା ଆଉ ଦମନ କରିବାକୁ ରହୁଛି ? ସର୍ବହରାର ଏକଚ୍ଛତ୍ର ଶାସନର ଆଉ ଆବଶ୍ୟକତା ବା କେଉଁଠି ?

ରାଷ୍ଟ୍ରର ବିକାଶ, ସର୍ବହରା ଏକଚ୍ଛତ୍ର ରାଷ୍ଟ୍ରର ସମସ୍ତ 'ଲୋକରାଷ୍ଟ୍ର' ରୂପରେ ପରିବର୍ତ୍ତନ, ସ୍ୱଭାବରେ ରାଷ୍ଟ୍ରର ବିଲୟ—ଏହା ସବୁ ଲୋକଙ୍କର ବା ସଂଗଠନ ଗୁଡ଼ିକର ଇଚ୍ଛା ଉପରେ ନିର୍ଭର କରେ ନାହିଁ, ନିର୍ଭର କରେ ଦେଶ ଭିତରର ଓ ବାହାରର ନିର୍ଦ୍ଦିଷ୍ଟ ଅବସ୍ଥା ଉପରେ—ଯେଉଁ ଅବସ୍ଥା କମ୍ୟୁନିଜମ ବା ସାମ୍ୟବାଦ ନିର୍ମାଣ ମଧ୍ୟରେ ସୃଷ୍ଟି ହୋଇଥାଏ ।

ରାଷ୍ଟ୍ରର ବିଲୟ, ଏକ ଦୀର୍ଘ କାଳବ୍ୟାପୀ ଧୀରସ୍ଥିର ଗତିର କ୍ରମାଗତ ପ୍ରକ୍ରିୟା । ଏହା ପୂର୍ଣ୍ଣ କମ୍ୟୁନିଜମ ବା ସାମ୍ୟବାଦରେ ସମ୍ପନ୍ନ ହେବ ।

ରାଷ୍ଟ୍ରର ବିଲୟ ଲାଗି ଦେଶବାହାରର ଅବସ୍ଥା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହା ପରିଷ୍କାର ଯେ, ଯେତେ ଦିନ ପର୍ଯ୍ୟନ୍ତ ଯୁଦ୍ଧର ଧମକ ଦେଉଥିବା ସାମ୍ରାଜ୍ୟବାଦୀ ଶତ୍ରୁମାନେ ଅଛନ୍ତି, ସେତେ ଦିନ ପର୍ଯ୍ୟନ୍ତ ସୋଭିଏତ ଇଉନିଅନରେ ରାଷ୍ଟ୍ରର ପୂରାପୂରି ବିଲୟର ପ୍ରଶ୍ନ ଉଠି ନ ପାରେ । ଯେତେଦିନ ପର୍ଯ୍ୟନ୍ତ ସାମ୍ରାଜ୍ୟବାଦୀ ଯୁଦ୍ଧ ବିପଦର ଆଶଙ୍କା ରହୁଛି, ଯେତେ ଦିନ ପର୍ଯ୍ୟନ୍ତ ପୂର୍ଣ୍ଣ ସାଧାରଣ ନିରସ୍ତ୍ରୀକରଣ ହାସଲ ହୋଇ ପାରି ନାହିଁ, ସେତେ ଦିନ ଯାଏ ସୋଭିଏତ ଲୋକେ ତାଙ୍କର ସେନାବାହିନୀ ଓ ପ୍ରତିରକ୍ଷା ଶକ୍ତିକୁ ଏପରି ଭାବେ ପ୍ରସ୍ତୁତ ରଖିବାକୁ ବାଧ୍ୟ ହେବେ, ଯେପରିକି କୌଣସି ଶତ୍ରୁ ସୋଭିଏତ ଇଉନିଅନ ବିରୁଦ୍ଧରେ ଆକ୍ରମଣ କରିବାକୁ ସାହସ କରିବ ନାହିଁ; ସାହସ କଲେ, ତାକୁ ସଂପୂର୍ଣ୍ଣ ପରାସ୍ତ ଓ ଧ୍ୱଂସ କରି ଦିଆଯାଇ ପାରିବ ।

ରାଷ୍ଟ୍ରର ବିଲୟ ଅର୍ଥ, ଅରାଜକତାର ଶାସନ ନୁହେଁ । ନା, ନୁହେଁ, ଆଦୌ ନୁହେଁ ! କମ୍ୟୁନିଷ୍ଟ ବା ସାମ୍ୟବାଦୀ ସମାଜରେ ଏକ କେନ୍ଦ୍ରୀୟ, ନିଖୁଣ ପ୍ରଶାସନିକ ବ୍ୟବସ୍ଥା ରହିବ । ଏହା ହେବ ଶ୍ରମଜୀବୀ ଲୋକଙ୍କର ସର୍ବୋଚ୍ଚଭାବେ ସଂଗଠିତ, ସଂଗତ ପୂର୍ଣ୍ଣସମାଜ ।

କମ୍ୟୁନିଜମ ବା ସାମ୍ୟବାଦରେ ଉଚ୍ଚସ୍ତରୀୟ ଉତ୍ପାଦନ, ବିଜ୍ଞାନ ଓ ଟେକନୋଲଜି ଲାଗି ଉତ୍ପାଦନର ପ୍ରତ୍ୟେକ ବିଭାଗରେ ଉନ୍ନତ ଯୋଜନାବଦ୍ଧ ଓ

ସଂଗଠିତ ବିନିଯୋଗ ଆବଶ୍ୟକ । ବିଭିନ୍ନ ଧରଣର ଉତ୍ପାଦନ ପ୍ରକ୍ରିୟା ପ୍ରତି ଦୃଷ୍ଟି ରଖାଯାଇ ସାମାଜିକ ଶ୍ରମ ସମୟର ନିୟନ୍ତ୍ରଣ ଦରକାର ।

ଲୋକମାନଙ୍କ ଆବଶ୍ୟକତା ଓ ସାମାଜିକ ଶିକ୍ଷା ଅନୁସାରେ ଉତ୍ପାଦନର ପରିଚାଳନା ସକାଶେ ଏବଂ ଭୌତିକ, ସାଂସ୍କୃତିକ ସୁଖ ସୁବିଧାର ବର୍ଦ୍ଧନ ସକାଶେ କମ୍ୟୁନିଷ୍ଟ ସମାଜରେ ଏକ ନିର୍ଦ୍ଦିଷ୍ଟ ପ୍ରକାରର ସଂଗଠନ ମଧ୍ୟ ଆବଶ୍ୟକ । କିନ୍ତୁ ସେହି ସଂଗଠନ 'ରାଷ୍ଟ୍ର' ହେବ ନାହିଁ, ରାଜନୈତିକ ସଂଗଠନ ହେବ ନାହିଁ, ତାହା ହେବ ସାମାଜିକ ସଂଗଠନ ।

ଅତଏବ ରାଷ୍ଟ୍ର-ବିଲୟର ଅର୍ଥ ନୁହେଁ, ପ୍ରତ୍ୟେକ ପ୍ରକାରର ସଂଗଠନକୁ ବା ସଂଗଠନର ପ୍ରତ୍ୟେକ ରୂପକୁ ପରିହାର କରିବା । ତାର ଅର୍ଥ ସମାଜବାଦୀ ରାଷ୍ଟ୍ରକୁ କମ୍ୟୁନିଷ୍ଟ ବା ସାମ୍ୟବାଦୀ ସର୍ବସାଧାରଣ ସ୍ୱାୟତ୍ତ ଶାସନରେ ବିକଶିତ କରାଇବା ।

ଏହି ପ୍ରକ୍ରିୟାର ମୁଖ୍ୟ ପ୍ରବୃତ୍ତି ବା ଧାରାଗୁଡ଼ିକ କଣ ?

ସମାଜବାଦୀ ରାଷ୍ଟ୍ର ହେଉଛି, ଇତିହାସରେ ବିଦିତ ସବୁଠାରୁ ଗଣତାନ୍ତ୍ରିକ ରାଷ୍ଟ୍ର ।

ସମାଜବାଦୀ ରାଷ୍ଟ୍ରକୁ ସାମ୍ୟବାଦୀ ସର୍ବସାଧାରଣ ସ୍ୱାୟତ୍ତ ଶାସନ ରୂପରେ ବିକାଶ ଲାଭ କରିବାର ପ୍ରଧାନ ଧାରା ହେଲା—ସମାଜବାଦୀ ଗଣତନ୍ତ୍ରର ଅଧିକ ଉନ୍ନୟନ, ଆଉ ରାଷ୍ଟ୍ର, ଅର୍ଥନୀତି ଓ ସାଂସ୍କୃତିକ ବିଷୟଗୁଡ଼ିକର ପ୍ରଶାସନ କାର୍ଯ୍ୟରେ ସମସ୍ତ ନାଗରିକଙ୍କର ନିଯୋଗ ।

ଶ୍ରମଜୀବୀ ଲୋକ-ପ୍ରତିନିଧିମାନଙ୍କର ସୋଭିଏତ ସବୁ ହେଉଛି, ସବୁଠାରୁ ବଳ ସୁବିସ୍ତୃତ ରାଷ୍ଟ୍ର ସଂଗଠନ ।

ଏହା ସବୁ ସୋଭିଏତ ଇଉନିଅନର ସମଗ୍ର ଲୋକ-ଜୀବନରେ ବ୍ୟାପ୍ତ ହୋଇ ରହିଛି । ଏଥିରେ ସବୁ ଏବେ ରାଷ୍ଟ୍ରର ଆଉ ଗଣସଂଗଠନଗୁଡ଼ିକର ସ୍ୱତପ୍ରକୃତ ସମ୍ମିଳିତ ହୋଇଛି । ଉତ୍ତରୋତ୍ତର ବିକାଶର ପ୍ରକ୍ରିୟା ମଧ୍ୟରେ ଏହି ସୋଭିଏତଗୁଡ଼ିକ ନିଜ ନିଜର ରାଜନୈତିକ କାର୍ଯ୍ୟସବୁ ବା କ୍ରିୟାଶୀଳତା ପୂରାପୂରି ହରାଇ ବସିବେ ଏବଂ ରାଷ୍ଟ୍ର ଶକ୍ତିର ସଂଗଠନରୁ ସର୍ବସାଧାରଣ ସ୍ୱାୟତ୍ତ ଶାସନ ସଂଗଠନରେ ପରିଣତ ହେବେ ।

ସମାଜବାଦୀ ରାଷ୍ଟ୍ରକୁ କମ୍ୟୁନିଷ୍ଟ ବା ସାମ୍ୟବାଦୀ ସର୍ବସାଧାରଣ ସ୍ୱାୟତ୍ତ ଶାସନ ରୂପରେ ବିକାଶ ଲାଭ କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ରର କାର୍ଯ୍ୟଗୁଡ଼ିକ ଧୀରେ

ଧୀରେ ଗଣସଂଗଠନ ଓ ସର୍ବସାଧାରଣ ସ୍ୱାୟତ୍ତ ଶାସନ ଅନୁଷ୍ଠାନଗୁଡ଼ିକୁ ହସ୍ତାନ୍ତରିତ ହୋଇଯିବ; ଏହିସବୁ ଗଣସଂଗଠନ ଓ ସ୍ୱାୟତ୍ତ ଶାସନ ଅନୁଷ୍ଠାନ ସୋଭିଏତ, ଟ୍ରେଡ଼ ଇଉନିଅନ, କୋଅପରେଟିଭ ଓ ଅନ୍ୟାନ୍ୟ ସଂଗଠନର ଭିତ୍ତି ଉପରେ ଗଢ଼ି ଉଠିବ ।

ଦୃଷ୍ଟାନ୍ତ ସ୍ୱରୂପ, ଲୋକଙ୍କ ସକାଶେ ଚିକିତ୍ସା ଓ ସଂସ୍କୃତି ସଂକ୍ରାନ୍ତ କାର୍ଯ୍ୟ, ଶାରୀରିକ ତାଲିମ, କ୍ରୀଡ଼ାକୁର୍ତ୍ତିର ବିକାଶ, ସାଧାରଣ ଶାନ୍ତି-ଶୃଙ୍ଖଳା-ରକ୍ଷା ପ୍ରଭୃତି ଯେଉଁସବୁ କାର୍ଯ୍ୟ ଅତୀତ ରାଷ୍ଟ୍ର-ଅନୁଷ୍ଠାନ ଦ୍ୱାରା ସଂପନ୍ନ ହେଉଥିଲା, ତାହାର ସବୁ ଦାୟିତ୍ୱ ଧୀରେ ଧୀରେ ଗଣ ସଂଗଠନଗୁଡ଼ିକ ଗ୍ରହଣ କରୁଛି ।

ସମାଜବାଦୀ ରାଷ୍ଟ୍ରର ଏକ ନିର୍ଦ୍ଦିଷ୍ଟ ଝଡପ୍ରକୃତି ହେଉଛି ଯେ ତାର କାର୍ଯ୍ୟକୁ ମୁଖ୍ୟତଃ ଶିକ୍ଷା ଓ ପ୍ରତ୍ୟକ୍ଷ ପ୍ରବର୍ତ୍ତନା ଦ୍ୱାରା ହାସଲ କରାଯାଏ । ବାଧ୍ୟବାଧକତା ସୋଭିଏତ ରାଷ୍ଟ୍ରର ମୁଖ୍ୟ ପଦ୍ଧତି ନୁହେଁ । ବାଧ୍ୟବାଧକତାର ପରିସରକୁ ଏବେ ଅଧିକ ସଂକୁଚିତ କରାଯାଉଛି । ଏହି ବାଧ୍ୟବାଧକତା ସାମ୍ରାଜ୍ୟବାଦୀମାନଙ୍କର 'ଏଜେଣ୍ଟ'ଙ୍କ ବିରୁଦ୍ଧରେ, ଚୋର, ଠକ, ଗୁଣ୍ଡା ଓ ଅନ୍ୟାନ୍ୟ ସମାଜବିରୋଧୀ ଲୋକଙ୍କ ବିରୁଦ୍ଧରେ ପ୍ରଯୁକ୍ତ ହେଉଛି ।

କମ୍ୟୁନିଜମ ବା ସାମ୍ୟବାଦ ଦିଗରେ ସୋଭିଏତ ସମାଜ ଅଗ୍ରଗତି କରିବା ସଂଗେ ସଂଗେ ଏହି ଶିକ୍ଷା ଓ ପ୍ରତ୍ୟକ୍ଷ ପ୍ରବର୍ତ୍ତନା, ସମାଜ-ଜୀବନ ନିୟନ୍ତ୍ରଣ କରିବାର ମୁଖ୍ୟ ଓ ଏକମାତ୍ର ପଦ୍ଧତି ହେବ । ଏହା ହାସଲ କରିବା ଲାଗି ଆବଶ୍ୟକ ହେଉଛି— ସୋଭିଏତ ଆଇନ କାନୁନ ଓ ଶ୍ରମ ଶୃଙ୍ଖଳା ପାଳନ କରାଯିବା ଦିଗରେ ଦୃଢ଼ କଣ୍ଟ୍ରୋଲ ଜାରୀ ରହିବା ଏବଂ ଆଇନର ଶକ୍ତି ଓ ଲୋକମତର ଶକ୍ତି—ଏ ଉଭୟର ପୂର୍ଣ୍ଣ ବ୍ୟବହାର କରାଯିବା; ସେଥିରେ କୌଣସି ପ୍ରକାରର କୋହଳ ନୀତି ଅବଲମ୍ବିତ ହେବା ନୁହେଁ ।

ସମାଜବାଦୀ ଗଣତନ୍ତ୍ରର ଉତ୍ତରୋତ୍ତର ବିକାଶ ଓ ପରିପୂର୍ଣ୍ଣତା ହାସଲ ଧୀରେ ଧୀରେ ସମାଜବାଦୀ ରାଷ୍ଟ୍ରତନ୍ତ୍ରକୁ ସର୍ବସାଧାରଣ କମ୍ୟୁନିଷ୍ଟ ବା ସାମ୍ୟବାଦୀ ସ୍ୱାୟତ୍ତ ଶାସନରେ ରୂପାନ୍ତରିତ କରିବ । ଏହି ସର୍ବସାଧାରଣ ସ୍ୱାୟତ୍ତ ଶାସନ ଏକ ଅଖଣ୍ଡ ସଙ୍ଗତିମୟ, ସୁଶୃଙ୍ଖଳ, ଯୁକ୍ତିଯୁକ୍ତ ଭାବେ ସୁବିନ୍ୟସ୍ତ ସଂଗଠନ ଓ ପ୍ରଶାସନିକ ବ୍ୟବସ୍ଥାକୁ ପ୍ରକାଶ କରିବ । ଏଥିରେ ଅର୍ଥନୀତି, ସଂସ୍କୃତି ଓ ସାମାଜିକ ବିଷୟଗୁଡ଼ିକ ପରିଚାଳନା କରିବାରେ ସମାଜର ସମସ୍ତ ସଭ୍ୟଙ୍କର ସକ୍ରିୟ ଅଂଶ ଗ୍ରହଣ ସୁନିଶ୍ଚିତ ହେବ, ସାଧାରଣ ଭାବେ ସ୍ୱୀକୃତ କମ୍ୟୁନିଷ୍ଟ ଜୀବନଧାରାର ନିୟମଗୁଡ଼ିକ ରୂପ ନେବ ଏବଂ ତାହା ପାଳନ କରିବା ମନୁଷ୍ୟ ପ୍ରାଣର ଆବଶ୍ୟକତା ଓ ଅଭ୍ୟାସ ହୋଇ ଉଠିବ ।

କମ୍ୟୁନିଷ୍ଟ ସମାଜ, ତାର ସବୁଠାରୁ ମାନବୀୟ ଓ ନ୍ୟାୟସଙ୍ଗତ ନୀତି ଓ ଲୋକମାନଙ୍କ ମଧ୍ୟରେ ସଂପର୍କ ସେନେ ଏକ ସର୍ବଶ୍ରେଷ୍ଠ ପରିପୂର୍ଣ୍ଣ ସମାଜ ହୋଇ ଉଠିବ ।

## ଜାତୀୟ ସଂପର୍କଗୁଡ଼ିକର ବିକାଶ

ପୂର୍ଣ୍ଣ ଭାବରେ କମ୍ୟୁନିଷ୍ଟ ନିର୍ମାଣ କାଳ ହେଉଛି, ସୋଭିଏତ୍ ଇଉନିଅନରେ ଜାତୀୟ ସମ୍ପର୍କ ବିକାଶର ଏକ ନୂତନ ପର୍ଯ୍ୟାୟ ।

ଜାତୀୟ ସମ୍ପର୍କମାନଙ୍କ କ୍ଷେତ୍ରରେ ଦୁଇଟି ଦିଗ, ଦୁଇଟି ଧାରା ଅତ୍ୟନ୍ତ ସରଷ୍ଟ । ଗୋଟିଏ ହେଲା—ପ୍ରତ୍ୟେକ ଜାତିର କ୍ଷମତାବୃଦ୍ଧିର ସର୍ବୋଚ୍ଚ ବିକାଶ; ଅନ୍ୟଟି ହେଉଛି—ସେମାନଙ୍କର ସଦାସର୍ବଦା ପରସ୍ପର ପ୍ରତି ଅଧିକରୁ ଅଧିକ ଆକର୍ଷଣ, ପରସ୍ପରର ଅଧିକ ନିକଟବର୍ତ୍ତିତା ।

ସମାଜବାଦୀ ଜାତିମାନଙ୍କୁ ପରିଚାଳିତ କରୁଥିବା ଏହି ମୁଖ୍ୟ ନିୟମ, ଏହି ପ୍ରଧାନ ନୀତିକୁ ସୋଭିଏତ୍ ଇଉନିୟନର କମ୍ୟୁନିଷ୍ଟ ପାର୍ଟି ବିଚାରକୁ ନେଇଛି । ଏହା ସର୍ବହରାର ଆନ୍ତର୍ଜାତୀୟ ଦୃଷ୍ଟିକୋଣରୁ ଜାତିମାନଙ୍କ ବିଷୟରେ ଲେନିନବାଦର ଭିତ୍ତିକୁ ଆଶ୍ରୟ କରି ଜାତୀୟ ସମ୍ପର୍କର ସମସ୍ତ ସମସ୍ୟା ସମାଧାନ କରୁଛି । ଜାତୀୟ ରୂପଗୁଡ଼ିକୁ ଅତିରଞ୍ଜିତ କରୁ ନାହିଁ, କି ତାକୁ ଘୃଣା କରି ଦେଉ ନାହିଁ ।

ପାର୍ଟି ଦେଖୁଛି, ସଠିକ ଅର୍ଥନୈତିକ ନୀତି ପ୍ରୟୋଗ କରାଯିବା ଭିତରେ ହିଁ ଜାତି ଜାତି ମଧ୍ୟରେ ସହଯୋଗର ଭ୍ରାତୃତ୍ୱବୋଧର ବିକାଶ ଓ ଦୃଢ଼ତାର ମୂଳବୀଜ ନିହିତ ଅଛି ।

କମ୍ୟୁନିଜମର ଭୌତିକ ଓ ଟେକ୍‌ନିକାଲ ଭିତ୍ତି ନିର୍ମାଣ, ସୋଭିଏତ୍‌ର ସମସ୍ତ ପ୍ରଜାତନ୍ତ୍ରର ସର୍ବତୋମୁଖୀ ଦ୍ରୁତ ଅର୍ଥନୈତିକ ବିକାଶ ଲାଗି ସମସ୍ତ ବ୍ୟବସ୍ଥା ଯୋଗାଇଦେଉଛି । ଏହା ସୋଭିଏତ ଲୋକମାନଙ୍କୁ ଆହୁରି ଅଧିକ ଏକତା ଦିଗକୁ ନେଇଯିବ ଓ ସେମାନଙ୍କ ଅର୍ଥନୈତିକ ମୈତ୍ରୀବନ୍ଧନ ଓ ପାରସ୍ପରିକ ସାହାଯ୍ୟ ସହଯୋଗକୁ ଅଧିକ ସୁଦୃଢ଼ କରିବ । ସମଗ୍ର ଭାବେ ସୋଭିଏତ ଇଉନିୟନର ସ୍ୱାର୍ଥ ଏବଂ ପ୍ରତ୍ୟେକ ପ୍ରଜାତନ୍ତ୍ରର ସ୍ୱାର୍ଥକୁ ଯଥାଯଥ ଭାବେ ସମ୍ମିଳିତ କରି ପ୍ରଜାତନ୍ତ୍ରମାନଙ୍କ ମଧ୍ୟରେ ସମାଜବାଦୀ ଶ୍ରମ ବିଭାଗକୁ ଅଧିକ ଉନ୍ନତ କରିବ ।

ସମାଜବାଦୀ ଜାତିମାନଙ୍କର ବିକାଶ, ଜାତୀୟ ରାଷ୍ଟ୍ରତ୍ୱର ଅଗ୍ରଗତି ଦ୍ୱାରା ମଧ୍ୟ ପ୍ରକାଶ ପାଉଛି । ଅର୍ଥନୈତିକ ଓ ସାଂସ୍କୃତିକ ବିଷୟଗୁଡ଼ିକ ପରିଚାଳନା କରିବାରେ ଇଉନିଅନ ଓ ସ୍ୱଶାସିତ ଗୋଷ୍ଠୀଗୁଡ଼ିକର ଅଧିକାର-ପ୍ରସାର ପ୍ରତ୍ୟେକ ପ୍ରଜାତନ୍ତ୍ରର ସାର୍ବଭୌମତ୍ୱ ଓ ପାରସ୍ପରିକ ସହଯୋଗକୁ ଅଧିକ ସୁଦୃଢ଼ କରୁଛି ।

ସୋଭିଏତ ଇଉନିଅନର ଜାତିମାନଙ୍କୁ ଏକତ୍ର ନିକଟବର୍ତ୍ତୀ କରିବାରେ ସାଂସ୍କୃତିକ ପ୍ରଗତିର ଓ ପାର୍ଟିର ମତାଦର୍ଶଗତ କାର୍ଯ୍ୟର ଅବଦାନ ରହିଛି । ଏଥିଯୋଗୁଁ ଲୋକମାନଙ୍କ ମଧ୍ୟରେ ଆତ୍ମିକ ଓ ନୈତିକ ସମ୍ପଦର ବ୍ୟାପକ ବିନିମୟ ଘଟୁଛି । କଳା, ସାହିତ୍ୟ ଓ ବିଜ୍ଞାନ କ୍ଷେତ୍ରରେ କେତେକ ଜାତିଙ୍କର କୃତିତ୍ୱ ଅନ୍ୟ ଜାତିମାନଙ୍କ ପାଖରେ ପହଞ୍ଚୁଛି । ଏହା ଫଳରେ ପାରସ୍ପରିକ ସମୃଦ୍ଧି ଘଟୁଛି; ସମସ୍ତ ଲୋକଙ୍କର ସଂସ୍କୃତି ପରସ୍ପର ପ୍ରତି ଆକର୍ଷିତ ହୋଇ ଏକତ୍ର ମିଳିତ ହେଉଛି ଓ ଲୋକଙ୍କର ମତାଦର୍ଶଗତ ଏକତା ଦୃଢ଼ୀଭୂତ ହେଉଛି । ସମାଜବାଦୀ ବିଷୟବସ୍ତୁ ବା ଆଧାର,(contents)ସୋଭିଏତ ସଂସ୍କୃତିର ଆନ୍ତର୍ଜାତୀୟ ପିଣ୍ଡ, ଏହା ଅଧିକରୁ ଅଧିକ ବିକାଶ ଲାଭ କରୁଛି, ତେଣୁ ଭବିଷ୍ୟତ କମ୍ୟୁନିଷ୍ଟ ସମାଜର ଗୋଟିଏ ବିଶ୍ୱଜନୀନ ସଂସ୍କୃତି ରୂପାୟିତ ହୋଇ ଉଠୁଛି ।

ଅତଏବ, କମ୍ୟୁନିଜମ୍ ନିର୍ମାଣ କାଳ ମଧ୍ୟରେ ସୋଭିଏତ ଇଉନିଅନରେ ଜାତୀୟ ସମ୍ପର୍କଗୁଡ଼ିକର ବିକାଶ ଜାତିମାନଙ୍କର ଏକତାକୁ ସୁସଂହତ ଓ ସୁଦୃଢ଼ କରିବ । ସେମାନେ ପରସ୍ପରର ଆହୁରି ନିକଟବର୍ତ୍ତୀ ହେବେ । ସେମାନଙ୍କର ଅର୍ଥନୈତିକ ଓ ମତାଦର୍ଶଗତ ଗୋଷ୍ଠୀଗତ ସମୃଦ୍ଧ ହେବ, ସେମାନଙ୍କର ଆତ୍ମିକ ଓ ନୈତିକ ଗଠନରେ ସାଧାରଣ କମ୍ୟୁନିଷ୍ଟ ଚରିତ୍ର ସୁପ୍ରତିଷ୍ଠିତ ହେବ ।

## ଲୋକମାନଙ୍କର କମ୍ୟୁନିଷ୍ଟ ଶିକ୍ଷା

କମ୍ୟୁନିଷ୍ଟ ସମାଜ ନିର୍ମାଣ ଲାଗି ଯେଉଁ ଅତି ଉନ୍ନତ ଭୌତିକ ଓ ଟେକ୍ନିକାଲ ଭିତ୍ତି ସ୍ଥାପନ କରିବାକୁ ହେବ ଏବଂ ଯେଉଁ କମ୍ୟୁନିଷ୍ଟ ସାମାଜିକ ସମ୍ପର୍କ ପ୍ରତିଷ୍ଠା କରିବାକୁ ହେବ, ତାହାର ମହାନ୍ ଗୁରୁତ୍ୱ ବିଷୟରେ ଆମେ ଆଲୋଚନା କରି ସାରିଛୁ ।

କିନ୍ତୁ ଲୋକମାନଙ୍କର ସାମାଜିକ ଚେତନାକୁ ଉନ୍ନତ ଓ ସମୃଦ୍ଧ ନ କରି, ନୂତନ ମନୁଷ୍ୟକୁ ଶିକ୍ଷିତ ନ କରି "ପ୍ରତ୍ୟେକେ ନିଜର ଶକ୍ତି ଅନୁସାରେ କାମ କରିବେ ଓ ପ୍ରତ୍ୟେକେ ନିଜର ଆବଶ୍ୟକତା ଅନୁସାରେ ପାଇବେ," ଏହି କମ୍ୟୁନିଷ୍ଟ ନୀତିର ପ୍ରୟୋଗ ଆଣିବା, କମ୍ୟୁନିଜମ ନିର୍ମାଣ କରିବା, କଣ ସମ୍ଭବ ?

ଅବଶ୍ୟ ନୁହେଁ, ସମ୍ଭବ ନୁହେଁ । ନୂତନ ମାନବର କମ୍ୟୁନିଷ୍ଟ ଶିକ୍ଷା ହେଉଛି, କମ୍ୟୁନିଜମର ବିଜୟ ଲାଗି ନିଷ୍ପତ୍ତିମୂଳକ ଅବସ୍ଥା ।

# କମ୍ୟୁନିଜମ୍‌ର ବିଜୟ ଲାଗି ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା

କମ୍ୟୁନିଜମ ବା ସାମ୍ୟବାଦର ଅଧିକ ଉନ୍ନତ ଭୌତିକ ଓ ଟେକ୍‌ନିକାଲ ଭିତ୍ତି ରହିଛି । ସେଥିଯୋଗୁଁ ତାହା କେବଳ ସମାଜବାଦଠାରୁ ପୃଥକ ନୁହେଁ, ଲୋକମାନଙ୍କର ଉଚ୍ଚତର ସାମାଜିକ ଚେତନା ଯୋଗୁ ମଧ୍ୟ ତାହା ପୃଥକ ।

କମ୍ୟୁନିଜମ ବା ସାମ୍ୟବାଦ ଅମଳରେ ସାମାଜିକ ଭାବେ ପ୍ରୟୋଜନୀୟ କାର୍ଯ୍ୟରେ ସର୍ବସ୍ୱ ଯୋଗଦାନ, ସର୍ବସାଧାରଣ ସମ୍ପତ୍ତି ଉପରେ ମିତବ୍ୟୟିତା, କଠୋର ଭାବେ ସାମାଜିକ ନିୟମ ପାଳନ, ନିଜ ଜୀବନର ଏକ ଅଂଶ ହେବ—ଏକ ଚେତନଶୀଳ ଅଭ୍ୟାସ, ସମାଜର ସମସ୍ତ ସଭ୍ୟମାନଙ୍କ ପାଇଁ ଜୀବନର ଏକ ପ୍ରଧାନ ପ୍ରୟୋଜନୀୟତା, ହେବ ।

ପ୍ରଶ୍ନ: କମ୍ୟୁନିଜମ ବା ସାମ୍ୟବାଦ ଅମଳରେ ଏହା ସମ୍ଭବ ହେବ । ସମାଜବାଦୀ ସମାଜରେ କିନ୍ତୁ ଲୋକମାନଙ୍କରେ ପୁଞ୍ଜିବାଦର ଆବୁରି ଅବଶେଷ ଥାଏ । ପୁରାତନ ଜଗତର ଏହି ସବୁ "ଜନ୍ମଚିହ୍ନ" ବ୍ୟକ୍ତିଗତ ସମ୍ପତ୍ତିମୂଳକ ଅଭ୍ୟାସରେ ପରାଙ୍ଗପୁଷ୍ଟତା, ସର୍ବସାଧାରଣ ସମ୍ପତ୍ତି ଓ କାର୍ଯ୍ୟ ପ୍ରତି ଅସାଧୁ ମନୋବୃତ୍ତି, ଜୀବନରେ ଅଶୋଭନୀୟ ଅନୁଚିତ ବ୍ୟବହାର, ସମାଜବାଦୀ ଜୀବନଧାରାର ନିୟମ ପ୍ରତି ଅଶ୍ରଦ୍ଧା, ଏହି ଦୃଷ୍ଟାନ୍ତମାନଙ୍କରେ ଏବଂ ସମାଜବାଦୀ ବ୍ୟବସ୍ଥାର ପରିପନ୍ଥୀ ଅନ୍ୟାନ୍ୟ କୁତ୍ସିତ ବ୍ୟାପାରରେ ପ୍ରକାଶ ପାଏ ।

ପୁଞ୍ଜିପତି ଓ ଜମିମାଲିକମାନଙ୍କର ଶାସନର ବିଲୋପ ପରେ ମଧ୍ୟ ସମାଜବାଦୀ ସମାଜର ଲୋକମାନଙ୍କ ମନରେ ଯେ ପୁଞ୍ଜିବାଦୀ ଶୋଷଣକାରୀ ସମାଜର ଏହି ସବୁ ଅବଶେଷ ଲାଗି ରହିଥାଏ, ଏହାର ଅର୍ଥ କଣ ?

କଥା ହେଉଛି, ଲୋକମାନଙ୍କର ଚେତନା, ସେମାନଙ୍କ ଜୀବନଧାରଣ ଅବସ୍ଥା ପରିବର୍ତ୍ତନ ଆଉ ସେମାନଙ୍କ ସାମାଜିକ ସତ୍ତାର ପଛରେ, ପଡ଼େ । ସମାଜବାଦର ବିଜୟ ଫଳରେ ଯଦିଓ ଜୀବନଧାରଣ ଅବସ୍ଥାର ମୌଳିକ ପରିବର୍ତ୍ତନ ଘଟେ, ତଥାପି ପୁରୁଣା ମତ, ଧାରଣା, ଅଭ୍ୟାସ ପ୍ରଭୃତି ଯାହା ପୂର୍ବ-ପୁରୁଷମାନଙ୍କରୁ ଯୁବକମାନଙ୍କ ପାଖକୁ ଗଡ଼ି ଆସିଥାଏ, ତାହା ସବୁ କେତେକ ଲୋକଙ୍କ ମନରେ ଲାଗି ରହେ । ଯେଉଁସବୁ ମତ, ଧାରଣା ଓ ଅଭ୍ୟାସ ଶହ ଶହ ବର୍ଷ ଧରି ଜମାଟ ବାନ୍ଧିଛି ଓ ଶୋଷକଶ୍ରେଣୀମାନଙ୍କ ଦ୍ୱାରା ଗଭୀର ଭାବରେ କର୍ଷିତ ହୋଇ ଏତେର ମଡ଼ା ଯାଇଛି, ତାହାକୁ ସବୁ ଦୂର କରିବା ଏତେ ସହଜ ନୁହେଁ ।




ପ୍ରଗତିର ଶତ୍ରୁମାନେ କମ୍ୟୁନିଜମ୍ ପ୍ରତି ବିରୋଧିତାକୁ ନିଜର
ଧ୍ୱଜା ହିସାବରେ ଗ୍ରହଣ କରନ୍ତି ।

ଆଜି ମଧ୍ୟ ପୁଞ୍ଜିବାଦୀ ଦୁନିଆରୁ ବିଭିନ୍ନ ମାର୍ଗରେ ଯେଉଁ ବୁର୍ଜୁଆ ମତାଦର୍ଶ ଚାଲି ଆସି ସମାଜବାଦୀ ସମାଜର ସଭ୍ୟମାନଙ୍କ ଉପରେ ପ୍ରଭାବ ପକାଉଛି, ତାହା ବିଚୂର୍ଣ୍ଣ ହେବ ।

ସମାଜବାଦୀ ସମାଜର ସଭ୍ୟମାନଙ୍କ ମନରେ ରହିଥିବା ଅତୀତର ଅବଶେଷ ବିରୁଦ୍ଧରେ ସଂଗ୍ରାମ, ସମାଜବାଦର ଶତ୍ରୁ ବୁର୍ଜୁଆ କୁଳର ମତାଦର୍ଶର ପ୍ରଭାବ ବିରୁଦ୍ଧରେ ସଂଗ୍ରାମଠାରୁ ଭିନ୍ନ ନୁହେଁ । ଭିନ୍ନ ଭିନ୍ନ ପ୍ରକାର ସାମାଜିକ ବ୍ୟବସ୍ଥାର ରାଷ୍ଟ୍ରମାନଙ୍କ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହ-ଅବସ୍ଥାନ, ସମାଜବାଦୀ ଓ ବୁର୍ଜୁଆ ଏହି ଦୁଇ ପରସ୍ପର ବିରୋଧୀ ମତାଦର୍ଶର ଶାନ୍ତିପୂର୍ଣ୍ଣ ସହ-ଅବସ୍ଥାନକୁ ଆଦୌ ବୁଝାଏ ନାହିଁ ।

ଯେତେ ଦିନ ଯାଏ ସାମ୍ରାଜ୍ୟବାଦ ଥିବ, ସେତେ ଦିନ ଯାଏ ମତାଦର୍ଶଗତ କ୍ଷେତ୍ରରେ ଲୋକଙ୍କର ହୃଦୟ ମନ ଅଧିକାର କରିବା ଲାଗି ସଂଗ୍ରାମ ଚାଲିଥିବ — ଆପୋଷହୀନ ଶ୍ରେଣୀ-ସଂଗ୍ରାମ ଲାଗିଥିବ । ବୁର୍ଜୁଆ ମତାଦର୍ଶର ମୁଖା ଖୋଲିଦେବା, ତା ବିରୁଦ୍ଧରେ ଅବିଚ୍ଛିନ୍ନ ଅଦମ୍ୟ ସଂଗ୍ରାମ ଚଳାଇବା, କମ୍ୟୁନିଷ୍ଟ ପାର୍ଟିମାନଙ୍କର ପ୍ରଧାନ ମତାଦର୍ଶଗତ କାର୍ଯ୍ୟ ହୋଇ ରହି ଆସିଛି ଓ ରହିବ ।

ପୃଥିବୀରେ ଏହି ଦୁଇ ମତାଦର୍ଶ ମଧ୍ୟରେ ସଂଗ୍ରାମ ଅଧିକ ତୀବ୍ର ଓ ଉତ୍କଟ ଆକାର ଧାରଣ କରୁଛି; ଏହା କମ୍ୟୁନିଷ୍ଟ, ମାର୍କସବାଦୀ-ଲେନିନବାଦୀ ମତାଦର୍ଶକୁ ନୂତନ ନୂତନ ବିଜୟରେ ମଣ୍ଡିତ କରୁଛି । ଏହାର ପ୍ରତିପତ୍ତି, ଆକର୍ଷଣୀୟ ଚମ୍ବକ ଶକ୍ତି; ପୃଥିବୀର ପ୍ରତ୍ୟେକ କୋଣର କୋଟି କୋଟି ଲୋକମାନଙ୍କ ମନ ଉପରେ ଏହାର ପ୍ରଭାବପାତ ଦିନକୁ ଦିନ ବୃଦ୍ଧି ପାଉଛି ।

ମାର୍କସବାଦ-ଲେନିନବାଦ ଆଜି କେବଳ ଏକ ତତ୍ତ୍ୱ ନୁହେଁ, ଏହା ଜୀବନର ଏକ ସମାଜବାଦୀ ବାସ୍ତବତା ମଧ୍ୟ । ଏହା ମନୁଷ୍ୟ ସମାଜର ଏକ ତୃତୀୟାଂଶ ଲୋକମାନଙ୍କ ଲାଗି ସୁଖ, ସ୍ୱାଧୀନତା ଓ ଆନନ୍ଦ ହିଁ ଆଣିଛି ।

ପୁଞ୍ଜିବାଦ ଏବେ ଆତ୍ମିକ ଓ ନୈତିକ ସଂକଟର କବଳରେ ପଡ଼ିଛି । ଫଳରେ, ତାର ଭାବ, ତାର ଆଦର୍ଶର ଅଧିକ ପତନ ଘଟୁଛି । ଏଣୁ ଆଜି ସାମ୍ରାଜ୍ୟବାଦୀ ବୁର୍ଜୁଆ ଓ ତାଙ୍କର ସେବକ ବୁର୍ଜୁଆ ଦାର୍ଶନିକ, ଅର୍ଥନୈତିକ, ଇତିହାସବିତ୍ ପ୍ରଭୃତି କମ୍ୟୁନିଷ୍ଟ ମତାଦର୍ଶର ଜୟଯାତ୍ରା ସମ୍ମୁଖରେ କୌଣସି ପ୍ରକାର ସ୍ପଷ୍ଟ, ନିଶ୍ଚିତ ଓ ନିର୍ଦ୍ଦିଷ୍ଟ ଭାବଧାରା, କୌଣସି ପ୍ରକାର ଗଠନମୂଳକ କାର୍ଯ୍ୟକ୍ରମ ଉପସ୍ଥାପିତ କରିବାକୁ ଅସମର୍ଥ ।

ସାମ୍ରାଜ୍ୟବାଦୀ ପ୍ରଭୁର କେତେଗୁଡ଼ାଏ "ଧାମାଧରା" ଘଷରା ପୁରୁଣା ବଚନିକା ବା ବୋଲି ମାତ୍ର । ଏଗୁଡ଼ା ବିଭିନ୍ନ ରୂପରେ ଗୋଟାଏ "ବୈଜ୍ଞାନିକ" ନିବନ୍ଧରୁ ଆଉ ଗୋଟାକୁ ଲୁଗାବୁଣା ଡଣ୍ଡା ପରି ଯାଉଛି ଆସୁଛି, ବିଶ୍ୱବିଦ୍ୟାଳୟରେ "ପ୍ରତିଧ୍ୱନିତ" ହେଉଛି, ଖବରକାଗଜ ଓ ବହିପତ୍ରରେ ଭର୍ତ୍ତି ହୋଇଯାଉଛି, ସିନେମାରେ, ଟେଲିଭିଜନରେ ପ୍ରସାରିତ ହେଉଛି—ସମ୍ପ୍ରଦାୟ ଆକାଶରେ, ଶୂନ୍ୟରେ ଖେଳି ଯାଉଛି ।

ଏହି "ବଚନିକା", ଏହି "ବୋଲି" ଗୁଡ଼ାକ କଣ ?

"ବୋଲି" ନମ୍ବର ୧:—

ସାମ୍ରାଜ୍ୟବାଦୀ ମତାଦର୍ଶବାଦୀମାନେ ବୃଥା ଚେଷ୍ଟା କରି ପ୍ରମାଣ କରିବାକୁ ଚାହାନ୍ତି ଯେ, ସାମାଜିକ ବିକାଶ ସମ୍ପର୍କରେ ମାର୍କସବାଦୀ-ଲେନିନ୍‌ବାଦୀ ବିଶ୍ଳେଷଣ ସମସାମୟିକ ଦୁନିଆର ତଥ୍ୟ ସହିତ ଖାପ୍ ଖାଏ ନାହିଁ ଏବଂ ଇତିହାସର ଗତିଧାରା ତାକୁ ଖଣ୍ଡନ କରେ ।

ଏହି ଦାବୀ ଭଳି ମିଥ୍ୟା ଆଉ ଅଧିକ କିଛି ନାହିଁ । ଏହା ମାର୍କସବାଦ-ଲେନିନବାଦର ଶକ୍ତି ଆଗରେ, ବିପ୍ଳବ ଦ୍ୱାରା ପୁଞ୍ଜିବାଦ ପରିବର୍ତ୍ତେ ସମାଜବାଦ ପ୍ରତିଷ୍ଠାର ଅବଶ୍ୟମ୍ଭାବୀ ସମ୍ଭାବନା ଆଗରେ, ସାମ୍ରାଜ୍ୟବାଦୀ ମତାଦର୍ଶବାଦୀଙ୍କର ଭୀତତ୍ରସ୍ତ ଅବସ୍ଥାକୁ ହିଁ ପ୍ରକାଶ କରେ । କିନ୍ତୁ ବିଂଶ ଶତାବ୍ଦୀରେ ମନୁଷ୍ୟ ସମାଜର ସମସ୍ତ ବିକାଶର ମାର୍ଗ ମାର୍କସ, ଏଙ୍ଗେଲସ ଓ ଲେନିନଙ୍କ ପ୍ରଦର୍ଶିତ ସାମାଜିକ ବିକାଶ-ନିୟମର ଚମତ୍କାର ବିଶ୍ଳେଷଣକୁ ପୂର୍ଣ୍ଣଭାବେ ପ୍ରତିପାଦିତ କରିଛି ।

ରୁଷର ମହାନ ଅକ୍‌ଟୋବର ବିପ୍ଳବ ଓ ଅନ୍ୟ ଦେଶମାନଙ୍କର ସମାଜବାଦୀ ବିପ୍ଳବ କଣ ଏହି ବିଶ୍ଳେଷଣର ଯଥାର୍ଥତାକୁ ପ୍ରମାଣ କରେ ନାହିଁ ? ସମାଜବାଦୀ ଗୋଷ୍ଠୀର ବର୍ଦ୍ଧିଷ୍ଣୁ ଶକ୍ତି, ଶ୍ରମିକଶ୍ରେଣୀର ବୈପ୍ଳବିକ ଆନ୍ଦୋଳନର ଅଗ୍ରଗତି, ଜନସାଧାରଣଙ୍କର ଜାତୀୟ ମୁକ୍ତି-ସଂଗ୍ରାମ ଓ ବିଶ୍ୱ ପୁଞ୍ଜିବାଦର ଅଧିକରୁ ଅଧିକ ଦୁର୍ବଳ ପଣ—ଏସବୁ କଣ ତେବେ ? ଏ ସବୁ କଣ ମାର୍କସବାଦ-ଲେନିନବାଦର ନିର୍ଭୁଲତା ଓ ମହାନ ବୈଜ୍ଞାନିକ ଚରିତ୍ରକୁ ଚୂଡ଼ାନ୍ତ ଭାବେ ପ୍ରତିପାଦନ କରେ ନାହିଁ ।

ଇତିହାସ, ବୁର୍ଜୁଆ ଗବେଷକଙ୍କର କପୋଳକଳ୍ପିତ ମିଥ୍ୟା ବାଚନକୁ ପୂରା-ପୂରି ଖଣ୍ଡନ କରେ ।

"ବୋଲ" ନମ୍ବର ୨ :—

ଏକ ମିଥ୍ୟା କଥା ସୃଷ୍ଟି କରାଯାଉଛି ଯେ, ସମସାମୟିକ ପୁଞ୍ଜିବାଦ 'ପୁନଃଯୌବନ ଲାଭ କରିଛି ।' ଏହା ଆଉ ସାମାଜିକ ଦ୍ୱନ୍ଦ୍ୱ କିମ୍ବା ପ୍ରବୃତ୍ତନ ବୁର୍ଜୁଆ ସମାଜର ଦୁର୍ଗୁଣ ଦ୍ୱାରା ଆକ୍ରମିତ ନୁହେଁ । ଶ୍ରେଣୀମାନଙ୍କ ମଧ୍ୟରେ ପାର୍ଥକ୍ୟ ସବୁ ଲୋପ ପାଇଗଲାଣି । ବୁର୍ଜୁଆ ପ୍ରଚାରକମାନେ ଦାବୀ କରୁଛନ୍ତି ଯେ, ଏହି 'ନୂତନ ପୁଞ୍ଜିବାଦ 'ନୂତନ ପରମାୟୁ ଲାଭ କରିଛି' ଏବଂ ବ୍ୟକ୍ତିଗତ ଶିଳ୍ପ ପ୍ରତିଷ୍ଠାନ ମଧ୍ୟରେ ଏହା ସାଧାରଣ କଲ୍ୟାଣ, ସମତା ଓ ବ୍ୟକ୍ତିବିଶେଷଙ୍କ ସ୍ୱାଧୀନତାର ଆଦର୍ଶକୁ ପୂରଣ କରିଛି ।

ବୁର୍ଜୁଆ ମତାଦର୍ଶବାଦୀମାନଙ୍କର ଏହି ଘୃଣ୍ୟ ଭର୍ତ୍ସନାଯୁକ୍ତ ଉଦ୍ଭାବନ ଯେ ସତ୍ୟଠାରୁ କେତେ ଦୂରରେ, ଏହା କଣ କହିବା ଆବଶ୍ୟକ ? ଏହା ନିର୍ଦ୍ଦୋଷ ସରଳବିଶ୍ୱାସୀ ଲୋକଙ୍କୁ ପ୍ରତାରିତ କରିବା ଲାଗି ଆବିଷ୍କାର କରାଯାଇଛି । ପୁଞ୍ଜିବାଦ ପୁନଃଯୌବନ ଲାଭ କରି ନାହିଁ, ସାମ୍ରାଜ୍ୟବାଦ ଶ୍ରମଜୀବୀ ଲୋକଙ୍କର ଆଉ ସମାଜ-ବାଦର ଶତ୍ରୁ ହୋଇ ରହି ଆସିଛି, ରହିଛି ଓ ରହିବ । "ଜନତାର ପୁଞ୍ଜିବାଦ", "ପ୍ରାଚୁର୍ଯ୍ୟମୟ ସମାଜ" କିମ୍ବା "ଅର୍ଥନୈତିକ ମାନବିକତା" ଅତି ପୁରୁଣା ଏକ ଶ୍ୱାନର ନୂଆ ନାମକରଣ କରିବାରେ ଚେଷ୍ଟା ।

ପୁଞ୍ଜିବାଦୀ ଦେଶମାନଙ୍କରେ ଶ୍ରେଣୀସଂଗ୍ରାମ, ବିଶେଷ କରି ବିରାଟ ଓ ଦୀର୍ଘ ସମୟ-ବ୍ୟାପୀ ଧର୍ମଘଟ, ପୁଞ୍ଜିବାଦୀ ଦେଶମାନଙ୍କ ଭିତରେ ଓ ଦେଶ ଦେଶ ମଧ୍ୟରେ ବିରୋଧିତାର ତୀବ୍ରତା, ଶ୍ରେଣୀ-ଶାନ୍ତି ଓ ପୁଞ୍ଜିବାଦ ଅମଳରେ "ଶ୍ରେଣୀ-ସହଯୋଗ"ର ମିଥ୍ୟା ତତ୍ତ୍ୱକୁ ଖଣ୍ଡନ କରେ । ଶ୍ରମଜୀବୀ ଲୋକଙ୍କର ଗଣତାନ୍ତ୍ରିକ ଅଧିକାର ବିରୁଦ୍ଧରେ ଅଭିଯାନ ଚାଲିଛି, ଅତି ଲଜ୍ଜାକର ବର୍ଣ୍ଣ-ବୈଷମ୍ୟ ଜୋରଦାର ହେଉଛି, ଗଣତାନ୍ତ୍ରିକ ସଂଗଠନ ସବୁ ଦଣ୍ଡିତ ହେଉଛି, ପ୍ରଗତିଶୀଳ ନେତାମାନଙ୍କୁ କାରାରୁଦ୍ଧ କରାଯାଉଛି, ହତ୍ୟା କରାଯାଉଛି ।

ତଥା-କଥିତ "ମୁକ୍ତ ଦୁନିଆ"ର ଏହାହିଁ ହେଲା ପ୍ରକୃତ ଚେହେରା ।

"ବୋଲ" ନମ୍ବର ୩ :—

କମ୍ୟୁନିଜମ ବା ସାମ୍ୟବାଦର ଶତ୍ରୁମାନେ ମିଥ୍ୟା କଥା ରଚନା କରନ୍ତି ଯେ, ସମାଜବାଦ ବ୍ୟକ୍ତିଗତ ସମ୍ପତ୍ତି, ବ୍ୟକ୍ତିଗତ ଶିଳ୍ପ ପ୍ରତିଷ୍ଠାନ ଏବଂ ପୁଞ୍ଜିବାଦର ଅନ୍ୟାନ୍ୟ "ଆଶୀର୍ବାଦ"କୁ ଲୋପ କରି ଦେବା ଦ୍ୱାରା ସମାଜକୁ ତାର ଜୀବନୀଶକ୍ତିରୁ ବଞ୍ଚିତ କରୁଛି । ସେଥିଯୋଗୁ "ମନମୁଖୀ ଅଖଣ୍ଡ ସ୍ୱୈରାଚାରବାଦ"ପଦ୍ଧତି ପ୍ରୟୋଗ କରିବାକୁ ବାଧ୍ୟ ହେଉଛି, ମନୁଷ୍ୟ ଓ ଉତ୍ପାଦନ ମଧ୍ୟରେ ଏକ ସଂଘର୍ଷ ସୃଷ୍ଟି କରୁଛି, ଖାଉଛି

ଏହା "ଉପନିବେଶିକ ଦେଶମାନଙ୍କର ସାର୍ବଭୌମତ୍ୱକୁ" ଜଳାଞ୍ଜଳି ଦେଉଛୁ, ଲୋକଙ୍କର ଭୌତିକ, ଆତ୍ମିକ ଓ ନୈତିକ ଆବଶ୍ୟକତାକୁ ଉପେକ୍ଷା କରୁଛୁ ଏବଂ ବ୍ୟକ୍ତିତ୍ୱକୁ ଦମନ କରୁଛୁ ।

ସାମ୍ରାଜ୍ୟବାଦୀ ଓ ସେମାନଙ୍କର ବିଦ୍ୱାନ ପରିପୋଷକମାନେ ଏହି ପ୍ରକାର ପଦ୍ଧତି ଗ୍ରହଣ କରିବାକୁ ବାଧ୍ୟ ହେଲବେଳେ ସେମାନଙ୍କର ପକ୍ଷରେ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଓ ଅସମ୍ଭାଳ ହୋଇ ଉଠୁଚି । ସେଇ ସମାଜବାଦ, ତାର ଉଜ୍ଜ୍ୱଳମୟ ଅର୍ଥନୈତିକ ବିକାଶ, ସାମାଜିକ ଓ ଆତ୍ମିକ ପ୍ରଗତି ଦ୍ୱାରା ସାରା ପୃଥିବୀକୁ ଚମତ୍କୃତ କରିଦେଇଛି, ଅନୁକରଣୀୟ ଯୁଗର ଆବାହକ ହୋଇଛି ଏବଂ ଉନ୍ନତ ଜୀବନ ଲାଗି ଓ ପୃଥିବୀରେ ଶାନ୍ତି ପ୍ରତିଷ୍ଠା ଲାଗି କୋଟି କୋଟି ଲୋକଙ୍କର ସଂଗ୍ରାମର କେତନ ହୋଇଛି, ସେହି ସମାଜବାଦ ବିରୁଦ୍ଧରେ ଏଭଳି ମିଥ୍ୟା ପ୍ରଚାର ଦ୍ୱାରା କେହି କେବେ ପ୍ରତାରିତ ହେବେ ନାହିଁ ।

"ଟେବୁଲ" ନମ୍ବର ୪ :—

କିଛି ଦିନ ପୂର୍ବେ ଏକ ତତ୍ତ୍ୱ ପ୍ରକାଶ ପାଇଥିଲା ଯେ, ସମାଜବାଦ ଓ ପୁଞ୍ଜିବାଦ ମଧ୍ୟରେ ମୌଳିକ ପାର୍ଥକ୍ୟ ଥିବା ସତ୍ତ୍ୱେ ଦୁଇଟିଯାକ ଏକା ଦିଗରେ ଗତି କରୁଛି । "ସାଧାରଣ ଶିଳ୍ପ ବିକାଶର ଅର୍ଥନୈତିକ ଅବଶ୍ୟମ୍ଭାବିତା ବା ବାଧ୍ୟତାମୂଳକ ଅନୁଶାସନ" ହିଁ ଦୁଇ ବ୍ୟବସ୍ଥାର ମିଶ୍ରଣ ଆଣି ଗୋଟାଏ ନୂଆ ଜାତିର ବ୍ୟବସ୍ଥା ସୃଷ୍ଟି କରିବ; "ସମାଜବାଦର ଅଭ୍ୟନ୍ତରୀଣ ପରିବର୍ତ୍ତନ" ଏବଂ "ପୁଞ୍ଜିବାଦର କେତେକ ଆଧୁନିକୀକରଣ" କରିଥିବାରୁ ଦୁଇଟିଯାକର "ସମନ୍ୱୟ" ଆଣି ଗୋଟାଏ "ମିଶ୍ର" ସମାଜ ଗଠନ କରିବ ।

ଏହା ଏକ ଖୋଲଖୋଲ ସାମାଜିକ ବାତ୍ୟାତୁରୁପି । ସାମ୍ରାଜ୍ୟବାଦୀ ମତାଦର୍ଶବାଦୀମାନେ ସମାଜବାଦୀ ଶବ୍ଦାବଳୀ ଉପରେ କଳ୍ପନାର ସୌଧ ଗଢ଼ୁଛନ୍ତି, ଜନସାଧାରଣଙ୍କୁ ଠକିବା ପାଇଁ ସମାଜବାଦର କେତେକ ଭାବକୁ "ହସ୍ତଗତ" ବା ଗ୍ରହଣ କରିବାକୁ ଚାହୁଁଛନ୍ତି, ଅଳୀକ ସମାଜବାଦୀ ସ୍ଲୋଗାନ ଦ୍ୱାରା ଲୋକଙ୍କୁ ପ୍ରତାରିତ କରୁଛନ୍ତି । କାରଣ, ସେମାନଙ୍କର ନିଜର ବୋଲି ଏଭଳି କୌଣସି ଗଠନମୂଳକ ଭାବ ନାହିଁ, ଯାହା ଲୋକଙ୍କୁ କୌଣସି ଆକର୍ଷଣୀୟ ଦେବ, ସେମାନଙ୍କ ଆଗରେ ଭବିଷ୍ୟତର ଆଶା ଓ ସମ୍ଭାବନା ଉପସ୍ଥାପିତ କରିବ । ସାମ୍ରାଜ୍ୟବାଦୀ ମତାଦର୍ଶବାଦୀଙ୍କର ଏହା କେବଳ ବୃଥା ପ୍ରଚେଷ୍ଟା । ଏହି ଦୁଇ ବ୍ୟବସ୍ଥାର 'ସମନ୍ୱୟ' ତତ୍ତ୍ୱ କାହାରିକୁ ପ୍ରତାରିତ କରିବ ନାହିଁ । ପୁଞ୍ଜିବାଦ ଇତିହାସର ରଙ୍ଗମଞ୍ଚରୁ ବିଦାୟ ନେଉଛି, ତାହା ସମାଜବାଦ ଦ୍ୱାରା ପ୍ରତିସ୍ଥାପିତ ହେବା ଅନିବାର୍ଯ୍ୟ—ମାର୍କ୍ସବାଦ-ଲେନିନବାଦ ଏହା ସାବ୍ୟସ୍ତ କରେ, ଆଉ ଜୀବନ ଏହାକୁ ବାସ୍ତବରେ ସମର୍ଥନ କରି ଦର୍ଶାଇ ଦେଉଛି ।

ପୁଞ୍ଜିବାଦୀ ବ୍ୟବସ୍ଥାର ସଂକଟ ବୁର୍ଜୁଆ ମତାଦର୍ଶ, ବୁର୍ଜୁଆ ସଂସ୍କୃତି, ବୁର୍ଜୁଆ କଳା ଆଉ ସାହିତ୍ୟର ଅଧଃପତନରେ ମଧ୍ୟ ପ୍ରତିଫଳିତ ହୁଏ ।

ତେବେ ଏହାର ଅର୍ଥ ନୁହେଁ, ବୁର୍ଜୁଆ ମତାଦର୍ଶ, ଲୋକଙ୍କର ମନକୁ ଆଉ ବିଭ୍ରାନ୍ତ କରେ ନାହିଁ, ବରଂ ଅନ୍ୟ ଢଙ୍ଗରେ ଯେକୌଣସି ସଢ଼ା ପଚା ଅବସ୍ଥାରେ ଘଟିଲା ଭଳି ବୁର୍ଜୁଆ ମତାଦର୍ଶରୁ ତାର ଅଧଃପତନ କାଳରେ ଅତି କୃତ୍ରିମ ବିପଦପୂର୍ଣ୍ଣ ଦୁର୍ଗନ୍ଧମୟ ବିଭ୍ରାନ୍ତ ଫଳ ହିଁ ନିର୍ଗତ ହୁଏ ।

କମ୍ୟୁନିଜମ ପ୍ରତି ବିରୋଧିତାର କଳା ପତାକା ହେଉଛି, ଏବେ ସାମ୍ରାଜ୍ୟବାଦୀ ପ୍ରଚାର ଯନ୍ତ୍ରର ସ୍ପଷ୍ଟ ସଂକେତ । ଏହି ପତାକାର ତଳେ ଫାସିଷ୍ଟଙ୍କଠାରୁ ଦକ୍ଷିଣପନ୍ଥୀ ସୋସାଲ-ଡେମୋକ୍ରାଟ୍‌ମାନଙ୍କ ପର୍ଯ୍ୟନ୍ତ ଏକଚ୍ଛତିଆ ପୁଞ୍ଜିପତିଙ୍କର ସେବାଦାସ ବୈଜ୍ଞାନିକ, ଲେଖକ ଓ ଶିଳ୍ପୀମାନଙ୍କଠାରୁ ପ୍ରତିକ୍ରିୟାଶୀଳ ଧର୍ମ-ଯାଜକମାନଙ୍କ ପର୍ଯ୍ୟନ୍ତ ପ୍ରଗତିର ସମସ୍ତ ଶତ୍ରୁ ସମବେତ ହୋଇ ଥିଛନ୍ତି ।

ଯୁକ୍ତରାଷ୍ଟ୍ର ଆମେରିକାର ଏକଚ୍ଛତିଆ ପୁଞ୍ଜିପତିମାନେ କମ୍ୟୁନିଜମ-ବିରୋଧୀ ଶକ୍ତିମାନଙ୍କର ଅଗ୍ରଣୀ । ଆମେରିକାର ସାମ୍ରାଜ୍ୟବାଦୀମାନେ କେବଳ ରାଜନୀତି କ୍ଷେତ୍ରରେ ନୁହେଁ, ମତାଦର୍ଶଗତ କ୍ଷେତ୍ରରେ ମଧ୍ୟ ପୃଥିବୀର ପୁଲିସ-ବାହିନୀ ଭଳି କାର୍ଯ୍ୟ କରୁଛନ୍ତି ।

ଏସିଆ, ଅଫ୍ରିକା ଓ ଲାଟିନ୍ ଆମେରିକାର ଗଣତାନ୍ତ୍ରିକ ଶକ୍ତିମାନଙ୍କ ବିରୁଦ୍ଧରେ ଚାଲିଥିବା ସଂଗ୍ରାମରେ କମ୍ୟୁନିଜମ୍ ବିରୋଧିତା ହିଁ ପ୍ରତିକ୍ରିୟାର ପ୍ରଧାନ ଅସ୍ତ୍ର ହୋଇଛି । ସାମନ୍ତବାଦୀ, ସାମ୍ରାଜ୍ୟବାଦୀ ପକ୍ଷପାତୀ ବ୍ୟକ୍ତି ଓ ବୁର୍ଜୁଆମାନଙ୍କର ପ୍ରତିକ୍ରିୟାଶୀଳ ଦଳସବୁ ଏହି କମ୍ୟୁନିଜମ୍ ବିରୋଧିତାର ଦାଣ୍ଡିବହି ହୋଇଛନ୍ତି । ଜାତୀୟତାବାଦର ସାଧାରଣ ଗଣତାନ୍ତ୍ରିକ ଆଧାରକୁ ସେମାନେ ତଣ୍ଟି ଚିପି ହତ୍ୟା କରିବାପାଇଁ ତାର ପ୍ରତିକ୍ରିୟାଶୀଳ ଦିଗକୁ ଉତ୍ସାହିତ ଓ ବୃଦ୍ଧି କରିବା ଦିଗରେ ଚେଷ୍ଟା କରୁଛନ୍ତି: ଜାତୀୟ ଗଣତାନ୍ତ୍ରିକ ଶକ୍ତିମାନଙ୍କୁ ପଛକୁ ଠେଲି ଦେଇ ସାମାଜିକ ପ୍ରଗତିର ପଥ ଅବରୋଧ କରି ବୈଜ୍ଞାନିକ ସମାଜବାଦର ପ୍ରସାରକୁ ବ୍ୟାଘାତ କରିବା ଲାଗି ଉଦ୍ୟମ କରୁଛନ୍ତି ।

ଦକ୍ଷିଣପନ୍ଥୀ ସୋସାଲ-ଡେମୋକ୍ରାସି ଏହି କମ୍ୟୁନିଜମ-ବିରୋଧିତାରେ ଏକ ସକ୍ରିୟ ଅଂଶୀଦାର । "ସାମାଜିକ ବିପ୍ଳବ" ବିରୁଦ୍ଧରେ ଏହା ସାମାଜିକ ସଂସ୍କାରକୁ ପ୍ରଚାର କରୁଛି ଏବଂ ଏଥିରେ ଏତେ ଦୂର ଗତି କରିଛି ଯେ, ରାଷ୍ଟ୍ରର ଏକଚ୍ଛତିଆ ପୁଞ୍ଜିବାଦକୁ ସମର୍ଥନ କରି ତାହା ପକ୍ଷରେ ଛିଡ଼ା ହେଉଛି । ଦକ୍ଷିଣପନ୍ଥୀ ସୋସାଲ-ଡେମୋକ୍ରାଟ୍‌ମାନେ ବିରୁଦ୍ଧାତ୍ମକ ଶ୍ରେଣୀମାନଙ୍କର ଅସ୍ତିତ୍ୱ ଓ ବୁର୍ଜୁଆ

ସମାଜ ମଧ୍ୟରେ ଶ୍ରେଣୀସଂଗ୍ରାମକୁ ଅସ୍ୱୀକାର କରୁଛନ୍ତି ଏବଂ ସମାଜବାଦୀ ବିପ୍ଳବ ଓ ଉତ୍ପାଦନର ଉପକରଣ ଉପରେ ବ୍ୟକ୍ତିଗତ ମାଲିକାନାର ବିଲୋପକୁ ଅତି ତୀବ୍ର ଆଉ ପ୍ରଚଣ୍ଡ ଭାବରେ ବିରୋଧ କରୁଛନ୍ତି ।

କମ୍ୟୁନିଜମ୍ ପ୍ରତି ବିରୋଧିତା, ସାମାଜିକ ସଂସ୍କାରବାଦୀମାନଙ୍କ ମତାଦର୍ଶଗତ ରାଜନୈତିକ ମାର୍ଗଦର୍ଶନ ଅନ୍ଧ ଗଳି ମଧ୍ୟକୁ ଠେଲି ଦେଉଛି ।

କମ୍ୟୁନିଜମ୍ ପ୍ରତି ବିରୋଧିତା ହେଉଛି, ବୁର୍ଜୁଆ ମତାଦର୍ଶୀର ପତ୍ୟମାନତାର ସବୁଠୁ ବଳ ଘୃଣ୍ୟ, କୁତ୍ସିତ ଫଳ ।

ସାମ୍ରାଜ୍ୟବାଦୀମାନେ ତାଙ୍କର 'ଅସ୍ତ୍ରାଗାରରେ' ସବୁଠାରୁ ପ୍ରତିକ୍ରିୟାଶୀଳ ଭାବଗୁଡ଼ିକୁ ଅସ୍ତ୍ରରୂପେ ରଖିଛନ୍ତି । ସେମାନେ ଲୋକମାନଙ୍କର ମନକୁ ରହସ୍ୟବାଦ, ଯାନ୍ତ୍ରବାଦ, ବର୍ଣ୍ଣ-ବୈଷମ୍ୟ, ଅର୍ଥନୈତିକ ଭାବ ଦ୍ୱାରା ବିଷାକ୍ତ କରିବାକୁ ଚେଷ୍ଟା କରୁଛନ୍ତି । ସେମାନେ ଯୁଦ୍ଧ, ହତ୍ୟା, ମୃତ୍ୟୁର ଗୌରବ ଗାନ କରୁଛନ୍ତି । ଶ୍ରମଜୀବୀ ଲୋକମାନଙ୍କୁ, ସେମାନଙ୍କର ଅଧିକାର ଲାଗି ସଂଗ୍ରାମରୁ ଅପସାରିତ କରି ଅନ୍ୟ ଆଡ଼କୁ ମୁହାଁଇଦେବା ମତଲବ୍‌ରେ ନିଜର ପୁଞ୍ଜିବାଦୀ ପ୍ରଚାର-କଳ ଦ୍ୱାରା ହିଂସା ବିଦ୍ୱେଷ, ଲମ୍ପଟ୍ୟ ଓ ଉଚ୍ଛୃଙ୍ଖଳର ଗୁଣ ଗାନ କରୁଥିବା କୁତ୍ସିତ ବହିସବୁ ପ୍ରକାଶ କରୁଛନ୍ତି, ନୈତିକତାହୀନ ଫିଲ୍ମମାନ ତିଆରି କରୁଛନ୍ତି, ତଥାକଥିତ abstract ବା ବିମୂର୍ତ୍ତ କଳା ଓ ନୃତ୍ୟଗୀତକୁ ଜନପ୍ରିୟ କରୁଛନ୍ତି ।

ଏହା ଯଥାର୍ଥ ଯେ, ଦୁଇ ମତାଦର୍ଶର ସଂଗ୍ରାମରେ କମ୍ୟୁନିଜମ୍ ଏକ ବିଶ୍ୱାସଘାତକ ଚତୁର ଶତ୍ରୁର ସମ୍ମୁଖୀନ ।

ଏହି ଶତ୍ରୁର ଏକ ପ୍ରକାଣ୍ଡ ପ୍ରଚାର-ଯନ୍ତ୍ର ରହିଛି । ତାର ଭାବର ପ୍ରସାର ଲାଗି ତାହା ଅତି ସୂକ୍ଷ୍ମ ପଦ୍ଧତିର ଆଶ୍ରୟ ନେଉଛି । ବ୍ୟକ୍ତିଗତ ସଂପତ୍ତିର ସହଜାତ ପ୍ରବୃତ୍ତି, ଧର୍ମଗତ ଧାରଣା, ଜାତୀୟ ଅନୁଦାରତା, ଅସହିଷ୍ଣୁତା ଏବଂ ସମାଜବାଦୀ ସମାଜର କେତେକ ସଭ୍ୟଙ୍କର ମନରେ ଥିବା ଅତୀତର ଅନ୍ୟାନ୍ୟ ଅବଶେଷର ସୁବିଧା ନେଇ ସେହିସବୁ ଯୋଗେ ନିଜର ଜୁଆ ଖେଳର କାରସାଦି ଚଳାଉଛି । ଏହି କାରଣରୁ ସମାଜବାଦୀ ଦେଶମାନଙ୍କରେ ବୁର୍ଜୁଆ ମତାଦର୍ଶ ବିରୁଦ୍ଧରେ ସଂଗ୍ରାମ ହେଉଛି—ଏକ ସଙ୍ଗରେ ଲୋକମାନଙ୍କ ମନରେ ପୁଞ୍ଜିବାଦର ଅବଶେଷ ବିରୁଦ୍ଧରେ ସଂଗ୍ରାମ ।

ପୁଞ୍ଜିବାଦର ଅବଶେଷ ସବୁ ନୂତନ ଜୀବନ ନିର୍ମାଣ କରିବା ଦିଗରେ ସମାଜବାଦୀ ସମାଜର ସଭ୍ୟମାନଙ୍କୁ ବାଧା ଦେଉଛି । ତାକୁ ଲୋପ ନ କରି କମ୍ୟୁନିଷ୍ଟ

ମତ ଅନୁଯାୟୀ ଶ୍ରମ ଓ ବଣ୍ଟନ ଏବଂ କମ୍ୟୁନିଷ୍ଟ ଧାରାର ଜୀବନ ଯାତ୍ରା ନିର୍ବାହ ଆଡ଼କୁ ଗତି କରିବା ଅସମ୍ଭବ ।

ଲୋକମାନଙ୍କ ମନରୁ ପୁଞ୍ଜିବାଦୀ ଅବଶେଷର ଲୋପ ଲାଗି ସଂଗ୍ରାମ, କମ୍ୟୁନିଷ୍ଟ ସମାଜର ସଭ୍ୟ ଓ ନିର୍ମାଣକାରୀମାନଙ୍କୁ ଶିକ୍ଷାଦାନ—ଏହା ହିଁ ହେଉଛି କମ୍ୟୁନିଷ୍ଟ ଶିକ୍ଷାର ମୂଳ ଉଦ୍ଦେଶ୍ୟ ।

କମ୍ୟୁନିଷ୍ଟ ଶିକ୍ଷା ଅତୀତର ଅବଶେଷରୁ ମୁକ୍ତ, ସବୁ ଦିଗରୁ ଉନ୍ନତ । ସାମାଜିକ ଚେତନଶୀଳ ଏଭଳି ସୁଶୃଙ୍ଖଳ ଲୋକ ଗଠନ କରିବ, ଯାହାଠାରେ ଆତ୍ମିକ ସଂପଦ, ନୈତିକ ନିଷ୍ଠା, ପବିତ୍ରତା ଓ ଶାରୀରିକ ପୂର୍ଣ୍ଣତା ସୁସଙ୍ଗତ ଭାବେ ସମ୍ମିଳିତ ହୋଇ ପ୍ରକାଶ ପାଇବ । କମ୍ୟୁନିଷ୍ଟ ଧାରାରେ ଶିକ୍ଷିତ ମନୁଷ୍ୟ ହେବ, ବୈଜ୍ଞାନିକ ବସ୍ତୁ-ଦୃଷ୍ଟିକୋଣର, ଗଭୀର ମତାଦର୍ଶଗତ ଉପଲବ୍ଧି ଓ ପ୍ରତ୍ୟୟର । ଉଚ୍ଚ ଶିକ୍ଷା ଓ ସଂସ୍କୃତିର, ଏବଂ ସୂକ୍ଷ୍ମ ସୌନ୍ଦର୍ଯ୍ୟବୋଧର ମନୁଷ୍ୟ ସେଭଳି ଏକ ଲୋକ ସକାଶେ ଶ୍ରମ ହେବ ତାର ଜୀବନର ପ୍ରଧାନ ପ୍ରୟୋଜନୀୟତା । ଅତି ଉଚ୍ଚ ମହାନ୍ ନୈତିକ ଗୁଣ ହେବ, ତାର ଚରିତ୍ର ଓ ବ୍ୟବହାରର କାର୍ଯ୍ୟକାରୀ ଅବିଚ୍ଛେଦ୍ୟ ସ୍ୱାଭାବିକ ରୂପ ।

## ନୂତନ ମନୁଷ୍ୟକୁ ଶିକ୍ଷା ଦେବା କଣ ସମ୍ଭବ

ନୂତନ ମନୁଷ୍ୟର ଶିକ୍ଷା—ସୁଦୂର ଭବିଷ୍ୟତ ମନୁଷ୍ୟର ନୁହେଁ—ତାର ସନ୍ତାନମାନଙ୍କ ଲାଗି ନୁହେଁ—ସମସାମୟିକ ମନୁଷ୍ୟ ପାଇଁ—ଏହା କେବଳ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ, ଅତ୍ୟନ୍ତ କଠିନ ଓ ଜଟିଳ ବି ।

ଠିକ୍ ଏହି କାରଣରୁ ସାମ୍ୟବାଦର ଶତ୍ରୁମାନେ, ଯେଉଁମାନେ କି କମ୍ୟୁନିଜମ୍ ନିର୍ମାଣର ଅର୍ଥନୈତିକ କାର୍ଯ୍ୟକ୍ରମର ବାସ୍ତବତା ସମ୍ବନ୍ଧରେ ପ୍ରଶ୍ନ କରିବାକୁ ସମର୍ଥ ନୁହନ୍ତି, ସେଇମାନେ ହିଁ ଦାବୀ କରିଥାନ୍ତି—କମ୍ୟୁନିଜମ୍ କେବେହେଲେ ନୂତନ ମନୁଷ୍ୟ ଗଠନ କରିବାରେ ସଫଳ ହେବ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ, ଫରାସି ବୁର୍ଜୁଆ ସମ୍ବାଦପତ୍ର ଲ ମୋନ୍ଦ ଜୋର ସହିତ କହୁଛି ଯେ "ମାର୍କସବାଦ ଯାହାକୁ ପୁଞ୍ଜିବାଦର ଅବଶେଷ ବୋଲି କୁହେ, ଅର୍ଥାତ୍ ଅପରାଧ, ପରାଙ୍ଗପୁଷ୍ଟତା, ଶୃଙ୍ଖଳାର ଅଭାବକୁ, ପଦେ କଥାରେ, ମନୁଷ୍ୟର ସ୍ୱାର୍ଥପରତାର ସମସ୍ତ ପରିପ୍ରକାଶଗୁଡ଼ିକୁ" ନିର୍ମୂଳ କରିବା ଅସମ୍ଭବ ।

କମ୍ୟୁନିଜମ୍ ବା ସାମ୍ୟବାଦର ଶତ୍ରୁମାନଙ୍କର ଏହିପ୍ରକାର ଦାବୀସବୁ ହେଉଛି, "ମନୁଷ୍ୟର ପ୍ରକୃତି ଅପରିବର୍ତ୍ତନୀୟ", ଏହି ଅତି ପୁରାତନ ବୁର୍ଜୁଆ ତତ୍ତ୍ୱର

କେବଳ ସ୍ୱାର୍ଥପ୍ରବୃତ୍ତି । ଏହି ତତ୍ତ୍ୱ ଅନୁସାରେ ଅର୍ଥ ଲୋଲୁପତା, କୈତବ ଦୁଷ୍ଟଚରିତ୍ରତା, ସ୍ୱାର୍ଥପରତା ଓ ଅନ୍ୟାନ୍ୟ ଘୃଣ୍ୟ, ହୀନ ଗୁଣ ମନୁଷ୍ୟ ଚରିତ୍ର ମଧ୍ୟରେ ବଦ୍ଧମୂଳ ହୋଇ ରହିଛି ଏବଂ ସଦାସର୍ବଦା ମନୁଷ୍ୟର ସହଜାତ ହୋଇ ରହିଥିବ । ଉନବିଂଶ ଶତାବ୍ଦୀରେ ଏକ ବୁର୍ଜୁଆ ଅଧ୍ୟାପକ ଭବିଷ୍ୟତ ବାଣୀ ଶୁଣାଇ କହିଥିଲେ, ''ଯେକୌଣସି ପ୍ରକାର ସମାଜ ଗଠନରେ ମନୁଷ୍ୟଙ୍କୁ ରଖାଯାଉ ପଛେ, ନାଗରିକମାନଙ୍କ ଦୋଷଯୁକ୍ତ ପ୍ରକୃତି,ସେମାନଙ୍କର ଖରାପ କାମ ମଧ୍ୟରେ ନିଶ୍ଚୟ ପ୍ରକାଶ ପାଇବ ! ଏଭଳି କୌଣସି ବୈଜ୍ଞାନିକ ଅପ-ରସାୟନ ନାହିଁ, ଯଦ୍ୱାରା କ ତମେ ନୀଚ ନୀରସ ପ୍ରବୃତ୍ତି ମଧ୍ୟରୁ ସୁବର୍ଣ୍ଣ ଆଚରଣଟିକୁ ପାଇ ପାରିବ ।''

କମ୍ୟୁନିଷ୍ଟମାନେ ଏହି ସବୁ କାହ୍ୟାଣ୍ଡ ଧାରଣାକୁ ଆଦୌ ସ୍ୱୀକାର କରନ୍ତି ନାହିଁ । ସେମାନଙ୍କର ଦୃଢ଼ ବିଶ୍ୱାସ ଯେ, ନୂତନ ମନୁଷ୍ୟ କମ୍ୟୁନିଷ୍ଟ ସମାଜର ସଭ୍ୟ, ସେ ଶିକ୍ଷିତ ହୋଇ ପାରିବେ,ହେବ ନିଶ୍ଚୟ ।

ସେମାନଙ୍କର ଏହି ବିଶ୍ୱାସ ପ୍ରତିଷ୍ଠିତ କାହା ଉପରେ ?

ପ୍ରଥମ କଥା ହେଲା, ମିଳୁଥିବା ଅଭିଜ୍ଞତା ଉପରେ ଆଉ ସୋଭିଏତ ୟୁନିଅନ ଓ ଅନ୍ୟ ସମାଜବାଦୀ ଦେଶର ନୂତନ ସମାଜରେ ସାମାଜିକ ଭାବେ ଚେତନଶୀଳ ଓ ସକ୍ରିୟ ନାଗରିକମାନଙ୍କୁ ଶିକ୍ଷିତ କରିବାରେ ଯେଉଁ ସଫଳତା ଆସିଛି, ତାହା ଉପରେ ।

ସୋଭିଏତ ଲୋକଙ୍କ କଥାକୁ ବିଚାର କରାଯାଉ ! ସେମାନେ ଅତି ବିପୁଳ ସଂଖ୍ୟାରେ କମ୍ୟୁନିଜମ୍ ନିର୍ମାଣରେ ସକ୍ରିୟ ଅଂଶ ଗ୍ରହଣ କରୁଛନ୍ତି । ସେମାନେ ତାଙ୍କର ବିବେକ ବିଚାର ଦ୍ୱାରା ସାମାଜିକ କର୍ତ୍ତବ୍ୟମାନ ବୁଝୁଛନ୍ତି ଏବଂ ସମାଜବାଦୀ ଜୀବନ ଧାରାର ନିୟମକୁ ଠିକ୍ ଠିକ୍ ମାନି ଚଳୁଛନ୍ତି । କମ୍ୟୁନିଜମ ଅଧିକରୁ ଅଧିକ ଗଭୀର ଭାବେ ସୋଭିଏତ ଲୋକଙ୍କ କାର୍ଯ୍ୟ, ଜୀବନ, ମନ ଓ ବ୍ୟବହାର ମଧ୍ୟରେ ପ୍ରବେଶ କରୁଛି । ସୋଭିଏତ ଲୋକଙ୍କର ସମସ୍ତ ଅଭିଜ୍ଞତା ପ୍ରମାଣ କରେ ଯେ, ନୂତନ ମନୁଷ୍ୟଙ୍କୁ ଶିକ୍ଷିତ କରାଯାଇପାରେ, ଆଉ ସେଭଳି ମନୁଷ୍ୟ ମଧ୍ୟ ଶିକ୍ଷିତ ହେବାକୁ ଲାଗିଲଣି । ସେ ସୋଭିଏତ ଭୂମିରେ ରହୁଛି ଓ କାର୍ଯ୍ୟ କରୁଛି ।

ନୂତନ ମନୁଷ୍ୟର ଶିକ୍ଷା ହେଉଛି, ସୋଭିଏତ ୟୁନିଅନରେ ସମାଜବାଦ ବିଜୟର ପ୍ରଧାନ ଫଳ ମଧ୍ୟରୁ ଅନ୍ୟତମ ।

ସୋଭିଏତ ମନୁଷ୍ୟ, ତାର ଦେଶକୁ ଅଧିକ ଗର୍ବ, ଗୌରବ ଓ ମହତ୍ତ୍ୱରେ ମଣ୍ଡିତ କରୁଛି । ସଂଗ୍ରାମୀ ମନୁଷ୍ୟ ସମାଜର ଚିନ୍ତା ଓ ପ୍ରଶଂସା ଲାଭ କରୁଛି ।

ସୋଭିଏତ୍ ଲୋକେ ନିଜର ଆଦର୍ଶ ପ୍ରତି ଗଭୀର ଭାବେ ଅନୁରକ୍ତ । ସମାଜବାଦୀ ନିର୍ମାଣ କ୍ଷେତ୍ରରେ ସେମାନେ ନିଜର ନିଃସ୍ୱାର୍ଥପର ଶ୍ରମ ଦ୍ୱାରା ଓ ଦ୍ୱିତୀୟ ମହାଯୁଦ୍ଧ କାଳରେ ବୀରତ୍ୱ ପ୍ରଦର୍ଶନ ଦ୍ୱାରା ପୃଥିବୀକୁ ଚମତ୍କୃତ କରିଛନ୍ତି । ନୈତିକ ଦିଗରୁ, ଆତ୍ମିକ ପ୍ରୟୋଜନୀୟତା ଓ ଆଗ୍ରହ ଦୃଷ୍ଟିରୁ, ସୋଭିଏତ୍ ଲୋକେ ବୁର୍ଜୁଆ ମତବାଦର ଲୋକଙ୍କଠାରୁ ବହୁତ ଉଚ୍ଚରେ, ଏପରି କି ପୁଞ୍ଜିବାଦର ଅତି ଦୃଢ଼ ସମର୍ଥକମାନେ ସୋଭିଏତ୍ ୟୁନିଅନ ଦର୍ଶନ କଲା ପରେ ସ୍ୱୀକାର କରିଛନ୍ତି ଯେ, ସେମାନେ ଏଠାରେ ଏକ ନୂତନ ଚରିତ୍ରର ନୂତନ ଗଢ଼ଣର ମନୁଷ୍ୟ ଦେଖିଛନ୍ତି ।

କମ୍ୟୁନିଜମ୍ ବା ସାମ୍ୟବାଦର ନିର୍ମାଣକାରୀମାନଙ୍କୁ ଶିକ୍ଷିତ କରାଇବା ସମ୍ଭବପର । ଏଥିରେ କମ୍ୟୁନିଷ୍ଟମାନଙ୍କର ଦୃଢ଼ ବିଶ୍ୱାସ ରହିଛି । ଏହାର କେବଳ କାରଣ ନୁହେଁ ଯେ, ସମାଜବାଦୀ ଦେଶମାନେ ନୂତନ ମନୁଷ୍ୟ ଗଢ଼ିବାରେ କୃତିତ୍ୱ ହାସଲ କରିସାରିଲେଣି । ଏହାର ଆଉ ଏକ କାରଣ ହେଉଛି ଯେ, ସେମାନେ ପ୍ରତିଦିନ ସେହି ମାର୍କସବାଦୀ ଲେନିନ୍‌ବାଦୀ ଶିକ୍ଷା ଦ୍ୱାରା ପରିଚାଳିତ ହେଉଛନ୍ତି, ଯାହା ଅନୁସାରେ ମନୁଷ୍ୟର ଚେତନା ହେଉଛି, ତାର ଜୀବନଧାରଣର ଅବସ୍ଥା ଓ ତାର ସାମାଜିକ ବ୍ୟବସ୍ଥାର ଏକ ପ୍ରତିଫଳନ ମାତ୍ର ।

ନିଜର ଜୀବନଧାରଣ ଅବସ୍ଥାର ପରିବର୍ତ୍ତନ ଘଟିବା ଦ୍ୱାରା ଲୋକେ ମଧ୍ୟ ନିଜ ନିଜକୁ ଆଉ ନିଜର ଚେତନାକୁ ପରିବର୍ତ୍ତନ କରିଥାନ୍ତି ।

ନୂତନ ମନୁଷ୍ୟକୁ—କମ୍ୟୁନିଷ୍ଟ ସମାଜର ମନୁଷ୍ୟକୁ—ଶିକ୍ଷିତ କରିବାର ନିଷ୍ପତ୍ତି-ମୂଳକ ପ୍ରଶ୍ନ ହେଉଛି, ଲୋକଙ୍କର ସାମାଜିକ ସତ୍ତାକୁ ପରିବର୍ତ୍ତନ କରିବା, ଅତି ଉନ୍ନତଶୀଳ ଭୌତିକ ଓ ଟେକ୍‌ନିକାଲ ଭିତ୍ତି ସୃଷ୍ଟି କରିବା, ସମାଜର ଭୌତିକ ସାଂସ୍କୃତିକ ସମ୍ପଦ ବୃଦ୍ଧି କରିବା, କମ୍ୟୁନିଷ୍ଟ ସାମାଜିକ ସମ୍ପର୍କମାନ ଗଠନ କରିବା । ଏହିସବୁ କର୍ତ୍ତବ୍ୟ ପୂରଣରେ ପ୍ରକ୍ରିୟା ମଧ୍ୟରେ ଶ୍ରମର ପ୍ରକ୍ରିୟା ବିବିଧ ପ୍ରକାର ! ସର୍ବସାଧାରଣ କାର୍ଯ୍ୟର ପ୍ରକ୍ରିୟା ମଧ୍ୟରେ ନୂତନ ଲୋକ ଶିକ୍ଷିତ ହେଉଛନ୍ତି,—ପୁରାତନ ପୁଞ୍ଜିବାଦୀ ବ୍ୟବସ୍ଥାର ସମସ୍ତ ଆବର୍ଜନା ମଧ୍ୟରୁ ଶୁଦ୍ଧପୂତ ପରିଷ୍କୃତ ହୋଇ ଉଠୁଛନ୍ତି ।

ସମାଜବାଦୀ ଜୀବନର ପାଠଶାଳା ହେଉଛି, କମ୍ୟୁନିଷ୍ଟ ଶିକ୍ଷାର ସର୍ବଶ୍ରେଷ୍ଠ ବିଦ୍ୟାଳୟ ।

କେବେ ଆମେ ସ୍ୱଭାବତଃ ଆଶା କରିବୁ ନାହିଁ ଯେ, ବସ୍ତୁଗତ ଅବସ୍ଥାର ପ୍ରଭାବରେ କେବଳ ଲୋକଙ୍କ ମନର ସ୍ୱତଃ ପରିବର୍ତ୍ତନ ଘଟିବ ; କାରଣ, ତାହା ଯେତେ ଗୁରୁତ୍ୱପୂର୍ଣ୍ଣ ହେଲେ ବି କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ଅନୁଷ୍ଠିତ କଠୋର

ଓ କଷ୍ଟକର, ଧାରାବାହିକ, ଉଦ୍ଦେଶ୍ୟପୂର୍ଣ୍ଣ, ମତାଦର୍ଶଗତ ଶିକ୍ଷାମୂଳକ କାର୍ଯ୍ୟ ବିନା ନୂତନ ମନୁଷ୍ୟ ଗଠନ କରି ପାରିବ ନାହିଁ ।

ସମାଜବାଦୀ ସମାଜ ବିବିଧ ପ୍ରକାରର ମତାଦର୍ଶଗତ ଶିକ୍ଷାର ଉପାୟ ପ୍ରୟୋଗ କରେ । ମାଧ୍ୟମିକ ଓ ଉଚ୍ଚ ଶିକ୍ଷା ବ୍ୟବସ୍ଥା ସୂତ୍ରରେ, ସାମାଜିକ ବିଜ୍ଞାନ, କଳା, ସାହିତ୍ୟ, ପ୍ରଚୁର ଆନ୍ଦୋଳନ ଓ ଗଣ-ଶିକ୍ଷାର ମାଧ୍ୟମରେ ସାଂସ୍କୃତିକ ପ୍ରତିଷ୍ଠାନ, ଓ ଆଦର୍ଶଗତ କ୍ଷେତ୍ରରେ, ଅନ୍ୟାନ୍ୟ ବ୍ୟବସ୍ଥା ଗତ ପନ୍ଥାରେ ବି ମତାଦର୍ଶର ପ୍ରଭାବ ପକାଇବା ଲାଗି ତାର ଅସୀମ ସମ୍ଭାବନା ରହିଛି । ସମାଜବାଦୀ ସମାଜର ସଭ୍ୟମାନଙ୍କୁ ଶୈଶବ ଅବସ୍ଥାରୁ ଆମ ସମୟର ସବୁଠାରୁ ପ୍ରଗତିଶୀଳ ମତବାଦ କମ୍ୟୁନିଷ୍ଟ ମତବାଦରେ ଶିକ୍ଷା ଦେବାକୁ ଦମଥ ହୋଇଅଛି ଓ ସଦାସର୍ବଦା ଶିକ୍ଷା ଦେବାରେ ଲାଗିଛି ।

ସୋଭିଏତ୍ ସୁନ୍ଦଥନର କମ୍ୟୁନିଷ୍ଟ ପାର୍ଟି କମ୍ୟୁନିଜମ୍ ନିର୍ମାଣକାରୀମାନଙ୍କ ଲାଗି ତାର ନୂତନ କାର୍ଯ୍ୟକ୍ରମରେ ନୈତିକ ନିୟମମାନ ପ୍ରଣୟନ କରିଛି । ଏହି ନିୟମ ସବୁର ମୁଖ୍ୟ ଭାବ ହେଉଛି, ଲେନିନ୍‌ଙ୍କର ସିଦ୍ଧାନ୍ତ,—“କମ୍ୟୁନିଜମ୍‌ର ସଂହତ ଓ ଚରମ ଉତ୍କର୍ଷ ଲାଗ ସଂଗ୍ରାମ ହେଉଛି କମ୍ୟୁନିଷ୍ଟ ନୈତିକତା”ର ମୂଳଭିତ୍ତି । କମ୍ୟୁନିଜମ୍ ଭଳି ମହାନ ଏକ ଆଦର୍ଶର ବିଜୟ ପ୍ରତି ଲୋକର କାର୍ଯ୍ୟ, ସର୍ବସାଧାରଣ କ୍ଷେତ୍ରରେ ତାର କ୍ରିୟାକଳାପ, ତାର ଆଚରଣ ଆଉ ସମଗ୍ର ଜୀବନର ଅବଦାନ- ଏହିସବୁ ଯୋଗେ ସମାଜବାଦୀ ସମାଜ ତାର ନୈତିକ ଗଡ଼ଣକୁ ବିଚାର କରେ ।

ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ମତାଦର୍ଶଗତ କାର୍ଯ୍ୟର ପ୍ରଧାନ କର୍ତ୍ତବ୍ୟ ହେଲା,—କମ୍ୟୁନିଷ୍ଟ ପାର୍ଟି ପ୍ରୋଗ୍ରାମରେ ନିର୍ଦ୍ଧାରିତ ହୋଇଥିବା ସମସ୍ତ ନୈତିକ ଗୁଣକୁ ସୋଭିଏତ୍ ଲୋକଙ୍କର ବ୍ୟବହାର ଧାରାରେ ରୂପାୟିତ କରିବା, ସେଗୁଡ଼ିକୁ ସେମାନଙ୍କ ଜୀବନର ଅଙ୍ଗୀଭୂତ କରିବା ଏବଂ ସେମାନଙ୍କର ଗଭୀର ବ୍ୟକ୍ତିଗତ ଉପଲବ୍ଧି ଓ ଅଭ୍ୟାସରେ ପରିଣତ କରିବା ।

## ନିର୍ମାଣକାରୀଙ୍କର କମ୍ୟୁନିଜମ୍ ନୈତିକ ଗଠନ

କମ୍ୟୁନିଷ୍ଟ ସମାଜ-ନିର୍ମାଣକାରୀଙ୍କ ନୈତିକ ଗଠନର ମୁଖ୍ୟ ଗୁଣଗୁଡ଼ିକ କଣ ?

ମାର୍କସବାଦୀ-ଲେନିନବାଦୀ ବିଶ୍ୱ ଦୃଷ୍ଟିକୋଣ ହେଉଛି, କମ୍ୟୁନିଷ୍ଟ ନୈତିକତାର ଭିତ୍ତି ପ୍ରସ୍ତର । ଏହି ଦୃଷ୍ଟିକୋଣ ଲୋକଙ୍କୁ ସାମାଜିକ ବିକାଶର ନିୟମ ଓ ପରିପ୍ରେକ୍ଷ୍ୟ ସମ୍ବନ୍ଧରେ ବୈଜ୍ଞାନିକ ଜ୍ଞାନ ପ୍ରଦାନ କରେ, ଶ୍ରମଜୀବୀ ଲୋକଙ୍କୁ

ସଂଗ୍ରାମର ଲକ୍ଷ୍ୟ ବୁଝିବାରେ ସାହାଯ୍ୟ କରେ ଓ ସେହି ଲକ୍ଷ୍ୟ ଲାଭ କରିବା ଦିଗରେ ଉଚିତ ମାର୍ଗର ନିର୍ଦ୍ଦେଶ ଦିଏ ।

ସମାଜବାଦୀ ସମାଜର ସଭ୍ୟମାନଙ୍କର ମାର୍କସବାଦ-ଲେନିନ୍‌ବାଦ ଅଧ୍ୟୟନ ଫଳରେ ସେମାନଙ୍କର ନୈତିକ ଗଠନ ସମ୍ଭବ ହୁଏ, ସେମାନଙ୍କ ମଧ୍ୟରେ କମ୍ୟୁନିଷ୍ଟ ନୈତିକତାର ଅଭିବୃଦ୍ଧି ସାଧିତ ହୁଏ । ଅର୍ଥାତ୍, କମ୍ୟୁନିଷ୍ଟ ଆଦର୍ଶ ପ୍ରତି ଅନୁରକ୍ତି, ଦେଶପ୍ରେମ, ଆନ୍ତର୍ଜାତୀୟତା, ଶ୍ରମଶୀଳତା, ସର୍ବସାଧାରଣ କାର୍ଯ୍ୟ ଦିଗରେ ଉଚ୍ଚ ଚେତନା, ସମଷ୍ଟି ଭାବ, ବନ୍ଧୁତ୍ୱପୂର୍ଣ୍ଣ ପାରସ୍ପରିକ ସାହାଯ୍ୟ, ନିଷ୍ଠାପର ଭାବେ ସମାଜବାଦୀ ଜୀବନଧାରାର ନୀତିନିୟମ ପାଳନ — ଏହି ସବୁ କମ୍ୟୁନିଷ୍ଟ ନୈତିକ ଗୁଣ ବିକଶିତ ହୁଏ । ଯେଉଁ ବ୍ୟକ୍ତି ମତାଦର୍ଶ କ୍ଷେତ୍ରରେ ଦକ୍ଷତା ହାସଲ କରେ, ମାର୍କସବାଦ ଲେନିନ୍‌ବାଦକୁ ଗଭୀର ଭାବେ ଆୟତ୍ତ କରେ, ଅନାୟାସରେ ତା'ର ସମସ୍ତ ଶକ୍ତିକୁ କମ୍ୟୁନିଷ୍ଟ ନିର୍ମାଣ କାର୍ଯ୍ୟରେ ଉତ୍ସର୍ଗ କରେ, ସେ ବ୍ୟକ୍ତି ସାଧୁ ସଚ୍ଚୋଟ ନିଷ୍ଠାପର ଶ୍ରମ ଓ ନିଃସ୍ୱାର୍ଥପର ଜନସେବା ମାର୍ଗରୁ କେବେହେଲେ ସ୍ଖଳିତ ହେବ ନାହିଁ କି ଅପସରି ଯିବ ନାହିଁ ।

ସମାଜର ମଙ୍ଗଳ ଲାଗି ସର୍ଜନଶୀଳ କାର୍ଯ୍ୟ ହେଉଛି, କମ୍ୟୁନିଷ୍ଟ ନୈତିକତାର ମୂଳଭିତ୍ତି । ଏହାହିଁ ହେଉଛି, କମ୍ୟୁନିଜମ୍ ନିର୍ମାଣକାରୀମାନଙ୍କ ନୈତିକ ଗଠନର ନିର୍ଣ୍ଣୟକାରୀ ଗୁଣ, ତାଙ୍କର ସାମାଜିକ ଚେତନାର ପ୍ରଧାନ ମାନଦଣ୍ଡ । କମ୍ୟୁନିଷ୍ଟ ଚେତନାର, କମ୍ୟୁନିଜମ୍ ପ୍ରତି ଅନୁରକ୍ତିର କଷଟି ପଥର ହେଉଛି ଶ୍ରମ ପ୍ରତି ଲୋକଙ୍କର ମନୋଭାବ ।

କାର୍ଯ୍ୟ ସମ୍ବନ୍ଧରେ ଲୋକଙ୍କ ମତବାଦରେ ଏକ ବିପ୍ଳବ ବିନା ନୂତନ ସମାଜ ନିର୍ମାଣ ଅସମ୍ଭବ । ସମାଜବାଦୀ ବ୍ୟବସ୍ଥା ଶୋଷଣରୁ ଶ୍ରମକୁ ମୁକ୍ତ କରି ତାକୁ ପ୍ରକୃତରେ ସର୍ଜନଶୀଳ କରିଛି; ଶୋଷକମାନଙ୍କ ଦ୍ୱାରା ଶ୍ୱାସରୁଦ୍ଧ ହୋଇ ରହିଥିବା ଶ୍ରମର ଆନନ୍ଦକୁ ପୁନଃସଂସ୍ଥାପିତ କରିବା ଦ୍ୱାରା ସେଥିପ୍ରତି ଲୋକଙ୍କର ମନୋଭାବକୁ ବଦଳାଇ ଦେଇଛି । ବିପୁଳ ଭାବେ ଅଧିକ ସଂଖ୍ୟକ ଲୋକଙ୍କ ପକ୍ଷରେ ଏହା କେବଳ ଏକ ଜୀବନ-ଧାରଣର ଉପାୟ ମାତ୍ର ହୋଇନାହିଁ, ଏହା ଏକ ମୁଖ୍ୟ ନୈତିକ କର୍ତ୍ତବ୍ୟ ହୋଇଛି । ସମାଜବାଦୀ ଦେଶରେ ପ୍ରତ୍ୟେକ କାର୍ଯ୍ୟ ସମ୍ମାନିତ ଓ ଶ୍ରଦ୍ଧାଭାଜନ । ଶ୍ରମର ପ୍ରତ୍ୟେକଟି ରୂପ ସର୍ଜନଶୀଳ ଉଦ୍ୟମ, ଖ୍ୟାତି ଓ ସର୍ବସାଧାରଣ ସ୍ୱୀକୃତି ଦିଗରେ ପଥ ଉନ୍ମୁକ୍ତ କରେ ।

ଶ୍ରମ ପ୍ରତି ଲୋକଙ୍କର ନୂତନ ମନୋଭାବ, ସେମାନଙ୍କର ଚେତନା, ଉତ୍ସାହ ଓ ପ୍ରେରଣା ହେଉଛି ସମାଜବାଦର ସର୍ବଶ୍ରେଷ୍ଠ ସୁଯୋଗ, ତାର ବିଜୟର ପ୍ରଧାନ ଉତ୍ସ ।

ସାମ୍ରାଜ୍ୟବାଦୀ ମୁଖପାତ୍ରମାନେ ଏହି ବିଷୟ ସ୍ୱୀକାର କରିବାକୁ ବାଧ୍ୟ ହୋଇଛନ୍ତି । ଏ ସମ୍ପର୍କରେ ଆଗ୍ରହପ୍ରଦ ବିଷୟ ହେଉଛି, ଆମେରିକାର ଜଣେ ବୃହତ୍ ବ୍ୟବସାୟୀ ଗ୍ଲେନ୍ସ ମଟିମର୍‌ଙ୍କର ସ୍ୱୀକାରୋକ୍ତି । ସେ ସୋଭିଏତ୍ ଇଉନିଅନ ଭ୍ରମଣ କଲା ପରେ ରୁଷର "ଗୁପ୍ତ ଅସ୍ତ୍ର" ସମ୍ବନ୍ଧରେ ଏକ ଲେଖା ପ୍ରକାଶ କରିଥିଲେ । ସୋଭିଏତ ଇଉନିଅନରେ ଲେଖକଙ୍କର 'ଦ ସତ୍ୱ', 'ବେଠ ପ୍ରଥ' ଓ 'ସ୍ୱୈର ଶାସନ' ଇତ୍ୟାଦି ସେହି ପୁରୁଣା ଘଷରା ବୁର୍ଜୁଆ ପ୍ରଚାରର ପୁନରାବୃତ୍ତି ନ କରି, ସୋଭିଏତ୍‌ର ବୈଜ୍ଞାନିକ ଓ ଅନୁସନ୍ଧାନ ଯୁଗରେ ଏ ଭଳି କଥାସବୁ ହାସ୍ୟାସ୍ପଦ ମନଗଢ଼ା କାହାଣୀ ହେବ ଉପଲବ୍ଧି କରି, ସେ ସୋଭିଏତ୍ ଇଉନିଅନରେ ସଫଳତାର ପ୍ରକୃତ କେନ୍ଦ୍ର କେଉଁଠି ତାହା ଦେଖିବାକୁ ଚେଷ୍ଟା କରିଥିଲେ । ବାସ୍ତବିକ ! ଲୋକ ତାଙ୍କର ବିବୃତି ସହିତ ଏକମତ ନ ହୋଇ ରହି ନ ପାରେ । କାରଣ, ସେ ଲେଖିଥିଲେ, "ମୋତେ ଲାଗୁଛି, ମୁଁ ସୋଭିଏତ୍ ଇଉନିଅନର ଗୁପ୍ତ ଅସ୍ତ୍ର ଆବିଷ୍କାର କରି ପାରିଛି । ମୋର ବିଶ୍ୱାସ, ମୁଖ୍ୟତଃ କୃତିତ୍ୱ ହାସଲ ଲାଗି କାମ କରିବା ଦିଗରେ ଲୋକଙ୍କର ବିଶ୍ୱଜନୀନ ଇଚ୍ଛା ଓ ଆକାଙ୍କ୍ଷା ହେଉଛି ସେହି ଗୋପନ ଅସ୍ତ୍ର ।"

ପ୍ରକୃତରେ, ସମାଜବାଦୀ ଶ୍ରମରୁ କମ୍ୟୁନିଷ୍ଟ ଶ୍ରମକୁ ଲୋକେ ଅଗ୍ରଗତି କରୁଛନ୍ତି । କମ୍ୟୁନିଷ୍ଟ ଶ୍ରମ ଟେକ୍‌ନିକାଲ ଶ୍ରମକୁ କେବଳ ସହଜ, ସରଳ କରୁନାହିଁ, ସେହି ଶ୍ରମ ସଦାସର୍ବଦା ସମ୍ପଦ ଅଭିବୃଦ୍ଧି ସାଧନରେ ନିୟୋଜିତ ହେଉଛି । ସାମାଜିକଭାବେ ମହତ୍ତ୍ୱ-ପୂର୍ଣ୍ଣ ଅତି ଉଚ୍ଚ ସାମାଜିକ ଚେତନାର ଏକ ପ୍ରକାଶନ ସ୍ୱରୂପ, ଜୀବନର ମୁଖ୍ୟ ପ୍ରୟୋଜନୀୟତା ଭଳି ଏହା ଏକ ଅଭ୍ୟାସରେ ଓ ଆନନ୍ଦର ଉତ୍ସରେ ପରିଣତ ହେଉଛି ।

ସମାଜବାଦୀ ସମ୍ପତ୍ତି ପ୍ରତି ମିତବ୍ୟୟିତା ହେଉଛି, କମ୍ୟୁନିଜ୍‌ମ୍ ନିର୍ମାଣକାରୀ-ମାନଙ୍କ ନୈତିକ ଗଠନ ପକ୍ଷରେ ଏକ ପ୍ରଧାନ ଗୁଣ । ସର୍ବସାଧାରଣ ସମ୍ପତ୍ତି ସମାଜ-ବାଦୀ ବ୍ୟବସ୍ଥାର ଅର୍ଥନୈତିକ ଭିତ୍ତି ଭଳି କାର୍ଯ୍ୟ କରେ । ତାହା ହେଉଛି, ତାର ବଳ ଓ ଶକ୍ତିର ମୌଳିକ ହେତୁ । ସମାଜବାଦୀ ସମାଜର ପ୍ରତ୍ୟେକ ସଭ୍ୟ ସେହି ସମ୍ପଦର ସୁରକ୍ଷା ଓ ଅଭିବୃଦ୍ଧି ଦିଗରେ ଅଗ୍ରଣୀ ।

ସମାଜବାଦୀ ବ୍ୟବସ୍ଥାରେ ପ୍ରତ୍ୟେକ ବ୍ୟକ୍ତିର କଲ୍ୟାଣ ସମସ୍ତଙ୍କ କଲ୍ୟାଣ ଉପରେ, ସମାଜର ସମ୍ପଦ ଉପରେ ନିର୍ଭର କରେ । ସମାଜବାଦୀ ସମାଜ ଯେତେ ସମୃଦ୍ଧ ହେବ, ତାର ସଭ୍ୟମାନଙ୍କ ଜୀବନଧାରଣ ମାନ ସେତେ ଉନ୍ନତ ହେବ । ସାମାଜିକ ସମ୍ପତ୍ତିର ସୁରକ୍ଷା ଓ ଅଭିବୃଦ୍ଧି ହେଉଛି, ସାମ୍ୟବାଦୀ ସାମାଜିକ ସମ୍ପର୍କ ଓ ସାମ୍ୟବାଦୀ ଭୌତିକ ଓ ଆତ୍ମିକ ପ୍ରାଚୁର୍ଯ୍ୟ ସୃଷ୍ଟି କରିବା ଦିଗରେ ଅଗ୍ରଗମନର ପ୍ରଧାନ ଆବଶ୍ୟକତା ।

ଲେନିନ୍ ଲେଖିଥିଲେ, କମ୍ୟୁନିଜମ୍ ଆରମ୍ଭ ହୁଏ—ଯେତେବେଳେ ସାଧାରଣ ଶ୍ରମିକମାନେ ଆତ୍ମୋତ୍ସର୍ଗମୂଳକ ଉଦ୍‌ବେଗ ପ୍ରଦର୍ଶନ କରିବାକୁ ଆରମ୍ଭ କରନ୍ତି, ଶ୍ରମର ଉତ୍ପାଦକତାର ବୃଦ୍ଧି ଆଣିବା ଲାଗି ପ୍ରତ୍ୟେକ ମହଣ ଶସ୍ୟ, କୋଇଲା, ଲୁହା ଓ ଅନ୍ୟାନ୍ୟ ଉତ୍ପନ୍ନ ପଦାର୍ଥର ସଂରକ୍ଷଣ ଲାଗି କଠିନ ପରିଶ୍ରମ କରିବାକୁ ଦୃଢ଼ ସଂକଳ୍ପ ନିଅନ୍ତି। ଯେତେବେଳେ ଏହି ଦ୍ରବ୍ୟ ସବୁ ବ୍ୟକ୍ତିଗତ ଭାବେ ଶ୍ରମିକ ବା ତାର ନିକଟ ଆତ୍ମୀୟ କୁଟୁମ୍ବଙ୍କ ପାଖକୁ ଯାଏ ନାହିଁ, ଯାଏ ତାର ସୁଦୂର ଆତ୍ମୀୟ କୁଟୁମ୍ବ ଅର୍ଥାତ୍ ସମଗ୍ର ଭାବେ ସମାଜର କୋଟି କୋଟି ଲୋକଙ୍କ ପାଖକୁ, ଏହା ଜାଣି ଶ୍ରମିକମାନେ ଉତ୍ପାଦନ ପାଇଁ କଠୋର ଶ୍ରମ କରନ୍ତି।

ସମାଜବାଦୀ ସମ୍ପତ୍ତି ପ୍ରତି ଉଦ୍‌ବେଗର ଅର୍ଥ ହେଲା, ନିଜର କାର୍ଯ୍ୟ ଦ୍ୱାରା ତାକୁ ଅତ୍ୟନ୍ତ ବୃଦ୍ଧି କରାଇବା, ଶ୍ରମ ଉତ୍ପାଦକତାକୁ ଉନ୍ନତ କରି, ଉତ୍ପାଦନ ପରିମାଣକୁ ପ୍ରସାରିତ କରି, ଉତ୍ପନ୍ନ ଦ୍ରବ୍ୟକୁ ଅଧିକ ଉତ୍କୃଷ୍ଟ କରି ଏବଂ ସର୍ବସାଧାରଣ ସମ୍ପତ୍ତିର କ୍ଷୁଦ୍ର କଣିକାକୁ ମଧ୍ୟ ଯତ୍ନରେ ରଖି, ସର୍ବସାଧାରଣ ସମ୍ପଦର ଅଭିବୃଦ୍ଧି ଘଟାଇବା।

ସାମୂହିକତା ଓ ବନ୍ଧୁତ୍ୱପୂର୍ଣ୍ଣ ପାରସ୍ପରିକ ସାହାଯ୍ୟ ହେଉଛି, କମ୍ୟୁନିଜମ୍ ନିର୍ମାଣକାରୀମାନଙ୍କ ନୈତିକତା ଗଠନର ଏକ ଅବିଚ୍ଛେଦ୍ୟ ଗୁଣ।

ବ୍ୟକ୍ତିଗତ ସମ୍ପତ୍ତି ଉପରେ ପ୍ରତିଷ୍ଠିତ ପାରମ୍ପରିକ ବୁର୍ଜୁଆ ନୈତିକତା ପୁଞ୍ଜିବାଦୀ ସମାଜରେ ପ୍ରଚଳିତ। ଏହାର ମୂଳରେ ରହିଛି ବ୍ୟକ୍ତିବାଦିତ୍ୱ, ସ୍ୱାର୍ଥପରତା, ଧନ ସମ୍ପତ୍ତିର ପିପାସା, ଶତ୍ରୁତା ଓ ପ୍ରତିଦ୍ୱନ୍ଦ୍ୱିତା। "ମନୁଷ୍ୟ ପ୍ରତି ମନୁଷ୍ୟ ହେଉଛି ବ୍ୟାଘ୍ର"—ବୁର୍ଜୁଆ ନୈତିକତାର ଏହା ମୌଳିକ ନୀତି। ପୁଞ୍ଜିବାଦୀ ସମାଜରେ "ଜଣେ ଅପରର ଗଳା କାଟି ଯାଇପାରେ," ଧନୀ ହୋଇ ପାରେ କେବଳ ଅନ୍ୟକୁ ଦରିଦ୍ର ଓ ସର୍ବସ୍ୱାନ୍ତ କରି।

"ଅନ୍ୟକୁ ଦଳି ଧୂଳି କରି ଦିଅ, ନିଜେ କାନ୍ଧ ଉପରକୁ ଉଠ"—ଏହି ହେଲା ବୁର୍ଜୁଆ ସମାଜର ନୀତିବାକ୍ୟ, ଜୀବନର ମୁଖ୍ୟ ଉଦ୍ଦେଶ୍ୟ।

ଲେନିନ୍ କହିଥିଲେ, "ଲୁଣ୍ଠନ କର କିମ୍ବା ଲୁଣ୍ଠିତ ହୁଅ, ଅନ୍ୟ ଲାଗି କାମ କର କିମ୍ବା ଅନ୍ୟକୁ ନିଜ ଲାଗି ଖଟାଅ, ଦାସମାଲିକ ହୁଅ ବା ଦାସ ହୁଅ, ଏହି ନୀତି ଉପରେ ପୁରାତନ ସମାଜ ପ୍ରତିଷ୍ଠିତ। ଏହା ସ୍ୱାଭାବିକ ଯେ, ଏହିପରି ସମାଜରେ ବଢିଥିବା ଲୋକେ, କହିବାକୁ ଗଲେ, ତାଙ୍କର ମା'ର କ୍ଷୀର ସହିତ ଯେଉଁ ଅଭ୍ୟାସ, ଧାରଣା ଓ ମନସ୍ତତ୍ତ୍ୱ ଆହରଣ କରନ୍ତି, ତାହା ହେଉଛି, ଜଣେ ଦାସମାଲିକ କିମ୍ବା ଦାସ, କିମ୍ବା ଏକ କ୍ଷୁଦ୍ର ମାଲିକ, କ୍ଷୁଦ୍ର କର୍ମଚାରୀ, ବା ବୁଦ୍ଧିଜୀବୀ—ସଂକ୍ଷେପରେ




ସୋଭିଏତ୍‌ର ଏକ ଇଂଜିନିୟରିଂ କାରଖାନାରେ ସାମ୍ୟବାଦୀ ଶ୍ରମ ପ୍ରତିନିଧିମାନଙ୍କର ଗୋଟିଏ ଦଳ ।

ଏଭଳି ଏକ ଲୋକ, ଯିଏ କି କେବଳ ନିଜ ଲାଗି ଚିନ୍ତା କରେ, ଅନ୍ୟ କାହାରି ଲାଗି କେବେହେଲେ ମୁଣ୍ଡ ଘୂରାଏ ନାହିଁ,'' ଏହି ସ୍ୱଭାବର ।

ସମାଜବାଦୀ ସମାଜରେ ଲୋକମାନଙ୍କର ସଂପର୍କ ଏକାବେଳକେ ଭିନ୍ନ ମତ ଉପରେ ପ୍ରତିଷ୍ଠିତ ।

''ପ୍ରତ୍ୟେକ ନିଜ ପାଇଁ ଆଉ ସବୁ ଶେଷକୁ ଯମ ଖାଉ'' ଏ ନୀତିବାକ୍ୟକୁ ଭାଙ୍ଗି, ତା ପରିବର୍ତ୍ତେ ''ଜଣେ ଲାଗି ସମସ୍ତେ ଓ ସମସ୍ତଙ୍କ ଲାଗି ଜଣେ,'' ଏହି ନୀତିବାକ୍ୟକୁ ପ୍ରବର୍ତ୍ତିତ କରି ତାକୁ ଏକ ଅଭ୍ୟାସରେ ପରିଣତ କରିବା ଦିଗରେ ସମାଜବାଦୀ ଦେଶଗୁଡ଼ିକର କମ୍ୟୁନିଷ୍ଟ ପାର୍ଟି ସବୁ ପ୍ରବଳ ତତ୍ପରତାର ସହ କାର୍ଯ୍ୟ କରିଛନ୍ତି । ସମାଜବାଦୀ ଦେଶମାନଙ୍କରେ ''ବୁର୍ଜୁଆ ବ୍ୟକ୍ତିଗତ ସଂପତ୍ତି ସେପରି ''ସମାଜବାଦୀ ସର୍ବସାଧାରଣ ସଂପତ୍ତି'' ଦ୍ୱାରା ପ୍ରତିସ୍ଥାପିତ ହୋଇଛି, ଠିକ୍ ସେହିପରି ମାନବିକ କମ୍ୟୁନିଷ୍ଟ ନୈତିକତା, ମାନବ ବିଦ୍ୱେଷ, ବୁର୍ଜୁଆ ନୈତିକତାର ସ୍ଥାନ ଅଧିକାର କରିଛି । ସ୍ୱାର୍ଥପରତା, ବ୍ୟକ୍ତିବାଦିତ୍ୱ, ଶତ୍ରୁତା, ପ୍ରତିଦ୍ୱନ୍ଦିତା ବିରୁଦ୍ଧରେ ପ୍ରବର୍ତ୍ତିତ ହୋଇଛି କମ୍ୟୁନିଷ୍ଟ ନୈତିକତାର ସହଜାତ ଭ୍ରାତୃତ୍ୱପୂର୍ଣ୍ଣ ପାରସ୍ପରିକ ସାହାଯ୍ୟ ଓ ଲୋକମାନଙ୍କର ମଧ୍ୟରେ ବନ୍ଧୁତ୍ୱ ଆଉ ସହଯୋଗ ।''

ସମାଜବାଦ ଅଧୀନରେ ଲୋକ ଲୋକ ମଧ୍ୟରେ ମାନବୀୟ ସଂପର୍କ ଓ ପରସ୍ପର ପ୍ରତି ଶ୍ରଦ୍ଧା ସମ୍ମାନ ପ୍ରତିଷ୍ଠିତ ହୁଏ । ମନୁଷ୍ୟ ପ୍ରତି ମନୁଷ୍ୟ ହୁଏ ବନ୍ଧୁ, ସାଇ ଓ ସାଥୀ । ପ୍ରତ୍ୟେକ ବ୍ୟକ୍ତିର କଲ୍ୟାଣ, ଆଗରୁ ସମସ୍ତ ଲୋକଙ୍କର କଲ୍ୟାଣ ଉପରେ ନିର୍ଭର କରେ । ସମସ୍ତ ଶ୍ରମଜୀବୀ ଲୋକେ ସେମାନଙ୍କ ଦେଶର ଆଉ ସମସ୍ତ ସମାଜବାଦୀ ଗୋଷ୍ଠୀର ବିକାଶ ଓ ସଂହତିରେ ଓ କମ୍ୟୁନିଜମର ନିର୍ମାଣରେ ବିଶେଷ ଭାବେ ଆଗ୍ରହୀ ହୋଇ ଉଠନ୍ତି । କାରଣ, ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ଲୋକର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ସମୃଦ୍ଧିର ଏହାହିଁ ହୁଏ ପ୍ରଧାନ ଉତ୍ସ ।

ସମାଜବାଦୀ ଦେଶର ନାଗରିକମାନଙ୍କର ସର୍ବସାଧାରଣ କର୍ତ୍ତବ୍ୟ ଓ ସମାଜ ପ୍ରତି ସେମାନଙ୍କର ଦାୟିତ୍ୱ ଓ କୃତଜ୍ଞତା ସଂକ୍ରାନ୍ତ ଗଭୀର ଉପଲବ୍ଧି ମଧ୍ୟରେ ହିଁ ସାମୂହିକତା ପ୍ରକାଶ ପାଏ । ସେମାନଙ୍କର ଚିନ୍ତା ଓ କାର୍ଯ୍ୟରେ ବ୍ୟକ୍ତିଗତ ଓ ସାମାଜିକ ଭାବ ଅତି ନିବିଡ଼ ଭାବେ ପରସ୍ପର ସହିତ ଜଡ଼ିତ ହୋଇ ସମ୍ମିଶ୍ରିତ ହୁଏ, ଏକ ଭାବରେ ପରିଣତ ହୁଏ ।

ଅନ୍ତରର ଗଭୀର ଉପଲବ୍ଧି ନାଗରିକ କର୍ତ୍ତବ୍ୟ, ଓ ସର୍ବସାଧାରଣ ସ୍ୱାର୍ଥ ପ୍ରତି ବ୍ୟକ୍ତିଗତ ସ୍ୱାର୍ଥର ଅନୁଗତ୍ୟ ଯୋଗୁଁ ସମାଜ ଲାଗି ନିଃସ୍ୱାର୍ଥପର କର୍ମର, —ଲୋକମାନଙ୍କ ମଙ୍ଗଳ ପାଇଁ ପ୍ରଗାଢ଼ ନିଷ୍ଠାର ସହିତ କାର୍ଯ୍ୟର—ଚମତ୍କାର ଦୃଷ୍ଟାନ୍ତ ସୋଭିଏତର 'ବାସ୍ତବତା' ଅର୍ଥାତ ବାସ୍ତବ ଜୀବନ ହିଁ ପ୍ରଦାନ କରେ । ଜଣେ ବୁଣାଳୀ ଭାଲେଣ୍ଟିନା ଗାଗାନୋଭାଙ୍କ କାର୍ଯ୍ୟ କଥା ଦେଖାଯାଉ ! ସେ ତାଙ୍କ ମିଲ୍‌ର ସର୍ବଶ୍ରେଷ୍ଠ ଟିମ୍ ବା ଦଳର ନେତ୍ରୀ । କିନ୍ତୁ ସେ ସ୍ୱ ଇଚ୍ଛାରେ ପଛରେ ପଡ଼ିଥିବା ଦଳର କାର୍ଯ୍ୟର ଉନ୍ନତି ଲାଗି ତା ସହିତ ଯୋଗ ଦେଲେ, ଯଦିଓ ତାହା ଫଳରେ ତାଙ୍କର ଆୟ କିଛି ଦିନ ପାଇଁ କମିଗଲା । ତାଙ୍କର ଦୃଷ୍ଟାନ୍ତକୁ ଏବେ ଲକ୍ଷ ଲକ୍ଷ ଲୋକ ସମାଜର ସ୍ୱାର୍ଥ ଦୃଷ୍ଟିରୁ ଅନୁସରଣ କରୁଛନ୍ତି । ସେମାନେ ଅଗୁଆ ଟିମ୍ ବା ଦଳ, ଆଗୁଆ କାରଖାନା ଓ ଯୌଥ ଖମାରରୁ ଯାଇ ଯେଉଁମାନେ ପଛରେ ପଡ଼ିଛନ୍ତି, ତାଙ୍କ ସହ ଯୋଗ ଦେଇଛନ୍ତି, ସେମାନଙ୍କୁ ଉନ୍ନତ କରିବା ଲାଗି ସହାୟ ହେଉଛନ୍ତି ।

ସୋଭିଏତ୍ ଲୋକଙ୍କର ଉଚ୍ଚତମ ଚେତନାର ଚମତ୍କାର ଆଦର୍ଶ ଦେଖିବାକୁ ମିଳୁଛି—କମ୍ୟୁନିଷ୍ଟ ଶ୍ରମ ଆନ୍ଦୋଳନରେ ନୂତନ ପତିତ ଭୂମି ଆବାଦ କରିବାରେ, ସ୍ତ୍ରୀପୁରୁଷମାନଙ୍କର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ଆଉ ସୋଭିଏତ୍ ଇଉନିଅନର ଉତ୍ତର ଓ ପୂର୍ବ ଭାଗର ନୂତନ ଅଞ୍ଚଳକୁ ବାସୋପଯୋଗୀ କରିବାରେ ।

ସାମୂହିକତା ଓ ଭ୍ରାତୃତ୍ୱପୂର୍ଣ୍ଣ ପାରସ୍ପରିକ ସହାୟ୍ୟ, ଏକତା ଓ ସଂହତି ସୋଭିଏତ୍ ଲୋକଙ୍କ ଜୀବନରେ ନିରନ୍ତର ଗଭୀରରୁ ଗଭୀରତର ହୋଇ ଉଠୁଛି । ସଂହତିବଦ୍ଧ ସାମୂହିକତା କୌଣସି ଦୁଃଖ କଷ୍ଟ ଦ୍ୱାରା ଦମିତ ହୁଏ ନାହିଁ । ତାହା

ଯେକୌଣସି ଉଚ୍ଚତାଙ୍କ ଶିଖର ଲଙ୍ଘନ କରିପାରେ । ସୋଭିଏତ୍ ଇଉନିଅନରେ ଏକ ଲୋକମୁଖରେ ଶୁଣାଯାଉଛି, "ଆତ୍ମତୁଷ୍ଟି ମନୁଷ୍ୟର ଶକ୍ତିକୁ ସୀମାବଦ୍ଧ କରେ ।"

ସମାଜବାଦୀ ଜୀବନଧାରାର ନିୟମଗୁଡ଼ିକୁ ସ୍ୱେଚ୍ଛାରେ ଓ ସଚେତନ ଭାବେ ପାଳନ କରିବା ଏବଂ ସର୍ବସାଧାରଣ ବ୍ୟବସ୍ଥା ଲଙ୍ଘନକାରୀମାନଙ୍କ ପ୍ରତି ଏକ ଆପୋଷହୀନ ମନୋଭାବ ପୋଷଣ କରିବା—ଏହା ହେଉଛି କମ୍ୟୁନିଜମ୍ ନିର୍ମାଣକାରୀମାନଙ୍କର ଏକ ଅଭୂତ ନୈତିକ ଗୁଣ । ସାଧୁତା, ସତ୍ୟବାଦିତା, ନୈତିକ ବିଶୁଦ୍ଧତା, ସାମାଜିକ ଓ ବ୍ୟକ୍ତିଗତ ଜୀବନରେ ବିନୟ ଓ ଶିଷ୍ଟତା, ପରିବାର ମଧ୍ୟରେ ପରସ୍ପର ପ୍ରତି ଶ୍ରଦ୍ଧା ଓ ସନ୍ତାନମାନଙ୍କର ଲାଳନପାଳନ ଦିଗରେ ହୃଦ୍‌ବେଗ ଆଉ ଅନ୍ୟାୟ, ଅସାଧୁତା, ପକ୍ଷପାତିତା, ପରଶ୍ରୀକାତରତା, ମିଥ୍ୟାବାଦ ଏବଂ ସ୍ୱାର୍ଥଗତ ଅର୍ଥଲିପ୍ସା ବିରୁଦ୍ଧରେ ଆପୋଷହୀନ ମନୋଭାବ—ଏସବୁ ହେଉଛି, କମ୍ୟୁନିଜମ ନିର୍ମାଣକାରୀଙ୍କର ନୈତିକ ନିୟମର ଅନ୍ତର୍ଭୁକ୍ତ ।

ଦେଶପ୍ରେମ ଓ ସମାଜବାଦୀ ଆନ୍ତର୍ଜାତିକତା, କମ୍ୟୁନିଜମ ନିର୍ମାଣକାରୀଙ୍କର ନୈତିକ ଗଠନ ଲାଗି ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନ ।

ସମାଜବାଦୀ ଦେଶମାନଙ୍କରେ ଲୋକଙ୍କର ଦେଶପ୍ରେମ ହେଉଛି, ଏକ ନୂତନ ଭିତ୍ତି ଧରଣର ଦେଶପ୍ରେମ । ତାହା ସଚେତନ ଓ ସକ୍ରିୟ ପ୍ରକୃତିର । ଲେନିନ୍ କହିଥିଲେ, ଦେଶକୁ ଭଲ ପାଇବା ହେଉଛି ଶହ ଶହ, ହଜାର ହଜାର ବର୍ଷ ଧରି ଏକ ଫେଲାସିଭ ବା ଦାନବନ୍ଧା ଯୁଗଯୁଗର ଆବେଗ ।

ଏକ ଶୋଷିତ ସମାଜରେ ଶ୍ରମଜୀବୀ ଲୋକମାନଙ୍କର ନିଜର ଦେଶ ଲାଗି ପ୍ରେମ, ସେମାନଙ୍କର ଶ୍ରମ, ଘର୍ମ ଓ ରକ୍ତ ଯେ ମୁଷ୍ଟିମେୟ ଧନୀ, ଜମିମାଲିକ ଓ ପୁଞ୍ଜିପତିଙ୍କ ସ୍ୱାର୍ଥରେ ଲାଗେ, ଏହି ଚେତନା ଦ୍ୱାରା ମଳିନ ପଡ଼ିଯାଏ ! ସମାଜବାଦୀ ସମାଜରେ କିନ୍ତୁ ଦେଶ ଲାଗି ପ୍ରେମ, ଲୋକଙ୍କର ଜନ-ରାଷ୍ଟ୍ର ପ୍ରତି ଅନୁରକ୍ତି, ଶ୍ରମଜୀବୀମାନଙ୍କ ସ୍ୱାର୍ଥକୁ ପ୍ରକାଶ କରୁଥିବା ଓ ତାକୁ ଦୃଢ଼ଭାବେ ରକ୍ଷା କରୁଥିବା କମ୍ୟୁନିଷ୍ଟ ପାର୍ଟି ପ୍ରତି ଅନୁରକ୍ତିରୁ ଅଭିନ୍ନ ହୁଏ ।

ସମାଜବାଦୀ ଦେଶପ୍ରେମ ଅନ୍ୟାନ୍ୟ ଜାତିମାନଙ୍କ ପ୍ରତି ସେମାନଙ୍କର କୃତିତ୍ୱ ଓ ସଂସ୍କୃତି ପ୍ରତି ବିଦ୍ୱେଷପୂର୍ଣ୍ଣ ମନୋଭାବକୁ ଘୃଣାର ସହ ପରିହାର କରେ ।

ଆତ୍ମବଡ଼ିମା ଓ ଜାତୀୟ ଦାମ୍ଭିକତା, କମ୍ୟୁନିଷ୍ଟ ନୈତିକତାର ପରିପନ୍ଥୀ । ସମାଜବାଦୀ ଦେଶପ୍ରେମ, ସମାଜବାଦୀ ଆନ୍ତର୍ଜାତିକତା, ଶ୍ରମଜୀବୀମାନଙ୍କ ସଙ୍ଗେ ଆନ୍ତର୍ଜାତୀୟ ସଂହତି ସହିତ ଅବିଚ୍ଛେଦ୍ୟ ଭାବେ ବନ୍ଧା । ସମାଜବାଦୀ ଦେଶର

ନାଗରିକମାନଙ୍କ ଦେଶପ୍ରେମ, ସେମାନଙ୍କ ଦେଶ ପ୍ରତି ଓ ସମଗ୍ର ସମାଜବାଦୀ ଦେଶ-ଗୋଷ୍ଠୀ ପ୍ରତି ଅନୁରକ୍ତିରେ ପ୍ରକାଶ ପାଏ । ଶ୍ରମିକଶ୍ରେଣୀ, ସବୁ ଦେଶର ଶ୍ରମଜୀବୀ ଲୋକ-ଏମାନଙ୍କ ସହିତ ସର୍ବହରା ସଂହତି ହେଉଛି, ସମାଜବାଦୀ ଦେଶପ୍ରେମ ଓ ସମାଜବାଦୀ ଆନ୍ତର୍ଜାତୀୟତାର ଅଙ୍ଗ । ବନ୍ଧୁତ୍ୱର ଅବିଚ୍ଛେଦ୍ୟ ବନ୍ଧନରେ ସମାଜବାଦୀ ଦେଶର ଲୋକମାନେ ଏକତ୍ର ବନ୍ଧା ।

ସୋଭିଏତ୍ ଇଉନିଅନର ଶ୍ରମଜୀବୀ ଲୋକେ ଦ୍ୱିତୀୟ ମହାଯୁଦ୍ଧ ସମୟରେ ସହୋଦରପ୍ରତିମ ଲୋକମାନଙ୍କୁ ଜର୍ମାନ ନାଜି ଓ ଜାପାନର ସମରବାଦୀମାନଙ୍କ କବଳରୁ ମୁକ୍ତ ହେବାରେ ସାହାଯ୍ୟ କରିଥିଲେ । ଯୁଦ୍ଧ ପରବର୍ତ୍ତୀ ସମୟର ପ୍ରଥମ ଭାଗରେ ଅତି ଗୁରୁତର ଅର୍ଥନୈତିକ ଅସୁବିଧାକୁ ଅତିକ୍ରମ କରି ସୋଭିଏତ୍ ଲୋକେ ଜନ-ଗଣତନ୍ତ୍ରମାନଙ୍କରେ ନିଜର ଭାଇ ବନ୍ଧୁମାନଙ୍କୁ ସାହାଯ୍ୟ ଦେବାଲାଗି ଶକ୍ତି ସଞ୍ଚୟ କରିଥିଲେ । ସୋଭିଏତ୍ ଇଉନିଅନ ଓ ଅନ୍ୟ ସମାଜବାଦୀ ଦେଶର ଲୋକମାନଙ୍କ ମଧ୍ୟରେ ପାରସ୍ପରିକ ସାହାଯ୍ୟ, ଏବେ ଆମ ସମୟରେ ବିସ୍ତୃତ ଆକାର ଧାରଣ କଲାଣି । ସୋଭିଏତର ଶ୍ରମିକ, ଇଞ୍ଜିନିୟର ଓ ଟେକନିସିଆନମାନେ ସହୋଦରପ୍ରତିମ ସମାଜବାଦୀ ଦେଶମାନଙ୍କ ଚାହିଦା ପୂରଣ ଲାଗି ବିଶେଷ ଉତ୍ସାହର ସହିତ କାର୍ଯ୍ୟ କରୁଛନ୍ତି । ସେସବୁ ଦେଶରେ ତାଙ୍କର ବନ୍ଧୁମାନେ ମଧ୍ୟ ଏହି ଅନୁରୂପରେ କାର୍ଯ୍ୟ କରିବାକୁ କୁଣ୍ଠିତ କି ପଶ୍ଚାତ୍ପଦ ହେଉନାହାନ୍ତି ।

ସମାଜବାଦୀ ଦେଶର ଲୋକମାନେ ସଚେତନ; ଆନ୍ତର୍ଜାତୀୟତାବାଦୀ ଏବଂ ପୁଞ୍ଜିବାଦୀ ଦେଶର ଶ୍ରମଜୀବୀ ଲୋକମାନଙ୍କ ପ୍ରତି ସେମାନେ ସଂହତିର ଭାବ ପୋଷଣ କରନ୍ତି । ସାମାଜିକ ଓ ଜାତୀୟ ମୁକ୍ତି ଲାଗି ସଂଗ୍ରାମରେ ସେମାନଙ୍କୁ ନିଃସ୍ୱାର୍ଥପର ସାହାଯ୍ୟ ପ୍ରଦାନ କରୁଛନ୍ତି, ସେମାନେ ଅତ୍ୟାଚାରୀ ପୁଞ୍ଜିପତିମାନଙ୍କୁ ଘୃଣା କରନ୍ତି । ସମାଜବାଦୀ ଦେଶର ଲୋକେ ବୁଝନ୍ତି ଯେ, ଅନ୍ୟ ଦେଶର ଶ୍ରମଜୀବୀ ଲୋକଙ୍କ ପ୍ରତି ତାଙ୍କର ଚରମ ଆନ୍ତର୍ଜାତୀୟ କର୍ତ୍ତବ୍ୟ ହେଉଛି—ନିଜର ରାଷ୍ଟ୍ର ଶକ୍ତିକୁ ଆହୁରି ସୁଦୃଢ଼ ଓ ସୁସଂହତ କରିବା ଏବଂ ସେହି ମାର୍ଗରେ ସାରା ପୃଥିବୀରେ ଶାନ୍ତି, ଗଣତନ୍ତ୍ର ଓ ସମାଜବାଦର ଶକ୍ତି ଗଠନରେ ନିଜ ନିଜର ଅବଦାନ ଯୋଗ ଇବା ।

* * *

କମ୍ୟୁନିଜମର ନିର୍ମାଣକାରୀମାନେ, ନିଜର ଆଦର୍ଶ ଓ କୃତିତ୍ୱର ଶକ୍ତି ଯୋଗେ ହିଁ କୋଟି କୋଟି ନୂତନ ଲୋକଙ୍କ ମାର୍କସବାଦ-ଲେନିନବାଦର ପତାକା

ତଳେ ସମବେତ କରାଉଛନ୍ତି, ବିଶ୍ୱ ଇତିହାସର ଗତିଧାରା ଉପରେ ପ୍ରଚଣ୍ଡ ବୈପ୍ଳବିକ ପ୍ରଭାବ ପକାଉଛନ୍ତି ଏବଂ ସାରା ବିଶ୍ୱରେ କମ୍ୟୁନିଜିମ ବା ସାମ୍ୟବାଦର ବିଜୟକୁ ସହଜ ଓ ସୁଗମ କରୁଛନ୍ତି ।






## ପଞ୍ଚମ ଅଧ୍ୟାୟ

# ସାମ୍ୟବାଦ (କମ୍ୟୁନିଜମ୍) ମାନବ ସମାଜର ଭବିଷ୍ୟତ

### ୧ । ବିଶ୍ୱ ସମାଜବାଦୀ ବ୍ୟବସ୍ଥା

ପୁଞ୍ଜିବାଦୀ ସଂପର୍କକୁ ଲୋପ କରିଥିବା ଅନେକଗୁଡ଼ିଏ ଦେଶ ଆଜି ସୋଭିଏତ ଇଉନିଅନ ସହିତ ଏକ ସଙ୍ଗରେ ସମାଜବାଦ ଓ ସାମ୍ୟବାଦର ମାର୍ଗରେ ଅଗ୍ରସର । ସେମାନଙ୍କୁ ନେଇ ବିଶ୍ୱ ସମାଜବାଦୀ ବ୍ୟବସ୍ଥା ଗଠିତ । ଏହି ବ୍ୟବସ୍ଥା ହେଉଛି—ପ୍ରକୃତରେ ମୁକ୍ତ, ସ୍ୱାଧୀନ ଦେଶମାନଙ୍କର ଏକ ସାମାଜିକ ଅର୍ଥନୈତିକ ଓ ରାଜନୈତିକ ଗୋଷ୍ଠୀର—ସେହିମାନଙ୍କର, ଯେଉଁମାନେ କି ସମାନ ସ୍ୱାର୍ଥ, ସମାନ ଉଦ୍ଦେଶ୍ୟ ଦେଇ ଏକତ୍ରିତ ।

ମାନବ ସମାଜର ବିକାଶରେ ବିଶ୍ୱ ସମାଜବାଦୀ ବ୍ୟବସ୍ଥା ଏକ ନିଷ୍ପତ୍ତିକାରୀ ବିଷୟ ହୋଇ ଉଠୁଛି । ୧୯୬୦ରେ କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟିମାନଙ୍କ ପ୍ରତିନିଧି ସମ୍ମିଳନୀର ଇସ୍ତାହାର କହେ—"ଆଜି ସମାଜର ଏକ ସମାଜବାଦୀ ରୂପାନ୍ତର ଲାଗି ସାମ୍ରାଜ୍ୟବାଦ ବିରୁଦ୍ଧରେ ଲଢୁଥିବା ସମାଜବାଦୀ ବ୍ୟବସ୍ଥା ଓ ଶକ୍ତିମାନେ ହିଁ ସମାଜର

ଐତିହାସିକ ବିକାଶର ମୁଖ୍ୟ ଆଧାର, ମୁଖ୍ୟ ପ୍ରବୃତ୍ତି ଓ ମୁଖ୍ୟ ରୂପଗୁଡ଼ିକୁ ନିର୍ଣ୍ଣୟ କରନ୍ତୁ ।"

## ସମାଜବାଦ ଏକ ବିଶ୍ୱ-ବ୍ୟବସ୍ଥା

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ବିଶ୍ୱ ରଙ୍ଗମଞ୍ଚରେ ସୁଦୂର-ପ୍ରସାରୀ ପରିବର୍ତ୍ତିମାନ ଘଟି ଯାଉଛି । ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ପରିବର୍ତ୍ତନ ଘଟିଛି, ସମାଜବାଦୀ ଓ ପୁଞ୍ଜିବାଦୀ ବ୍ୟବସ୍ଥାର ସମ୍ପର୍କ ମଧ୍ୟରେ, ସମାଜବାଦୀ ବ୍ୟବସ୍ଥାର ସପକ୍ଷରେ । ପୁଞ୍ଜିବାଦ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଖଣ୍ଡରେ ବହୁ ପରିମାଣରେ ପଶ୍ଚାଦ୍‌ଗାମୀ ହୋଇଛି ।

ସାମ୍ରାଜ୍ୟବାଦୀମାନେ ଆଶା କରିଥିଲେ, ଯୁଦ୍ଧ ଭିତରେ ସେମାନେ ସୋଭିଏତ ଇଉନିଅନକୁ ଧ୍ୱଂସ କରି ଦେବାକୁ ପୂରା ସମର୍ଥ ନ ହେଲେ ତାକୁ ଅନ୍ତତଃ ବିଶେଷ ଭାବେ ଦୁର୍ବଳ କରିଦେବେ, ପୃଥିବୀର ଶ୍ରମିକ ଓ ଗଣତାନ୍ତ୍ରିକ ଆନ୍ଦୋଳନକୁ ଦମନ କରିଦେବେ । କିନ୍ତୁ ଫାସିଷ୍ଟବାଦ ଉପରେ ସୋଭିଏତର ବିଜୟକୁ ଧନ୍ୟ କହିବା ଯେ, ସମାଜବାଦର ଶତ୍ରୁମାନଙ୍କର ସେ ଦୁରଭିସନ୍ଧି ବ୍ୟର୍ଥ ହୋଇଗଲା ।

ସୋଭିଏତ୍ ଇଉନିଅନର ପ୍ରଚୁର କ୍ଷତି ଘଟିବା ଓ ତାହା ଧ୍ୱସ୍ତ ବିଧ୍ୱସ୍ତ ହେବା ସତ୍ତ୍ୱେ ଯୁଦ୍ଧ ମଧ୍ୟରେ ଚରିକୋଳ ପରି ତାହା ବଳିଷ୍ଠ ହୋଇ ଉଠିଲା । ପୃଥିବୀର ପ୍ରଥମ ସମାଜବାଦୀ ରାଷ୍ଟ୍ରର ସମ୍ମାନ ଓ ବିଶ୍ୱବ୍ୟାପାରରେ ତାର ଗୁରୁତ୍ୱ ବିପୁଳ ଭାବେ ବୃଦ୍ଧି ପାଇଲା ।

ଇଉରୋପର ଲୋକମାନେ ସମଗ୍ର ଯୁଦ୍ଧ ମଧ୍ୟରେ ନାଜି ଅତ୍ୟାଚାରୀମାନଙ୍କ ବିରୁଦ୍ଧରେ ଅତି କଠୋର ସଂଗ୍ରାମ ଚଳାଇଥିଲେ । ଯେତେବେଳେ ସୋଭିଏତ ଇଉନିଅନ ନାଜିମାନଙ୍କୁ ସୋଭିଏତ ଅଞ୍ଚଳ ମଧ୍ୟରୁ ବିତାଡ଼ିତ କଲା ଓ ଅନ୍ୟ ଦେଶମାନଙ୍କୁ ମୁକ୍ତ କରିବାକୁ ଆରମ୍ଭ କଲା, ସେତେବେଳେ ସଂଗ୍ରାମର ପରିସର ବୃଦ୍ଧି ପାଇଲା । ନାଜୀ ବାହିନୀର ଦେଶ ଦଖଲ କାଳରେ ଯେଉଁ ପୁଞ୍ଜିପତି ଓ ଜମି-ମାଲିକମାନେ ସେମାନଙ୍କ ସହିତ ସହଯୋଗ କରିଥିଲେ, ଶ୍ରମଜୀବୀ ଲୋକେ ସେମାନଙ୍କ ବିରୁଦ୍ଧରେ ସଂଘବଦ୍ଧ ହେଲେ ।

ପୋଲାଣ୍ଡ, ଚେକୋସ୍ଲୋଭାକିଆ, ହଙ୍ଗେରୀ, ରୁମାନିଆ, ବୁଲଗେରିଆ, ଯୁଗୋସ୍ଲାଭିଆ ଓ ଅଲବେନିଆରେ ଲୋକେ ଶୋଷକମାନଙ୍କ ବିରୁଦ୍ଧରେ ମାତି ଉଠିଲେ ଓ କ୍ଷମତା ଦଖଲ କଲେ । ୧୯୪୯ରେ ଜର୍ମାନ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର, ଯାହା ସମାଜବାଦକୁ ନିଜର ଲକ୍ଷ୍ୟ ବୋଲି ଘୋଷଣା କରିଥିଲା, ତାହା ପୂର୍ବ ଜର୍ମାନୀରେ ପ୍ରତିଷ୍ଠିତ ହେଲା ।

ଏସିଆ ମହାଦେଶର ଲୋକସଂଖ୍ୟା ୧୭୦ କୋଟି, ସମଗ୍ର ମନୁଷ୍ୟ ସମାଜର ଅର୍ଦ୍ଧାଧିକ—ସେଠାରେ ବିରାଟ ପରିବର୍ତ୍ତନ ଘଟିଲା । ସେହି ଏସିଆର ୮୦ କୋଟି ଲୋକ ଏବେ ସମାଜବାଦୀ ରାଷ୍ଟ୍ରରେ ସବୁ ବାସ କରୁଛନ୍ତି ।

ଚୀନ ଲୋକମାନଙ୍କ ବିଜୟ ଏକ ବିରାଟ ଐତିହାସିକ ଘଟଣା । ଚୀନଲୋକେ ବିଦେଶୀ ସାମ୍ରାଜ୍ୟବାଦ ଓ "ଘରୋଇ" ଶୋଷକମାନଙ୍କ କବଳରୁ ମୁକ୍ତ ହୋଇଛନ୍ତି, ସେମାନେ ମଧ୍ୟ ସମାଜବାଦୀ ନିର୍ମାଣରେ ଭାଗ ଗ୍ରହଣ କରିଛନ୍ତି ।

ସୋଭିଏତ ସେନାବାହିନୀ ଜାପାନୀମାନଙ୍କୁ ଯେତେବେଳେ ବିତାଡ଼ିତ କଲା, ଉତ୍ତର କୋରିଆରେ ସେତେବେଳେ ସୁଦୂରପ୍ରସାରୀ ଗଣତାନ୍ତ୍ରିକ ରୂପାନ୍ତର ଘଟିଗଲା । ୧୯୪୮ ସେପ୍ଟେମ୍ବର ମାସରେ କୋରିଆର ସର୍ବୋଚ୍ଚ ଜାତୀୟ ଆସେମ୍ବ୍ଲି, କୋରିଆକୁ ଜନତାର ଗଣତାନ୍ତ୍ରିକ ବୋଲି ଘୋଷଣା କଲା ।

ଭିଏତନାମରେ ପ୍ରକାଣ୍ଡ ପରିବର୍ତ୍ତନ ଘଟିଛି । ଯୁଦ୍ଧ ପୂର୍ବରୁ ତାହା ଜାପାନୀମାନଙ୍କ ଦ୍ୱାରା ଅଧିକୃତ ହେଲାବେଳେ ଏକ ଫରାସୀ ଉପନିବେଶ ହୋଇ ରହିଥିଲା । ଦେଶପ୍ରେମୀ ଶକ୍ତିମାନେ ବିଦେଶୀ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ସାହସର ସହିତ ଲଢ଼ିଲେ ଏବଂ ବିଦେଶୀମାନଙ୍କୁ ହଟାଇ ଦେଲା ପରେ, ୧୯୪୫ ସେପ୍ଟେମ୍ବର ମାସରେ ଭିଏତନାମ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ପ୍ରତିଷ୍ଠା କଲେ ।

ଅତଏବ ସମାଜବାଦ ଗୋଟିଏ ଦେଶ ଡେଇଁ ଅନ୍ୟଆଡ଼େ ପ୍ରସାର ଲାଭ କରିଛି, ବିଶ୍ୱ ବ୍ୟବସ୍ଥାରେ ପରିଣତ ହୋଇଛି । ଏହି ପ୍ରକ୍ରିୟାକୁ ବାଧା ଦେବାରେ ପୁଞ୍ଜିବାଦ ଶକ୍ତିହୀନ । ପୁଞ୍ଜିବାଦ ଓ ସମାଜବାଦ—ଏହି ଦୁଇ ବିଶ୍ୱବ୍ୟବସ୍ଥାର ଏକ ସଙ୍ଗରେ ଅବସ୍ଥିତି, ସୁନିର୍ଦ୍ଦିଷ୍ଟ ଘଟଣାରେ ପରିଣତ ହୋଇଛି ।

ସମାଜବାଦୀ ଦେଶମାନଙ୍କ ମଧ୍ୟରେ ଏକ ନୂତନ ପ୍ରକାରର ଆନ୍ତଃରାଷ୍ଟ୍ର ସଂପର୍କର ବିକାଶ ଘଟିଛି । ତାହା ସବୁ ଏକ ଉଦ୍ଦେଶ୍ୟ, ଏକ ମାର୍କ୍ସବାଦୀ-ଲେନିନବାଦୀ ଭାବ ଓ ଏକ ସର୍ବହରା—ଆନ୍ତର୍ଜାତୀୟତାର ନୀତି ଦ୍ୱାରା ନିର୍ଦ୍ଧାରିତ ହେଉଛି । ଏବେ ଅନେକଗୁଡ଼ିଏ ଦେଶରେ ସର୍ବହରା କ୍ଷମତାର ଅଧିକାରୀ ହେଲାବେଳେ ସର୍ବହରା ସଂହତିର ନୂତନ ରୂପର ଉଦ୍ଭବ ହେଉଛି । ସମାଜବାଦୀ ଦେଶଗୋଷ୍ଠୀ ମଧ୍ୟରେ, ପାରସ୍ପରିକ ଅର୍ଥନୈତିକ ସାହାଯ୍ୟ ଓ ଟେକ୍‌ନିକାଲ ସହଯୋଗ, କୂଟନୈତିକ ସମର୍ଥନ, ପ୍ରତିରକ୍ଷା ବ୍ୟାପାରରେ ଯୋଗାଯୋଗ ବା ସହଯୋଗ ଏବଂ ବୈଜ୍ଞାନିକ, ସାଂସ୍କୃତିକ କ୍ଷେତ୍ରର ପାରସ୍ପରିକ ବିନିମୟ ଆଦି ସେହି ଆନ୍ତଃରାଷ୍ଟ୍ର ସଂପର୍କର ଅନ୍ତର୍ଭୁକ୍ତ ହୋଇଛି ।

ଏହି ନୀତିଗୁଡ଼ିକ ସମାଜବାଦୀ ଦେଶମାନଙ୍କ ଭିତରେ ଭ୍ରାତୃତ୍ୱର ପ୍ରଧାନ ଆଧାର ।

ଛୋଟ ବଡ଼ ସମାଜବାଦୀ ଦେଶ ରହିଛନ୍ତି । କିନ୍ତୁ ଦୁର୍ବଳ ବଳିଷ୍ଠର ଅଧୀନସ୍ଥ ହେବାର ପ୍ରଶ୍ନ ନାହିଁ । ସମସ୍ତ ଗୁରୁତ୍ୱପୂର୍ଣ୍ଣ ସମସ୍ୟା, ପ୍ରତ୍ୟେକ ଜାତିର ଓ ସମଗ୍ର ଭାବେ ସମାଜବାଦୀ ବ୍ୟବସ୍ଥାର ସର୍ବାଧିକ ସ୍ୱାର୍ଥ ଦୃଷ୍ଟିରୁ ବିଚାର କରାଯାଉଛି ।

ସମାଜବାଦୀ ରାଷ୍ଟ୍ରଗୁଡ଼ିକ, ଶାନ୍ତି ଓ ଆନ୍ତର୍ଜାତୀୟ ସହଯୋଗର ପ୍ରସ୍ତାବକ । ସେମାନେ ଯେକୌଣସି ପ୍ରକାରର ହେଉ ପଛେ ପାଖରଅନ୍ତର ନୀତିକୁ ବିରୋଧ କରୁଛନ୍ତି ।

ସମାଜବାଦ, ଜାତିମାନଙ୍କୁ ଦୃଢ଼ଭାବରେ ବାନ୍ଧିଦିଏ । ବିଶ୍ୱ-ସମାଜବାଦୀ ବ୍ୟବସ୍ଥା ମଧ୍ୟରେ ବିଭିନ୍ନ ଦେଶର ଅର୍ଥନୀତି ସବୁ ନିକଟବର୍ତ୍ତୀ ହୋଇ ଆସନ୍ତି । ସେହି ସବୁ ଦେଶର ପରସ୍ପରର ପରସ୍ପର ଉପରେ ବର୍ଦ୍ଧିଷ୍ଣୁ ନିର୍ଭରଶୀଳତା, ଆଧୁନିକ ବୃହତ ଧରଣର ଉତ୍ପାଦନର ପ୍ରକୃତିରୁ ହିଁ ଜାତ । ତାହା ଦେଶମାନଙ୍କ ମଧ୍ୟରେ ଘନିଷ୍ଠ ଅର୍ଥନୈତିକ ସହଯୋଗ ଓ ଆନ୍ତର୍ଜାତୀୟ କ୍ଷେତ୍ରରେ ଏକ ଯଥାର୍ଥ ଶ୍ରମ ବିଭାଗ ସୃଷ୍ଟି କରେ ।

ବିଶ୍ୱ-ସମାଜବାଦୀ ବ୍ୟବସ୍ଥା ଗଠନ ହେଉଛି, ଭବିଷ୍ୟତରେ ବିଶ୍ୱ-ସମାଜବାଦୀ ଓ ତା' ପରେ କମ୍ୟୁନିଷ୍ଟ ଅର୍ଥନୀତି ଦିଗରେ ଏକ ପଦକ୍ଷେପ ।

## ସମାଜବାଦୀ ନିର୍ମାଣର ନିୟମ

ସୋଭିଏତ ୟୁନିଅନରେ ଓ ନବ ଗଣତନ୍ତ୍ରମାନଙ୍କରେ ମିଳିଥିବା ଅଭିଜ୍ଞତା, ବିଶ୍ୱ କମ୍ୟୁନିଷ୍ଟ ଓ ଶ୍ରମିକ ଆନ୍ଦୋଳନ ଲାଗି ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ଲେନିନ ଦର୍ଶାଇଥିଲେ—ଅନ୍ୟ ଦେଶମାନଙ୍କରେ ସମାଜବାଦୀ ପରିବର୍ତ୍ତନ ବା ରୂପାନ୍ତର ରୁଷର ସମାଜବାଦୀ ବିପ୍ଳବର ମୌଳିକ ନିଦର୍ଶନକୁ ଅନିବାର୍ଯ୍ୟ ଭାବେ ଅନୁସରଣ କରିବ । ସେହି ଭବିଷ୍ୟତ ବାଣୀ, ଜୀବନ ଦ୍ୱାରା ଆଜି ସଂପୂର୍ଣ୍ଣ ପ୍ରମାଣିତ । ସମାଜବାଦର ପଥ ଗ୍ରହଣ କରିଥିବା ଦେଶସବୁ, ନିଜ ନିଜର ରାଜନୈତିକ-ଅର୍ଥନୈତିକ ବିପ୍ଳବରେ ସେହି ଭଳି ସ୍ତର ଦେଇ ଗତି କରିବା ନିଶ୍ଚିତ । ସେହି ସବୁ ଦେଶ ପ୍ରତି ପ୍ରଯୁଜ୍ୟ ସାଧାରଣ ନିୟମଗୁଡ଼ିକ ହେଉଛି:—

ଗୋଟିଏ ପ୍ରକାର ରୂପରେ ହେଉ ବା ଅନ୍ୟ ଏକ ପ୍ରକାର ରୂପରେ ହେଉ, ଶ୍ରମିକଶ୍ରେଣୀ ବିପ୍ଳବକୁ କାର୍ଯ୍ୟକାରୀ କରିବାରେ ଗୋଟିଏ ପ୍ରକାର ରୂପରେ ହେଉ କି ଅନ୍ୟ

ଏକ ପ୍ରକାର ରୂପରେ ହେଉ, ସର୍ବହରା ଏକଛତ୍ର ଶାସନ ପ୍ରତିଷ୍ଠା କରିବାରେ ସେହି ଶ୍ରମିକଶ୍ରେଣୀ ଦ୍ୱାରା ଶ୍ରମଜୀବୀ ଜନସାଧାରଣଙ୍କ ପରିଚାଳନା, ଯାହାର ମୂଳପିଣ୍ଡ ହେଉଛି—ମାର୍କସବାଦୀ-ଲେନିନବାଦୀ ପାର୍ଟି, ଶ୍ରମିକଶ୍ରେଣୀ ଓ କୃଷକମାନଙ୍କର ଏକ ବିରାଟ ଅଂଶ ଓ ଶ୍ରମଜୀବୀ ଲୋକଙ୍କର ଅନ୍ୟାନ୍ୟ ସଂପ୍ରଦାୟଙ୍କ ମଧ୍ୟରେ ମିତ୍ରତା, ଉତ୍ପାଦନର ଉପକରଣ ଉପରେ ପୁଞ୍ଜିବାଦୀ ମାଲିକାନାର ବିଲୋପ ଓ ସର୍ବସାଧାରଣ ମାଲିକାନାର ପ୍ରତିଷ୍ଠା, ଧୀରେ ଧୀରେ କୃଷିକ୍ଷେତ୍ରରେ ସମାଜବାଦୀ ପୁନର୍ଗଠନ, ଜୀବନଧାରଣ ମାନର ଉନ୍ନତି ଦୃଷ୍ଟିରୁ ସମାଜବାଦ ଓ ସାମ୍ୟବାଦ ନିର୍ମାଣ ଲକ୍ଷ୍ୟରେ ଜାତୀୟ ଅର୍ଥନୀତିର ଯୋଜନାବଦ୍ଧ ବିକାଶ, ଭାବ, ଆଦର୍ଶ ଓ ସାଂସ୍କୃତିକ କ୍ଷେତ୍ରରେ ସମାଜବାଦୀ ବିପ୍ଳବ ଓ ଶ୍ରମିକଶ୍ରେଣୀ, ସାଧାରଣ ଶ୍ରମଜୀବୀ ଲୋକ ଏବଂ ସମାଜବାଦର ଆଦର୍ଶ ପ୍ରତି ଅନୁରକ୍ତ ଅସଂଖ୍ୟ ବୁଦ୍ଧିଜୀବୀମାନଙ୍କୁ ପରିପୋଷଣ, ଜାତୀୟ ଅତ୍ୟାଚାରର ବିଲୋପ ସାଧନ ଓ ଜାତିମାନଙ୍କ ମଧ୍ୟରେ ସମତା ଆଉ ସହୋଦରମୂଳକ ବନ୍ଧୁତ୍ୱର ପ୍ରତିଷ୍ଠା, ବାହାର ଓ ଭିତରର ଶତ୍ରୁମାନଙ୍କ ମଧ୍ୟରେ ସମାଜବାଦର କୃତିତ୍ୱଗୁଡ଼ିକର ପ୍ରତିରକ୍ଷା, ଏକ ନିର୍ଦ୍ଦିଷ୍ଟ ଦେଶର ଶ୍ରମିକଶ୍ରେଣୀ ସହିତ ଅନ୍ୟ ଦେଶମାନଙ୍କର ଶ୍ରମିକଶ୍ରେଣୀର ସଂହତି ସ୍ଥାପନ—ଅର୍ଥାତ୍ ସର୍ବହରା ଆନ୍ତର୍ଜାତୀୟତା ।

କଥା ହେଉଛି, ପୁଞ୍ଜିବାଦରୁ ସମାଜବାଦକୁ ପରିଗମନରେ ସାମାଜିକ ବିକାଶର ସାଧାରଣ ନିୟମଗୁଡ଼ିକ ସବୁ ଦେଶ ପ୍ରତି ସମାନ ଭାବେ କାର୍ଯ୍ୟକାରୀ ହେଉଛି । ତାହା ହିଁ ପ୍ରଥମ ସମାଜବାଦୀ ବିପ୍ଳବ କରିଥିବା ଓ ସମାଜବାଦ ନିର୍ମାଣ କରୁଥିବା ସୋଭିଏତ୍ ୟୁନିଅନର ଅଭିଜ୍ଞତାକୁ ଆନ୍ତର୍ଜାତୀୟ ଗୁରୁତ୍ୱ ପ୍ରଦାନ କରୁଛି । ଏହି ଅଭିଜ୍ଞତାକୁ ଧରି ଜନ-ଗଣତନ୍ତ୍ର ଦେଶଗୁଡ଼ିକ ଅଧିକ ଦୃଢ଼ ବିଶ୍ୱାସ ସହିତ ନିଜ ନିଜର ସମାଜବାଦୀ ନିର୍ମାଣ ସମସ୍ୟାର ସମ୍ମୁଖୀନ ହୋଇ ପାରୁଛନ୍ତି ଓ ଅଳ୍ପ ଶକ୍ତି ଓ ଅଳ୍ପ ଭୌତିକ ସମ୍ବଳ ବିନିଯୋଗରେ ଅଧିକ ସହଜରେ ତାହା ସମାଧାନ କରି ପାରୁଛନ୍ତି ।

ସେଥି ସଙ୍ଗେ ସଙ୍ଗେ ଲେନିନ ଆହୁରି ଦର୍ଶାଇଥିଲେ ଯେ, ସମାଜବାଦୀ ରୂପାନ୍ତରର ନିର୍ଦ୍ଦିଷ୍ଟ ରୂପଗୁଡ଼ିକ, ସଂପୃକ୍ତ ଦେଶର ଅର୍ଥନୈତିକ, ରାଜନୈତିକ ଓ ଐତିହାସିକ ପରିସ୍ଥିତି ଉପରେ ନିର୍ଭର କରି ଭିନ୍ନ ଭିନ୍ନ ପ୍ରକାରର ହେବା ଅପରିହାର୍ଯ୍ୟ । ସମାଜବାଦୀ ରୂପାନ୍ତରର ଉପାୟକୁ ସବୁ ନିର୍ଦ୍ଧିଷ୍ଟ କଲାବେଳେ ଏହାକୁ ବିଚାରକୁ ନେବାକୁ ହେବ ।

ବିଭିନ୍ନ ଦେଶରେ ସମାଜବାଦକୁ ପରିଗମନର କେତେକ ଦିଗ କଥା ବିଚାର କରିଯାଉ !

ୟୁରୋପର ଜନ ଗଣତନ୍ତ୍ର ଦେଶମାନଙ୍କରେ ଶୋଷକଶ୍ରେଣୀମାନଙ୍କୁ ସେ ଗୃହଯୁଦ୍ଧ ଲଗାଇ ଦେବା ଲାଗି ପରିସ୍ଥିତି ସୁଯୋଗ ଦେଇ ନ ଥିଲା । ଏହିସବୁ ଦେଶ ମଧ୍ୟ ସୋଭିଏତ୍ ୟୁନିଅନ ଓ ତାର ସେନାବାହିନୀର ବିରାଟ ଶକ୍ତି ଦ୍ୱାରା ସାମ୍ରାଜ୍ୟବାଦୀ ଆକ୍ରମଣ ଦଗରୁ ସୁରକ୍ଷିତ ହୋଇରହିଥିଲା । ଫାସିଷ୍ଟବାଦର ପରାଜୟ ପରେ ଗୃହ ଯୁଦ୍ଧ ନ ଲାଗିବା ହେଉଛି ୟୁରୋପର ଜନ-ଗଣତାନ୍ତ୍ରିକ ଦେଶମାନଙ୍କ ପକ୍ଷରେ ସମାଜବାଦକୁ ପରିଗମନର ଏକ ବିଶିଷ୍ଟ ରୂପ ।

ଅକ୍ଟୋବର ବିପ୍ଳବ ପରେ, ରୁଷରେ ଜମିକୁ ସବୁ ଜାତୀୟକରଣ କରି ଦିଆଗଲା ଓ ତାକୁ ରାଷ୍ଟ୍ରର ସମ୍ପତ୍ତି ବୋଲି ଘୋଷଣା କରାଗଲା । କିନ୍ତୁ ଜନ-ଗଣତନ୍ତ୍ର ରାଷ୍ଟ୍ରମାନଙ୍କରେ ବହୁ କାରଣ ହେତୁ ଜମିକୁ ଜାତୀୟକରଣ କରାଯାଇ ନ ଥିଲା । ଛୋଟ ଛୋଟ-ଜମି ମାଲିକାନାର ପୃଷ୍ଠଭୂମି ଉପରେ କୃଷି ସମବାୟ ଆନ୍ଦୋଳନ ଆରମ୍ଭ କରାଗଲା ।

ସମାଜବାଦୀ ବିପ୍ଳବ ପରେ, ସୋଭିଏତ୍ ୟୁନିଅନରେ କେବଳ ଗୋଟିଏ ମାତ୍ର ପାର୍ଟି—କମ୍ୟୁନିଷ୍ଟ ପାର୍ଟି ରହିବା ହିଁ ସମ୍ଭବ ହୋଇଥିଲା, କାରଣ, ଅନ୍ୟ ସବୁ ଦଳ ବିପ୍ଳବର ବିରୋଧ କରିଥିଲେ ଓ ବିତାଡ଼ିତ ଶୋଷକଶ୍ରେଣୀଙ୍କ ସହିତ ସୋଭିଏତ ଶତ୍ରୁଙ୍କ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମରେ ଯୋଗ ଦେଇଥିଲେ । କିନ୍ତୁ ଜନ-ଗଣତନ୍ତ୍ର ଦେଶମାନଙ୍କରେ ଅନ୍ୟ ଦଳସବୁ କମ୍ୟୁନିଷ୍ଟମାନଙ୍କ ସହିତ ସମାଜବାଦ ନିର୍ମାଣରେ ଏବେ ସକ୍ରିୟ ଅଂଶ ଗ୍ରହଣ କରିଛନ୍ତି ।

ଜୀବନ, ଲେନିନଙ୍କ ଭବିଷ୍ୟତ ବାଣୀକୁ ପ୍ରମାଣିତ କରୁଛି ।

"ସମସ୍ତ ଜାତି ସମାଜବାଦରେ ପହଞ୍ଚିବେ—ଏହା ଅନିବାର୍ଯ୍ୟ, କିନ୍ତୁ ସମସ୍ତେ ଯେ ସମାନ ଭାବରେ ତାହା କରିବେ, ଏହା ନୁହେଁ । ଗଣତନ୍ତ୍ରର କେତେକ ରୂପ ପ୍ରତି, ସର୍ବହରା ଏକଛତ୍ର ଶାସନର କେତେକ ପ୍ରକାରର ବିଭିନ୍ନତା ପ୍ରତି, ସାମାଜିକ ଜୀବନର ବହୁବିଧ ଦିଗରେ ସମାଜବାଦୀ ରୂପାନ୍ତରର ଗତିବେଗ ପ୍ରତି, ପ୍ରତ୍ୟେକଙ୍କର ନିଜସ୍ୱ କିଛି କିଛି ଅବଦାନ ରହିବ ।"

ଜନ-ଗଣତନ୍ତ୍ରଗୁଡ଼ିକର ଅଭିଜ୍ଞତାର ଗୁରୁତ୍ୱ ବିଶାଳ । ଆନ୍ତର୍ଜାତୀୟ ଶ୍ରମିକ ଆନ୍ଦୋଳନ ଆଜି ସୋଭିଏତ ରୂଷରେ ସର୍ବହରା ଏକଛତ୍ର ଶାସନ ସଂଗେ ନୂତନ ରୂପର ସର୍ବହରା ଏକଛତ୍ର ଶାସନ-ଅନୁସାରୀ ଜନ-ଗଣତନ୍ତ୍ର ପଦ୍ଧତିର ଅଭିଜ୍ଞତା ଦ୍ୱାରା ବଳବାନ ହୋଇ ପାରେ—ଶାନ୍ତିପୂର୍ଣ୍ଣ ଭାବରେ ଗଣତାନ୍ତ୍ରିକ ବିପ୍ଳବ ସ୍ତରରୁ ସମାଜବାଦୀ ବିପ୍ଳବ ସ୍ତରକୁ ପରିଗମନ: ସମାଜବାଦୀ ନିର୍ମାଣରେ ସ୍ୱାର୍ଥ ଦୃଷ୍ଟିରୁ ପାର୍ଲିଆମେଣ୍ଟ ଓ ବହୁ-

ପାର୍ଟି ବ୍ୟବସ୍ଥାର ବ୍ୟବହାର; ପୁଞ୍ଜିବାଦୀ ବିକାଶର ପର୍ଯ୍ୟାପ୍ତ ସ୍ତର ଅର୍ଥନୈତିକ ଭାବେ ଅନୁନ୍ନତ ଦେଶମାନଙ୍କରେ ସମାଜବାଦ ଆଡ଼କୁ ପରିଗମନ; ବ୍ୟକ୍ତିଗତ ଜମି-ମାଲିକାନାର ବହୁ ପ୍ରାଚୀନ ଐତିହ୍ୟକୁ ଉପଯୁକ୍ତ ଭାବେ ବିଚାର କରି ଜମିର ଜାତୀୟକରଣ ବିନା ଗ୍ରାମାଞ୍ଚଳରେ ସମାଜବାଦୀ ରୂପାନ୍ତର ସାଧନ—ଏସବୁ ଦ୍ୱାରା ଉପକୃତ ହୋଇପାରେ ।

ସମାଜବାଦୀ ନିର୍ମାଣ ସଂକ୍ରାନ୍ତ ବହୁବିଧ ଅଭିଜ୍ଞତା, ମାର୍କସବାଦ-ଲେନିନବାଦ ତତ୍ତ୍ୱକୁ ସମାଜର ସମାଜବାଦୀ ରୂପାନ୍ତରସାଧନକୁ ବିପୁଳ ଭାବେ ପରିପୁଷ୍ଟ କରିଛି ।

ସମାଜବାଦକୁ ପରିଗମନ କରିବା ପଥରେ ସାଧାରଣ ନିୟମ ଗୁଡ଼ିକୁ ଓ ବିଭିନ୍ନ ଦେଶର ନିର୍ଦ୍ଦିଷ୍ଟ ବିଶେଷ ରୂପଗୁଡ଼ିକୁ ଆମେ ବିଚାର କରିଛୁ । ପ୍ରଶ୍ନ କରିଯାଇ ପାରେ, ସମାଜବାଦ ନିର୍ମାଣର ସଫଳତା ଲାଗି ମୌଳିକ ନିଷ୍ପତ୍ତିକାରୀ ପ୍ରଶ୍ନ କଣ?

ସାଧାରଣ ନିୟମଗୁଡ଼ିକ ଯେ ହେଉଛି ମୌଳିକ, ଏହା ବେଶ୍ ପରିଷ୍କାର । ସାମାଜିକ ରୂପାନ୍ତରର ସବୁଠାରୁ ସାରପୂର୍ଣ୍ଣ ଆଉ ନିର୍ଣ୍ଣୟକାରୀ ପ୍ରକ୍ରିୟାଗୁଡ଼ିକୁ ଏହା ପ୍ରତିଫଳିତ କରେ । ଯେଉଁସବୁ ଦେଶରେ କମ୍ୟୁନିଷ୍ଟ ଓ ଓ୍ୱାର୍କରସ୍ ପାର୍ଟିସବୁ ମାର୍କସବାଦ-ଲେନିନବାଦ ତତ୍ତ୍ୱର ମୌଳିକ ପ୍ରଶ୍ନକୁ, ବିକାଶର ସାଧାରଣ ନିୟମଗୁଡ଼ିକୁ ନିଜ ନିଜର ନିର୍ଦ୍ଦିଷ୍ଟ ଅବସ୍ଥା ଅନୁସାରେ ସୃଜନଶୀଳ ଭାବେ ପ୍ରୟୋଗ କରିଛନ୍ତି, ସେସବୁ ଦେଶ ବିରାଟ ସାଫଲ୍ୟମାନ ହାସଲ କରିଛନ୍ତି ।

## ଶ୍ରମର ସମାଜବାଦୀ ଆନ୍ତର୍ଜାତୀୟ ବିଭାଗ

ସମାଜବାଦୀ ଶିବିରର ଆବିର୍ଭାବ, ଶ୍ରମର ଏକ ନୂତନ ଆନ୍ତର୍ଜାତୀୟ ବିଭାଗ ଲାଗି ସୁଯୋଗ ସୃଷ୍ଟି କରିଛି ।

ପୁଞ୍ଜିବାଦ ଅଧୀନସ୍ଥ ରାଷ୍ଟ୍ରଗୁଡ଼ିକରେ ଶ୍ରମର ବିଭାଗ ଅଛି ସତ, କିନ୍ତୁ ତାହା ଶକ୍ତିଶାଳୀ ଦେଶମାନଙ୍କ ଦ୍ୱାରା ଜାହିର୍ ରହିଥିବା ଦୁର୍ବଳ ଦେଶମାନଙ୍କର ପରାଧୀନତା ଉପରେ ହିଁ ପ୍ରତିଷ୍ଠିତ । ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ, ପଶ୍ଚିମଜର୍ମାନୀ ଓ ଫ୍ରାନ୍ସ ଏହି ଅଗ୍ରଣୀ ସାମ୍ରାଜ୍ୟବାଦୀ ଶକ୍ତିମାନେ ଦୁର୍ବଳ ଦେଶମାନଙ୍କ ଉପରେ ନିଜ ନିଜର ମତାମତ ଲଦି ଦେବାକୁ ଚେଷ୍ଟା କରନ୍ତି, ଏବଂ ସେମାନଙ୍କର ଅର୍ଥନୈତିକ ଓ ସାଂସ୍କୃତିକ ବିକାଶକୁ ବାଧା ଦିଅନ୍ତି ।

ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକା ଭଳି ପୃଥିବୀର ବିରାଟ ବିରାଟ ଭୂଖଣ୍ଡମାନ ଅର୍ଥନୈତିକ କ୍ଷେତ୍ରରେ ଆମେରିକା, ଅମେରିକା, ବିଲାତ, ଫ୍ରାନ୍ସ ଓ ପଶ୍ଚିମ

ଜର୍ମାନୀର ପଛରେ ପଡ଼ିଛି ? ସେସବୁ କଣ ପ୍ରାକୃତିକ ସମ୍ପଦର ବିପୁଳତାରେ ଊଣା ? ସେଠାର ଅଧିବାସୀମାନେ କଣ ଆମେରିକା,ବ୍ରିଟିଶ,ଫ୍ରାନ୍ସ କିମ୍ବା ଜର୍ମାନୀର ଲୋକଙ୍କଠାରୁ କମ ପରିଶ୍ରମୀ ? ଏହା ଅବଶ୍ୟ ନୁହେଁ । ସେସବୁ ଦେଶର ପଶ୍ଚାତ୍‌ପଦତାର କାରଣ ହେଉଛି,ଉପନିବେଶବାଦୀମାନଙ୍କର ପାଶବିକ ନୀତି – ଯାହା ସୁଚିନ୍ତିତ ଭାବେ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକା ଦେଶମାନଙ୍କର ବିକାଶକୁ ପ୍ରତିହତ କରେ ଓ କ୍ରମାଗତ କରିବାରେ ଲାଗିଛି ।

ଉଦାହରଣ ପାଇଁ ଭାରତବର୍ଷକୁ ଦେଖ !

୧୯୪୭ରେ ଭାରତ ସ୍ୱାଧୀନତା ଘୋଷଣା କଲା । ସେହି ସମୟରେ ତାର ଅର୍ଥନୈତିକ ସ୍ତର କଣ ଥିଲା ? ଏପରିକି ତାର ଶତକଡ଼ା ୨ଭାଗରୁ ଅଧିକ ଶ୍ରମିକ କଳ-କାରଖାନା-ଉତ୍ପାଦନରେ ନିଯୁକ୍ତ ନ ଥିଲେ । ଭାରତର ଅର୍ଥନୀତି ବିଶେଷ ଭାବରେ କୃଷି-ଅର୍ଥନୀତି ହିଁ ଥିଲା । ଗୁରୁ-ଶିଳ୍ପର କାର୍ଯ୍ୟତଃ ନାମଗନ୍ଧ ନ ଥିଲା । ବ୍ରିଟିଶ ସାମ୍ରାଜ୍ୟବାଦୀମାନେ, କେବଳ ପ୍ରତିଦ୍ୱନ୍ଦୀ-ହୀନ ଶିଳ୍ପ ଲାଗି ଅନୁମତି ଦେଉଥିଲେ । ତାହା ବିଲାତ ଉପରେ ଭାରତର ଅର୍ଥନୈତିକ ନିର୍ଭରତାକୁ ଅଧିକ ବୃଦ୍ଧି କରୁଥିଲା ।

ଜହରଲାଲ ନେହରୁଙ୍କ କଥାରେ କହିଲେ, "ବ୍ରିଟିଶମାନେ ଭାରତର ଅଧିକ ଅଗ୍ରଗତି ରୋକିବାକୁ ଚେଷ୍ଟା କରିଥିଲେ । ସେମାନେ ଆମର ଶିଳ୍ପବିକାଶକୁ ବାଧା ଦେଇଥିଲେ, ଆଉ ସମସ୍ତ ମରିହଜିଆ, ପୁରୁଣା,କେଉଁ କାଳରୁ ଅଚଳ,ସାମନ୍ତବାଦୀ ଓ ଅନ୍ୟାନ୍ୟ ଯୁଗୀୟ ଧ୍ୱଂସାବଶେଷକୁ ଅକ୍ଷୁଣ୍ଣ ରଖିଥିଲେ ।

ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ପୂର୍ବର ଉପନିବେଶମାନ ସମ୍ପର୍କରେ ଠିକ୍ ଏହି କଥା କୁହାଯାଇପାରେ ।

ସମାଜବାଦୀ ଆନ୍ତର୍ଜାତିକ ଶ୍ରମ ବିଭାଗ, ଏକାବେଳକେ ଭିନ୍ନ ନୀତି ଉପରେ ପର୍ଯ୍ୟବସିତ । ପ୍ରତ୍ୟେକ ଦେଶ, ଅନ୍ୟ ଦେଶକୁ ଓ ଦେଶର ବିକାଶକୁ ସେହି ଶକ୍ତିଶାଳୀ କରିବା ଲାଗି ଅଗ୍ରହୀ । ପ୍ରତ୍ୟେକ ସମାଜବାଦୀ ଦେଶ ଯେତିକି ବଳିଷ୍ଠ ହେବ, ସମଗ୍ରଭାବେ ସମାଜବାଦୀବ୍ୟବସ୍ଥା ସେତିକି ଅଧିକ ଶକ୍ତିଶାଳୀ ହୋଇ ଉଠିବ । ସମାଜବାଦୀ ରାଷ୍ଟ୍ରମାନେ,ଅନ୍ୟ ଦେଶକୁ ଦୁର୍ବଳ କିମ୍ବା ଦମନ କରିବା ଢଗରେ ଅର୍ଥନୈତିକ ସମ୍ପର୍କକୁ ବ୍ୟବହାର କରନ୍ତି ନାହିଁ, ବ୍ୟବହାର କରନ୍ତି ମିଳିତ ଭାବେ ଦ୍ରୁତ ବେଗରେ ଅଗ୍ରସର ହେବା ଢଗରେ ତାକୁ ।

ସମାଜବାଦୀ ଦେଶମାନଙ୍କ ମଧ୍ୟରେ ଆର୍ଥିକ-ସହଯୋଗ ଓ ପାରସ୍ପରିକ ସାହାଯ୍ୟ ଭିନ୍ନ ରୂପ ଗ୍ରହଣ କରେ । ସେସବୁ ମଧ୍ୟରେ ପ୍ରଧାନ ହେଉଛି—ଅର୍ଥ-ନୈତିକ ଯୋଜନାଗୁଡିକର ଯୋଗାଯୋଗ; ଉତ୍ପାଦନ କ୍ଷେତ୍ରରେ ବିଶେଷୀକରଣ

ଓ ସହଯୋଗ; ବେପାର ବଣିଜ, ଋଣଦାନ, ଟେକ୍‌ନିକାଲ ସାହାଯ୍ୟ; ବୈଜ୍ଞାନିକ ଓ ଟେକ୍‌ନିକାଲ୍ ସହଯୋଗ; ଶିଳ୍ପ ଯୋଜନାମାନଙ୍କରେ ମିଳିତ ଅଂଶ ଗ୍ରହଣ ଏବଂ ପ୍ରାକୃତିକ ସମ୍ପଦର ଉପଯୋଗ ।

ସମାଜବାଦୀ ଆନ୍ତର୍ଜାତୀୟ ଶ୍ରମବିଭାଗ, ଏକ ଯୋଜନାବଦ୍ଧ ଭିତ୍ତିରେ ପରିଚାଳିତ ହୁଏ । ଏହା ସ୍ୱତନ୍ତ୍ର ଭାବେ ପ୍ରତ୍ୟେକ ଦେଶ ଓ ମିଳିତ ଭାବେ ସମସ୍ତ ଦେଶର ସ୍ୱାର୍ଥ ଆଉ ସମ୍ଭାବନାକୁ ବିଚାରକୁ ନିଏ ।

ସୋଭିଏତ ଇଉନିଅନ, ଚେକୋସ୍ଲୋଭାକିଆ ଓ ଜର୍ମାନ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ଭଳି ଅତି ଉଚ୍ଚ ଧରଣର ଶିଳ୍ପ ଉନ୍ନତ ଦେଶ ଆଉ ଭିଏତ୍‌ନାମ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ଓ ମଙ୍ଗୋଲିଆ ଜନ-ପ୍ରଜାତନ୍ତ୍ର ଭଳି କମ ଉନ୍ନତଶୀଳ ଦେଶ, ସେହି ସମାଜବାଦୀ ଦେଶ ଗୋଷ୍ଠୀର ଅନ୍ତର୍ଭୁକ୍ତ ।

ସମାଜବାଦୀ ଶିବିର ଭିତରେ ଅଧିକ ଉନ୍ନତ ଦେଶସବୁ ବର୍ତ୍ତମାନର ଅର୍ଥନୈତିକ ସ୍ତରରେ ଥିବା ପାର୍ଥକ୍ୟଗୁଡ଼ିକୁ ସ୍ଥାୟୀ କରିବାକୁ ଚିହେଁ—ଏଭଳି ଭାବିବା ଏକାବେଳକେ ଅସଙ୍ଗତ ଓ ହାସ୍ୟାସ୍ପଦ କଥା । ଉନ୍ନତ ସମାଜବାଦୀ ରାଷ୍ଟ୍ରସବୁ କମ ଉନ୍ନତ ରାଷ୍ଟ୍ରଗୁଡ଼ିକୁ ଅର୍ଥନୀତି ଓ ସଂସ୍କୃତିର ବିକାଶ ଦିଗରେ ଅଧିକ ନିଃସ୍ୱାର୍ଥପର ଭ୍ରାତୃତ୍ୱମୂଳକର ସାହାଯ୍ୟ ଯୋଗାଉଛନ୍ତି ।

ଉଦାହରଣ ସ୍ୱରୂପ : ସୋଭିଏତ ଇଉନିଅନ, ଚୀନର ଜନ-ଗଣତନ୍ତ୍ରକୁ ବିପୁଳ ସାହାଯ୍ୟ ଦେଇଛି । ସୋଭିଏତ ସାହାଯ୍ୟରେ ଚୀନରେ ୧୯୮ଟି ଶିଳ୍ପ ପ୍ରତିଷ୍ଠାନ ଓ ଯୋଜନା ଅତି ଆଧୁନିକ ମେସିନ ଉପକରଣ ଦ୍ୱାରା ସୁସଜ୍ଜିତ ହୋଇ ଗଠିତ ହୋଇଛି । ସୋଭିଏତ ଇଉନିଅନ ମଟର, ଟ୍ରାକ୍ଟର ଓ ବିମାନ ତିଆରି କାରଖାନା ଓ ଅନ୍ୟାନ୍ୟ ଶିଳ୍ପମାନ ଗଢ଼ିବାରେ ଚୀନକୁ ସାହାଯ୍ୟ କରିଛି । ତାକୁ ୧୪୦୦ ବୃହତ୍ ଶିଳ୍ପ ପ୍ରତିଷ୍ଠାନର ନକ୍‌ସାକୁ ମିଶାଇ ୨୧୦୦୦ ସେଟ୍ ବୈଜ୍ଞାନିକ, ଟେକ୍‌ନିକାଲ୍ ଡକୁମେଣ୍ଟ ବା ଦଲିଲପତ୍ର ପ୍ରଦାନ କରିଛି । ହଜାର ହଜାର ଚୀନ ଛାତ୍ର ସୋଭିଏତର ଉଚ୍ଚ ଶିକ୍ଷା ପ୍ରତିଷ୍ଠାନମାନଙ୍କରେ ଶିକ୍ଷା ଗ୍ରହଣ କରିଛନ୍ତି । ହଜାର ହଜାର ଚୀନ ଶ୍ରମିକ ସୋଭିଏତ୍ ଶିଳ୍ପ ପ୍ରତିଷ୍ଠାନମାନଙ୍କରେ ତାଲିମ ହୋଇଛନ୍ତି ।

ସବୁ ଜନ-ଗଣତନ୍ତ୍ର ମଧ୍ୟରେ ସୁଦୃଢ଼ ସମାଜବାଦୀ ସମ୍ପର୍କର ପ୍ରତିଷ୍ଠା ହେତୁ ଅର୍ଥନୈତିକ ପରିଚାଳନାର ରୂପ ଓ ପଦ୍ଧତି କ୍ଷେତ୍ରରେ କ୍ରମାଗତ ଉନ୍ନତିବିଧାନ ବିଶେଷ ଗୁରୁତ୍ୱପୂର୍ଣ୍ଣ ହୋଇଛି । ପ୍ରତ୍ୟେକ ଦେଶରେ ସମାଜବାଦ ନିର୍ମାଣ ମୁଖ୍ୟତଃ ସେହି ଦେଶର ଲୋକଙ୍କର, ଶ୍ରମିକଶ୍ରେଣୀର ଓ କମ୍ୟୁନିଷ୍ଟ ପାର୍ଟିର ପ୍ରଧାନ ବିଚାର୍ଯ୍ୟ ଓ କରଣୀୟ ବିଷୟ । ଯୋଜନାବଦ୍ଧ ଅର୍ଥନୀତିର ସୁଯୋଗ ସମାଜବାଦ ନିର୍ମାଣ କରୁଥିବା

ପ୍ରତ୍ୟେକଟି ଦେଶକୁ, ତାର ପଦ୍ଧତିର ସମ୍ବଳକୁ ସର୍ବାଧିକ ଭାବେ ବ୍ୟବହାର କରିବାରେ ଓ ଅର୍ଥନୈତିକ ବିକାଶ କ୍ଷେତ୍ରରେ ସବୁଠାରୁ ଯଥାର୍ଥ ଅନୁପାତ କାଏମ କରିବାରେ ସାହାଯ୍ୟ କରୁଛି । ଦୃଢ଼ଭାବରେ ଶ୍ରମ ବିଭାଗର ଉନ୍ନତି, ପ୍ରତ୍ୟେକ ଦେଶରେ ଉତ୍ପାଦନ କାର୍ଯ୍ୟ, ଭୌତିକ ଶକ୍ତି ଓ ଲୋକଶକ୍ତିର ସର୍ବୋତ୍କୃଷ୍ଟ ସଦ୍‌ବ୍ୟବହାରକୁ ସୁନିଶ୍ଚିତ ଭାବେ ସାହାଯ୍ୟ କରୁଛି ।

ସମାଜବାଦୀ ଦେଶମାନେ ବ୍ୟାପକ ଭାବେ ପାରସ୍ପରିକ ସୁବିଧାଜନକ ବେପାର ବଣିଜରେ ଲିପ୍ତ । କିନ୍ତୁ ସମାଜବାଦୀ ବଜାରରେ କୌଣସି ଦେଶ ଅନ୍ୟ ଦେଶ ଉପରେ ବଳି ଅକାମୀ ଦ୍ରବ୍ୟ ଲଦି ଦେବାକୁ ଚେଷ୍ଟା କରୁ ନାହିଁ—ଅଥଚ ଏହା ହେଉଛି, ପୁଞ୍ଜିବାଦୀ ଦେଶମାନଙ୍କ ଭିତରେ ବାଣିଜ୍ୟ ବେପାର କ୍ଷେତ୍ରରେ ଏକ ଅତି ସାଧାରଣ କଥା ।

ଅର୍ଥନୈତିକ ସହଯୋଗ ଓ ଶ୍ରମ ବିଭାଗ ସମାଜବାଦୀ ଦେଶଗୁଡ଼ିକୁ ଯଥାକ୍ରମେ ଶିଳ୍ପ ଓ କଞ୍ଚାମାଲ-ସମ୍ବଳର ସର୍ବୋତ୍କୃଷ୍ଟ ବ୍ୟବହାରରେ ସାହାଯ୍ୟ କରୁଛି ।

ସମାଜବାଦୀ ଦେଶସବୁ ନିଜ ନିଜ ମଧ୍ୟରେ ପାରସ୍ପରିକ ସାହାଯ୍ୟ ଓ ବିକାଶଶୀଳ ସମାଜବାଦୀ ଆନ୍ତର୍ଜାତିକ ଶ୍ରମ ବିଭାଗ ସୂତ୍ରରେ ସମାଜବାଦର ସମ୍ବଳକୁ ବ୍ୟବହାର କରିବା ଦ୍ୱାରା ନିଜ ନିଜର ଅଭ୍ୟନ୍ତରୀଣ ସମ୍ବଳରୁ ମଧ୍ୟ ସର୍ବାଧିକ ସୁବିଧା ପାଉଛନ୍ତି । ପ୍ରତ୍ୟେକ ସମାଜବାଦୀ ରାଷ୍ଟ୍ରରେ ଅର୍ଥନୀତିର ସମସ୍ୟାକୁ ଅନ୍ୟ ସମାଜବାଦୀ ରାଷ୍ଟ୍ର ସହିତ ଅର୍ଥନୈତିକ ସହଯୋଗର ଭିତ୍ତିରେ ସମାଧାନର ପଥରେ ଯଥାର୍ଥ ଭାବେ ଆଗେଇ ନିଆଯାଇ ପାରିବ ।

ପାରସ୍ପରିକ ସାହାଯ୍ୟ ସମାଜବାଦୀ ଦେଶର ଦ୍ରୁତ ଅର୍ଥନୈତିକ ବିକାଶକୁ ସୁନିଶ୍ଚିତ କରୁଛି, ସେହି ଦେଶର ସ୍ୱାଧୀନତାକୁ ଶକ୍ତିଶାଳୀ କରୁଛି, ପୁଞ୍ଜିବାଦୀ ଦୁନିଆକୁ ବିରୋଧ କରିବାରେ ସମର୍ଥ କରୁଛି ଏବଂ ପ୍ରତିଦ୍ୱନ୍ଦିତା କ୍ଷେତ୍ରରେ ସେହି ଦୁନିଆକୁ ଟପି ଆଗୁଆ ହେବାରେ ସାହାଯ୍ୟ କରୁଛି । ଏହି କାରଣରୁ କମ୍ୟୁନିଷ୍ଟ ଓ ୱାର୍କରସ୍ ପାର୍ଟି ଆଉ ସମାଜବାଦୀ ଦେଶର ଲୋକମାନଙ୍କର କର୍ତ୍ତବ୍ୟ ହେଉଛି, ସେମାନଙ୍କ ଅର୍ଥନୈତିକ ସମ୍ପର୍କ ଓ ପାରସ୍ପରିକ ସାହାଯ୍ୟକୁ ଦୃଢ଼ୀଭୂତ କରିବା ଏବଂ ନିଜ ନିଜର ପ୍ରତିଶ୍ରୁତି ଓ ଯୋଜନାମାନଗୁଡ଼ିକୁ ଠିକ୍ ଠିକ୍ ପାଳନ କରିବା ।

୧୯୪୯ରେ ପାରସ୍ପରିକ ଅର୍ଥନୈତିକ ସାହାଯ୍ୟ ପରିଷଦ, ସମାଜବାଦୀ ଦେଶମାନଙ୍କର ଅର୍ଥନୈତିକ ଯୋଜନାକୁ ସବୁ ନିଶ୍ଚିତ ଭାବେ ଅଧିକ ସଂହତ କରିବା ଉଦ୍ଦେଶ୍ୟରେ ଗଠିତ ହୋଇଥିଲା । ଉକ୍ତ ପରିଷଦରେ ସୋଭିଏତ୍ ୟୁନିଅନ,

ୟୁରୋପର ସବୁ ଜନ-ଗଣତାନ୍ତ୍ରିକ ଦେଶ ଓ ମଙ୍ଗୋଲିଆ ଜନ ଗଣତନ୍ତ୍ରର ପ୍ରତିନିଧି-ମାନେ ରହିଛନ୍ତି । ପରିଷଦର କାର୍ଯ୍ୟ ମଧ୍ୟରେ ଅର୍ଥନୈତିକ ଯୋଜନାଗୁଡ଼ିକର ଯୋଗାଯୋଗ, ସମାଜବାଦୀ ଅନ୍ତର୍ଜାତୀୟ ଶ୍ରମ ବିଭାଗ, ବୈଜ୍ଞାନିକ ଓ ଟେକ୍‌ନିକାଲ ସହଯୋଗ ଓ ବାଣିଜ୍ୟ ଆଦି କାର୍ଯ୍ୟ ଅନ୍ତର୍ଭୁକ୍ତ ।

ଅର୍ଥନୈତିକ ସଂପର୍କର ବିକାଶକୁ ସହଜ କରିବା, ପ୍ରତ୍ୟେକ ଦେଶର ଆଭ୍ୟନ୍ତରୀଣ ସମ୍ବଳ ଓ ନିଜସ୍ୱ ପ୍ରାକୃତିକ ଶକ୍ତିର ସର୍ବାଧିକ ବ୍ୟବହାର ଦ୍ୱାରା ସର୍ବହରା ଆନ୍ତର୍ଜାତୀୟ ନୀତିର ଭିତ୍ତିରେ ସମାଜବାଦୀ ଦେଶମାନଙ୍କ ମଧ୍ୟରେ ଏକତା ଓ ସଂହତିକୁ ସୁଦୃଢ଼ କରିବା ;—ଏହା ହିଁ ହେଲା ଉକ୍ତ ପରିଷଦଭୁକ୍ତ ଦେଶମାନଙ୍କର କାମନା । ସେମାନେ ତାର ଉପରେ ଜୋର ଦେଉଛନ୍ତି ।

## ବିଶ୍ୱ ସମାଜବାଦୀ ବ୍ୟବସ୍ଥା ଏକ ନୂତନ ପର୍ଯ୍ୟାୟରେ

ସମାଜବାଦୀ ବିଶ୍ୱ, ତା'ର ବିକାଶ ଭିତରେ ଏକ ନୂତନ ପର୍ଯ୍ୟାୟରେ ପ୍ରବେଶ କରିଛି । ତାର ସାଧାରଣ ରୂପରେଖ ହେଲା—ସୋଭିଏତ ୟୁନିଅନରେ ପୂର୍ଣ୍ଣାୟତନ କମ୍ୟୁନିଜମ ବା ସାମ୍ୟବାଦ ନିର୍ମାଣ, ଜନ-ଗଣତନ୍ତ୍ରମାନଙ୍କରେ ସମାଜବାଦର ଭିତ୍ତି ସ୍ଥାପନ ଓ ଉଚ୍ଚ ଉନ୍ନତ ସମାଜବାଦୀ ସମାଜର ନିର୍ମାଣ ଦିଗରେ ଅଭିଯାନ ଓ ସବୁ ସମାଜବାଦୀ ଦେଶରେ ପୁଞ୍ଜିବାଦର ପୁନଃପ୍ରବର୍ତ୍ତନର ସକଳ ସାମାଜିକ-ଆର୍ଥନୀତିକ ସମ୍ଭାବନାର ନିରାକରଣ ।

ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ବର୍ଦ୍ଧିଷ୍ଣୁ ଶକ୍ତି ହେଉଛି, ପ୍ରତ୍ୟେକ ସମାଜବାଦୀ ଦେଶର ରାଜନୈତିକ ଓ ସାମାଜିକ-ଅର୍ଥନୈତିକ ଲାଭର ସୁନିଶ୍ଚିତ ପ୍ରତିଶ୍ରୁତି ।

ବିକାଶର ନୂତନ ପର୍ଯ୍ୟାୟ ସମାଜବାଦୀ ଦେଶ-ଗୋଷ୍ଠୀକୁ ଆହୁରି ଅଧିକ ବଳିଷ୍ଠ କରୁଛି । ପ୍ରଥମ ପର୍ଯ୍ୟାୟରେ ସେମାନଙ୍କ ମଧ୍ୟରେ ସଂପର୍କ ଆର୍ଥିକ ସାହାଯ୍ୟ ଓ ଋଣ ଦେଣନେଣରେ ଦୁଇପକ୍ଷୀୟ ବାଣିଜ୍ୟ ବେପାରରେ, ଟେକ୍‌ନିକାଲ ଓ ବୈଜ୍ଞାନିକ ବିନିମୟରେ ମୁଖ୍ୟତଃ ଆବଦ୍ଧ ରହିଥିଲା । ଏବେ ସମାଜବାଦୀ ଦେଶମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ଶିଳ୍ପ-ସହଯୋଗ ବିକାଶ ଲାଭ କରୁଛି ଏବଂ ବ୍ୟାପକ ଭାବରେ ମିଳିତ ଶିଳ୍ପ ଯୋଜନାମାନ କାର୍ଯ୍ୟକାରୀ ହେଉଛି ।

ଉକ୍ତ ପରିଷଦଭୁକ୍ତ ଦେଶମାନଙ୍କର କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ୍ ପାର୍ଟି ପ୍ରତିନିଧି-ମାନଙ୍କର ଏକ ବୈଠକ ୧୯୬୨ ଜୁନ ମାସରେ ବସିଥିଲା । ସେଠାରେ ନିଷ୍ପତ୍ତି ହୋଇଥିଲା, ପରିଷଦର କାର୍ଯ୍ୟ ଯୁଗକାଳୀନ ହେବ ଓ ପ୍ରତାବିତ ଅର୍ଥନୈତିକ ଯୋଜନାସବୁ ଉପରେ ପର୍ଯ୍ୟବସିତ ହେବ । ଏହିକି ପ୍ରଥମ କାର୍ଯ୍ୟମାଲିକାରୁ

ପ୍ରୋସେସିଙ୍ଗ୍ ବା ବିଶୋଧନ ଶିଳ୍ପରେ ସବୁ ପୁଞ୍ଜି ଲଗାଣରେ ସଂଯୋଗ ଓ ସହଯୋଗିତା ସ୍ଥାପନ ଓ ବିଶେଷୀକରଣ ଦିଗରେ ବିଶେଷ ଧ୍ୟାନ ଦିଆଯିବ । ମିଳିତ ପ୍ରତିଷ୍ଠାନ, ଗବେଷଣା କେନ୍ଦ୍ର ଓ ନକ୍ସା ତିଆରି ଅନୁଷ୍ଠାନ ବିଷୟରେ ଏହି ବୈଠକରେ ସୁପାରିଶ କରାଯାଇଥିଲା ।

ବିଦ୍ୟୁତ୍ ଶକ୍ତିର ମିଳିତ ବ୍ୟବହାର ପ୍ରସାର ଲାଭ କରୁଛି । ସୋଭିଏତ୍ ୟୁନିଅନରୁ ୟୁରୋପର ବନ୍ଧୁ ଦେଶକୁ ଏକ ପ୍ରକାଣ୍ଡ ପାଇପ ଲାଇନ ନିର୍ମାଣ ଚାଲିଛି ।

ପାରସ୍ପରିକ ସାହାଯ୍ୟଜନକ ବାଣିଜ୍ୟର କ୍ରମାଗତ ପ୍ରସାର ଘଟୁଛି । ଭବିଷ୍ୟତରେ ଏହି ବାଣିଜ୍ୟ ବୋଧହୁଏ ପ୍ରତ୍ୟେକ ସମାଜବାଦୀ ଦେଶ ମଧ୍ୟରେ ଯେପରି ଚାଲିଛି, ସେହିପରି ଭିତ୍ତିରେ ଚାଲିବ । ଏହାର ଅର୍ଥ, ସାମାଜିକ ଭାବେ ଆବଶ୍ୟକୀୟ ଶ୍ରମ ବ୍ୟୟର ପୁନରାୟ ଭରଣା—ଏହି ନୀତି ପ୍ରଚଳିତ ହେବ । ଯେତିକି ଅଧିକ ପୂର୍ଣ୍ଣାଙ୍ଗ ଭାବେ ଏହି ନୀତି ପ୍ରୟୋଗ କରାଯିବ, ପ୍ରତ୍ୟେକ ଦେଶର ଅର୍ଥନୀତିକ ଉଦ୍ୟମଶୀଳତା ସେତିକି ଅଧିକ ଫଳପ୍ରଦ ହୋଇଉଠିବ ।

ସବୁ ସମାଜବାଦୀ ଦେଶର ମିଳିତ ଉଦ୍ୟମ ସହ ପ୍ରତ୍ୟେକ ସମାଜବାଦୀ ଦେଶର ଉଦ୍ୟମର ସଂହତିବିଧାନ କରିପାରିଲେ ବିଶ୍ୱ ସମାଜବାଦୀ ଅର୍ଥନୀତିର କ୍ରମାଗତ ପ୍ରସାର ସମ୍ଭବ ହେବ ।

ସମାଜବାଦୀ ଦେଶଗୁଡ଼ିକର ଅର୍ଥନୈତିକ ବିକାଶକୁ ଧନ୍ୟବାଦ ଯେ, ପାରସ୍ପରିକ ସାହାଯ୍ୟ ଓ ସମର୍ଥନ ସତ୍ତ୍ୱେ ସେସବୁ ନିଜ ନିଜର ଅର୍ଥନୈତିକ ସ୍ତରକୁ ସମାନ କରିବା ଦିଗରେ ଦୃଢ଼ ଭାବେ ଅବିଚଳିତ ଗତିରେ ଅଗ୍ରସର ହେଉଛନ୍ତି । ପୂର୍ବର ପଶ୍ଚାତ୍‌ପଦ ଦେଶମାନଙ୍କର ଶିଳ୍ପର ସ୍ତର ଉନ୍ନୀତ ହେଉଛି । କୃଷିରେ ସମାଜବାଦୀ ପରିବର୍ତ୍ତନ ଗଭୀର ହେଉଛି ଓ ଲୋକଙ୍କର ଜୀବନଧାରଣ ମାନରେ ବିକାଶ ଘଟୁଛି ।

## ସମାଜବାଦ ଓ ପୁଞ୍ଜିବାଦ ମଧ୍ୟରେ ପ୍ରତିଯୋଗିତା

ରୁଷରେ ଅକ୍ଟୋବର ବିପ୍ଳବ ମଧ୍ୟରୁ ଜନ୍ମ ଲଭିଥିବା ସମାଜବାଦୀ ବ୍ୟବସ୍ଥା ଏବେ ପୃଥିବୀର ଏକ ଚତୁର୍ଥାଂଶରୁ ଅଧିକ ଅଞ୍ଚଳକୁ ପ୍ରସାରିତ ହୋଇଛି । ସମାଜବାଦର ବଳ ଓ ଶକ୍ତି ଯୋଗେ ହିଁ ତାର ପରିସରର ବ୍ୟାପକତା ଓ ଗଭୀରତ୍ୱ ବୃଦ୍ଧି ପାଉଛି । ଅନ୍ୟ ଦିଗରେ,ପୁଞ୍ଜିବାଦର ଅର୍ଥନୈତିକ ଓ ରାଜନୈତିକ ଅବସ୍ଥା ଧୀରେ ଧୀରେ ଦୁର୍ବଳ ହୋଇ ପଡ଼ୁଛି ।

ପୃଥିବୀର ଶିଳ୍ପ ଉତ୍ପାଦନ କ୍ଷେତ୍ରରେ ସମାଜବାଦର ଅଂଶ ଯାହା ୧୯୧୭ରେ ଶତକଡ଼ା ୩ ଭାଗ ଥିଲା ଏବଂ ଦ୍ୱିତୀୟ ବିଶ୍ୱଯୁଦ୍ଧର ଠିକ ପୂର୍ବରୁ ପ୍ରାୟ ଶତକଡ଼ା୧୦ରେ ରହିଥିଲା, ତାହା ଏବେ ଶତକଡ଼ା ୪୦ରେ ପହଞ୍ଚିଲାଣି ।

ପୃଥିବୀ ଏବେ ସମାଜବାଦ ଓ ପୁଞ୍ଜିବାଦ ମଧ୍ୟରେ ଅର୍ଥନୈତିକ ପ୍ରତିଦ୍ୱନ୍ଦ୍ୱିତାର ଏକ ରଙ୍ଗମଞ୍ଚ ହୋଇ ଉଠିଲାଣି ।

ସବୁଠାରୁ ଉନ୍ନତ ପୁଞ୍ଜିବାଦୀ ଦେଶମାନେ, ଯେଉଁ ସ୍ତରରେ କେବେହେଲେ ହେଁ ପହଞ୍ଚି ପାରନ୍ତି ବା ପହଞ୍ଚିବାକୁ ସମର୍ଥ ହେବେ, ସେହି ସ୍ତରର ଆହୁରି ଉର୍ଦ୍ଧ୍ୱକୁ ସୋଭିଏତ ଅର୍ଥନୀତିକୁ ଉଠାଇବା କେତେ ଦୂର ଗୁରୁତ୍ୱପୂର୍ଣ୍ଣ, ଏହା ଲେନିନ ଦର୍ଶାଇଥିଲେ । ସେ ଯେଉଁ ବିକଳ୍ପ କଥାଟି ଉପରେ ଜୋର ଦେଇଥିଲେ, ତାହା ହେଉଛି—"ଲୋପ ପାଇ ଯାଅ କିମ୍ବା ଅର୍ଥନୈତିକ ଭାବରେ ଅଗ୍ରଗାମୀ ଦେଶ ସବୁର ସମକକ୍ଷ ହୋଇ ତାଙ୍କୁ ଟପି ଯାଅ, ପଛରେ ପକାଇ ଯାଅ ।"

## ବିଶ୍ୱ ଶିଳ୍ପ-ଉତ୍ପାଦନ କ୍ଷେତ୍ରରେ ସମାଜବାଦୀ ଦେଶ ସବୁର ଅଂଶ




ସୋଭିଏତ୍ ସ୍ୱାଧୀନ ଏଣୁ ନିଜର କର୍ତ୍ତବ୍ୟ ରୂପେ ଗ୍ରହଣ କରିଛି,—ଲୋକଙ୍କର ମୁଣ୍ଡପିଛା ଉତ୍ପାଦନରେ ସବୁଠାରୁ ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କୁ ଟପିଯିବ, ସେମାନଙ୍କୁ ପଛରେ ପକାଇ ଦେବ ।

ଯୁକ୍ତରାଷ୍ଟ୍ର ଆମେରିକା ସହିତ ୧୯୧୩ର ରୁଷ୍ ଓ ଜମିଦାରମାନଙ୍କ ରୁଷକୁ ତୁଳନା କରି ଦେଖିଲେ, ଏହି ଉଚ୍ଚ ଆକାଂକ୍ଷାପୂର୍ଣ୍ଣ ପରିକଳ୍ପନା ସମ୍ବନ୍ଧରେ ଧାରଣା ଆସିପାରେ । ପୃଥିବୀର ମୋଟ ଶିଳ୍ପ ଓ କୃଷି ଉତ୍ପାଦନରେ ଯୁକ୍ତରାଷ୍ଟ୍ର ଆମେରିକା ସମସ୍ତଙ୍କ ଆଗରେ ଥିଲା । ପୃଥିବୀର ଶିଳ୍ପ ଉତ୍ପାଦନରେ ତାର ଭାଗ ଥିଲା

ଶତକଡ଼ା ୩.୪ । ଅନ୍ୟ ଦିଗରେ, ରୁଷ ଥିଲା ଅର୍ଥନୈତିକ କ୍ଷେତ୍ରରେ ପଶ୍ଚାତ୍‌ପଦ, ଥିଲା ବୃଞ୍ଜିବାଦୀ ବିକାଶର ୨୦ମ ସ୍ତରରେ ; ପୃଥିବୀର ଶିଳ୍ପ ଉତ୍ପାଦନରେ ତାର ଭାଗ ଥିଲା ଶତକଡ଼ା ୪ ମାତ୍ର ।

ଏପରିକି ସୋଭିଏତ ୟୁନିଅନ ପୁଞ୍ଜିବାଦୀଙ୍କୁ ଅତିକ୍ରମ କଲାବେଳେ ତାର ନିଜର ଅର୍ଥନୈତିକ ସ୍ତର ପଛରେ ଥିଲା ଆହୁରି ତଳେ । ୧୯୧୪-୧୮ ର ବିଶ୍ୱଯୁଦ୍ଧ, ଗୃହଯୁଦ୍ଧ ଏବଂ ପୁଞ୍ଜିବାଦୀ ଦେଶମାନଙ୍କର ସଶସ୍ତ୍ର ହସ୍ତକ୍ଷେପ ଫଳରେ ୧୯୨୦ରେ ତାର ଶିଳ୍ପ ଉତ୍ପାଦନ ଥିଲା ୧୯୧୩ ସ୍ତରର ଏକ ପଞ୍ଚମାଂଶ ମାତ୍ର ।

ସୋଭିଏତ ୟୁନିଅନ ତୁଳନାରେ ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ, ଜର୍ମାନୀ ଓ ଅନ୍ୟ ପୁଞ୍ଜିବାଦୀ ଦେଶ ୫୦ ଗୁଣ ଅଧିକ ଲୁହା ପିଣ୍ଡ, ୩୨୭ ଗୁଣ ଅଧିକ ଇସ୍ପାତ, ୧୫୦ ଗୁଣ ଅଧିକ କୋଇଲା ଉତ୍ପାଦନ କରୁଥିଲେ । ୧୯୨୧ ବେଳକୁ ପୃଥିବୀର ଶିଳ୍ପ ଉତ୍ପାଦନରେ ସୋଭିଏତ ୟୁନିଅନର ଅଂଶ ଶତକଡ଼ା ୧ ଭାଗରୁ ମଧ୍ୟ ଊଣା ଥିଲା ।

ଏତେ ବାଧା ପ୍ରତିବନ୍ଧକ ବିରୁଦ୍ଧରେ ଯାଇ ସୋଭିଏତ ୟୁନିଅନ ଯେ ଶିଳ୍ପୋନ୍ନତ ପୁଞ୍ଜିବାଦୀ ଦେଶମାନଙ୍କ ଉପରେ ଅର୍ଥନୈତିକ ବିଜୟ ହାସଲ କରିବ, ଏହାକୁ ସମାଜବାଦର ଶତ୍ରୁମାନେ ଉପହାସରେ ଉଡ଼ାଇ ଦେଇଥିଲେ । ଆହୁରି ବି ସେମାନେ ଏକାଠି ହୋଇ ଚିତ୍କାର କରୁଥିଲେ ଯେ, ସୋଭିଏତ ଶକ୍ତିର କାଳ ପୂରି ଆସିଲା । ୧୯୧୭ ଠାରୁ ୧୯୧୯ ମଧ୍ୟରେ ନିଉୟର୍କ ଟାଇମସ୍, ସୋଭିଏତ୍‌ର ପତନ ସଂପର୍କରେ ୯୧ ଥର ଭବିଷ୍ୟତ ବାଣୀ ଶୁଣାଇ ଥିଲା ।

ଏଚ୍,ଜି,ୱେଲସ୍, ସେ ସମୟରେ ମସ୍କୋ ଯାଇ ଲେନିନ୍‌ଙ୍କ ସହିତ ସାକ୍ଷାତ୍ କରିଥିଲେ । ସେ ଲେଖିଥିଲେ,ଯୁକ୍ତରାଷ୍ଟ୍ର ଆମେରିକା ଓ ଅନ୍ୟ ପାଶ୍ଚାତ୍ୟ ଦେଶମାନଙ୍କ ସାହାଯ୍ୟ ବିନା ରୁଷର କୌଣସି ଗତି ନାହିଁ, ସେଠାରେ " ଯାହା କିଛି ଆଧୁନିକ ସଭ୍ୟତା ରହିଛି, ତା ର ପରିସମାପ୍ତି ଘଟିବ ।"

କିନ୍ତୁ ସମାଜବାଦର ବିଜୟ ଯେ ଅନିବାର୍ଯ୍ୟ, ସେ ସମ୍ବନ୍ଧରେ କମ୍ୟୁନିଷ୍ଟ ପାର୍ଟିର ଦୃଢ଼ ବିଶ୍ୱାସ ଥିଲା । ତାହା ଜନସାଧାରଣଙ୍କୁ ବୁଝାଇ ଦେଇଥିଲା ଯେ, ଶୋଷକଶ୍ରେଣୀ ରୁଷର ଅଧିକାଂଶ ଅଧିବାସୀଙ୍କୁ ଦୁଃଖ ଦାରିଦ୍ର୍ୟର ଅତଳ ସାଗରରେ ଫିଙ୍ଗି ଦେଇଛନ୍ତି, ଦେଶକୁ ଦୁର୍ଦ୍ଦଶାଗ୍ରସ୍ତ କରିଛନ୍ତି । ସୋଭିଏତ୍ ସରକାର ଅତୀତ ରୁଷର ଦୁଃଖ ଦାରିଦ୍ର୍ୟ ଆଉ ଅନୁନ୍ନତ ଅବସ୍ଥା ଦୂର କରିଦେବ, ସେଠାରେ ଏକ ଉଜ୍ଜ୍ୱଳ, ସମୃଦ୍ଧିଶାଳୀ, ସଂସ୍କୃତିସଂପନ୍ନ ଜୀବନର ଧାରା ପ୍ରବାହିତ କରିବ ।

ସେହି ଦିନଠାରୁ ସୋଭିଏତ ଇଉନିଅନ ବହୁ ପଥ ଅତିକ୍ରମ କରି ଆସିଛି । ମୁଣ୍ଡ ପ୍ରତି ଶିଳ୍ପ ଉତ୍ପାଦନର ହାର ୧୯୧୩ରେ ଯୁକ୍ତରାଷ୍ଟ୍ର ଆମେରିକା ତୁଳନାରେ

ଯେଉଁଠି ୧୩ । ୧୪ ଅଂଶରେ ପଛରେ ପଡ଼ିଥିଲା, ସେଠି ତାହା ଦୃଢ଼ରୂ ଆନୁପ୍ତ ତଳକୁ ଖସି ପଡ଼ିଛି ।

ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ଆବିର୍ଭାବ ଯୋଗୁଁ ସମାଜବାଦ ଓ ପୁଞ୍ଜିବାଦ ମଧ୍ୟରେ ପ୍ରତିଯୋଗିତା ଏକ ନୂତନ ପର୍ଯ୍ୟାୟରେ ପହଞ୍ଚିଛି । ଆଜି ଏକ ବିରାଟ ସମାଜବାଦୀ ଜାତି ଗୋଷ୍ଠୀ, ବିଶ୍ୱ ପୁଞ୍ଜିବାଦ ବିରୁଦ୍ଧରେ ଦଣ୍ଡାୟମାନ ।

ସମାଜବାଦୀ ଓ ପୁଞ୍ଜିବାଦୀ ଦେଶମାନଙ୍କରେ ଶିଳ୍ପ ଉତ୍ପାଦନର ବୃଦ୍ଧିକୁ ୧୯୩୭ ମସିହା ହିସାବର ଭିତ୍ତିରେ ଶତକଡ଼ା ହାରରେ ପ୍ରଦର୍ଶାଇବା ଲାଗି ନେତେକ ତଥ୍ୟ ତଳେ ପ୍ରଦତ୍ତ ହେଲା ।

| ବର୍ଷ | ସମାଜବାଦୀ ଦେଶ | ପୁଞ୍ଜିବାଦୀ ଦେଶ |
|---|---|---|
| ୧୯୩୭ | ୧୦୦ | ୧୦୦ |
| ୧୯୫୫ | ୮୬୨ | ୧୯୯ |
| ୧୯୫୬ | ୪୦୪ | ୨୦୮ |
| ୧୯୫୭ | ୪୪୫ | ୨୧୫ |
| ୧୯୫୮ | ୫୨୧ | ୨୧୦ |
| ୧୯୫୯ | ୬୨୦ | ୨୩୧ |
| ୧୯୬୦ | ୬୮୧ | ୨୪୪ |
| ୧୯୬୧ | ୭ ଗୁଣରୁ ଅଧିକ | ୨୫୨ |
| ୧୯୬୨ | ପ୍ରାୟ ୭.୫ ଗୁଣ | ୨୬୭ |

ଆମେ ଦେଖିଛୁ, ସମାଜବାଦୀ ଦେଶସବୁର ଶିଳ୍ପ ଉତ୍ପାଦନ ପ୍ରାୟ ୭.୫ ଗୁଣ ବୃଦ୍ଧି ପାଇଥିବା ବେଳେ, ପୁଞ୍ଜିବାଦୀ ଦେଶଗୁଡ଼ିକର ଶିଳ୍ପ ଉତ୍ପାଦନ ୨.୫ ଗୁଣରୁ ସାମାନ୍ୟ ଅଧିକ ବୃଦ୍ଧି ପାଇଛି । ସମାଜବାଦୀ ରାଷ୍ଟ୍ରମାନଙ୍କର ବିକାଶ ହାର ଅଧିକ ହେଉଥିବା ଯୋଗୁ ସେସବୁ ନିକଟ ଭବିଷ୍ୟତରେ ପୁଞ୍ଜିବାଦୀ ଦେଶସବୁ ସହିତ ନିଶ୍ଚୟ ସମାନ ହୋଇଯିବ, ତାପରେ ଜିନିଷପତ୍ର ଉତ୍ପାଦନରେ ପୁଞ୍ଜିବାଦୀ ଦୁନିଆକୁ ଟପି ଯିବ ।

ସୋଭିଏତ୍ ଇଉନିଅନରେ ହାରାହାରି ବାର୍ଷିକ ଶିଳ୍ପ ଉତ୍ପାଦନ ବୃଦ୍ଧିର ହାର, ଯୁକ୍ତରାଷ୍ଟ୍ର ଆମେରିକାର ଶିଳ୍ପ ପ୍ରସାର ହାରର ୩ ଗୁଣରୁ ଅଧିକ । ଏହି ଅଧିକ ବୃଦ୍ଧି ହାର ବର୍ତ୍ତମାନ ସୁଦ୍ଧା ବଳବତ୍ତର ରହିଛି । ଏବେ ସୋଭିଏତର ଶିଳ୍ପ ଉତ୍ପାଦନ ଆମେରିକାର ଉତ୍ପାଦନ ସ୍ତରର ପ୍ରାୟ ଶତକଡ଼ା ୬୫ ରେ ରହିଛି ।

ସୋଭିଏତ୍ ଇଉନିଅନ ଶିଳ୍ପ ଉତ୍ପାଦନରେ ଦ୍ରୁତଭାବେ ଆମେରିକାର ପାଖାପାଖି ହୋଇଯାଇଛି, ଏବଂ କେତେକ କ୍ଷେତ୍ରରେ ତାକୁ ମଧ୍ୟ ବଳି ପଡ଼ିଲଣି ।

୧୯୮୦ ବେଳକୁ ସୋଭିଏତ୍‌ର ଶିଳ୍ପ ଉତ୍ପାଦନ, ସମଗ୍ର ଅଣ ସମାଜବାଦୀ ରାଷ୍ଟ୍ରମାନଙ୍କ ବର୍ତ୍ତମାନ ଉତ୍ପାଦନ ସ୍ତରର ପ୍ରାୟ ଦୁଇ ଗୁଣ ହୋଇଯିବ । ଯୁକ୍ତ-ରାଷ୍ଟ୍ର ଆମେରିକା ପଛରେ ପଡ଼ିଯିବ ।

ଅନ୍ୟ ସମାଜବାଦୀ ରାଷ୍ଟ୍ରମାନେ ମଧ୍ୟ ଦୀର୍ଘକାଳୀନ ପରିକଳ୍ପନାଗୁଡ଼ିକୁ ସଫଳ ଭାବେ କାର୍ଯ୍ୟକାରୀ କରୁଛନ୍ତି ।

ଆସନ୍ତା କେତେକ ବର୍ଷରେ ସମାଜବାଦୀ ବ୍ୟବସ୍ଥା, ଭୌତିକ ଉତ୍ପାଦନରେ ପୁଞ୍ଜିବାଦକୁ ବଳିଯିବ, ପୃଥିବୀର ସମସ୍ତ ଶିଳ୍ପ ଉତ୍ପାଦନର ଅଧାରୁ ଅଧିକ ସମାଜବାଦୀ ବ୍ୟବସ୍ଥାରେ ହିଁ ଦେଖିବାକୁ ମିଳିବ । ଏହି ଲକ୍ଷ୍ୟ ହାସଲ ବିଶ୍ୱ-ଇତିହାସରେ ହେବ ଏକ ନୂତନ ମାଇଲ-ଖୁଣ୍ଟ ।

## ସମାଜବାଦର ବିଜୟ ଅନିବାର୍ଯ୍ୟ

ସମଗ୍ର ପୃଥିବୀରେ ସମାଜବାଦର ବିଜୟ ଅନିବାର୍ଯ୍ୟ, ଏ ଦୃଢ଼ ବିଶ୍ୱାସ ସମାଜବାଦରେ ବାସ୍ତବ ସୁବିଧା ସୁଯୋଗ ଉପରେ ପର୍ଯ୍ୟବସିତ—କମ୍ୟୁନିଷ୍ଟମାନଙ୍କ ଏ ବିଶ୍ୱାସ ସର୍ବାଂର ହୃଦୟ ଭଳି—ସମାଜବାଦୀ ବିଜୟର ନିଶ୍ଚିତତାରେ ।

ଏହା ସ୍ୱାଭାବିକ ଯେ ଘଟଣାବଳୀର ପ୍ରବାହ ବୁର୍ଜୁଆ ବ୍ୟବସ୍ଥାର ସମର୍ଥକମାନଙ୍କର ଅଭୀଷ୍ଟ ଉପଯୋଗୀ ହେଉନାହିଁ । ଜୀବନର ତଥ୍ୟ ଓ ଘଟନାକୁ ସବୁ ଉପେକ୍ଷା କରି, ସେମାନେ ଜନସାଧାରଣଙ୍କ ମନରେ ବିଶ୍ୱାସ ଆଣିବାକୁ ଚାହାନ୍ତି ଯେ, ଏହି ଦୁଇ ବ୍ୟବସ୍ଥାର ପ୍ରତିଯୋଗିତାରେ ପୁଞ୍ଜିବାଦ ଜୟଲାଭ କରିବ । ଏହି ଉଦ୍ଦେଶ୍ୟ ନେଇ ବୁର୍ଜୁଆ ସମର୍ଥକମାନେ ପୁଞ୍ଜିବାଦକୁ ମନୋଜ୍ଞ ଭାବେ ସଜ୍ଜିତ କରି ଦେଖାଇବାରେ ଓ ସମାଜବାଦ ବିରୁଦ୍ଧରେ କୁତ୍ସା ରଟନା କରିବାରେ କୌଣସି କାର୍ଯ୍ୟ ବାଦ ଦିଅନ୍ତି ନାହିଁ ।

ବୁର୍ଜୁଆ ମତାଦର୍ଶବାଦୀମାନେ "ବ୍ୟକ୍ତିଗତ ଉଦ୍ୟମ", "ବ୍ୟକ୍ତିଗତ ପ୍ରତିଷ୍ଠାନ", "ଆମେରିକାର ଜୀବନଧାରା"ର ତଥାକଥିତ ଗୁଣଗାନ କରିବାରେ ଶତମୁଖ । କିନ୍ତୁ ପୁଞ୍ଜିବାଦର ସଙ୍କଟ, ଉତ୍ପାଦନର ଅରାଜକତା, ବେକାରୀ ସମସ୍ୟା, ଲୋକମାନଙ୍କର ଦୁଃସ୍ଥ ସର୍ବସ୍ୱାନ୍ତ ଅବସ୍ଥା ଏବଂ ତାର ଅନ୍ୟାନ୍ୟ ଆରୋଗ୍ୟହୀନ ରୋଗବ୍ୟାଧି ସମ୍ବନ୍ଧରେ ସମ୍ପୂର୍ଣ୍ଣ ନୀରବ—ଏଥିରେ ବିଚିତ୍ରତା କିଛି ନାହିଁ ।

ପ୍ରଶ୍ନ କରାଯାଇପାରେ, ଏଇ ଦୁଇ ବ୍ୟବସ୍ଥା ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତାର ବିଚାରକ କିଏ ? କେଉଁ ବ୍ୟବସ୍ଥା ଉତ୍କୃଷ୍ଟ, ତାହା ଠିକ କରିବ କିଏ ?—କରିବେ ଲୋକେ । ସେହିମାନେ ହେଉଛନ୍ତି ଇତିହାସର କର୍ତ୍ତା; ସେହିମାନେ ସ୍ଥିର କରିବେ,

ସମାଜବାଦୀ ନା ପୁଞ୍ଜିବାଦୀ କେଉଁ ବ୍ୟବସ୍ଥା ସେମାନଙ୍କ ଲାଗି ଅଧିକ ଉପଯୁକ୍ତ । ଲୋକଙ୍କୁ ବୋକା ବନା ଯାଇ ନ ପାରେ । ବୁର୍ଜୁଆ ବ୍ୟବସ୍ଥାର ସମର୍ଥକମାନେ ଯେତେ କଠୋର ଭାବେ ସମାଜବାଦକୁ ନିନ୍ଦା କରନ୍ତୁ ଓ ପୁଞ୍ଜିବାଦର ପ୍ରଶଂସାଗାନ କରନ୍ତୁ ପଛେ, ଲୋକେ ନିଜେ ହିଁ ଦେଖି ପାରିବେ କେଉଁଠାରେ ଶ୍ରମ-ଦିବସ ସଂକ୍ଷିପ୍ତ, ଯେଉଁଠାରେ ଶ୍ରମଜୀବୀ ଅଧିକ ଭୌତିକ ଓ ଆତ୍ମିକ ବିକାଶ ଲାଗି ସୁବିଧା ସୁଯୋଗ ଲାଭ କରୁଛି, କେଉଁଠାରେ ବାସ୍ତବ ଲୋକପ୍ରିୟ ଶାସନର ପୁଷ୍ପ ଭଲ ପ୍ରସ୍ଫୁଟିତ ହୋଇ ଉଠୁଛି ।

ଅତଏବ ଲୋକେ ତାହା ଦେଖିପାରିଲେ, ଠିକଣା ଭାବେ ପସନ୍ଦ କରି, ସମାଜବାଦକୁ ହିଁ ବାଛିବେ ।

ସମସ୍ତ ଆର୍ଥନୀତିକ ନିର୍ମାଣ ଓ ସାଂସ୍କୃତିକ ବିକାଶ କ୍ଷେତ୍ରରେ ସମାଜବାଦର କୃତିତ୍ୱ, ପୁଞ୍ଜିବାଦର ପ୍ରଚାରକ ଓ ସମର୍ଥକମାନଙ୍କୁ ମାନିବାକୁ ବାଧ୍ୟ କରୁଛି—ସମୟର ଗତି ସମାଜବାଦ ସପକ୍ଷରେ । ସୋଭିଏତ୍ ୟୁନିଅନ ବା ଆମେରିକା, କାହା ସପକ୍ଷରେ ସମୟ କାର୍ଯ୍ୟକରୁଛି, ଏ ପ୍ରଶ୍ନର ଉତ୍ତରରେ ନିଉୟର୍କ ଟାଇମସ୍ ସ୍ୱୀକାର କରିବାକୁ ବାଧ୍ୟ ହୋଇଛି, ସମୟ ନିର୍ଭୁଲ ଭାବେ କମ୍ୟୁନିଜମ୍ ପକ୍ଷରେ ଗତି କରୁଛି, ତାହାର ସାହାଯ୍ୟକାରୀ ହୋଇଛି । ଭବିଷ୍ୟତରେ ଯେ ଏହାର ପରିବର୍ତ୍ତନ ଘଟିବ, ତାର କୌଣସି ନିଶ୍ଚୟତା ନାହିଁ ।—

ଲଣ୍ଡନର ଟାଇମସ୍ କାଗଜ ସ୍ୱୀକାର କରୁଛି ଯେ :

"ଯେତେବେଳେ ଜାର୍‌ର ଶୀତକାଳୀନ ପ୍ରାସାଦ ଦଖଲ ହେଉଥିଲା ଓ ରୁଷର ସୋଭିଏତ୍ କଂଗ୍ରେସ ବସିବ ଯେ ଘଣ୍ଟା ଲାଗି ମିଳିତ ହୋଇଥିଲା, ସେତେବେଳେ ରୁଷ ପାଞ୍ଜିର ତାରିଖ ଥିଲା ଅକ୍ଟୋବର ୨୫ । ରୁଷର ପଞ୍ଜିକା ସେତେବେଳେ ପାଶ୍ଚାତ୍ୟ ପଞ୍ଜିକାର ଦୃଷ୍ଟିରୁ ପଛୁଆ ଥିଲା ୧୩ ଦିନ—ଶିଳ୍ପକ୍ଷେତ୍ରରେ ପାଶ୍ଚାତ୍ୟ ଶିଳ୍ପ ତୁଳନାରେ ରୁଷ୍ ରହିଥିଲା ୧୦୦ ବର୍ଷ ପଛରେ ଏବଂ ରାଜନୈତିକ ଓ ସାମାଜିକ ଗଠନରେ ଥିଲା ଅନ୍ତତଃ ଦେଢ଼ଶହ ବର୍ଷ ପଛକୁ । ଏବେ ସୋଭିଏତ ଓ ତାର ମିତ୍ରମାନେ ନିଜ ନିଜର ବିପ୍ଳବ ସଂସ୍କାରକୁ ପାଳନ କରୁଛନ୍ତି...ଅବଶ୍ୟ, ସେମାନଙ୍କର ଆନନ୍ଦ ହେବାର ବହୁତ କାରଣ ଅଛି । ଦ୍ୱିତୀୟ ସର୍ବବୃହତ ଶିଳ୍ପ-ଶକ୍ତି ହେବା ଲାଗି ଓ ସାମରିକ ଭାବେ ସବୁଠାରୁ ବଳିଷ୍ଠ ହେବା ଲାଗି ରୁଷରେ ଜନ ଜାଗରଣ, ଚୀନ ଆଉ ପୂର୍ବ ୟୁରୋପୀୟ ଦେଶମାନଙ୍କରେ କମ୍ୟୁନିଷ୍ଟ ଶାସନର ପ୍ରସାର, ମଧ୍ୟପ୍ରାଚ୍ୟ ଓ ଏସିଆ ଉପରେ ସୋଭିଏତ୍ ୟୁନିଅନର ରାଷ୍ଟ୍ର ଭାବରେ ବର୍ଦ୍ଧିଷ୍ଣୁ ପ୍ରଭାବ ଏବଂ କମ୍ୟୁନିଷ୍ଟ ପାର୍ଟିମାନଙ୍କର କଠୋର ଅଧ୍ୟବସାୟ—ଏହି ସମସ୍ତ

ଶକ୍ତି ପୃଥିବୀକୁ ନୂତନ ରୂପ ଦେଉଛି ।—ତେବେ ଏସବୁ ଯେ ଶୀର୍ଷ ଦେଶରେ ପହଞ୍ଚିଲଣି, ଏହା କହୁ ବୁଝାଯାଇ ନ ପାରେ ।”

ବାସ୍ତବତ, ଏପର୍ଯ୍ୟନ୍ତ ଶୀର୍ଷଦେଶ ଦେଖାଯାଇ ନାହିଁ ।—

ଆମ ସମୟରେ କମ୍ୟୁନିଜମ୍, ମାନବ ସମାଜର ‘ସର୍ବଶ୍ରେଷ୍ଠ ଅଂଶ’ର ମନକୁ, ଅର୍ଥାତ୍ ସର୍ବୋତ୍ତମ ଲୋକଙ୍କ ମନକୁ ଅଧିକାର କରୁଛି । ଏହାର ଆଦର୍ଶ ଓ ଭାବଧାରା, ସାମ୍ରାଜ୍ୟବାଦୀ ଦାସତ୍ୱ ବିରୁଦ୍ଧରେ ତୀବ୍ର ସଂଗ୍ରାମରେ ଲିପ୍ତ କୋଟି କୋଟି ଲୋକଙ୍କୁ ଏକତାବଦ୍ଧ କରୁଛି ।

ବିଶ୍ୱ ଏକଚ୍ଛତ୍ରିଆ ବୁର୍ଜୁଆ ଓ ତାଙ୍କର ରାଜନୀତଜ୍ଞ ଓ ମତାଦର୍ଶବାଦୀମାନଙ୍କର ବୁଦ୍ଧି ହଜିଛି । କମ୍ୟୁନିଜମ୍‌ର ସୁସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଲକ୍ଷ୍ୟର ବିପକ୍ଷରେ ସେମାନଙ୍କର କିଛି ଦେବାର ନାହିଁ । ସେମାନଙ୍କର ଆର୍ଥନୀତିକ ବିକାଶ ଲାଗି କୌଣସି ବିଶ୍ୱାସଯୋଗ୍ୟ ଯୋଜନା ନାହିଁ—ଲୋକମାନଙ୍କ ପ୍ରକୃତ ସ୍ୱାର୍ଥଅନୁରୂପ କୌଣସି ନୀତି ନାହିଁ, —ସାମାଜିକ ବିକାଶର ନିୟମକୁ ପ୍ରତିଫଳିତ କରିବା ଓ ଜୀବନର ଆବଶ୍ୟକତାକୁ ପୂରଣ କରିବା, ଏପରିକି କୌଣସି ବୈଜ୍ଞାନିକ ଭାବ ବା ଆଦର୍ଶ ନାହିଁ । ପୁଞ୍ଜିବାଦର ଯେଉଁ ଅପରିବର୍ତ୍ତନୀୟ ବିରୋଧିତା ତାଙ୍କୁ ଅନ୍ଧକାର ମଧ୍ୟ ଅନ୍ଧାରି ଗଳି ମଧ୍ୟକୁ ନେଇଯାଇଛି, ସେଥିରୁ ଉଦ୍ଧାର ପାଇବାକୁ କଣ କରିଯାଇପାରେ, ତାହା ସେମାନେ ଜାଣନ୍ତି ନାହିଁ, ଜାଣିବାକୁ ମଧ୍ୟ ଅକ୍ଷମ ।

ଜଣେ ପ୍ରାଚୀନ ଦାର୍ଶନିକ କହୁଥିଲେ—‘ଅତଳ ସମୁଦ୍ରରେ’ କେଉଁ ବନ୍ଦରକୁ ଜଣେ ପାଲ ଉଡ଼ାଇ ଯାତ୍ରା କରିଛି, ତାହା ଯେତେବେଳେ ସେ ନ ଜାଣେ, ସେତେବେଳେ ସେ ଅନୁକୂଳ ପବନ ଆଶା କରିବ କେମିତି ?

## ୨ । ପୃଥିବୀର ମୁକ୍ତି ଆନ୍ଦୋଳନ

ବର୍ତ୍ତମାନର ବାସ୍ତବମାନେ, ପୃଥିବୀର ଏକ ବିରାଟ ବୈପ୍ଳବିକ ପୁନର୍ଜନ୍ମର ବା ପୁନର୍ନବୀକରଣର ସାକ୍ଷୀ ଓ ତହିଁର ଭାଗଦାର ।

ସେହିମାନେ ହିଁ ଦେଖୁଛନ୍ତି—ବିଶ୍ୱ-ସମାଜବାଦୀ ବ୍ୟବସ୍ଥା ଦିନକୁଦିନ ପ୍ରସାରିତ ହେଉଛି ।

—ପୃଥିବୀର ଔପନିବେଶିକ ମାନଚିତ୍ର ପ୍ରକାଶ ପାଇଲା ପୂର୍ବରୁ ତାହା ପ୍ରାୟ ସବୁ ଦୋହଲିଯାଉଛି, ତାର ସମସ୍ତ ଗଢ଼ିଯାଉଛି । ଜାତୀୟ ମୁକ୍ତି ଆନ୍ଦୋଳନର

ପ୍ରଚଣ୍ଡ ଆଘାତରେ ସାମ୍ରାଜ୍ୟବାଦର ଔପନିବେଶିକ ବ୍ୟବସ୍ଥା ଭାଙ୍ଗି ପଡ଼ୁଛି । ଅଧିକରୁ ଅଧିକ ସ୍ୱାଧୀନ ଜାତିମାନଙ୍କର ଆବିର୍ଭାବ ଘଟୁଛି । ସାମ୍ରାଜ୍ୟବାଦୀ ଶକ୍ତି ତୁଳନାରେ ସମାଜବାଦୀ ଶକ୍ତିର ଆଧିକ୍ୟ, ଯୁଦ୍ଧ ଓ ଆକ୍ରମଣର ଶକ୍ତି ତୁଳନାରେ ଶାନ୍ତି-ଶକ୍ତିର ପ୍ରାବଲ୍ୟ ଅଧିକରୁ ଅଧିକ ସୁସ୍ପଷ୍ଟ ହୋଇ ଉଠୁଛି ।

ସମାଜବାଦୀ ବିପ୍ଳବ, ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ ସ୍ୱାଧୀନତା ବିପ୍ଳବ, ଲୋକପ୍ରିୟ ଗଣତାନ୍ତ୍ରିକ ବିପ୍ଳବ, ବ୍ୟାପକ କୃଷକ ଆନ୍ଦୋଳନ, ଫାସିଷ୍ଟ ଓ ଅନ୍ୟାନ୍ୟ ସ୍ୱେଚ୍ଛାଚାରୀ ଶାସକଙ୍କ ବିରୁଦ୍ଧରେ ଗଣ-ସଂଗ୍ରାମ, ଜାତୀୟ ଅତ୍ୟାଚାର ବିରୁଦ୍ଧରେ ସାଧାରଣ ଗଣତାନ୍ତ୍ରିକ ଆନ୍ଦୋଳନ—ଏ ସମସ୍ତ ଗୋଟିଏ ବିଶ୍ୱ-ବୈପ୍ଳବିକ ପ୍ରକ୍ରିୟା ପ୍ରବାହରେ ସମ୍ମିଳିତ ହୋଇ ପୁଞ୍ଜିବାଦକୁ ଦୁର୍ବଳ ଓ ଧ୍ୱଂସ କରୁଛି ।

ଲେନିନ ଆମର ଯୁଗକୁ ଠିକ ଆଖ୍ୟା ଦେଇ କହନ୍ତି—ଏହା ହେଉଛି, ମନୁଷ୍ୟ ସମାଜର ପୁଞ୍ଜିବାଦରୁ ସମାଜବାଦକୁ ପରିଗମନର ଯୁଗ ।

୧୯୬୦ର କମ୍ୟୁନିଷ୍ଟ ଓ ଓ୍ୟାର୍କର୍ସ ପାର୍ଟି ପ୍ରତିନିଧି ସମ୍ମିଳନୀର ଇସ୍ତାହାର ଘୋଷଣା କରିଛି—"ଆମ ସମୟର କେନ୍ଦ୍ର, ବିଷୟବସ୍ତୁ ହେଉଛି, ଆନ୍ତର୍ଜାତୀୟ ଶ୍ରମିକଶ୍ରେଣୀ ଓ ତାର ପ୍ରଧାନ ସୃଷ୍ଟି—ବିଶ୍ୱ ସମାଜବାଦୀ ବ୍ୟବସ୍ଥା ।"

ତେଣୁ, ବିଶ୍ୱବୈପ୍ଳବିକ ପ୍ରକ୍ରିୟାର କେନ୍ଦ୍ରସ୍ଥଳୀ ଯେ ଜାତୀୟ ମୁକ୍ତି ଆନ୍ଦୋଳନର ଅଞ୍ଚଳକୁ ସ୍ଥାନାନ୍ତରିତ ହୋଇଛି, ଏହି ଭ୍ରାନ୍ତ ଧାରଣାକୁ ପୃଥିବୀର ସର୍ବାଧିକ ସଂଖ୍ୟକ କମ୍ୟୁନିଷ୍ଟ ପ୍ରତ୍ୟାଖାନ କରନ୍ତି । ଏହି ଦାବୀ ସୂତ୍ରପୂର୍ବ ଭୁଲ, ଏହା ମାର୍କସବାଦ ଲେନିନବାଦର ସେହି ମୌଳିକ ସତ୍ୟର ବିରୋଧୀ, ଯେଉଁ ମୌଳିକ ସତ୍ୟ ହେଉଛି—କେବଳ ଆନ୍ତର୍ଜାତୀୟ ଶ୍ରମିକଶ୍ରେଣୀ ଓ ତାର ପ୍ରଧାନ ଅବଲମ୍ବନ ବିଶ୍ୱ-ସମାଜବାଦୀ ବ୍ୟବସ୍ଥା ହିଁ ବିଶ୍ୱବୈପ୍ଳବିକ ପ୍ରକ୍ରିୟାକୁ ପରିଚାଳିତ କରିପାରେ—କେବଳ ଏହି ସତ୍ତାର ଭିତ୍ତିରେ ହିଁ ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନ ବିଜୟମଣ୍ଡିତ ହୋଇ ପାରେ । ଏସିଆ ଆଫ୍ରିକା ଓ ଲାଟିନ ଆମେରିକାର ସଂଗ୍ରାମକାରୀ ଲୋକମାନଙ୍କୁ, ସମାଜବାଦୀ ଦେଶ ଓ ବିଶ୍ୱଶ୍ରମିକ ଆନ୍ଦୋଳନ ଆଗରେ ପ୍ରତିପକ୍ଷ ଭାବରେ ଦର୍ଶାଇବାର ଅର୍ଥ, ଶ୍ରମିକମାନଙ୍କର ଶ୍ରେଣୀଗତ ଆସ୍ଥାନ ବା ସ୍ଥିତିକୁ ପରିତ୍ୟାଗ କରିବା; ବୁର୍ଜୁଆମାନଙ୍କ ହାତରେ ବିଶ୍ୱବୈପ୍ଳବିକ ସଂଗ୍ରାମର ଭାଗ୍ୟଡୋର ଅର୍ପଣ କରିବା, ସାମାଜିକ ଓ ଜାତୀୟ ମୁକ୍ତି ଲାଗି ଲୋକଙ୍କର ସଂଗ୍ରାମକୁ ବିପନ୍ନସଙ୍କୁଳ କରିବା ଏବଂ ସାମ୍ରାଜ୍ୟବାଦୀ ଓ ଔପନିବେଶବାଦୀଙ୍କ ସ୍ୱାର୍ଥର କଳକୁ ଚୋଳିଙ୍କ କରିବା ବା ସେମାନଙ୍କୁ ସୁଯୋଗ ଦେବା !

ବୈପ୍ଳବିକ ଶକ୍ତିମାନଙ୍କର ବର୍ତ୍ତମାନର ଶ୍ରେଣୀବିନ୍ୟାସ ସମ୍ବନ୍ଧରେ ଏହି ଭ୍ରାନ୍ତ ଧାରଣାକୁ ବିଶ୍ୱ-କମ୍ୟୁନିଷ୍ଟ ଆନ୍ଦୋଳନ ବିରୋଧ କରୁଛି । ଏହା ସର୍ବଦା ବିଶ୍ୱାସ କରି ଆସିଛି ଯେ, ଜାତୀୟ ମୁକ୍ତି ଆନ୍ଦୋଳନର ସଫଳତା, ଶାନ୍ତି, ଗଣତନ୍ତ୍ର ଓ ସାମ୍ୟବାଦ ଲାଗି ଲୋକଙ୍କ ବୈପ୍ଳବିକ ସଂଗ୍ରାମର ଭାଗ୍ୟ, ବିଶ୍ୱ-ସମାଜବାଦର ଶକ୍ତି ଉପରେ ଓ ସମାଜବାଦ ଓ ସାମ୍ରାଜ୍ୟବାଦ ମଧ୍ୟରେ ରହିଥିବା ବିଶ୍ୱକ୍ଷେତ୍ରରେ ଶକ୍ତିର ଭାରସାମ୍ୟ ଉପରେ ନିର୍ଭର କରେ ।

## ବିଶ୍ୱ ପୁଞ୍ଜିବାଦର ସଂକଟ

ପୁଞ୍ଜିବାଦ, କ୍ଷୟ ଆଉ ପତନର ସୁଦୂରପ୍ରସାରୀ ପ୍ରକ୍ରିୟା ମଧ୍ୟରେ ପଡ଼ିଛି; ତାର ଅସ୍ତ ଘଟୁଛି, ତାର କାଳ ପୂରି ଆସୁଛି । ଅନ୍ୟ ଭାଷାରେ କହିଲେ, ପୁଞ୍ଜିବାଦୀ ଦୁନିଆ ସାଧାରଣ ସଂକଟର ତୀବ୍ର ଯନ୍ତ୍ରଣାରେ ଛଟପଟ ହେଉଛି ।

ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮) ଓ ମହାନ ଅକ୍ଟୋବର ସମାଜବାଦୀ ବିପ୍ଳବର ବିଜୟ, ପୁଞ୍ଜିବାଦ ଲାଗି ସାଧାରଣ ସଂକଟ ଆଣିଥିଲା । ପୁଞ୍ଜିବାଦ ଆଉ ଏକମାତ୍ର ବିଶ୍ୱ ବ୍ୟବସ୍ଥା ହୋଇ ରହିଲା ନାହିଁ । ପୁରୁଣା ମୃତ୍ୟୁମୁଖୀ ବ୍ୟବସ୍ଥାର ପାଖେ ପାଖେ ନୂତନ ବର୍ଦ୍ଧିଷ୍ଣୁ ସମାଜବାଦୀ ବ୍ୟବସ୍ଥାର ଆବିର୍ଭାବ ଘଟିଲା । ପୃଥିବୀର ପ୍ରଥମ ସମାଜବାଦୀ ରାଷ୍ଟ୍ର—ସୋଭିଏତ ୟୁନିଅନ, ସମସ୍ତ ସାମ୍ରାଜ୍ୟବାଦୀ ଆକ୍ରମଣ ସମ୍ମୁଖରେ ଠିଆ ହେଲା, ନିଜର ବଞ୍ଚି ରହିବାର ବଳ ଓ ଅପରାଜେୟ ଶକ୍ତିର ପରିଚୟ ଦେଲା ।

ଦୁଇଟି ବ୍ୟବସ୍ଥା ଦ୍ୱାରା ପୃଥିବୀ ଭାଗ ଭାଗ ହୋଇଛି, ସେ ଦୁଇଟି ବ୍ୟବସ୍ଥା ମଧ୍ୟରେ ସଂଗ୍ରାମ ହେଉଛି—ପୁଞ୍ଜିବାଦର ସାଧାରଣ ସଂକଟର ମୁଖ୍ୟ ବିଷୟବସ୍ତୁ ।

ପୁଞ୍ଜିବାଦର ସାଧାରଣ ସଂକଟର ଦ୍ୱିତୀୟ ପର୍ଯ୍ୟାୟ, ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ଏସିଆ ଇଉରୋପର ବହୁ ଦେଶରେ ସମାଜବାଦୀ ବିପ୍ଳବ ସମୟ ଭିତରେ ବୃଦ୍ଧି ପାଇଲା । ଫାସିଷ୍ଟ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ପରାଜୟ; ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ଆବିର୍ଭାବ; ଏସିଆ, ଆଫ୍ରିକା ଓ ଲାଟିନ ଆମେରିକା ଲୋକମାନଙ୍କର ଜାତୀୟ ମୁକ୍ତି ଆନ୍ଦୋଳନର ସଫଳତା ହେତୁ ପୁଞ୍ଜିବାଦୀ ଶାସନର ପ୍ରାଧାନ୍ୟ ବହୁ ପରିମାଣରେ ସଂକୁଚିତ ହେଲା ଏବଂ ପୁଞ୍ଜିବାଦର ବିରୋଧିତା ଅଧିକ ତୀବ୍ର ହୋଇ ଉଠିଲା ।

ଗୋଟିଏ ଦେଶର ସୀମା ଡେଇଁ ସମାଜବାଦର ବିସ୍ତାର, ଏକ ବିଶ୍ୱ ବ୍ୟବସ୍ଥା ଭାବେ ତାର ବିକାଶ, ପୁଞ୍ଜିବାଦର ମୌଳିକ ବିରୋଧିତାର ଉତ୍ତରୋତ୍ତର ପ୍ରକୋପ

ବୃଦ୍ଧି ଏବଂ ସମାଜବାଦ ସପକ୍ଷ ଶକ୍ତିମାନଙ୍କ ସପକ୍ଷରେ ସାମ୍ୟର ପରିବର୍ତ୍ତନ—ଏହା ହେଉଛି, ପୁଞ୍ଜିବାଦର ସାଧାରଣ ସଂକଟର ଦ୍ୱିତୀୟ ପର୍ଯ୍ୟାୟର ପ୍ରଧାନ ବିଶେଷତ୍ୱ, ପ୍ରଧାନ ଗୁଣପ୍ରକୃତି ।

ଏବେ ବିଶ୍ୱ-ପୁଞ୍ଜିବାଦ, ତାର ସାଧାରଣ ସଂକଟର ତୃତୀୟ ପର୍ଯ୍ୟାୟରେ ପ୍ରବେଶ କରିଛି । ଏହି ପର୍ଯ୍ୟାୟର ପ୍ରଧାନ ବିଶେଷତ୍ୱ, ପ୍ରଧାନ ଗୁଣପ୍ରକୃତି ହେଉଛି—ଏହା ବିଶ୍ୱଯୁଦ୍ଧ ଫଳରେ ସମ୍ଭବ ହୋଇନାହିଁ, ଏହା ଦୁଇ ବ୍ୟବସ୍ଥା ମଧ୍ୟରେ ଶାନ୍ତିପୂର୍ଣ୍ଣ ପ୍ରତିଦ୍ୱନ୍ଦିତା ଅବସ୍ଥାରେ ସମାଜବାଦ ସପକ୍ଷବାଦୀ 'ଶକ୍ତି'ସବୁର କ୍ରମାଗତ ସପକ୍ଷରେ ସାମ୍ୟର ପରିବର୍ତ୍ତନ ଓ ସାମ୍ରାଜ୍ୟବାଦର ସମସ୍ତ ବିରୋଧିତାର ତୀବ୍ର ପ୍ରକୋପ ଫଳରେ ଦେଖାଦେଇଛି ।

ବର୍ତ୍ତମାନ ଅବସ୍ଥାରେ ପୁଞ୍ଜିବାଦର ସାଧାରଣ ସଂକଟର ଚରିତ୍ର ହେଉଛି:—

ପ୍ରଥମରେ, ଅଧିକରୁ ଅଧିକ ସଂଖ୍ୟକ ଦେଶ ପୁଞ୍ଜିବାଦ କବଳରୁ ଖସି ଯାଉଛନ୍ତି, ସମାଜବାଦ ସହିତ ଅର୍ଥନୈତିକ ପ୍ରତିଦ୍ୱନ୍ଦିତାରେ ସାମ୍ରାଜ୍ୟବାଦର ଅବସ୍ଥା ଦୁର୍ବଳ ହୋଇ ପଡ଼ୁଛି । ଦ୍ୱିତୀୟରେ, ସାମ୍ରାଜ୍ୟବାଦର ଔପନିବେଶିକ ବ୍ୟବସ୍ଥା ଭାଙ୍ଗି ପଡ଼ୁଛି, ଔପନିବେଶିକବାଦୀମାନଙ୍କ ବିରୁଦ୍ଧରେ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକା ଲୋକମାନଙ୍କ ମୁକ୍ତିସଂଗ୍ରାମ ଦୃଢ଼ଭାବେ ପ୍ରସାରିତ ହେଉଛି ।

ତୃତୀୟରେ, ସାମ୍ରାଜ୍ୟବାଦରେ ଥିବା ସମସ୍ତ ଅନ୍ତର୍ଦ୍ୱନ୍ଦ, ସମସ୍ତ ବିରୋଧିତାର ଆହୁରି ଅଧିକ ବୃଦ୍ଧି ପାଉଛି, ପୁଞ୍ଜିବାଦୀ ଅର୍ଥନୀତିରେ ଅଧିକରୁ ଅଧିକ କ୍ଷୟ ଓ ଆଭ୍ୟନ୍ତରୀଣ ଅସ୍ଥିରତା ଦେଖାଦେଉଛି, ଶ୍ରମ ଓ ପୁଞ୍ଜି ମଧ୍ୟରେ ସଂଗ୍ରାମ ବୃଦ୍ଧି ପାଉଛି, ସମସ୍ତ କ୍ଷେତ୍ରରେ ରାଜନୈତିକ ପ୍ରତିକ୍ରିୟା ଅଭୂତପୂର୍ବ ଭାବେ ତୀବ୍ର ହୋଇ ଉଠୁଛି, ବୁର୍ଜୁଆ ଗଣତାନ୍ତ୍ରିକ ସ୍ୱାଧୀନତାକୁ ଦଳନ କରାଯାଉଛି, କେତେକ ଦେଶରେ ବର୍ବର ଫାସିଷ୍ଟ ରାଜତ୍ୱର ପ୍ରତିଷ୍ଠା ହେଉଛି ଏବଂ ବୁର୍ଜୁଆ ନୀତି ଓ ଭାବାଦର୍ଶ ଏକ ଗଭୀର ସଙ୍କଟରେ ପଡ଼ୁଛି ।

ଏହି ସାଧାରଣ ସଙ୍କଟ ସମଗ୍ର ଭାବେ ପୁଞ୍ଜିବାଦୀ ବ୍ୟବସ୍ଥାକୁ, ତାର ଅର୍ଥନୀତି, ରାଷ୍ଟ୍ର ବ୍ୟବସ୍ଥା, ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତି ଏବଂ ଭାବାଦର୍ଶକୁ ଗ୍ରାସ କରିଛି ଏହା ଏକ ଆକସ୍ମିକ ବା ସାମୟିକ, ଭୁଲିଯିବାର ବ୍ୟାପାର ନୁହେଁ,—ଏହା ଏକ ବହୁ ପୁରାତନ ଓ ଅରୋଗ୍ୟସାଧ୍ୟ ବ୍ୟାଧି । ପୁଞ୍ଜିବାଦ ଏକ ଆଶାଶୂନ୍ୟ ରୋଗଗ୍ରସ୍ତ ଲୋକ ଭଳି, ଯାହାକୁ କ କୌଣସି ଡାକ୍ତର ଓ ଔଷଧ ଆରୋଗ୍ୟ କରି ପାରିବ ନାହିଁ ।

ବିଶ୍ୱ ପୁଞ୍ଜିବାଦୀ ବ୍ୟବସ୍ଥାର ସାଧାରଣ ସଙ୍କଟ, ସେହି ପୁଞ୍ଜିବାଦୀ ବ୍ୟବସ୍ଥାର ପତନ ଓ ମୃତ୍ୟୁକୁ ହିଁ ଘୋଷଣା କରେ । ପୁଞ୍ଜିବାଦୀ ଦେଶମାନଙ୍କରେ ଅର୍ଥନୀତିର

ବର୍ଦ୍ଧିଷ୍ଣୁ ଅସ୍ଥିରତା ହେଉଛି, ଏହି ପ୍ରକ୍ରିୟାର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରକାଶ । ଅର୍ଥନୈତିକ ବୃଦ୍ଧିର ବେଗ, ମନ୍ଥର ହୋଇଯାଉଛି । ଅର୍ଥନୈତିକ ସଂକଟ ବାରମ୍ବାର ଘନଘନ ଭାବରେ ଦେଖା ଦେଉଛି । ଉଦାହରଣ ସ୍ୱରୂପ, ଯୁକ୍ତରାଷ୍ଟ୍ର ଆମେରିକା, ଗତ ଯୁଦ୍ଧଠାରୁ ସାତୋଟି ସଂକଟରେ ଗତି କଲାଣି । ବ୍ୟବହାର ହୋଇ ନ ପାରି ପଡ଼ିରହିଥିବା ଶିଳ୍ପ ଶକ୍ତି ବ୍ୟତିକ୍ରମ ନ ହୋଇ ଏକ ନିୟମରେ ପରିଣତ ହେଲାଣି । ସଂକଟ ସମୟରେ କେତେକ ଶିଳ୍ପର ଉତ୍ପାଦନ କ୍ଷମତା ଅଧାରୁ ଅଧିକ ପୁଞ୍ଜି ବ୍ୟବହୃତ ହେଉନାହିଁ । କୃଷି ଉତ୍ପାଦନକୁ କୃତ୍ରିମ ଭାବେ କମାଇ ଦିଆଯାଉଛି ।

ବହୁ ଦେଶରେ ବ୍ୟାପକ ଗଣ ବେକାର ସମସ୍ୟା ଏକ ସ୍ଥାୟୀ ବୈଶିଷ୍ଟ୍ୟରେ ପରିଣତ ହେଲାଣି । ଉଦାହରଣ ସ୍ୱରୂପ ଯୁକ୍ତରାଷ୍ଟ୍ର ଆମେରିକାରେ କର୍ମ-ଅନୁସନ୍ଧାନକାରୀ ବା କାମ-ଖୋଜାଳିଙ୍କ ସଂଖ୍ୟା କ୍ୱଚିତ୍ ୩୦ ଲକ୍ଷରୁ ତଳକୁ ଖସିଛି । ସର୍ବମୋଟ ୮୫୦ ଲକ୍ଷ ଶିଳ୍ପ-ଶ୍ରମିକମାନଙ୍କ ଭିତରେ ଉତ୍ତର ଆମେରିକା, ପଶ୍ଚିମ ଇଉରୋପ, ଜାପାନ, ଅଷ୍ଟ୍ରେଲିଆ ପ୍ରଭୃତି ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କରେ ୮୦ ରୁ ୧୦୦ ଲକ୍ଷ ବେକାର ରହିଛନ୍ତି । ଏମାନଙ୍କ ସହିତ କୃଷିକ୍ଷେତ୍ରର ବେକାର ଓ ନିଃସ୍ୱ ସର୍ବହାନ୍ତ ବୃତ୍ତୀମାନଙ୍କ ସଂଖ୍ୟା ଯୋଗ କରାଯିବା ଉଚିତ । କାରଣ, ଏମାନଙ୍କ ହିସାବ, ସରକାରୀ ତଥ୍ୟ ବିଭାଗ ବିବରଣୀକୁ ନିଏ ନାହିଁ ।

ନିକଟରେ ଏବେ, ବୈଜ୍ଞାନିକ ଓ ଟେକ୍ନିକାଲ ବିକାଶର ଜୁଆର ଛୁଟିଛି । ଏକ ପ୍ରକାର ବୈଜ୍ଞାନିକ ଟେକ୍ନିକାଲ ବିପ୍ଳବ ଦେଖାଦେଇଛି । ଅଣୁଶକ୍ତି, ଇଲେକ୍ଟ୍ରୋନିକ୍ସ, ଓ ରକେଟ ବିଦ୍ୟା କ୍ଷେତ୍ରରେ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଅଗ୍ରଗତି ସାଧିତ ହୋଇଛି ।

ପୁଞ୍ଜିବାଦ 'ସୁଉନ୍ନତ' କରି ମହାନ ବୈଜ୍ଞାନିକ, ଆବିଷ୍କାରକ ଓ ଉଦ୍ଭାବକମାନଙ୍କୁ ନିଯୁକ୍ତ କରୁଥିବାରୁ ପ୍ରଧାନ ବୈଜ୍ଞାନିକ ଓ ଟେକ୍ନିକାଲ କୃତିତ୍ୱଗୁଡ଼ିକର ଯଥାର୍ଥ ବ୍ୟବହାରକୁ ବାଧା ଦେଉଛି । ଅଣୁଶକ୍ତିର ଆବିଷ୍କାର, ଯନ୍ତ୍ରଶକ୍ତି, ତା ହାତରେ ଫଳ ପ୍ରଦାନ କରି ପାରନ୍ତା, କିନ୍ତୁ ପୁଞ୍ଜିବାଦ, ଲୋକଙ୍କ କ୍ଷତିସହ ଭଳି ସାମରିକ ଉଦ୍ଦେଶ୍ୟରେ ତାକୁ ବ୍ୟବହାର କରୁଛି, ଏବଂ ତଦ୍ୱାରା ପ୍ରତିଷ୍ଠିତ ବିରୋଧିତାକୁ ଅଧିକ ବୃଦ୍ଧି କରୁଛି । ପୁଞ୍ଜିବାଦୀ ସ୍ୱୟଂକ୍ରିୟତା ଲକ୍ଷ ଲକ୍ଷ ଶ୍ରମିକଙ୍କୁ ଶିଳ୍ପ ଧନ୍ଦାରୁ ବାହାରେ ବେକାର ଭିଡ଼ ମଧ୍ୟକୁ ଫିଙ୍ଗି ଦେଉଛି ।

ସାମ୍ରାଜ୍ୟବାଦମାନେ, ଅସ୍ତ୍ରଶସ୍ତ୍ରର ବୃଦ୍ଧି ଓ ଅର୍ଥନୀତିର ସାମରିକୀକରଣ ଏହି ମାର୍ଗରେ ଉଦ୍ଧାର ପାଇବାର ଉଦ୍ୟମ କରୁଛନ୍ତି ।

ସମର-ମୁଖୀ ଅର୍ଥନୀତି, ଯୁଦ୍ଧ ଜିନିଷ ତିଆରି କରୁଥିବା ଏକଚାଟିଆ ବୃହତ୍ ଧନୀମାନଙ୍କୁ ସୁଯୋଗ ଦେଉଛି । ସେମାନଙ୍କୁ ପ୍ରଚୁର ମୁନାଫା ଯୋଗାଉଛି ।

ଏହି ସମରମୁଖୀ ଅର୍ଥନୀତିରୁ ଅନ୍ୟ ବିଷୟର ଅର୍ଥନୀତିର କିଛି ଲାଭ ହେଉନାହିଁ । ଧ୍ୱଂସର ଅସ୍ତ୍ର ତିଆରି କରିବାରେ ସାମ୍ରାଜ୍ୟବାଦୀମାନେ ବିଶାଳ ଅର୍ଥ ଓ ଲୋକଶକ୍ତି ନଷ୍ଟ କରୁଛନ୍ତି । ଯୁକ୍ତରାଷ୍ଟ୍ର ଆମେରିକାରେ ୧୯୪୬ ରୁ ୧୯୭୨ ମଧ୍ୟରେ ପ୍ରତ୍ୟକ୍ଷ ଓ ପରୋକ୍ଷ ସାମରିକ ବାବଦ ବ୍ୟୟର ପରିମାଣ ଥିଲା ପ୍ରାୟ ୯୦୦୦୦ କୋଟି ଡୋଲାର । ଗତ ଦ୍ୱିତୀୟ ବିଶ୍ୱ-ଯୁଦ୍ଧରେ ସମସ୍ତ ପୁଞ୍ଜିପତି ଦେଶମାନେ ଯେତେ ଖର୍ଚ୍ଚ କରିଥିଲେ, ଏହା ପ୍ରାୟ ତା' ସହିତ ସମାନ । ଉତ୍ତର ଆଟଲାଣ୍ଟିକ ମେଣ୍ଟର ବା ନାଟୋ ଦେଶମାନେ ପ୍ରତି ଦଶ ମିନିଟରେ ଯୁଦ୍ଧ ପ୍ରସ୍ତୁତି ଦିଗରେ ଖର୍ଚ୍ଚ କରୁଛନ୍ତି ୧୦ ଲକ୍ଷ ଡୋଲାର ।

ଯୁଦ୍ଧ ଉତ୍ପାଦନ ଲାଗି ବ୍ୟୟ ଯେତେ ଅଧିକ ହେଉଛି, ପୁଞ୍ଜିବାଦର ଅର୍ଥନୀତି ସେତେ ବେଶୀ ଅସ୍ଥିର ହୋଇଉଠୁଛି, ତାର ଅନ୍ତଃବିରୋଧ ସେତେ ଅଧିକ ତୀବ୍ର ହେଉଛି । ଯେଉଁ ବ୍ୟବସ୍ଥା ଅସ୍ତ୍ରର ପ୍ରସାର ଓ ପରମାଣୁ ଯୁଦ୍ଧର ପ୍ରସ୍ତୁତି ଦ୍ୱାରା ଆପଣାର ପରମାୟୁ ବୃଦ୍ଧି କରିବାକୁ ଚାହେଁ, ସେହି ବ୍ୟବସ୍ଥା କେବେହେଲେ ଲୋକପ୍ରିୟ ସମର୍ଥନ ଉପରେ ଭରସା କରି ନ ପାରେ । ଅଧିକରୁ ଅଧିକ ଲୋକ ଉପଲବ୍ଧି କରୁଛନ୍ତି ଯେ, ମାନବ ସମାଜର ପ୍ରଗତି ମାର୍ଗରେ ପୁଞ୍ଜିବାଦ ହିଁ ପ୍ରଧାନ ପ୍ରତିବନ୍ଧକ ।

ସାମ୍ରାଜ୍ୟବାଦୀମାନେ ଗୋଟାଏ ପୁରୁଷର ଜୀବନକାଳ ମଧ୍ୟରେ ଦୁଇଟା ବିଶ୍ୱ-ଯୁଦ୍ଧ ଲଗାଇ ଦେଇଛନ୍ତି । ଏଥିଲାଗି ମନୁଷ୍ୟସମାଜକୁ କି ମୂଲ୍ୟ ବା ଦେବାକୁ ପଡ଼ିନ !

ସେହି କଳନାତୀତ ଧ୍ୱଂସର ଲୀଳା କଥା ଛାଡ଼ ! ଗଣନା ଅନୁସାରେ ୮ କୋଟି ଲୋକ ମୃତ ଓ ପଙ୍ଗୁ ହୋଇଥିଲେ ସମାଜକୁ ଏହି ମୂଲ୍ୟ ଦେବାକୁ ପଡ଼ିଛି । ସାମ୍ରାଜ୍ୟବାଦୀଙ୍କ ଜନ-ବିରୋଧୀ ଆକ୍ରମଣାତ୍ମକ ଷଡ଼ ଫଳରେ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ (୧୯୦୦-୫୦, ୪ ୦୦ ୦୦୦ କୋଟି ଡୋଲାର ଖର୍ଚ୍ଚ ହୋଇଛି ପୃଥିବୀରେ ଯୁଦ୍ଧ ଚଳାଇବାରେ ଓ ତାର ପ୍ରସ୍ତୁତିରେ । ଏହି ଅର୍ଥ ଆମ ପୃଥିବୀର ଅଧିବାସୀମାନଙ୍କ ଅର୍ଦ୍ଧ ଶତାବ୍ଦୀ ଧରି ବିନା ପଇସାରେ ଖାଦ୍ୟ ଯୋଗାଇ ପାରିଥାନ୍ତା, କିମ୍ବା ୫୦ କୋଟି ପରିବାର, ଅର୍ଥାତ୍ ପୃଥିବୀର ଦୁଇ ତୃତୀୟାଂଶ ଲୋକଙ୍କ ଲାଗି ଅତି ଉତ୍ତମ ବାସଗୃହ ଯୋଗାଇ ଦେଇ ପାରିଥାନ୍ତା ।

ମନୁଷ୍ୟ ସମାଜ ପ୍ରତିବର୍ଷ ୧୨୦୦୦ କୋଟି ଡୋଲାର ସାମରିକ ଉଦ୍ଦେଶ୍ୟରେ ବ୍ୟୟ କରୁଛି । ଯଦି ଏହି ଅର୍ଥର ଏକ ପଞ୍ଚମାଂଶ ଅନୁନ୍ନତ ଦେଶମାନଙ୍କର ଅର୍ଥନୀତିର ଉନ୍ନତି ବିଧାନ ଦିଗରେ ବ୍ୟୟ ହୁଅନ୍ତା, ତେବେ ୨୫ ବର୍ଷ ମଧ୍ୟରେ ୨୩ କୋଟି କିଲୋୱାଟ ଶକ୍ତିସମ୍ପନ୍ନ ବିଦ୍ୟୁତ କେନ୍ଦ୍ରର ପ୍ରତିଷ୍ଠା, ବର୍ଷକୁ ସାଢ଼େ ୧୮ କୋଟି ଇସ୍ପାତ ଉତ୍ପାଦନ କରିପାରୁଥିବା କଳ କାରଖାନା ନିର୍ମାଣ, ୧୦ କୋଟିରୁ




ବର୍ତ୍ତମାନର ଛଦ୍ମବେଶ

ଝଞ୍ଝ ହେକ୍‌ଟର ଜମିର ଓ ଲୋକଙ୍କର ଉନ୍ନତ ବିଧାନ—ଏହି ଭଳି ଅନ୍ୟାନ୍ୟ ବହୁତ ବା ଅଚଳଣରେ ସମ୍ପନ୍ନ ହେବା ସମ୍ଭବ ହୋଇ ପାରନ୍ତା ।

ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥାର କାଳ ଶେଷ ହୋଇ ଆସିଲଣି, ଏହା ଲୋକଙ୍କ ମୁଖ୍ୟ ସ୍ୱାର୍ଥ ବିରୋଧରେ ହିଁ କାର୍ଯ୍ୟ କରୁଛି ।

ଏକ ସମୟରେ, ବୁର୍ଜୁଆ ତାର ଯୌବନାବସ୍ଥାରେ ସାମ୍ୟ, ମୈତ୍ରୀ ସ୍ୱାଧୀନତାର ମହାନ ସ୍ଲୋଗାନ ଦେଇ କ୍ଷମତାକୁ ଉଠିଥିଲା । ଏହା ପୁଣି ସତ୍ୟ ଯେ,

ଏମିତିକି ସେତେବେଳେ ମଧ୍ୟ ସାମନ୍ତବାଦୀ ସଭ୍ରାନ୍ତମାନଙ୍କୁ ଚପିଚପୁଡ଼ି ନିଜେ କ୍ଷମତାକୁ ଆସିବାର ଏକ କୌଶଳ ଭାବରେ କେବଳ ସେମାନଙ୍କୁ ହିଁ ଶୋଷଣ କରୁଥିଲା । ତେବେ ଆରମ୍ଭରୁ ହିଁ ବୁର୍ଜୁଆ ଶାସନ, ସାମାଜିକ ଓ ଅର୍ଥନୈତିକ ଅସମତା ସୃଷ୍ଟି କରୁଛି । ସମ୍ପତ୍ତିବାନ୍ ଶ୍ରେଣୀ ଓ ଶ୍ରମଜୀବୀ ଲୋକମାନଙ୍କ ମଧ୍ୟରେ ଦୂରତ୍ୱଟା ଏଣୁ କ୍ରମାଗତ ବୃଦ୍ଧି ପାଇଆସିଛି ।

ବୁର୍ଜୁଆ କ୍ଷମତାରେ ଅଧିରୂଢ଼ ହେବା ସଙ୍ଗରେ ସମତା ଓ ଭ୍ରାତୃତ୍ୱ ଆସିନାହିଁ, ଆସିଛି, ତୀବ୍ର ଶ୍ରେଣୀସଂଘର୍ଷ ।

ଆଜି ସାମ୍ରାଜ୍ୟବାଦୀମାନେ ଅଧିକରୁ ଅଧିକ ନିଜର ପ୍ରତିକ୍ରିୟାଶୀଳ, ଲୋକବିରୋଧୀ ମର୍ମକୁ ପ୍ରକାଶ କରୁଛନ୍ତି । ପୂର୍ବେ ଲୋକେ ହାସଲ କରିପାରିଥିବା ସୀମାବଦ୍ଧ ବୁର୍ଜୁଆ ଗଣତାନ୍ତ୍ରିକ ସ୍ୱାଧୀନତାକୁ ମଧ୍ୟ ସେମାନେ ସହ୍ୟ କରିପାରୁନାହାନ୍ତି । ଶ୍ରମିକଶ୍ରେଣୀ ଆନ୍ଦୋଳନର ବିଶାଳ ପରିସର, ବର୍ଦ୍ଧିଷ୍ଣୁ କୃଷକ ଆନ୍ଦୋଳନ ଓ ଗଣତନ୍ତ୍ରର ସମର୍ଥନରେ ପ୍ରଗତିଶୀଳ ଶକ୍ତିମାନଙ୍କର ଗଣବିକ୍ଷୋଭ—ଏସବୁର ଫଳରେ ଭୟଭୀତ ହୋଇ ସାମ୍ରାଜ୍ୟବାଦୀ ବୁର୍ଜୁଆମାନେ ଦିନକୁ ଦିନ ଅତ୍ୟନ୍ତ ପ୍ରତିକ୍ରିୟାଶୀଳ ଏକଛତ୍ର ଶାସନର ରୂପରେ ପ୍ରକାଶ ପାଉଛନ୍ତି ।

ଯୁକ୍ତରାଷ୍ଟ୍ର ଆମେରିକାର ଏକଚାଟିଆ ପୁଞ୍ଜିପତିମାନେ ହେଉଛନ୍ତି, ଅନ୍ତର୍ଜାତୀୟ ପ୍ରତିକ୍ରିୟାର ମୁଖ୍ୟ ପ୍ରତିରକ୍ଷା ଶକ୍ତି । ଜନବିରୋଧୀ ଏକଛତ୍ର ଶାସନକୁ ସମର୍ଥନ ଦେଇ, ଭୁଷୁଡ଼ି ପଡ଼ୁଥିବା ରାଜଗାଦିକୁ ସବୁ ଠିଆ ଯୋଗାଇ, ଗଣତାନ୍ତ୍ରିକ ବୈପ୍ଳବିକ ପରିବର୍ତ୍ତନକୁ ସବୁ ବିରୋଧ କରି, ଏବଂ ଜାତୀୟ ଆଉ ସାମାଜିକ ମୁକ୍ତି ଲାଗି ଲଢ଼ୁଥିବା ଲୋକମାନଙ୍କୁ ଦମନ କରି, ଆମେରିକାର ସାମ୍ରାଜ୍ୟବାଦ ତାର ଆନ୍ତର୍ଜାତୀୟ ପୁଲିସ-ବାହିନୀର ଭୂମିକାକୁ କାର୍ଯ୍ୟକାରୀ କରୁଛି ।

ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ, ଫ୍ରାନ୍ସ, ପଶ୍ଚିମ ଜର୍ମାନୀ — ଏହି ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ସହିତ ଫାସିଷ୍ଟ ସ୍ପେନ, ବର୍ବର ଅତ୍ୟାଚାରୀ ପର୍ତ୍ତୁଗାଲ ଓ ଅନ୍ୟ ଦେଶମାନଙ୍କ, ବୁର୍ଜୁଆ ସମର୍ଥକମାନେ "ମୁକ୍ତ ଦୁନିଆ" ବୋଲି କହିଥାନ୍ତି । ସେଠାରେ ସବୁ "ପ୍ରକୃତ ଗଣତନ୍ତ୍ର" ବିଜୃତ ରହିଛି ବୋଲି ପ୍ରଚାର କରିଥାନ୍ତି । କିନ୍ତୁ ସେଠାର ସ୍ୱାଧୀନତା ହେଉଛି, ସେହି ସବୁ ଦେଶର ଶ୍ରମିକଶ୍ରେଣୀ ଓ ଶ୍ରମଜୀବୀ ଲୋକମାନଙ୍କ ମଧ୍ୟ କେବଳ ଶୋଷଣ କରିବାରେ ନୁହେଁ, ତା ସହିତ ପରାଧୀନ ଦେଶମାନଙ୍କୁ ମଧ୍ୟ ଶୋଷଣ କରିବାର ସ୍ୱାଧୀନତା ।

ବୃହତ ଏକଚାଟିଆ ପୁଞ୍ଜିପତିମାନେ ମୌଳିକ ଭୌତିକ ଉପାଦାନଗୁଡ଼ିକୁ ହସ୍ତଗତ କରି ନେଇଛନ୍ତି ଏବଂ ସେମାନଙ୍କ ଏକଛତ୍ର ଶାସନ କାଏମ କରିଛନ୍ତି ।



ସାମ୍ରାଜ୍ୟବାଦୀ ଜଗତର ନମୁନା

ମୁଷ୍ଟିମେୟ କୋଟିପତି ଓ ଅର୍ବୁଦପତିମାନେ ସଂଖ୍ୟାଧିକ ଲୋକଙ୍କ ଉପରେ ନିଜର ଶାସନ ଜାରି କରିଛନ୍ତି ।

ବୁର୍ଜୁଆ ପ୍ରଚାର, ପୁଞ୍ଜିବାଦୀ ଦେଶମାନଙ୍କରେ ଗଣତାନ୍ତ୍ରିକ ନିର୍ବାଚନ ବ୍ୟବସ୍ଥାର ଗୁଣଗାନ କରେ—କିନ୍ତୁ, ପ୍ରକୃତରେ ଜନସାଧାରଣ ଯେପରି ନିଜର ସ୍ୱାଧୀନ ମତ ପ୍ରକାଶ ନ କରିବେ, ସେମାନଙ୍କ ସ୍ୱାର୍ଥର ପ୍ରକୃତ ମୁଖପାତ୍ରଙ୍କୁ ନିର୍ବାଚନ ନ କରିବେ, ସେଥିଲାଗି ଏକଚାଟିଆ ପୁଞ୍ଜିପତିମାନେ ଯେତେ ଯାହା ପାରନ୍ତି, ତାହା କରନ୍ତି । ଅର୍ଥର ଜୋରରେ ସମ୍ବାଦପତ୍ର, ରେଡ଼ିଓ, ସିନେମା, ଟେଲିଭିଜନ ଭଳି ଶକ୍ତିଶାଳୀ ପ୍ରଚାରଯନ୍ତ୍ର ନିଜ ହାତରେ ରଖି, ଟ୍ରେଡ ୟୁନିୟନ ଓ ଅନ୍ୟାନ୍ୟ ଗଣ ସଂଗଠନମାନଙ୍କରେ ନିଜର ଦଲାଲମାନଙ୍କୁ ଲଗାଇ, ଏକଚାଟିଆ ପୁଞ୍ଜିପତିମାନେ

ଲୋକଙ୍କ ଭୂମିର ହରନ୍ତି, ବେପରୁଆମି କରନ୍ତି ଏବଂ ସେମାନଙ୍କ ନିଜର ପ୍ରାର୍ଥୀଙ୍କୁ ଭୋଟରମାନଙ୍କ ଉପରେ ଲଦି ଦିଅନ୍ତି ।

ଏପରିକି ଶ୍ରମଜୀବୀ ଲୋକେ, ଯେତେବେଳେ ପାର୍ଲିଆମେଣ୍ଟକୁ ସେମାନଙ୍କର ପ୍ରତିନିଧି ପଠାଇ ପାରନ୍ତି, ସେତେବେଳେ ଏକଚାଟିଆ ପୁଞ୍ଜିପତିମାନେ ନିର୍ବାଚନ ବ୍ୟବସ୍ଥାକୁ ବଦଳାଇବାକୁ ଚେଷ୍ଟା କରନ୍ତି କିମ୍ବା ତାଙ୍କ ସ୍ୱାର୍ଥର ପ୍ରତିକୂଳ ନିର୍ବାଚନକୁ ରଦ୍ଦ କରି ଦିଅନ୍ତି ।

ବହୁ ପାର୍ଟି ବ୍ୟବସ୍ଥା, ଗଣତନ୍ତ୍ରର ପ୍ରତିଫଳନ ବୋଲି କହି ବୁର୍ଜୁଆ ସମ୍ବାଦପତ୍ରମାନେ ତାର ଗୁଣଗାନ କରିଥାନ୍ତି । କିନ୍ତୁ ଅଧିକାଂଶ ସ୍ଥଳରେ ଯେଉଁ ସବୁ ରାଜନୈତିକ ଦଳ ପ୍ରତିକ୍ରିୟାଶୀଳ ବୁର୍ଜୁଆଙ୍କ ମନଲାଖି ହୁଏନାହିଁ, ସେମାନେ ତାକୁ ସବୁ ଦମନ କରି ଦିଅନ୍ତି । ପ୍ରକୃତରେ ପ୍ରଗତିଶୀଳ ଜନପ୍ରିୟ ପାର୍ଟିଗୁଡ଼ିକ ବିପକ୍ଷରେ, ସର୍ବୋପରି କମ୍ୟୁନିଷ୍ଟ ପାର୍ଟି ବିପକ୍ଷରେ, ସେମାନଙ୍କର ଏହି କାର୍ଯ୍ୟାନୁଷ୍ଠାନ ବିଶେଷ ଭାବରେ ଚାଲେ ।

ଯେପରି ୧୯୫୬ରେ କମ୍ୟୁନିଷ୍ଟ ପାର୍ଟିକୁ ପଶ୍ଚିମ ଜର୍ମାନୀରେ ବେଆଇନ ଘୋଷଣା କରାଯାଇଛି । ୧୯୬୮ରେ ଯୁକ୍ତରାଷ୍ଟ୍ର ଆମେରିକାରେ ମାକ୍‌କାରନ୍ ଆକ୍ଟ, କମ୍ୟୁନିଷ୍ଟ ପାର୍ଟି ଓ ଅନ୍ୟ ପ୍ରଗତିଶୀଳ ସଙ୍ଗଠନର କାର୍ଯ୍ୟକ୍ରମକୁ କାର୍ଯ୍ୟତଃ ବେଆଇନ କରିଛି । ତିରିଶରୁ ଅଧିକ ପୁଞ୍ଜିବାଦୀ ଦେଶରେ କମ୍ୟୁନିଷ୍ଟ ପାର୍ଟିମାନଙ୍କୁ ବେଆଇନ ଘୋଷଣା କରାଯାଇଛି । ସେମାନେ ଗୋପନରେ କାର୍ଯ୍ୟ କରିବାକୁ ବାଧ୍ୟ ହେଉଛନ୍ତି ।

ସାମ୍ରାଜ୍ୟବାଦୀ ବୁର୍ଜୁଆମାନେ କିନ୍ତୁ କେବଳ କମ୍ୟୁନିଷ୍ଟ ପାର୍ଟିକୁ ଆକ୍ରମଣ କରନ୍ତି ନାହିଁ; ଶାନ୍ତି, ଗଣତନ୍ତ୍ର, ଓ ଶ୍ରମଜୀବୀ ଲୋକଙ୍କର ମୂଳ ସ୍ୱାର୍ଥ ରକ୍ଷା କରୁଥିବା ପ୍ରଗତିଶୀଳ ସଂଗଠନଗୁଡ଼ିକ ପ୍ରତି ମଧ୍ୟ ଅତି କଠୋର ବ୍ୟବହାର କରନ୍ତି । ଅଥଚ, ପ୍ରତିକ୍ରିୟାଶୀଳ ବୁର୍ଜୁଆମାନେ ଶ୍ରମଜୀବୀ ଲୋକମାନଙ୍କୁ ଆକ୍ରମଣ କରୁଥିବା ଫାସିଷ୍ଟ ସଙ୍ଗଠନମାନଙ୍କ ଲାଗି ରାସ୍ତା ସବୁ ଅବାଧ କରି ଦିଅନ୍ତି ।

ଶ୍ରମଜୀବୀ ଲୋକଙ୍କୁ ଦମନ କରିବା ଲାଗି ଏକଚାଟିଆ ପୁଞ୍ଜିପତିମାନେ ନିୟମିତ ଭାବେ ବଳ ପ୍ରୟୋଗ କରନ୍ତି । ଲୋକମାନଙ୍କ ସୋଧାରଣି ବିରୁଦ୍ଧରେ ଆଧୁନିକ ବୁର୍ଜୁଆ ଗଣତନ୍ତ୍ରର ଶେଷ ଅସ୍ତ୍ର ହେଉଛି—ପୁଲିସ ଓ ସୈନ୍ୟବାହିନୀ ।

ବର୍ତ୍ତମାନ, ଗଣ-ଆନ୍ଦୋଳନର ସମ୍ମୁଖୀନ ହୋଇ ବୁର୍ଜୁଆମାନେ ଅଧିକ ଘନ ଘନ ଫାସିଷ୍ଟ ଦମନ ବ୍ୟବସ୍ଥାର ଆଶ୍ରୟ ନେଉଛନ୍ତି । ଆମେରିକା, ବ୍ରିଟେନ୍ ଓ ଅନ୍ୟାନ୍ୟ ନାଟୋ ମେଣ୍ଟର ସଭ୍ୟ ଦେଶ ସ୍ପେନ, ପର୍ତ୍ତୁଗାଲର ଏକଛତ୍ର ଶାସନ ଏବଂ

ଦକ୍ଷିଣ କୋରିଆ, ଦକ୍ଷିଣ ଭିଏତ୍‌ନାମ ଓ ଅନ୍ୟାନ୍ୟ ପରାଧୀନ ଦେଶର ଅତ୍ୟାଚାରୀ ସୈନିକ୍ତନ୍ତ୍ରୀ ସରକାରମାନଙ୍କୁ ସମର୍ଥନ କରୁଛନ୍ତି ।

ଏ ସମସ୍ତ ହେଉଛି, ପୁଞ୍ଜିବାଦର ବର୍ଦ୍ଧିଷ୍ଣୁ ରାଜନୈତିକ ଅସ୍ଥିରତାର ସୂଚନା ।

ପୁଞ୍ଜିବାଦୀ ସାଧାରଣ ସଂକଟର ଉତ୍କଟତା, ପୁଞ୍ଜିବାଦୀ ଦେଶମାନଙ୍କର ଅର୍ଥନୈତିକ ବିକାଶର ବର୍ଦ୍ଧିଷ୍ଣୁ ଅସମତାରେ ପ୍ରତିଫଳିତ ହୁଏ । ତାହା ପୁଞ୍ଜିବାଦୀ ଦୁନିଆ ମଧ୍ୟରେ ଶକ୍ତିସାମ୍ୟର ବରାବର ପରିବର୍ତ୍ତନ ଆଣେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ, ସାମ୍ରାଜ୍ୟବାଦର ଅର୍ଥନୈତିକ, ରାଜନୈତିକ ଓ ସାମରିକ କେନ୍ଦ୍ର ଯୁକ୍ତରାଷ୍ଟ୍ର ଆମେରିକାକୁ ଘୁଞ୍ଚିଯାଇଛି ।

ଅନ୍ୟ ଯେକୌଣସି ଦେଶର ପୁଞ୍ଜିପତିଙ୍କଠାରୁ ଆମେରିକାର ଏକଚାଟିଆ ପୁଞ୍ଜିପତିମାନେ ଯୁଦ୍ଧ ଯୋଗୁଁ ମୁନାଫାରେ ଅଧିକ ଫୁଲି ଫୁଲି ଉଠିଛନ୍ତି । ସେମାନେ ଗୁରୁତ୍ୱପୂର୍ଣ୍ଣ କଞ୍ଚାମାଲର ଖଣି, ବଜାର ଓ ପୁଞ୍ଜି ଲଗାଣର କ୍ଷେତ୍ରମାନଙ୍କୁ ଦଖଲ କରିଛନ୍ତି । ଯୁକ୍ତରାଷ୍ଟ୍ର ଆମେରିକା ଏକ ପ୍ରକାର ଔପନିବେଶିକ ସାମ୍ରାଜ୍ୟ, ଏକ ବିଶ୍ୱ-ଶୋଷକ ଓ ପରାଧୀନ ବାହିନୀରେ ପରିଣତ ହୋଇଛି । ପୁଞ୍ଜିବାଦୀ ଦେଶମାନେ ଯେକୌଣସି ଗୋଟିଏ ଦେଶ ଯେତେ ଯୁକ୍ତରାଷ୍ଟ୍ର ଆମେରିକା ଉପରେ ନିର୍ଭରଶୀଳ, ତା ପାଖରେ ଋଣୀ । ନିୟମ ଅନୁସାରେ, ସବୁପ୍ରକାର ପ୍ରତିକ୍ରିୟାଶୀଳ ଲୋକେ ବିତାଡ଼ିତ ରାଜା ଓ ସମ୍ରାଟମାନେ, ଅତ୍ୟାଚାରୀ ଓ ଏକଛତ୍ର ଶାସକ ଦଳ, ବହିଷ୍କୃତ ପ୍ରତିକ୍ରିୟାଶୀଳ ପାର୍ଟିର 'ହାକିମ' ସବୁ ଏବଂ ଜନତାର ସ୍ୱାର୍ଥକୁ ଏଡ଼ି ଦେବା ନୀତି ଅନୁସରଣ କରିଥିବା ଯୁଦ୍ଧ-ଅପରାଧୀମାନେ—ଏ ସମସ୍ତେ ଯୁକ୍ତରାଷ୍ଟ୍ର ଆମେରିକାରେ ଆଶ୍ରୟ ପାଆନ୍ତି, ସାମ୍ରାଜ୍ୟବାଦୀମାନଙ୍କର ଆଦର ଅଭ୍ୟର୍ଥନା ପାଆନ୍ତି ।

ଯୁକ୍ତରାଷ୍ଟ୍ର ଆମେରିକା, ସବୁଠାରୁ ଏକ ସମରସଜ୍ଜାରେ ସଜ୍ଜିତ ପୁଞ୍ଜିବାଦୀ ଶକ୍ତିରେ ପରିଣତ ହୋଇଛି । ତାର ସାମରିକ ବଜେଟ ସର୍ବାଧିକ ହୋଇଛି । ଆମେରିକାର ଶାସକଗୋଷ୍ଠୀ ଖୋଲାଖୋଲି ଭାବରେ 'ବଳର ଦାବୀ' ଓ 'ଅସ୍ତ୍ରଶସ୍ତ୍ର କାର୍ଯ୍ୟକଳାପ' ମୂଳକ ନିଜର ଆନ୍ତର୍ଜାତୀକ ନୀତିକୁ ପୃଥିବୀର ସମସ୍ତ ସମାଜବାଦୀ ରାଷ୍ଟ୍ର, ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର ମୁକ୍ତି ଆନ୍ଦୋଳନ ଏବଂ ପୁଞ୍ଜିବାଦୀ ଦେଶମାନଙ୍କରେ ପ୍ରଗତିଶୀଳ ଗଣତାନ୍ତ୍ରିକ ଆନ୍ଦୋଳନମାନଙ୍କ ବିରୁଦ୍ଧରେ ପ୍ରୟୋଗ କରାଯିବା ଉଚିତ ବୋଲି ଘୋଷଣା କରୁଛି ।

ପୂର୍ବର ଔପନିବେଶିକ ଶକ୍ତି ବ୍ରିଟେନ୍ ଓ ଫ୍ରାନ୍ସ-ଅତି ସୁସ୍ପଷ୍ଟ ଭାବେ ଦୁର୍ବଳ ହୋଇ ପଡ଼ିଛନ୍ତି । ସେମାନେ ତାଙ୍କର ଅଧିକାଂଶ ରାଜ୍ୟ ହରାଇଛନ୍ତି । ପଶ୍ଚିମ ଜର୍ମାନୀ

ଓ ଜାପାନ ଏବେ ଉପରକୁ ଉଠିଲେଣି । ତାଙ୍କର ଶିଳ୍ପ ଉତ୍ପାଦନ, ଏବେ ଯୁଦ୍ଧ ପୂର୍ବ ଉତ୍ପାଦନ ଅପେକ୍ଷା ଅଧିକ ହୋଇଛି । ଶିଳ୍ପ ଉତ୍ପାଦନରେ ପଶ୍ଚିମ ଜର୍ମାନୀ ବ୍ରିଟେନ୍‌କୁ ଟପି ଗଲଣି । ରପ୍ତାନି କ୍ଷେତ୍ରରେ କେବଳ ଆମେରିକା ତଳକୁ ତାର ସ୍ଥାନ ଦ୍ୱିତୀୟରେ ପହଞ୍ଚିଛି । ଆମେରିକାର ପୁଞ୍ଜି ସାହାଯ୍ୟରେ ପଶ୍ଚିମ ଜର୍ମାନୀ ଓ ଜାପାନ, ନିଜ ନିଜର ଯୁଦ୍ଧ ପୂର୍ବର ସ୍ଥାନ କେବଳ ପୁନର୍ବାର ଲାଭ କରି ନାହାନ୍ତି, ପୂର୍ବ ଅପେକ୍ଷା ସେମାନେ ବ୍ରିଟେନ୍ ଫ୍ରାନ୍ସ ଓ ଆମେରିକାର ମଧ୍ୟ ଅଧିକ ଭୟଙ୍କର ପ୍ରତିଦ୍ୱନ୍ଦୀ ଭାବରେ ଦେଖା ଦେଇଛନ୍ତି ।

ଶତ୍ରୁମାନଙ୍କ ଘରସାମ୍ନାରେ ଏହି ମଦେହିଁନ ଯୋଗୁଁ, ପ୍ରଧାନ ପ୍ରଧାନ ପୁଞ୍ଜିବାଦୀ ଦେଶମାନଙ୍କ ମଧ୍ୟରେ ବିରୋଧିତା ବୃଦ୍ଧି ପାଉଛି । ଏମାନ୍ତିକି ପୁଞ୍ଜିପତି ମେଣ୍ଟ ଇଉରୋପ,ଏସିଆ, ଲାଟିନ୍ ଆମେରିକାରେ—ସାରା ପୃଥିବୀରେ ଓ ବଜାର ଓ କଞ୍ଚାମାଲ ଲାଗି ଲଢ଼େଇ କରୁଛନ୍ତି ।

ଜଣେ ସାମୟିକ ଦର୍ଶକକୁ ଜଣା ଯାଇପାରେ ଯେ, ବିଶ୍ୱ ରାଜନୀତିର ପ୍ରଧାନ ପ୍ରଧାନ ସମସ୍ୟାମାନଙ୍କରେ ଆମେରିକା,ବ୍ରିଟେନ, ଫ୍ରାନ୍ସ ଓ ପଶ୍ଚିମ ଜର୍ମାନୀର ସରକାରମାନଙ୍କ ମଧ୍ୟରେ ପୂର୍ଣ୍ଣ ମେଳ ରହିଛି । ସେମାନେ ନାଟୋ, ସିଆଟୋ, ସେନ୍‌ଟୋ ଓ ଅନ୍ୟାନ୍ୟ ଆକ୍ରମଣାତ୍ମକ ସାମରିକ ମେଣ୍ଟର ଭିତ୍ତି ଓ ସଭ୍ୟ, ଆମେରିକା, ବ୍ରିଟେନ, ଫ୍ରାନସ ଓ ଇଉରୋପର ଅନ୍ୟାନ୍ୟ ପୁଞ୍ଜିବାଦୀ ରାଷ୍ଟ୍ର, ଜର୍ମାନୀ ସମରବାଦୀ ଓ ପ୍ରତିହିଂସାବାଦୀମାନଙ୍କୁ ପୁନଃପ୍ରତିଷ୍ଠା କରିବାର ଅତି ବିପଜ୍ଜନକ ନୀତି ଅନୁସରଣ କରୁଛନ୍ତି ।

ତେବେ,ଯେତେ ମିଳିତ କାର୍ଯ୍ୟ ଓ ରାଜନୀତି ଅନୁଷ୍ଠିତ ହେଉ ପଛେ,ତାହା ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କରେ ପ୍ରଧାନ ବିରୋଧୀତାକୁ କେବେହେଲେ ଦୂର କରି ପାରିବ ନାହିଁ ।

ଆମେରିକା, ପଶ୍ଚିମ ଜର୍ମାନୀର ସମରବାଦୀଙ୍କ ସମରଯନ୍ତ୍ରର ପୁନରୁଦ୍ଧାର ଲାଗି ସାହାଯ୍ୟ କରିଛି, ପୂର୍ବ ଦିଗରେ ଜାପାନକୁ ସାମରିକ କାର୍ଯ୍ୟ ମଧ୍ୟକୁ ଟାଣି ଆଣିଛି । ଆମେରିକାର ଶାସନଗୋଷ୍ଠୀ, ଏହି ଦୁଇ ଦେଶକୁ ପୃଥିବୀରେ ବିଶ୍ୱ ସାମ୍ରାଜ୍ୟବାଦର ଆଘାତକାରୀ ଶକ୍ତିରେ ପରିଣତ କରିବାକୁ ବ୍ୟଗ୍ର ।

ଏହା ହେଲେ, ଯୁଦ୍ଧବେଳେ ଆକ୍ରମଣାତ୍ମକ ସେଇ ସାମ୍ରାଜ୍ୟବାଦୀଙ୍କର ଦୁଃସାହସିକ କାର୍ଯ୍ୟ ଲାଗି ଜର୍ମାନ ଓ ଜାପାନର ଲୋକଙ୍କୁ ସିନା ରକ୍ତର ଦାନ ଦେବାକୁ ପଡ଼ିବ ! ଏଥି ସଙ୍ଗେ ସଙ୍ଗେ ସେମାନେ ପଶ୍ଚିମ ଜର୍ମାନୀ ଓ ଜାପାନର ଅର୍ଥନୀତିକୁ ଅସ୍ତ୍ରଶସ୍ତ୍ର ପ୍ରତିଦ୍ୱନ୍ଦ୍ୱୀତାରେ ପକାଇ ଶୋଷି ଶୃଙ୍ଖଳ ଦେବାକୁ ଚାହାନ୍ତି,

ଏହା ଦ୍ୱାରା ପୃଥିବୀର ବଜାରରେ ସେମାନଙ୍କର ପ୍ରତିଦ୍ୱନ୍ଦୀ ଶକ୍ତିଗୁଡ଼ିକୁ ମଧ୍ୟ ସମ୍ପୂର୍ଣ୍ଣ-ଶେଷ କରିଦେବେ—ଏହା ତାଙ୍କର ମତଲବ୍ ।

କିନ୍ତୁ ପଶ୍ଚିମ ଜର୍ମାନୀର ଏକଚାଟିଆ ପୁଞ୍ଜିପତିମାନେ ଏକ ଗୌଣ ଭୂମିକାରେ ରହି ସନ୍ତୁଷ୍ଟ ହେବେ ବା କାହିଁକି ? ଜାପାନୀ ପୁଞ୍ଜିପତିମାନେ ମଧ୍ୟ ତବାଳେକରେ ପୃଥିବୀ ପୃଷ୍ଠରେ ଏକ ଉତ୍କୃଷ୍ଟ ସ୍ଥାନ ଲଭର ସ୍ୱପ୍ନ ନ ଦେଖିବେ ବା କାହିଁକି ?

ସମାଜବାଦ ଓ ଶ୍ରମିକମାନଙ୍କ ଜାତୀୟ ଆନ୍ଦୋଳନ ବିରୁଦ୍ଧରେ ସାମ୍ରାଜ୍ୟବାଦୀ ଦେଶମାନଙ୍କୁ ଏକତାବଦ୍ଧ କରିବା ଉଦ୍ୟମ ସାମ୍ରାଜ୍ୟବାଦର ବିରୋଧୀତାକୁ ଦୂର କରିବା ପରିବର୍ତ୍ତେ ତାକୁ ଆହୁରି ଉତ୍କଟ କରୁଛି । ଲୁଣ୍ଠନକାରୀମାନଙ୍କ ମିତ୍ରତା ଦୃଢ଼ କି ସ୍ଥାୟୀ ହୋଇ ନ ପାରେ, କାରଣ, ମୀମାଂସା-ହୀନ ବେଖାପ୍ ସ୍ୱାର୍ଥର ହରୁ ମିଳନ ଅସମ୍ଭବ ।

ଏହା ଛଡ଼ା ଯେଉଁ ପୁଞ୍ଜିବାଦୀ ରଙ୍ଗମଞ୍ଚରେ ସେମାନେ ନିଜ ନିଜର ଫନ୍ଦିଫିକର ଚଳାଇଛନ୍ତି, ସେହି ରଙ୍ଗମଞ୍ଚ ମଧ୍ୟ ଅଧିକରୁ ଅଧିକ ସଂକୁଚିତ ହୋଇଯାଉଛି, ତାହା ଅନ୍ତଃ ସାମ୍ରାଜ୍ୟବାଦୀ ବିଦ୍ୱେଷ ଓ ବିରୋଧକୁ ଅଧିକ ବୃଦ୍ଧି କରୁଛି ।

## ଜାତୀୟ ମୁକ୍ତି ଆନ୍ଦୋଳନ

ଉପନିବେଶ ଓ ପରାଧୀନ ଦେଶମାନଙ୍କରେ ଯେଉଁ ଶକ୍ତିଶାଳୀ ଜାତୀୟ ମୁକ୍ତି ସଂଗ୍ରାମ ହେଉଛି, ତାହା ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱାଧୀନତା, ଗଣତନ୍ତ୍ର ଓ ଶାନ୍ତି ଲାଗି ବିଶ୍ୱ ସମସାମୟିକ ଆନ୍ଦୋଳନର ଗଠନକାରୀ ଅଂଶ । ସେହି ସଂଗ୍ରାମରେ ମଧ୍ୟ ପୁଞ୍ଜିବାଦର ସଂକଟ ପ୍ରତିଫଳିତ ହେଉଛି ।

ଅକ୍ଟୋବର ବିପ୍ଳବ, ଔପନିବେଶିକ ବ୍ୟବସ୍ଥାର ମୂଳଭିତ୍ତି ଉପରେ ଶକ୍ତିଶାଳୀ ଆଘାତ ଦେଇଛି । ତାର ପତନକୁ ବା ମୃତ୍ୟୁକୁ ଉଦ୍‌ଘୋଷିତ କରିଛି । ଏସିଆ, ଅଫ୍ରିକା ଓ ଲାଟିନ ଆମେରିକାର ଲୋକମାନଙ୍କୁ ଜାଗ୍ରତ କରିଛି, ସାମ୍ରାଜ୍ୟବାଦୀ ଦାସତ୍ୱର ବନ୍ଧନରୁ ମୁକ୍ତି ପାଇବା ଲାଗି ସେମାନଙ୍କର ଆକାଂକ୍ଷାକୁ ବୃଦ୍ଧି କରିଛି, ଔପନିବେଶିକ ଅତ୍ୟାଚାରର ସଂପୂର୍ଣ୍ଣ ବିଲୋପ ଦିଗରେ ସେମାନଙ୍କ ବିଶ୍ୱାସକୁ ସୁଦୃଢ଼ କରିଛି ।

ପୂର୍ବର ଅତ୍ୟାଚାର ପ୍ରପୀଡ଼ିତ ଲୋକମାନେ ନିକଟରେ ତାଙ୍କର ରାଜନୈତିକ ସ୍ୱାଧୀନତାର ସଂଗ୍ରାମରେ ବିଶେଷ ଭାବରେ ବିରାଟ ସଫଳତାମାନ ହାସଲ କରିଛନ୍ତି । କିନ୍ତୁ ଏହା ସଂଭବ ହୋଇପାରିଛି କେଉଁଥିପାଇଁ, କାହାଯୋଗୁଁ ?

ବୈଦେଶିକ ପୁଞ୍ଜିର ସହଯୋଗରେ ଶିଳ୍ପ ଓ ଆର୍ଥିକ ଶାସନ ମାନ ନେଇ ନଥିଲେ । ଶତାବ୍ଦୀ ଶତାବ୍ଦୀ ଧରି ସେମାନେ ବିଦେଶୀ ଅତ୍ୟାଗ୍ରହୀମାନଙ୍କ ବିରୁଦ୍ଧରେ ଲଢ଼ିଥିଲେ । ତଥାପି, ସେମାନଙ୍କର ସଂଗ୍ରାମ ସଫଳ ହୋଇ ପାରି ନ ଥିଲା । ଅକ୍ଟୋବର ବିପ୍ଳବ ସ୍ଥିତିରୁ କେବଳ, ବିଶେଷକରି ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ଉଦ୍ଭବ ପରେ, ମୁକ୍ତି ଆନ୍ଦୋଳନ ଏକ ବିରାଟ ବନ୍ୟା ଆକାରରେ ଦେଖାଦେଲା ଓ ତାହା ଫଳରେ ବହୁ ସ୍ୱାଧୀନ ଜାତିର ଜନ୍ମ ଘଟିଲା ।

ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ଉଦ୍ଭବ ଏବଂ ଜାତୀୟ ମୁକ୍ତି ଆନ୍ଦୋଳନର ସଫଳତା, ଏହା କଣ କେବଳ ଏକ ସମକାଳୀନ ବ୍ୟାପାର ?

ନା, ତାହା ନୁହେଁ ।

ଦ୍ୱିତୀୟ ବିଶ୍ୱଯୁଦ୍ଧରେ, ନାଜୀ ଜର୍ମାନୀ ଓ ସାମ୍ରାଜ୍ୟବାଦୀ ଜାପାନର ପରାଜୟ, ଇଉରୋପ ଓ ଏସିଆର ବହୁ ଦେଶରେ ସମାଜବାଦୀ ବିପ୍ଳବର ବିଜୟ, ବିଶ୍ୱ-ସମାଜବାଦୀ ବ୍ୟବସ୍ଥାର ଉଦ୍ଭବ ଓ ତାର ଅତି ତାତ୍ପର୍ଯ୍ୟପୂର୍ଣ୍ଣ ବୃଦ୍ଧି ସାମ୍ରାଜ୍ୟବାଦକୁ ଏକାବେଳକେ ତାର ମୂଳରୁ ଦୋହଲାଇ ଦେଇଛି । ଔପନିବେଶବାଦୀମାନଙ୍କର ବଳକୁ ଖଣ୍ଡ କରି ଦେଇଛି ; ଔପନିବେଶିକବାଦ ବିରୁଦ୍ଧରେ ସଂଗ୍ରାମ ଲାଗି ଏହା ଅନୁକୂଳ ଅବସ୍ଥା ସୃଷ୍ଟି କରିଛି । କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟି ପ୍ରତିନିଧିମାନଙ୍କ ୧୯୬୦ ସମ୍ମିଳନୀର ଇସ୍ତାହାର ଘୋଷଣା କରିଛି, "ସାମ୍ରାଜ୍ୟବାଦୀ ଅତ୍ୟାଗ୍ରହରୁ ମୁକ୍ତିଲାଭ ଦିଗରେ ଔପନିବେଶିକ ଓ ପରାଧୀନ ଲୋକମାନଙ୍କ ସଂଗ୍ରାମ ପ୍ରତି ବିଶ୍ୱ-ସମାଜବାଦୀ ଶକ୍ତିର ନିଷ୍ପତ୍ତିମୂଳକ ଅବଦାନ ରହିଛି ।"

ସାମ୍ରାଜ୍ୟବାଦକୁ ବିରୋଧ କରିବାରେ ବିଶ୍ୱ-ସମାଜବାଦୀ ବ୍ୟବସ୍ଥା ହେଉଛି, ନିଷ୍ପତ୍ତିମୂଳକ ଚୂଡ଼ାନ୍ତ ଶକ୍ତି । ସମାଜବାଦୀ ଦେଶମାନଙ୍କ ଓ ବିଶ୍ୱ-ଶ୍ରମିକ ଆନ୍ଦୋଳନ ସହିତ ଜାତୀୟ ମୁକ୍ତି ଆନ୍ଦୋଳନର ମିତ୍ରତା ଯେତିକି ଟାଣ ଓ ସୁଦୃଢ଼ ହୋଇଛି, ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରେ ସେମାନଙ୍କ ବର୍ତ୍ତମାନ ଓ ଭବିଷ୍ୟତର ଲାଭ ସେତିକି ଅଧିକ ଦୃଢ଼ ସ୍ଥାୟୀ ହୋଇଛି । ଏହି କାରଣରୁ ବିଶ୍ୱ-କମ୍ୟୁନିଷ୍ଟ ଆନ୍ଦୋଳନ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର ସଂଗ୍ରାମରତ ଲୋକଙ୍କୁ ସମାଜବାଦୀ ଦେଶ ଓ ବିଶ୍ୱ ଶ୍ରମିକଶ୍ରେଣୀ ଆନ୍ଦୋଳନ ଆଗରେ ପ୍ରତିସ୍ଥାପିତ (counterpose) କରିବାକୁ ଅର୍ଥାତ୍ ବିରୋଧୀ ଭାବରେ ମୁହାଁମୁହିଁ କରିବା କାର୍ଯ୍ୟକୁ କଠୋର ଭାବେ ନିନ୍ଦା କରେ ।

ସମାଜବାଦର ସଂଗଠନ ଓ ସଂହତି, ଜାତୀୟ ମୁକ୍ତି ଆନ୍ଦୋଳନର ବିରାଟ ଅଭ୍ୟୁତ୍ଥାନ — ଏହା ଚରିତ୍ରକ ପାଇଁ ସାମ୍ରାଜ୍ୟବାଦୀ ଔପନିବେଶିକ ବ୍ୟବସ୍ଥାର ଭାଗ୍ୟ—

ଦ୍ୱାର ବୃଦ୍ଧ କରାଉଛନ୍ତି । ଯୁଦ୍ଧ ପରଠାରୁ ଏସିଆ, ଆଫ୍ରିକାରେ ବୈପ୍ଳବିକ ପରିବର୍ତ୍ତନମାନ ଘଟିଚାଲିଛି । କ୍ଷିପ୍ର ଅପେକ୍ଷା ଏବେ ଆନ୍ଦୋଳନ ହେଉଛି ବଳିଷ୍ଠଭାବରେ ।

ଏସିଆରେ ଚୀନର ଜନ ଗଣତନ୍ତ୍ର ସଂଗରେ ଭିଏତନାମର ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ଓ କୋରିଆର ଜନ-ଗଣତାଂତ୍ରିକ ପ୍ରଜାତଂତ୍ର ସାମ୍ରାଜ୍ୟବାଦୀ ଶୃଙ୍ଖଳକୁ ଚୂର୍ଣ୍ଣ କରିଛନ୍ତି, ଏବେ ସେମାନେ ସମାଜବାଦ ନିର୍ମାଣରେ ବ୍ୟାପୃତ । ଭାରତ, ଇଣ୍ଡୋନେସିଆ, ବର୍ମା, ସିଂହଳ, କାମ୍ବୋଡ଼ିଆ ଓ ଅନ୍ୟ ଦେଶମାନେ ସ୍ୱାଧୀନ ବିକାଶର ମାର୍ଗ ଗ୍ରହଣ କରିଛନ୍ତି । ଦଶ ବା ପନ୍ଦର ବର୍ଷ ତଳେ, ଏସିଆର ଅଧିକାଂଶ ଦେଶ ଉପନିବେଶ ବା ଅର୍ଦ୍ଧ-ଉପନିବେଶ ବା ଅନ୍ୟ ଭାଷାରେ କହିଲେ ସାମ୍ରାଜ୍ୟବାଦର ହସ୍ତମୁଦୀ ମହଜିଦ ମାହାଲ ହୋଇ ରହିଥିଲେ । ଆଜି ଏସିଆ ଓ ଓସେନିଆ ଦୀପପୁଞ୍ଜରେ ମାତ୍ର ଅଳ୍ପ କେତୋଟି ଉପନିବେଶ ରହିଛି ।

ଘଟନାବଳୀ ଦ୍ରୁତ ବେଗରେ ଔପନିବେଶିକ ଅତ୍ୟାଚାରର ଅନ୍ତିମ ବିଲୋପ ଦିଗକୁ ଗତି କରୁଛି ।

ଆଫ୍ରିକାର ଲୋକେ, ଔପନିବେଶିକ ଅତ୍ୟାଚାରର ଶୃଙ୍ଖଳକୁ ଦୃଢ଼ତାର ସହ ଛିନ୍ନ କରୁଛନ୍ତି । ଏକ ମହାଦେଶରେ ସ୍ୱାଧୀନ ଜାତିମାନଙ୍କର ସଂଖ୍ୟା ବଢ଼ିବାରେ ଲାଗିଛି । ଏବେ ନିକଟରେ ସୁଡ଼ାନ, ଲିବ୍ୟା, ଟିଉନିସିଆ, ମରୋକୋ, ଘାନା, ଗାଇନା, ମାଲି, ନାଇଜେରିଆ ଓ ଅନ୍ୟ ଦେଶ ସବୁ ସ୍ୱାଧୀନତା ଲାଭ କରିଛନ୍ତି । ୧୯୬୦ରେ କେବଳ ଆଫ୍ରିକାର ୧୭ଟି ଜାତି, ସେମାନଙ୍କ ମଧ୍ୟରୁ ପୁଣି ଅଧିକାଂଶ ପୂର୍ବର ଫରାସି ଉପନିବେଶ—ରାଜନୈତିକ ସ୍ୱାଧୀନତା ହାସଲ କରିଛନ୍ତି । ୧୯୬୨ ପରେ ୮ ବର୍ଷକାଳ କଠୋର ସଂଗ୍ରାମ ଦ୍ୱାରା ଅଲଜିରିଆର ଲୋକମାନେ ସ୍ୱାଧୀନ ହୋଇଛନ୍ତି । ୧୯୬୩ରେ ଜାଞ୍ଜିବର ଓ କେନିଆର ଲୋକେ ସ୍ୱାଧୀନତା ଲାଭ କରିଛନ୍ତି ।

ବେଲଜିଆନ କଙ୍ଗୋର ଲୋକେ, ୧୯୬୦ରେ ସ୍ୱାଧୀନତା ଘୋଷଣା କରିଥିଲେ । ଔପନିବେଶବାଦୀମାନେ କିନ୍ତୁ ସେମାନଙ୍କୁ ତାହାର କଷ୍ଟ ଅର୍ଜିତ ସ୍ୱାଧୀନତାରୁ ବଞ୍ଚିତ କରିବାପାଇଁ ଯାହା କିଛି ସମ୍ଭବ ତାହା କରିବାକୁ ପଛାଇ ନାହାନ୍ତି ! ଜାତୀୟ ମୁକ୍ତି ଆନ୍ଦୋଳନର ବୀରଗଣୀ କଙ୍ଗୋର ପ୍ରଧାନ ମଂତ୍ରୀ ପାଟ୍ରିସ ଲୁମୁମ୍ବାଙ୍କୁ ସେମାନେ ହତ୍ୟା କରିଛନ୍ତି । ଅଭ୍ୟନ୍ତରୀଣ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କ ସାହାଯ୍ୟରେ ଔପନିବେଶବାଦୀମାନେ ତାଙ୍କର ପ୍ରଭୁତ୍ୱ ରକ୍ଷା କରିବେ ବୋଲି ଚକ୍ରାନ୍ତ ଚଳାଇଛନ୍ତି ।

ଜାତିସଂଘର ୧୫ଶ ସାଧାରଣ ଆସେମ୍ବ୍ଲି ଅଧିବେଶନରେ ସୋଭିଏତ୍ ସରକାର ସମସ୍ତ ଉପନିବେଶଙ୍କୁ ସ୍ୱାଧୀନତା ଦେବା ସଂପର୍କରେ ଏକ ଘୋଷଣା କରାଯାଉ ବୋଲି ପ୍ରସ୍ତାବ ଆଣିଥିଲେ । ତାହା ଔପନିବେଶିକ ଶକ୍ତିମାନଙ୍କ ପ୍ରବଳ ପ୍ରତିରୋଧ ମଧ୍ୟରେ ଗୃହୀତ ହୋଇଥିଲା । ସବୁ ପ୍ରକାର ସବୁ ରୂପର ଔପନିବେଶିକ-ବାଦର ଅବଶେଷକୁ ଲୋପ କରିବା ଦିଗରେ ଏହା ଲୋକମାନଙ୍କ ଅଟଳ ସଂକଳ୍ପର ପ୍ରମାଣ ।

ଔପନିବେଶିକବାଦ ଲୋପ କରିବା ଦିଗରେ ବିଶ୍ୱ ସମାଜବାଦୀ ଗୋଷ୍ଠୀର ଅବଦାନ ସହିତ ତା'ର ଅବସ୍ଥିତି ଓ ସୁଦୃଢ଼ତା, ସାରା ପୃଥିବୀରେ ଜାତୀୟ ମୁକ୍ତି ଆନ୍ଦୋଳନ ପ୍ରକୃତିକୁ ଗଭୀର ଭାବେ ପ୍ରଭାବିତ କରିଛି । ସମାଜବାଦର ପ୍ରଭାବରେ ଜାତୀୟ ମୁକ୍ତି ଆନ୍ଦୋଳନସବୁ—ସମସ୍ତ ପ୍ରକାର ଔପନିବେଶବାଦ ବିରୁଦ୍ଧରେ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ସହିତ ସମ୍ମିଳିତ ହୋଇଛି ।

ଜାତିର ଅର୍ଥନୈତିକ ସ୍ୱାଧୀନତା ରହିଲେ ହିଁ ତାର ରାଜନୈତିକ ସ୍ୱାଧୀନତା ବାସ୍ତବ ଓ ସୁଦୃଢ଼ ହୋଇପାରେ । ଯେଉଁ ଲୋକେ, ସ୍ୱାଧୀନତାର ମାର୍ଗ ଗ୍ରହଣ କରିଛନ୍ତି, ସେମାନେ ଏବେ ନିଜେ ସେମାନଙ୍କର ଅର୍ଥନୈତିକ ପଶ୍ଚାତ୍‌ପଦତା ଦୂର କରିବା କାର୍ଯ୍ୟକୁ ଯଥାର୍ଥଭାବେ ତୁଲାଇବାକୁ ସମର୍ଥ । ସେମାନେ ଅଧିକରୁ ଅଧିକ ପରିଷ୍କାର ଭାବେ ଉପଲବ୍ଧି କରୁଛନ୍ତି ଯେ, କେବଳ ଏକ ଉନ୍ନତ ଅର୍ଥନୀତି ସେମାନଙ୍କ ସ୍ୱାଧୀନତାକୁ ସୁନିଶ୍ଚିତ କରିପାରେ ।

ସୋଭିଏତ୍ ୟୁନିୟନ ଓ ଅନ୍ୟ ସମାଜବାଦୀ ଦେଶମାନଙ୍କର ଜାତୀୟ ମୁକ୍ତି ଆନ୍ଦୋଳନ ପ୍ରତି ସର୍ବତ୍ର ସକ୍ରିୟ ସମର୍ଥନ, ଔପନିବେଶିକ ଶୃଙ୍ଖଳ ଛିନ୍ନ କରିଥିବା ଦେଶମାନଙ୍କୁ ଅର୍ଥନୈତିକ ସାହାଯ୍ୟ, ସେମାନଙ୍କ ସହିତ ବର୍ଦ୍ଧିଷ୍ଣୁ ବନ୍ଧୁତା ଓ ସହଯୋଗ ପ୍ରତିଷ୍ଠା—ଏହି ସମସ୍ତ ପନ୍ଥା ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଲୋକମାନଙ୍କୁ ସ୍ୱାଧୀନତା ଲାଗି ତାଙ୍କର ସଂଗ୍ରାମରେ ପୂର୍ଣ୍ଣ ସଫଳତାର ପ୍ରତିଶ୍ରୁତି ଯୋଗାଇଦେଉଛି ।

କ୍ୟୁବା ବିପ୍ଳବର ବିଜୟ ହାସଲରେ ଓ ତାକୁ ସୁଦୃଢ଼ କରିବାରେ ସୋଭିଏତ ୟୁନିୟନ ଓ ଅନ୍ୟ ସମାଜବାଦୀ ଦେଶମାନେ ଯେଉଁ ଭୂମିକା ଗ୍ରହଣ କରିଛନ୍ତି, ସେ ସମ୍ବନ୍ଧରେ ଫିଡେଲ କାଷ୍ଟ୍ରୋ କହିଛନ୍ତି ।

''ସୋଭିଏତ୍ ୟୁନିୟନ ଯଦି ଆଗେଇ ନ ଆସିଥାନ୍ତା', ତେବେ କ୍ୟୁବାରେ ବିପ୍ଳବ ଅସମ୍ଭବ ହୋଇଥାନ୍ତା । ସୋଭିଏତ ୟୁନିୟନ ଯଦି ବାହାର ନ ଥାନ୍ତା,

ସାମ୍ରାଜ୍ୟବାଦୀମାନେ ଲାଟିନ ଆମେରିକାରେ ଯେକୌଣସି ଜାତୀୟ ମୁକ୍ତି ଆନ୍ଦୋଳନକୁ ଶ୍ୱାସରୋଧ କରି ଶେଷ କରି ଦେଉଥାନ୍ତେ । ତାଙ୍କର ସାମ୍ରାଜ୍ୟବାଦୀ ସ୍ୱାର୍ଥ ଉପରେ ଆଞ୍ଚ ଲାଗିଲେ, ସେମାନେ ଏପରିକି ବୁର୍ଜୁଆ ବିପ୍ଳବକୁ ସବୁ ଦଳି ଦିଅନ୍ତି । ତେଣୁ ଆହୁରି ଅଧିକ ତତ୍ପରତାର ସହିତ ସେମାନେ ଲାଟିନ ଆମେରିକାରେ ଏକ ସମାଜବାଦୀ ବିପ୍ଳବର ଶ୍ୱାସରୋଧ କରି ତାକୁ ନାକଚ କରି ଦେଇଥାନ୍ତେ । ସୋଭିଏତ ଇଉନିଅନ ଅନନ୍ତର ନ ହୋଇଥିଲେ, ସାମ୍ରାଜ୍ୟବାଦୀମାନଙ୍କୁ ଅସ୍ତ୍ରଶସ୍ତ୍ରର ଆଶ୍ରୟ ବି ନେବାକୁ ପଡ଼ି ନ ଥାନ୍ତା । ସେମାନେ ଏଭଳି ଏକ ବିପ୍ଳବକୁ (କ୍ୟୁବା ବିପ୍ଳବକୁ) କେବଳ ଅନାହାର ଦ୍ୱାରା ଚପି ଧ୍ୱଂସ କରି ଦେଇଥାନ୍ତେ । କେବଳ ଅର୍ଥନୈତିକ ଅବରୋଧରେ ହିଁ ସେମାନେ ତାକୁ ମୂଳପୋଛ କରି ଦେଇଥାନ୍ତେ ।

କିନ୍ତୁ ଯେ ହେତୁ ସୋଭିଏତ ୟୁନିଅନ ରହିଛି, ସେହିହେତୁ ଆମର ବିପ୍ଳବକୁ ଅର୍ଥନୈତିକ ଅବରୋଧ ଦ୍ୱାରା ଲୋପ କରିଦେବା ଅସମ୍ଭବ । ଯେତେବେଳେ ସାମ୍ରାଜ୍ୟବାଦୀମାନେ ମନମୁଖୀ ଏକତରଫା ଭାବରେ ଆମର ଚିନି (ରପ୍ତାନି କୋଟାକୁ ପ୍ରତ୍ୟାଖ୍ୟାନ କରିଦେଲେ ସେତେବେଳେ ତାହା ହିଁ କେବଳ ଆମର ବିପ୍ଳବକୁ ଭାଙ୍ଗି ଦେବାକୁ ଯଥେଷ୍ଟ ହୋଇଥାନ୍ତା, ତାହାହିଁ କେବଳ ଆମ ଦେଶରେ ଘୋର ଅନାହାରକୁ ଡାକି ଆଣିଥାନ୍ତା । ସୋଭିଏତ ଇଉନିଅନ ହିଁ ଆମକୁ ରକ୍ଷା କରିବାକୁ ସାହାଯ୍ୟ କରିବାକୁ ବାହାରି ପଡ଼ିଲା, ଆମର ଚିନି କିଣିଲା । ସେତେବେଳେ ସାମ୍ରାଜ୍ୟବାଦୀମାନେ ତେଲ ଦେବା ବନ୍ଦ କରିଦେଲେ, ସେତେବେଳେ ତାହା ହିଁ କେବଳ ଆମର ଅର୍ଥନୀତିକୁ ଦୁର୍ବଳ କରିବାକୁ ଯଥେଷ୍ଟ ହୋଇଥାନ୍ତା । କିନ୍ତୁ ସୋଭିଏତ ୟୁନିଅନହିଁ ଆମକୁ ତେଲ ଯୋଗାଇଦେଲା । ଯେତେବେଳେ ଅର୍ଥନୈତିକ ବ୍ୟବସ୍ଥା ସବୁ ଆକାଙ୍କ୍ଷିତଫଳ ସୃଷ୍ଟି କରିବାରେ ବିଫଳ ହେଲା, ସେତେବେଳେ ସାମ୍ରାଜ୍ୟବାଦୀମାନେ ହସ୍ତକ୍ଷେପର ପରିକଳ୍ପନା ତିଆରି କଲେ । କୌଣସି ଗୋଟିଏ ହେଲେ ପୁଞ୍ଜିବାଦୀ ଦେଶ ଆମକୁ ଅସ୍ତ୍ରଶସ୍ତ୍ର ବିକ୍ରି କରିବାକୁ ରାଜି ହେଲା ନାହିଁ । କିନ୍ତୁ ସୋଭିଏତ ୟୁନିଅନର ନେତୃତ୍ୱରେ ସମାଜବାଦୀ ଶିବିରର ଦେଶସବୁ ଆବଶ୍ୟକୀୟ ଅସ୍ତ୍ରଶସ୍ତ୍ର ସଂଗ୍ରହରେ ଆମକୁ ସାହାଯ୍ୟ କଲେ । ସେମାନଙ୍କର ସେହି ସାହାଯ୍ୟକୁ ଧନ୍ୟବାଦ । ସେହିସବୁ ଅସ୍ତ୍ର ନେଇ ଆମେ ପ୍ଲାୟା ଗିରନ୍‌ଠାରେ ଆକ୍ରମଣକାରୀମାନଙ୍କୁ ଧ୍ୱଂସ କରିଦେବାକୁ ସମର୍ଥ ହେଲୁ ।

ଯଦି ସୋଭିଏତ ୟୁନିଅନ ନ ଥାନ୍ତା, ତେବେ ସାମ୍ରାଜ୍ୟବାଦୀମାନେ ଆମ ଦେଶ ଉପରେ ପ୍ରତ୍ୟକ୍ଷ ଆକ୍ରମଣ କରିବାକୁ ଇତସ୍ତତଃ ହୋଇ ନ ଥାନ୍ତେ । ସୋଭିଏତ ୟୁନିଅନ ଓ ସମଗ୍ର ସମାଜବାଦୀ ଶିବିରର ଶକ୍ତି, ଆମ ଦେଶ ବିରୁଦ୍ଧରେ ସାମ୍ରାଜ୍ୟବାଦୀ ଆକ୍ରମଣକୁ ଜବରଦସ୍ତ ଝିଙ୍କି ଧରିଛି—ତାକୁ ରୋଧ କରି ରଖିଛି ।

ତେଣୁ ଏହା ଅତି ସ୍ୱାଭାବିକ, ଯେ ଆମେ ସୋଭିଏତ ଇଉନିଅନ ପ୍ରତି ଚିରଦିନ ଲାଗି ଗଭୀର କୃତଜ୍ଞତାର ଭାବ ପୋଷଣ କରୁଛୁ ।”

ଔପନିବେଶବାଦକୁ ଦୂର କରିବା ଦିଗରେ ଅନୁକୂଳ ଅବସ୍ଥା ସୃଷ୍ଟି କରି, ସମାଜବାଦୀ ବ୍ୟବସ୍ଥା ନବ-ଉପନିବେଶବାଦର ପ୍ରତିଷ୍ଠା କିମ୍ବା ପୂର୍ବ ପ୍ରକାର ଔପନିବେଶିକ ଅତ୍ୟାଚାରର ପୁନଃ ପ୍ରବର୍ତ୍ତନର ପ୍ରତିରୋଧ କରିବା ଦିଗରେ ଏକ ମହାନ ଶକ୍ତି ଭାବେ କ୍ରମାଗତ କାର୍ଯ୍ୟ କରୁଛି ।

ଯେଉଁ ଦେଶସବୁ ଔପନିବେଶିକ ପରାଧୀନତାର ଶୃଙ୍ଖଳକୁ ଛିନ୍ନ କରିଛନ୍ତି, ସେମାନେ ନିଜ ନିଜର ଜାତୀୟ ଶିଳ୍ପ ନିର୍ମାଣ କରିବା ଏବଂ ଇଞ୍ଜିନିଅର ଓ ବୈଜ୍ଞାନିକ ଲୋକମାନଙ୍କୁ ତାଲିମ ଦେବା କାର୍ଯ୍ୟ ଆରମ୍ଭ କଲେଣି । ସମାଜବାଦୀ ଦେଶମାନଙ୍କର ସାହାଯ୍ୟ, ସେମାନଙ୍କୁ ଅର୍ଥନୈତିକ ଦିଗରେ ଅଗ୍ରସର ହେବାରେ ଓ ଦ୍ରୁତ ବେଗରେ ପ୍ରଗତିର ମାର୍ଗ ଅନୁସରଣ କରିବାରେ ସାମର୍ଥ୍ୟ ଯୋଗାଉଛି ।

ସୋଭିଏତ୍ ଇଉନିଅନ କମ ଉନ୍ନତ ଦେଶମାନଙ୍କୁ ବହୁ ପରିମାଣରେ ସାହାଯ୍ୟ କରୁଛି । ସୋଭିଏତ୍ ଇଉନିଅନର ସାହାଯ୍ୟରେ ଲୁହା ଇସ୍ପାତ, ଲୌହାତିରିକ୍ତ ଧାତୁଦ୍ରବ୍ୟ, ରାସାୟନିକ, ବୈଦ୍ୟୁତ, ମେସିନ୍ ତିଆରି ଓ ଅନ୍ୟାନ୍ୟ ଶିଳ୍ପ ସମେତ ୪୮୦ଟି ବୃହତ ପରିକଳ୍ପନା କାର୍ଯ୍ୟକାରୀ ହେଉଛି । ଏଥି ମଧ୍ୟରୁ ଭାରତରେ ୨୫ ଲକ୍ଷଟନ କ୍ଷମତାସମ୍ପନ୍ନ ଭିଲାଇ ଲୁହା ଇସ୍ପାତ କାରଖାନାକୁ ମିଶାଇ ୧୨୦ଟିର କାର୍ଯ୍ୟ ଶେଷ ହୋଇ ଆସିଲଣି ।

ଭୂତପୂର୍ବ ଉପନିବେଶର ଲୋକେ ଉପଲବ୍ଧି କରୁଛନ୍ତି ଯେ ଶାନ୍ତି ଅବସ୍ଥାରେ ସେମାନେ ତାଙ୍କର ଜାତୀୟ ଓ ସାମାଜିକ ଲକ୍ଷ୍ୟ ତଥା ହାସଲ କରିପାରିବେ । ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଜାତୀୟ ମୁକ୍ତି ଲାଗି ଲୋକଙ୍କ ସଂଗ୍ରାମ ପାଇଁ ଅନୁକୂଳ ଅବସ୍ଥାମାନ ସୃଷ୍ଟି କରୁଛି । କିନ୍ତୁ ଏହିସବୁ ଅବସ୍ଥା କଣ ? ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଆମ ସମୟର ମୁଖ୍ୟ ସାମ୍ରାଜ୍ୟବାଦୀ ବିରୋଧୀ ଶକ୍ତି—ସମାଜବାଦ ପକ୍ଷରେ ମଙ୍ଗଳଜନକ, ଏହା ସାମ୍ରାଜ୍ୟବାଦର ଅବସ୍ଥାକୁ ଦୁର୍ବଳ କରୁଛି । ପ୍ରଥମତଃ, ଏହା ଦ୍ୱାରା ସମାଜବାଦୀ ଦେଶମାନେ ସ୍ୱାଧୀନତା ଲାଗି ଲଢ଼ୁଥିବା ଦେଶମାନଙ୍କୁ ଅଧିକ ଫଳପ୍ରଦ ସାହାଯ୍ୟ ପ୍ରଦାନ କରିବାରେ ସମର୍ଥ ହେଉଛନ୍ତି । ଦ୍ୱିତୀୟତଃ, ଜାତୀୟ ମୁକ୍ତି ଆନ୍ଦୋଳନ ଲାଗି ଏହା ପ୍ରକୃତ ସୁଯୋଗ ସୃଷ୍ଟି କରୁଛି, ତାକୁ ଦୁର୍ବଳ ଶତ୍ରୁର ସମ୍ମୁଖୀନ କରାଉଛି ଓ ଶକ୍ତିଶାଳୀ ମିତ୍ରର ସମର୍ଥନ ଯୋଗାଉଛି ।

ମୁକ୍ତ ଦେଶମାନେ ଅର୍ଥନୈତିକ ସ୍ୱାଧୀନତା ଦୃଷ୍ଟିରୁ ସେମାନଙ୍କର ଅର୍ଥନୀତିର ବିକାଶ ପାଇଁ ଯଥାସାଧ୍ୟ ଉଦ୍ୟମ ଚଳାଇଛନ୍ତି । ସେମାନେ ଚାହୁଁଛନ୍ତି, ସମସ୍ତ ମଜୁ,

ଶାନ୍ତି ସ୍ଥାୟୀ ଓ ସୁଦୃଢ଼ ହେଉ । ମାତ୍ର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ମାର୍ଗରେ ହିଁ ତାହା ନିଶ୍ଚିତ ହୋଇପାରେ । ଏହି କାରଣରୁ ନୂତନ ସ୍ୱାଧୀନ ଦେଶମାନଙ୍କ ମଧ୍ୟରୁ ଅଧିକାଂଶ ଶାନ୍ତି ପକ୍ଷରେ, ସାମରିକ ମେଣ୍ଟରେ ଯୋଗ ଦେବା ବିରୁଦ୍ଧରେ—ଏ ସବୁ ଏକ ନୂତନ ବିଶ୍ୱଯୁଦ୍ଧ ବିରୁଦ୍ଧରେ ମିଳିତ ସାମୁଖ୍ୟକୁ ବଳିଷ୍ଠ କରୁଛି ଓ ଶାନ୍ତିର ଅଞ୍ଚଳକୁ ପ୍ରସାରିତ କରୁଛି ।

ଔପନିବେଶବାଦୀମାନଙ୍କ ନୀତିସବୁ ବିଫଳ ହୋଇଛି ସତ, ତଥାପି ସାମ୍ରାଜ୍ୟବାଦୀମାନେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଦେଶମାନଙ୍କୁ ପରାଧୀନ କରିବାର ମତଲବ ତ୍ୟାଗ କରି ନାହାନ୍ତି ।

ଏଥିଲାଗି ଔପନିବେଶିକବାଦୀମାନେ ନୂଆ ଓ ପୁରୁଣା ଉଭୟ ଧରଣର ଔପନିବେଶିକ ପ୍ରଣାଳୀ ପ୍ରୟୋଗ କରୁଛନ୍ତି । ପୁରୁଣା ଭାବରେ ବଳପୂର୍ବକ ଔପନିବେଶିକ ଅତ୍ୟାଚାର ଚଳାଇବାର ଆଶ୍ରୟ ନେଇଛନ୍ତି ଏବଂ ନୂଆ ଭାବରେ ଅର୍ଥନୀତି ଦିଗରୁ ଅନୁନ୍ନତ ଦେଶମାନଙ୍କ ଉପରେ ଅପମାନ ଚୁକ୍ତି ଓ ବନ୍ଧନ ରୂପକ "ସାହାଯ୍ୟମାନ" ଲଦି ଦେଇ ସେମାନଙ୍କୁ ସାମରିକ ମେଣ୍ଟ ମଧ୍ୟକୁ ଟାଣୁଛନ୍ତି । ସେମାନଙ୍କ ରାଜ୍ୟରେ ସାମରିକ ଘାଟି ଗଢ଼ି ନୂତନ ଉପାୟମାନ ପ୍ରୟୋଗ କରୁଛନ୍ତି । ଆମେରିକାର ଏକଚାଟିଆ ପୁଞ୍ଜିପତିମାନେ ବ୍ରିଟେନ, ଫ୍ରାନ୍ସ ଓ ଅନ୍ୟଔପନିବେଶବାଦୀମାନଙ୍କର ସ୍ଥାନ ଗ୍ରହଣ କରିବାକୁ ଚେଷ୍ଟା କରୁଛନ୍ତି । ନୂତନ ସ୍ୱାଧୀନ ଦେଶମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିବା ଓ ସାମ୍ରାଜ୍ୟବାଦର ଔପନିବେଶିକ ବ୍ୟବସ୍ଥାର ଅନ୍ତିମ ପତନକୁ ଅଟକାଇବା—ଏହି ଦିଗରେ ହିଁ ଉଦ୍ୟମ କରୁଛନ୍ତି ।

ନିମ୍ନ-ଉନ୍ନତ ଜାତିମାନଙ୍କୁ ପୁଞ୍ଜିବାଦୀ ଦେଶମାନେ କମ୍ ଘନ ଘନ ସାହାଯ୍ୟ ଯୋଗାଉ ନାହାନ୍ତି !

କିନ୍ତୁ କି ପ୍ରକାରର ଏ ସାହାଯ୍ୟ ? ଯୁକ୍ତରାଷ୍ଟ୍ର ଆମେରିକା, ଦକ୍ଷିଣ ଆମେରିକାରେ ତାର "ପ୍ରଗତିର ମିତ୍ରତା" ସମ୍ବନ୍ଧରେ ଭ୍ରମାତ୍ମକ ପ୍ରଚାର ଚଳାଇଛି । କିନ୍ତୁ ଲାଟିନ ଆମେରିକାର ଲୋକେ ଅତିଶୀଘ୍ର ବୁଝିପାରିଛନ୍ତି ଯେ, ଏହି ମିତ୍ରତା ଏକ ନୂତନ ରୂପରେ ଆମେରିକାର ଏକଚାଟିଆ ପୁଞ୍ଜିପତି ଓ ତାଙ୍କର ସଖିକର୍ଣ୍ଣେଇମାନଙ୍କ ପ୍ରଭୁତ୍ୱ ସ୍ଥାପନ ଛଡ଼ା ଅନ୍ୟ କିଛି ନୁହେଁ । ଆମେରିକାର 'ସାହାଯ୍ୟ' ହେଉଛି, ଅସ୍ତ୍ରଶସ୍ତ୍ର କିମ୍ବା କଞ୍ଚା ନ ଦେବା ଟାଉଟି ଦ୍ରବ୍ୟଗୁଡ଼ିକର ଯୋଗାଣ । ଏଭଳି 'ସାହାଯ୍ୟ' ଫଳରେ ଏକଚାଟିଆ ପୁଞ୍ଜିପତିମାନେ ଅଧିକ ଧନୀ ବିଭବଶାଳୀ ହେଉଛନ୍ତି ଆଉ 'ସାହାଯ୍ୟ' ପ୍ରାପ୍ୟ ଦେଶମାନେ ଅଧିକ ଦରିଦ୍ର ହୋଇ ପଡ଼ୁଛନ୍ତି। ବିଦେଶୀ ଆଧିପତ୍ୟର ଶିକାର ହେଉଛନ୍ତି ।



ଆମେରିକା ସାହାଯ୍ୟର ସର୍ତ୍ତ

ଆଜିର ମଧ୍ୟ ଯେଉଁ ଦେଶ ଆପଣାର ନୀତିକୁ ଯୁକ୍ତରାଷ୍ଟ୍ର ଆମେରିକାର ଆକ୍ରମଣାତ୍ମକ ସ୍ୱାର୍ଥର ଅଧୀନସ୍ଥ କରୁଛି, ସେହି ଦେଶକୁ କେବଳ ଏ ସାହାଯ୍ୟ ମିଳୁଛି । ଏହି 'ସାହାଯ୍ୟ'ର ଉଦ୍ଦେଶ୍ୟ ହେଲା, ସାମ୍ରାଜ୍ୟବାଦର ଅବସ୍ଥାକୁ ସୁଦୃଢ଼ କରିବା, ଏକଚ୍ଛଟିଆ ପୁଞ୍ଜିବାଦୀଙ୍କ ଆଧିପତ୍ୟକୁ ବିସ୍ତାରିତ କରିବା, ଏବଂ ଅର୍ଥନୀତିରେ ଅନୁନ୍ନତ ଦେଶମାନଙ୍କୁ ଆକ୍ରମଣାତ୍ମକ ସାମ୍ରାଜ୍ୟବାଦୀ ଫ୍ରଣ୍ଟର ସାମରିକ ଘାଟିରେ ପରିଣତ କରିବା ।

ଏହି ସାମରିକ ମେଣ୍ଟ ଗଠନ କରିବା ଓ ନୂତନ ସ୍ୱାଧୀନ ଦେଶମାନଙ୍କୁ ସେଥିକୁ ସବୁ ଓଟାରିବାର ଉଦ୍ୟମ କରିବା ଦ୍ୱାରା ସାମ୍ରାଜ୍ୟବାଦୀମାନେ ନିଜର ସ୍ୱାର୍ଥପର ଲକ୍ଷ୍ୟ ଅନୁସରଣ କରୁଛନ୍ତି—"ଏସିଆର ଲୋକେ ଏସିଆ ଲୋକଙ୍କ ବିରୁଦ୍ଧରେ ଲଢ଼ନ୍ତୁ,"—ସେମାନେ ନିର୍ଲଜ୍ଜ ଭାବରେ ଏହା ଘୋଷଣା କରୁଛନ୍ତି। ସେମାନେ ଅବଶ୍ୟ ଭଲରୂପେ ଜାଣିଛନ୍ତି ଯେ, ସାମ୍ରାଜ୍ୟବାଦୀମାନେ କେବଳ ଏହି ଯୁଦ୍ଧରୁ ଲାଭ ପାଇବେ। ସେହି କାରଣରୁ ଭାରତ, ବର୍ମା, ଇଣ୍ଡୋନେସିଆ, କାମ୍ବୋଡ଼ିଆ ସିଂହଳ ଓ ଅନ୍ୟ ଦେଶମାନେ ସିଆଟୋ ବା ଦକ୍ଷିଣ ପୂର୍ବ ମେଣ୍ଟରେ ଯୋଗଦେବାକୁ ନାସ୍ତି କରି ଦେଇଛନ୍ତି।

ସମାଜବାଦୀ ଦେଶମାନଙ୍କ ସକ୍ରିୟ ସମର୍ଥନ ସାମ୍ରାଜ୍ୟବାଦ ଓ ଔପନିବେଶିକ ଅତ୍ୟାଚାରର ଅବଶେଷ ବିରୁଦ୍ଧରେ ମୁକ୍ତ ହୋଇ ନ ଥିବା ଉପନିବେଶ ଓ ପରାଧୀନ ଦେଶମାନଙ୍କୁ ସଂଗ୍ରାମରେ ଅନୁପ୍ରାଣିତ ଓ ଉତ୍ସାହିତ କରୁଛି।

ଏସିଆ, ଆଫ୍ରିକାର ୨୯ଟି ଦେଶର ପ୍ରଥମ ସମ୍ମିଳନୀ ୧୯୫୫ରେ ଇଣ୍ଡୋନେସିଆର ବାନ୍ଦୁଙ୍ଗଠାରେ ଅନୁଷ୍ଠିତ ହୋଇଥିଲା। ଏହା ପୂର୍ବ ଭାଗର ଜାତୀୟ ମୁକ୍ତି ଆନ୍ଦୋଳନର ବର୍ଦ୍ଧିଷ୍ଣୁ ସଫଳତାକୁ ଦୃଢ଼ଭାବେ ପ୍ରମାଣିତ କରିଥିଲା। ସମ୍ମିଳନୀର ନିଷ୍ପତ୍ତି ଥିଲା, ସାମ୍ରାଜ୍ୟବାଦର ଔପନିବେଶିକ ବ୍ୟବସ୍ଥା ବିରୁଦ୍ଧରେ ଆଜି ଏସିଆ-ଆଫ୍ରିକା ଲୋକମାନଙ୍କ ଶୋଷଣ ଅତ୍ୟାଚାର ବନ୍ଦ ହେବେ ଉଦ୍ୟତ।

ଲୋକମାନଙ୍କ ଇଚ୍ଛା ଓ ଆକାଂକ୍ଷାକୁ ପ୍ରତିଫଳିତ କରି ସମ୍ମିଳନୀ ଘୋଷଣା କରିଥିଲା, "ଉପନିବେଶବାଦ ଓ ତାର ସମସ୍ତ ପରିପ୍ରକାଶ ଏକ ଦୁର୍ଗ୍ରହ, ଯେତେ ଶୀଘ୍ର ସମ୍ଭବ ଏହାକୁ ଲୋପ କରିବାକୁ ପଡ଼ିବ।"

ଆଫ୍ରୋ-ଏସିଆ ସଂହତି ସମ୍ମିଳନୀ, ଔପନିବେଶିକ ଓ ପରାଧୀନ ଦେଶମାନଙ୍କ ଜୀବନରେ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଘଟଣା ହୋଇଛି। ଯେଉଁ ଜାତିମାନେ ସାମ୍ରାଜ୍ୟବାଦୀ ଅତ୍ୟାଚାରରୁ ମୁକ୍ତ ହୋଇଛନ୍ତି, ଏବେ ମଧ୍ୟ ଯେଉଁମାନେ ଔପନିବେଶିକ ଶୋଷଣ ଅତ୍ୟାଚାର ମଧ୍ୟରେ ପଡ଼ିଛନ୍ତି, ସେହି ସବୁ ଜାତିର ପ୍ରତିନିଧିମାନେ ଏଥିରେ ଅଂଶ ଗ୍ରହଣ କରୁଛନ୍ତି।

ଏହି ସମ୍ମିଳନୀ ସବୁ ରୂପରେ ଓ ସବୁ ପ୍ରକାରରେ ସାମ୍ରାଜ୍ୟବାଦର ପ୍ରକାଶକୁ ନିନ୍ଦା କରୁଛି, ଅବଶିଷ୍ଟ ଉପନିବେଶ ଓ ଅଧିକୃତ ଦେଶମାନଙ୍କ ଲାଗି ପୂର୍ଣ୍ଣ ସ୍ୱାଧୀନତା ଦାବୀ କରୁଛି। ତାହାର ନିର୍ଦ୍ଧାରଣରେ, ସାମ୍ରାଜ୍ୟବାଦୀ ଔପନିବେଶିକ ଅତ୍ୟାଚାର ବିରୁଦ୍ଧରେ ସ୍ୱାଧୀନତା ଲାଗି ସାହାସର ସହିତ ଲଢ଼ୁଥିବା ଏସିଆ, ଆଫ୍ରିକା ଲୋକମାନଙ୍କର ଜାତୀୟ ମୁକ୍ତି ଆନ୍ଦୋଳନର ବିରାଟ ଅଭ୍ୟୁତ୍ଥାନ ପ୍ରତିଫଳିତ ହୋଇଛି।

"ବିଭେଦ ସୃଷ୍ଟି କରି ଶାସନ କର"—ଏହି ସାମ୍ରାଜ୍ୟବାଦୀ ନୀତିର ସମସ୍ତ ଆଘାତ ହୋଇସାରିଛି । ପୂର୍ବର ବିଭେଦଗ୍ରସ୍ତ ଲୋକେ ମୁକ୍ତି ସଂଗ୍ରାମରେ ଅଧିକରୁ ଅଧିକ ଏକଜୁଟ ହେଉଛନ୍ତି—ଏହା ହିଁ ଔପନିବେଶିକବାଦର ଘୃଣ୍ୟ ପଚାଶମାନ ବ୍ୟବସ୍ଥାର ପତନ ଆଣିବ ।

ଲାଟିନ ଆମେରିକାରେ ମଧ୍ୟ ଜାତୀୟ ମୁକ୍ତି ଆନ୍ଦୋଳନର ପ୍ରବାହ ଛୁଟିଛି । ନିଜର ସ୍ୱାଧୀନତା ସପକ୍ଷରେ ଓ ନିଜର ଘରୋଇ ବ୍ୟାପାରରେ ଆମେରିକାର ହସ୍ତକ୍ଷେପ ବିରୁଦ୍ଧରେ ଆମେରିକାର ଏକଚାଟିଆ ପୁଞ୍ଜିପତିଙ୍କ ଦ୍ୱାରା ଜାତୀୟ ସମ୍ପଦର ଲୁଣ୍ଠନ ବିରୁଦ୍ଧରେ ଜୋରଦାର ଲଢ଼େଇ କରିବା ଲାଗି ସେଠାରେ ଜନସାଧାରଣ ଅଧିକରୁ ଅଧିକ ସ୍ୱରରେ ମାତି ଉଠିଛନ୍ତି ।

କ୍ୟୁବାରେ ଲୋକପ୍ରିୟ ଅଭ୍ୟୁତ୍ଥାନ ଫଳରେ, ଆମେରିକା ଏକଚାଟିଆ ପୁଞ୍ଜିପତିଙ୍କ ଦଲାଲ ବାଟିସ୍ତାର କ୍ରୁର ନିଷ୍ଠୁର ଏକଛତ୍ରବାଦୀ ଶାସନ ଧ୍ୱଂସ ପାଇଛି । ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ-ବିରୋଧୀ ଗଣତାନ୍ତ୍ରିକ ବିପ୍ଲବ, ଅତିଶୀଘ୍ର ଏକ ସମାଜବାଦୀ ବିପ୍ଲବରେ ପରିଣତ ହୋଇଛି । ଅନ୍ୟ ଲାଟିନ ଆମେରିକା ଦେଶମାନଙ୍କରେ ଏକଛତ୍ର ଶାସନସବୁ ଟଳମଳ ହେଉଛନ୍ତି ।

ପ୍ରତିକ୍ରିୟାଶୀଳ ଏକଛତ୍ର ଶାସନ ବିରୁଦ୍ଧରେ ଲୋକମାନଙ୍କର କ୍ରୋଧାଗ୍ନି ପ୍ରଜ୍ଜ୍ୱଳିତ ହୋଇ ଉଠିଛି । ଲାଟିନ୍ ଆମେରିକାର ଲୋକମାନେ ଚାହାନ୍ତି ସମତା ଓ ପାରସ୍ପରିକ ସାହାଯ୍ୟର ନୀତି ଭିତ୍ତିରେ ସବୁ ରାଷ୍ଟ୍ର ମଧ୍ୟରେ ରାଜନୈତିକ ଓ ଅର୍ଥନୈତିକ ସମ୍ପର୍କ ପ୍ରତିଷ୍ଠିତ ହେଉ । ସେମାନେ ଚାହାନ୍ତି, ଆମେରିକାର କବଳରୁ ମୁକ୍ତ ହେବେ । ନିଜର ଜାତୀୟ ଶିଳ୍ପର ବିକାଶ ଆଉ ଭୂସଂସ୍କାର କାର୍ଯ୍ୟକାରୀ କରିବେ । ଉତ୍ତର ଆମେରିକାର ଏକଚାଟିଆ ପୁଞ୍ଜିପତିମାନେ ଏହି ଅଞ୍ଚଳକୁ ଦିନେ ସେମାନଙ୍କର ବଂଶଗତ ହସ୍ତମୁଦ ମାଲ୍ହାଲ ବୋଲି ବିଚାର କରୁଥିଲେ । ଏବେ ତାର ଅନ୍ତିମ ସମୟ ଆସିଛି ।

ଉପନିବେଶ ଓ ପରାଧୀନ ଦେଶର ଲୋକେ ଆଜି ଆଉ ରାଜି ନୁହନ୍ତି—ପୂର୍ବ ଭଳି ବଞ୍ଚିବାକୁ ରାଜି ନୁହନ୍ତି—ବିଦେଶୀ ସାମ୍ରାଜ୍ୟବାଦୀମାନଙ୍କର କ୍ରମାଗତ ଅତ୍ୟାଚାର ସହ୍ୟ କରିବାକୁ, ସେମାନେ ତାଙ୍କର ବର୍ଦ୍ଧିଷ୍ଣୁ ସାହସ ଓ ଦୃଢ଼ ମନୋଭାବର ସହ ଲଢ଼ୁଛନ୍ତି—ନିଜର ସ୍ୱାଧୀନତା ଓ ଅଧିକାର ସପକ୍ଷରେ । ଦେଢ଼ଶହ କୋଟି ଲୋକ ଏବେ ଆପଣାକୁ ଔପନିବେଶିକ ଓ ଅର୍ଦ୍ଧ ଔପନିବେଶିକ ପରାଧୀନତାରୁ ମୁକ୍ତ କରି ସାରିଲେଣି । ସାମ୍ରାଜ୍ୟବାଦୀ ଜଘନ୍ୟ ଔପନିବେଶିକ ବ୍ୟବସ୍ଥାର ପତନ, ଏକ ଐତିହାସିକ ଘଟଣା ହୋଇ ଉଠିଲାଣି । ପୃଥିବୀର କୌଣସି ଶକ୍ତି ସେଇ ପ୍ରକ୍ରିୟାର ପଥରୋଧ କରି ନ

ପାରେ । ଗୋଟିଏ ପ୍ରବଚନ ଅନୁସାରେ କହିଲେ, "କାଗଜରେ ନିଆଁକୁ ବାନ୍ଧି ରଖା ଯାଇ ନ ପାରେ ।"

ଇତିହାସର ବକ୍ଷରେ, ଏହି ୨୦ଶ ଶତକ, ସାମ୍ରାଜ୍ୟବାଦୀ ଔପନିବେଶିକ ବ୍ୟବସ୍ଥାର ସମ୍ପୂର୍ଣ୍ଣ ବିଲୋପର ବଷ କେତୋଟି ବୋଲି ଉଦ୍‌ଘୋଷିତ ହେବ ।

ତେବେ ରାଜନୈତିକ ସ୍ୱାଧୀନତା ଲାଭ ସହିତ ଜାତୀୟ ମୁକ୍ତି ବିପ୍ଳବର ଅବସାନ ଘଟେ ନାହିଁ, କିମ୍ବା ତାହା ଅର୍ଥନୈତିକ ସ୍ୱାଧୀନତା ହାସଲ ଦିଗରେ କେତେକ ସଂସ୍କାର ବା କେତୋଟି କାର୍ଯ୍ୟକାରୀ ପଦକ୍ଷେପ ମଧ୍ୟରେ ସୀମାବଦ୍ଧ ରହିଯାଏ । ଯଦି ମୁକ୍ତ ଦେଶମାନଙ୍କର ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ଜୀବନରେ ବିପ୍ଳବ ଗଭୀର ପରିବର୍ତ୍ତନ ନ ଆଣେ, ଯଦି ଜାତୀୟ ଅଭ୍ୟୁଦୟର ଅତି ଜରୁରୀ କର୍ତ୍ତବ୍ୟଗୁଡ଼ିକର ସମାଧାନ ନ ଘଟେ, ତେବେ ମୁକ୍ତି-ବିପ୍ଳବଜନିତ ସମସ୍ତ ଲାଭ ସମସ୍ତ ସାଫଲ୍ୟ ଅସ୍ଥିର ଏବଂ ଦୋଦୁଲ୍ୟମାନ ଅବସ୍ଥାରେ ରହେ ।

ଅର୍ଥନୈତିକ ସ୍ତରେ ପଶ୍ଚାତ୍‌ପଦ ଦେଶରେ ଜାତୀୟ ଗଣତାନ୍ତ୍ରିକ ରାଷ୍ଟ୍ରର ପ୍ରତିଷ୍ଠା, ଲୋକଙ୍କ ପାଇଁ ଏକ ସୁଦୃଢ଼ ପ୍ରଗତିର ମାର୍ଗ ଉନ୍ମୁକ୍ତ କରେ ।

ପୂର୍ଣ୍ଣ ଜାତୀୟ ସ୍ୱାଧୀନତା ଓ ବ୍ୟାପକ ଗଣତନ୍ତ୍ର ସପକ୍ଷରେ ସଂଗ୍ରାମ କରୁଥିବା ଏବଂ ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ, ଗଣତାନ୍ତ୍ରିକ ବିପ୍ଳବକୁ ଶେଷ ପର୍ଯ୍ୟନ୍ତ କାର୍ଯ୍ୟକାରୀ କରୁଥିବା ସମସ୍ତ ପ୍ରଗତିଶୀଳ ଦେଶପ୍ରେମୀ ଶକ୍ତିର ମିତ୍ରତାକୁ ନେଇ ରାଜନୈତିକ ସ୍ତରେ—ଜାତୀୟ ଗଣତନ୍ତ୍ର ବା ଜାତୀୟ ଗଣତାନ୍ତ୍ରିକ ରାଷ୍ଟ୍ର ଗଠିତ ହୁଏ ।

ଆର୍ଥନୀତିକ କ୍ଷେତ୍ରରେ, ଜାତୀୟ ଗଣତାନ୍ତ୍ରିକ ରାଷ୍ଟ୍ର ଜାତୀୟ ଅର୍ଥନୀତିର ପ୍ରତିଷ୍ଠାକୁ ସୁନିଶ୍ଚିତ କରେ, ବିଦେଶୀ ଏକଚାଟିଆ ପୁଞ୍ଜିର ଅନୁପ୍ରବେଶକୁ ବିରୋଧ କରେ ଏବଂ ଦେଶକୁ ଶିଳ୍ପୋନ୍ନତ କରିବା ଅଭିଯାନ ଦିଗରେ ଶ୍ରମଜୀବୀ ଜନସାଧାରଣଙ୍କୁ ସମବେତ କରେ । ସେହି ରାଷ୍ଟ୍ରର ପ୍ରାଥମିକ ଆର୍ଥନୀତିକ ଓ ସାମାଜିକ କର୍ତ୍ତବ୍ୟ ହେଲା, ଉତ୍ପାଦିକା ଶକ୍ତିର ଗତିକୁ ଅବରୋଧ କରୁଥିବା ମଧ୍ୟଯୁଗୀୟ ଅବଶେଷକୁ ଲୋପ କରିବା ଲାଗି କୃଷି ବିପ୍ଳବ କାର୍ଯ୍ୟକାରୀ କରିବା ଓ ଖାଦ୍ୟ ସମସ୍ୟାର ସମାଧାନ ଆଣିବା ।

ଔପନିବେଶିକବାଦରୁ ମୁକ୍ତ ହୋଇଥିବା ଲୋକମାନଙ୍କ ଆଗରେ ଜ୍ୱଳନ୍ତ ପ୍ରଶ୍ନ ହେଉଛି— ସେମାନେ ବିକାଶ ପଥରେ ପୁଞ୍ଜିବାଦ ନା ଅପୁଞ୍ଜିବାଦ ମାର୍ଗ ଅନୁସରଣ କରିବେ ?

ପୁଞ୍ଜିବାଦ ସେମାନଙ୍କୁ ଦେଇପାରେ କଣ ?

ପୁଞ୍ଜିବାଦ ହେଉଛି, ଦୁଃଖ ନିର୍ଯ୍ୟାତନର ମାର୍ଗ । ତାହା ଦୁର୍ବଳ ଦେଶମାନଙ୍କୁ ଆର୍ଥନୀତିକ ପଶ୍ଚାଦ୍‌ପଦତା, ଅଧିକ ସାମାଜିକ ଅସମତା ଓ ଦାରିଦ୍ର୍ୟ ମଧ୍ୟରେ ନିକ୍ଷେପ କରେ । ଶ୍ରମିକମାନେ ପୁଞ୍ଜିପତିଙ୍କ ଲାଗି ହାଡ଼ଭଙ୍ଗା ପାଣ୍ଡୋଶା ପରିଶ୍ରମ କରନ୍ତି । ବେକାର ସଂଖ୍ୟାର ବୃଦ୍ଧି—ଏହି ଭବିଷ୍ୟତର ସମ୍ମୁଖୀନ ହୁଅନ୍ତି । ପୁଞ୍ଜିବାଦ, କୃଷକମାନଙ୍କୁ ଆହୁରି ଅଧିକ ନିଃସ୍ୱ ସର୍ବସ୍ୱାନ୍ତ କରେ । ପୁଞ୍ଜିବାଦରେ, ସହରର ପେଟି-ବୁର୍ଜୁଆମାନେ ଅର୍ଥାତ୍ କାରିଗର, ହସ୍ତଶିଳ୍ପୀ, ଛୋଟ ଛୋଟ ବଣିକ ବେପାରୀ ପ୍ରଭୃତି ବୃହତ ପୁଞ୍ଜିପତିଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା ସଂଗ୍ରାମରେ ଅନିବାର୍ଯ୍ୟ ଭାବେ ହାରନ୍ତି । ଶିକ୍ଷା ସଂସ୍କୃତିର ସୁବିଧା ସୁଯୋଗ ଜନସାଧାରଣଙ୍କ ପାଖରୁ ବହୁ ଦୂରରେ ରହେ ।

ସମାଜବାଦ ଜନସାଧାରଣଙ୍କୁ ଦିଏ କଣ ?

ସମାଜବାଦ ହେଉଛି, ସୁଖସୁବିଧା ଆନନ୍ଦର ମାର୍ଗ । ତାହା ଅର୍ଥନୀତି ଓ ସଂସ୍କୃତିର ଦ୍ରୁତ ଅଭ୍ୟୁତ୍ଥାନକୁ ସୁନିଶ୍ଚିତ କରେ । ଯୋଜନାବଦ୍ଧ ସମାଜବାଦୀ ଅର୍ଥନୀତି, ପ୍ରଗତି ଓ ସମୃଦ୍ଧିର ଗ୍ୟାରେଣ୍ଟି ବା ନିଶ୍ଚୟତା ଦିଏ; ସମାଜବାଦ, ସାମାଜିକ ଅନିଶ୍ଚୟତା, ବେକାରୀ ଓ ମନୁଷ୍ୟ ଦ୍ୱାରା ମନୁଷ୍ୟର ଶୋଷଣକୁ ଲୋପ କରେ । ସମାଜବାଦ, ଚାଷୀକୁ ଜମି ପ୍ରଦାନ କରେ, ତାକୁ ତାର ଗୃହସଂସାର ଚଳାଣରେ ସାହାଯ୍ୟ କରେ, ଏବଂ ଆଧୁନିକ କୃଷି ପ୍ରଣାଳୀ ଆଉ ବୈଜ୍ଞାନିକ ସଂଗଠନ କୁଶଳୀ କାରିଗରୀକୁ (know how) ତା'ହାତରେ ଅର୍ପଣ କରେ; ଶ୍ରମିକ ଶ୍ରେଣୀ ଓ ସମସ୍ତ ଶ୍ରମଜୀବୀ ଲୋକମାନଙ୍କ ସକାଶେ ଅତି ଉନ୍ନତ ଭୌତିକ ଓ ସାଂସ୍କୃତିକ ବ୍ୟବସ୍ଥା ନିଶ୍ଚିତ ଭାବେ ଯୋଗାଇ ଦିଏ; ଜନ ସାଧାରଣଙ୍କୁ ଅଜ୍ଞାନ ଅନ୍ଧକାର ମଧ୍ୟରୁ ବାହାର କରିଆଣେ ଓ ତାଙ୍କୁ ଆଧୁନିକ ସଂସ୍କୃତିର ଅବଦାନ ଯୋଗାଏ । ସମାଜବାଦ, ଜନ ସାଧାରଣଙ୍କ ସୁଖ ସୁବିଧା ଦିଗରେ ସୃଜନଶୀଳ କାର୍ଯ୍ୟଲାଗି ବ୍ୟାପକ ବୌଦ୍ଧିକ ଦିଗ୍‌ବଳୟ ଉନ୍ମୁକ୍ତ କରିଦିଏ ।

ଲୋକମାନେ କେଉଁ ପଥ ଗ୍ରହଣ କରିବେ, ତାହା ସେମାନଙ୍କୁ ନିଜକୁ ବାଛି ନେବାକୁ ହେବ । ପୃଥିବୀରେ ଆଜିର ଶକ୍ତିମାନଙ୍କର ନିର୍ଦ୍ଦିଷ୍ଟ ଭାରସାମ୍ୟ ଅବସ୍ଥାରେ, ସମାଜବାଦୀ ଦେଶମାନଙ୍କର ସକ୍ରିୟ ଓ ଫଳପ୍ରଦ ସମର୍ଥନରେ ପୂର୍ବତନ ଉପନିବେଶର ଲୋକମାନେ ସେମାନଙ୍କର ସର୍ବଶ୍ରେଷ୍ଠ ସ୍ୱାର୍ଥ ଅନୁଯାୟୀ ସମସ୍ୟାର ସମାଧାନ କରିବା ଅବସ୍ଥାରେ ଅଛନ୍ତି ।

ପୁଞ୍ଜିପତି ଓ ଧନପୁଞ୍ଜି ମାର୍ଗର ନିର୍ବାଚନ, ଶ୍ରେଣୀ ଶକ୍ତିମାନଙ୍କର ପାରସ୍ପରିକ ସମ୍ବନ୍ଧ ଉପରେ ନିର୍ଭର କରୁଛି । ଶ୍ରମିକଶ୍ରେଣୀର ସଂଗ୍ରାମ, ବ୍ୟାପକ ଜନସାଧାରଣଙ୍କ ସଂଗ୍ରାମ ଓ

ସାଧାରଣ ଗଣତାନ୍ତ୍ରିକ ଆନ୍ଦୋଳନ ଦ୍ୱାରା ଅଣ-ପୁଞ୍ଜିପତି ମାର୍ଗ ସୃଷ୍ଟି କରାଯାଇ ପାରିବ । ତାହା ହିଁ ଜାତିର ସର୍ବାଧିକ ସଂଖ୍ୟକ ଲୋକଙ୍କର ସ୍ୱାର୍ଥ ହେବ ।

ଶ୍ରମିକଶ୍ରେଣୀ, ଜାତୀୟ ମୁକ୍ତି ବିପ୍ଳବକୁ ଶେଷ ପର୍ଯ୍ୟନ୍ତ କାର୍ଯ୍ୟକାରୀ କରିବା ଲାଗି ଲଢ଼େଇ କରେ, ଜାତୀୟ ସ୍ୱାର୍ଥ ଓ ସାମାଜିକ ପ୍ରଗତିର ଉନ୍ନତ ଅଟେ । ଶିଳ୍ପ ବିକାଶ, ଶ୍ରମିକଶ୍ରେଣୀର ସଂଖ୍ୟା ବୃଦ୍ଧି କରେ, ସାମାଜିକ-ରାଜନୈତିକ ଜୀବନରେ ତାର ଭୂମିକା ସେହି ଅନୁସାରେ ବୃଦ୍ଧି ପାଏ ।

କୃଷକମାନେ, ଶ୍ରମିକ ଶ୍ରେଣୀର ସ୍ୱାଭାବିକ ଓ ସବୁଠାରୁ ବିଶ୍ୱାସଯୋଗ୍ୟ ମିତ୍ର ମୌଳିକ ଗଣତାନ୍ତ୍ରିକ ପରିବର୍ତ୍ତନଗୁଡ଼ିକୁ କାର୍ଯ୍ୟକାରୀ ଭାବେ ସଂପାଦନ କରିବା ଲାଗି ଓ ଅର୍ଥନୈତିକ ସାମାଜିକ ଅଗ୍ରଗତି ଲାଗି ଶ୍ରମିକଶ୍ରେଣୀ ଓ କୃଷକମାନଙ୍କ ମଧ୍ୟରେ ପ୍ରଗାଢ଼ ମିତ୍ରତା ଏକାନ୍ତ ଆବଶ୍ୟକ । ଏହି ମିତ୍ରତା ଶ୍ରମିକଶ୍ରେଣୀ, କୃଷକ, ଜାତୀୟ ବୁର୍ଜୁଆ ଓ ଗଣତାନ୍ତ୍ରିକ ବୁଦ୍ଧିଜୀବୀମାନଙ୍କୁ ଏକଜୁଟ କରି ଏକ ବ୍ୟାପକ ଜାତୀୟ ସାମ୍ମୁଖ୍ୟର ମୂଳ ପ୍ରାଣ କେନ୍ଦ୍ର ରୂପେ ପ୍ରତିଷ୍ଠିତ ହେବା ଉଚିତ ।

ଜାତୀୟ ବୁର୍ଜୁଆର ପ୍ରକୃତି ଦ୍ୱିବିଧ । ଜାତୀୟ ବୁର୍ଜୁଆମାନଙ୍କ ମଧ୍ୟରୁ କାରଖାନା ମାଲିକ ବଣିକ ଇତ୍ୟାଦି ଯେଉଁ ଅଂଶ ସାମ୍ରାଜ୍ୟବାଦୀ ଗୋଷ୍ଠୀମାନଙ୍କ ସହିତ ସଂଯୁକ୍ତ ନୁହନ୍ତି, ସେହିଅଂଶ ସାମ୍ରାଜ୍ୟବାଦବିରୋଧୀ ସାମନ୍ତବାଦ-ବିରୋଧୀ ବିପ୍ଳବର ମୌଳିକ କର୍ତ୍ତବ୍ୟ ସଂପାଦନ କରିବାରେ ଆଗ୍ରହୀ ତେଣୁ କେତେକ ଅବସ୍ଥାରେ ଜାତୀୟ ବୁର୍ଜୁଆମାନେ ଏକ ପ୍ରଗତିଶୀଳ ଭୂମିକା ଗ୍ରହଣ କରି ପାରନ୍ତି ଓ ଜାତୀୟ ସମସ୍ୟାମାନର ସମାଧାନରେ ଭାଗ ନେଇ ପାରନ୍ତି ।

ତେବେ ଏକ ଦେଶରେ ଶ୍ରମଜୀବୀ ଲୋକ ଓ ସମ୍ପତ୍ତିବାନ୍ ଲୋକଙ୍କ ମଧ୍ୟରେ ବିରୋଧିତା ଓ ଶ୍ରେଣୀ ସଂଗ୍ରାମର ବ୍ୟାପକ ପ୍ରବଳତା ଯୋଗୁଁ ଜାତୀୟ ବୁର୍ଜୁଆମାନଙ୍କ ପକ୍ଷରେ ସାମ୍ରାଜ୍ୟବାଦ ଓ ଆଭ୍ୟନ୍ତରୀଣ ପ୍ରତିକ୍ରିୟା ଶକ୍ତିମାନଙ୍କ ସହିତ ମିଳିତ ହେବାର ପ୍ରବୃତ୍ତି ଅଧିକରୁ ଅଧିକ ବୃଦ୍ଧି ପାଏ । ବୁର୍ଜୁଆମାନେ ସାମ୍ରାଜ୍ୟବାଦ ଓ ଘର ଭିତରର ପ୍ରତିକ୍ରିୟା ଶକ୍ତିମାନଙ୍କ ସହିତ ମିଳିତ ହେବା ଦିଗରୁ ଅଧିକରୁ ଅଧିକ ଢଳନ୍ତି ।

ସେହି କାରଣରୁ ଜାତୀୟ ବୁର୍ଜୁଆମାନଙ୍କ ସହିତ ମେଣ୍ଟ ବାନ୍ଧିଲା ବେଳେ ଶ୍ରମିକଶ୍ରେଣୀ ସାମାଜିକ ବିକାଶର ପ୍ରତି ଦୃଷ୍ଟି ନ ହରାଇବା ଉଚିତ । ସାମ୍ରାଜ୍ୟବାଦ-ବିରୋଧୀ ଓ ସାମନ୍ତବାଦ-ବିରୋଧୀ ସଂଗ୍ରାମରେ ଜାତୀୟ ବୁର୍ଜୁଆମାନଙ୍କ ଅଂଶ ଗ୍ରହଣର ସୀମା ଶ୍ରମିକଶ୍ରେଣୀର ବୈପ୍ଳବିକ ଚେତନା ଓ ସଂଗଠନ, ଆଉ କୃଷକମାନଙ୍କ ସହିତ ଶ୍ରମିକଶ୍ରେଣୀର ମିତ୍ରତାର ଶକ୍ତି ଉପରେ ବହୁ ପରିମାଣରେ ନିର୍ଭର କରେ ।

ଅନ୍ତର୍ଜାତୀୟ ଶ୍ରମିକଶ୍ରେଣୀ ଓ ବିଶ୍ୱ ସମାଜବାଦୀ ବ୍ୟବସ୍ଥା ଜାତୀୟ ସ୍ୱାଧୀନତା ଲାଗି ଲଢ଼ୁଥିବା ଲୋକମାନଙ୍କୁ କ୍ରମାଗତଭାବେ ସର୍ବମୁଖୀ ସମସ୍ତ ପ୍ରକାର ସମର୍ଥନ ଦେବା ଉଚିତ ।

କମ୍ୟୁନିଷ୍ଟ ଓ ଓ୍ୱାର୍କରସ୍ ପାର୍ଟି ସବୁ ଜାତୀୟ ସ୍ୱାଧୀନତାର ସବୁଠାରୁ ବଳି ଦୃଢ଼ ଓ ଅଟଳ ସୈନିକ, ଜାତୀୟ ମୁକ୍ତି ବିପ୍ଳବକୁ ଶେଷ ପର୍ଯ୍ୟନ୍ତ ନେବାରେ, ଏବଂ ସାମାଜିକ ପ୍ରଗତି ଓ ସମାଜବାଦ ଲାଗି ଏକ ଜାତୀୟ ଗଣତାନ୍ତ୍ରିକ ରାଷ୍ଟ୍ର ପ୍ରତିଷ୍ଠା କରିବାରେ ସେମାନେ କୌଣସି ଉଦ୍ୟମ ବା ପ୍ରଚେଷ୍ଟାକୁ ବାଦ ଦିଅନ୍ତି ନାହିଁ ।

କମ୍ୟୁନିଷ୍ଟମାନଙ୍କର ଲକ୍ଷ୍ୟ, ଜାତିର ସର୍ବୋଚ୍ଚ ସ୍ୱାର୍ଥର ପୂର୍ଣ୍ଣ ଅନୁରୂପ—ସେହି ସ୍ୱାର୍ଥସହିତ ସମଛନ୍ଦରେ ଗତିକରେ ।

## ଶ୍ରମିକଶ୍ରେଣୀର ବୈପ୍ଳବିକ ଆନ୍ଦୋଳନ

ଆମ ସମୟର ସବୁଠାରୁ ସୁଦୃଢ଼ ନିଷ୍ଠାପର ବୈପ୍ଳବିକ ଶ୍ରେଣୀ ହେଉଛି ଶ୍ରମିକଶ୍ରେଣୀ, ଏହାହିଁ ଏକମାତ୍ର ଶକ୍ତି, ଯିଏ କି ସମାଜବାଦୀ ମାର୍ଗରେ ପୃଥିବୀକୁ ପରିବର୍ତ୍ତନ କରିବା ଦିଗରେ ଶେଷ ପର୍ଯ୍ୟନ୍ତ ନେତୃତ୍ୱ ଦେବାକୁ, ନିଷ୍ଠାର ସହିତ ସେହି ମାର୍ଗର ଅନୁସରଣରେ ଅଗ୍ରସର ହେବାକୁ ସମର୍ଥ ।

ପୁଞ୍ଜିବାଦର ସାଧାରଣ ସଂକଟ ଉପରେ ବର୍ତ୍ତମାନ ଅବସ୍ଥାର ଏକ ବିଶେଷରୂପ ହେଉଛି—ବୁର୍ଜୁଆ ସମାଜରେ, ଏକଚାଟିଆ ପୁଞ୍ଜିପତି ଓ ମେହନତକାରୀ ଜନସାଧାରଣଙ୍କ ମଧ୍ୟରେ ଶ୍ରେଣୀ ବିରୋଧିତା ଅତ୍ୟନ୍ତ ତୀବ୍ର ଓ ପ୍ରବଳ ହୋଇ ଉଠୁଛି ସମାଜବାଦର ବିଜୟକୁ ସୁନିଶ୍ଚିତ କରୁଥିବା ନିର୍ଦ୍ଦିଷ୍ଟ ଶକ୍ତିର ସୃଷ୍ଟି ହେଉଛି, ସେ ଶକ୍ତି ପୁଞ୍ଜିବାଦର ଗର୍ଭରେ ବୃଦ୍ଧି ପାଉଛି, ଶକ୍ତ ଓ ଶାଣିତ ହେଉଛି ।

ଅନ୍ତର୍ଜାତୀୟ ବୈପ୍ଳବିକ ଶ୍ରମିକ ଆନ୍ଦୋଳନ ସାମ୍ରାଜ୍ୟବାଦ ବିରୁଦ୍ଧରେ, ଶ୍ରମିକଶ୍ରେଣୀ ମଧ୍ୟରେ ଥିବା ଦଲାଲମାନଙ୍କ ବିରୁଦ୍ଧରେ ସଂଗ୍ରାମ ଚଲାଇ ସେହି ସଂଗ୍ରାମ ଭିତରେ ବିପୁଳ ଅଭିଜ୍ଞତା ଅର୍ଜନ କରିଛି । ତାହା ଭାବାଦର୍ଶର କ୍ଷେତ୍ରରେ ପରିପକ୍ୱ । ବିରାଟ ସଂଗଠନୀ ଶକ୍ତିର, ବିପୁଳ ସଂଗ୍ରାମୀ ଭାବର ଅଧିକାରୀ ।

ବୁର୍ଜୁଆ ଓ ଜନସାଧାରଣଙ୍କ ମଧ୍ୟରେ ବିରୋଧିତାର ଉଗ୍ରକଟତା, ବ୍ୟାପକ ଶ୍ରେଣୀ ସଂଗ୍ରାମ ଓ ଶ୍ରମିକଶ୍ରେଣୀର ବର୍ଦ୍ଧିଷ୍ଣୁ ଚେତନା ଓ ସଂଗଠନ ମାଧ୍ୟମରେ ପ୍ରକାଶ ପାଏ । କମ୍ୟୁନିଷ୍ଟ ଓ ଓ୍ୱାର୍କରସ୍ ପାର୍ଟିଗୁଡ଼ିକର ମାନସମ୍ମାନ ଶ୍ରମଜୀବୀ ଲୋକମାନଙ୍କ ଭିତରେ ବୃଦ୍ଧି ପାଉଛି । ଟ୍ରେଡ ୟୁନିଅନର ଭୂମିକା ମଧ୍ୟ ପ୍ରସାର ଲାଭ କରୁଛି ।



ଶ୍ରମିକଶ୍ରେଣୀ କର୍ତ୍ତୃକ ଶୋଷଣର ଶୃଙ୍ଖଳ ଛିଡ଼ିବା ବିଶ୍ୱ-ମୁକ୍ତିର ପ୍ରସ୍ତାବ ଏକ ପ୍ରାଚୀର ଚିତ୍ର

ଶ୍ରମଜୀବୀ ଲୋକେ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କ ଆକ୍ରମଣକୁ ସାମରିକୀକରଣ ନୀତି ଓ ପରମାଣୁ ଯୁଦ୍ଧର ପ୍ରସ୍ତୁତିକୁ ପ୍ରତିରୋଧ କରୁଛନ୍ତି । ଅଧିକରୁ ଅଧିକ ଆତଙ୍କ-ବାଦପୂର୍ଣ୍ଣ ଦମନ ଓ ଦଳନ ସତ୍ତ୍ୱେ ପୁଞ୍ଜିବାଦୀ ଦେଶର ଶ୍ରମିକଶ୍ରେଣୀ ଓ ଶ୍ରମଜୀବୀ ଲୋକେ ସେମାନଙ୍କର ଗଣତାନ୍ତ୍ରିକ ସୁବିଧା ସୁଯୋଗ ଲାଗି ଅଧିକ ଶୋଷଣ ବିରୁଦ୍ଧରେ ଶ୍ରମ ଅବସ୍ଥାର ଅଧିକ ଶୋଚନୀୟ ହେବା ବିରୁଦ୍ଧରେ ଏବଂ ଜୀବନଧାରଣ-ମାନ ହ୍ରାସ ବିରୁଦ୍ଧରେ—ସଂଗ୍ରାମ ଚଳାଇଛନ୍ତି । ଶ୍ରମିକ ଓ କୃଷକମାନେ ଆପେ ଆପେ ଉପଲବ୍ଧି କରୁଛନ୍ତି ପୁଞ୍ଜିବାଦ ଅଧୀନରେ ସେଇମାନେ ଧନ ଓ କ୍ଷମତାର ଅଧିକାରୀ, ସେମାନଙ୍କ ଲାଗି କେବଳ ସ୍ୱାଧୀନତା ଅଛି । ଯୁଦ୍ଧ ପର ପୁଞ୍ଜିବାଦ ଏକ "ପ୍ରାଚୁର୍ଯ୍ୟମୟ ସମାଜରେ" ପରିଣତ ହୋଇଛି—ସଂଶୋଧନବାଦୀ ଓ ବୁର୍ଜୁଆ ପ୍ରଚାରକଙ୍କ ଦ୍ୱାରା ପ୍ରଚାରିତ ଏହି କପୋଳକଳ୍ପିତ କାହାଣୀ ପାଣି ଫୋଟକା ପରି ଫାଟି ଯାଉଛି ।

ଏହା ଜଣାଶୁଣା ଯେ ଶ୍ରମିକମାନେ ଏକଚାଟିଆ ପୁଞ୍ଜିପତିଙ୍କ ଆକ୍ରମଣକୁ ଧର୍ମଘଟ ଦ୍ୱାରା ପ୍ରତିଆକ୍ରମଣ କରନ୍ତି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସେମାନଙ୍କର ଏହି ପ୍ରତି-ଆକ୍ରମଣର ବ୍ୟାପକତା ବହୁଗୁଣ ବଢ଼ି ଯାଇଥିଲା । ତେଣୁ ୧୯୩୦ ରୁ ୧୯୩୯

ଏହି ଦଶ ବର୍ଷ ମଧ୍ୟରେ ଏଗାରଟି ଅଗ୍ରଣୀ ପୁଞ୍ଜିବାଦୀ ଦେଶରେ ୭ କୋଟି ୧୦ ଲକ୍ଷ ଧର୍ମଘଟକାରୀଙ୍କର ପ୍ରକାଶ ଘଟିଥିଲା । କିନ୍ତୁ ୧୯୭୧ରେ କେବଳ ୬ କୋଟିରୁ ଅଧିକ ଲୋକ ପୁଞ୍ଜିବାଦୀ ଦୁନିଆରେ ଧର୍ମଘଟରେ ଯୋଗ ଦେଇଥିଲେ ।

ଧର୍ମଘଟ ଆନ୍ଦୋଳନ ଅଧିକ ପ୍ରସାରିତ ଓ ସଂଗଠିତ ହୋଇ ଉଠିଛି । ଅଧିକ ଦରମା, ଶ୍ରମ ସମୟର ହ୍ରାସ,କମ୍ ଟିକସ ଭଳି ଆର୍ଥନୀତିକ ଦାବୀ ସଙ୍ଗେ ସଙ୍ଗେ ଶ୍ରମିକମାନେ ଗଣତାନ୍ତ୍ରିକ ସ୍ୱାଧୀନତା ଓ ରାଜନୈତିକ ଅଧିକାରର ପ୍ରସାର ସକାଶେ ଦାବୀ କରୁଛନ୍ତି । ସେମାନେ ଅସ୍ତ୍ର ପ୍ରତିଦ୍ୱନ୍ଦ୍ୱିତାକୁ ବିରୋଧ କରୁଛନ୍ତି ଓ ଆନ୍ତର୍ଜାତିକ ସମସ୍ୟା ସବୁର ଶାନ୍ତିପୂର୍ଣ୍ଣ ସମାଧାନ ଲାଗି ଡାକ ଦେଉଛନ୍ତି । କୃଷକ ଜନସାଧାରଣ ଓ ଅନ୍ୟାନ୍ୟ ଶ୍ରମଜୀବୀ ସଂପ୍ରଦାୟ ଏହି ସଂଗ୍ରାମରେ ଶ୍ରମିକମାନଙ୍କ ସହିତ ଯୋଗ ମିଶୁଛନ୍ତି ।

ଶ୍ରମିକଶ୍ରେଣୀର ଆନ୍ଦୋଳନ ଲାଗି ଅବସ୍ଥା ଆଜି ପୂର୍ବାପେକ୍ଷା ଅଧିକ ଅନୁକୂଳ । ସୋଭିଏତ୍ ଇଉନିଅନ ଓ ଅନ୍ୟ ସମାଜବାଦୀ ଦେଶମାନଙ୍କର କୃତିତ୍ୱ, ବିଶ୍ୱ ପୁଞ୍ଜିବାଦର ସାଧାରଣ ସଂକଟର ଉଗ୍ରକଟତା, ଓ ଜନସାଧାରଣଙ୍କ ମଧ୍ୟରେ କମ୍ୟୁନିଷ୍ଟ ପାର୍ଟିର ବର୍ଦ୍ଧିଷ୍ଣୁ ପ୍ରଭାବ, ଶ୍ରମଜୀବୀ ଲୋକମାନଙ୍କ ସ୍ୱାର୍ଥ ଲାଗି ଶ୍ରେଣୀ-ସଂଗ୍ରାମକୁ ଜୋରଦାର କରିବା ଦିଗରେ ଅନୁକୂଳ ଅବସ୍ଥା ସୃଷ୍ଟି କରିଛି ।

ଶ୍ରମିକଶ୍ରେଣୀର ମୁଖ୍ୟ ଶତ୍ରୁ ହେଉଛନ୍ତି—ଏକଚାଟିଆ ପୁଞ୍ଜିପତି । ତେଣୁ ଶ୍ରମିକଶ୍ରେଣୀର ମୁଖ୍ୟ ଆଘାତ ସେମାନଙ୍କ ପ୍ରତି ଉଦ୍ଦିଷ୍ଟ ।

ସର୍ବହରାଶ୍ରେଣୀକୁ କେବଳ ବିରୋଧ କରୁନାହାନ୍ତି ବ୍ୟକ୍ତିବିଶେଷ ପୁଞ୍ଜିପତି କେତେକ, ବିରୋଧ କରୁଛନ୍ତି,ଶକ୍ତିଶାଳୀ ପୁଞ୍ଜିବାଦୀ ମେଣ୍ଟ ଓ ଜମାଏତ ସବୁ—ବିରୋଧ କରୁଛନ୍ତି ବୁର୍ଜୁଆ ରାଷ୍ଟ୍ରର ସମସ୍ତ କ୍ଷମତା ହାତରେ ଧରି, ନିଜର କବଳରେ ରଖି ।—ଏକଚାଟିଆ ପୁଞ୍ଜିପତିଙ୍କ ଶାସନ, ଶ୍ରମିକଶ୍ରେଣୀକୁ ଦୁଃଖ ଦାରିଦ୍ର୍ୟ, ବେକାରି ଓ ଶୋଷଣ ମଧ୍ୟରେ ନିକ୍ଷେପ କରିଛି, ଶ୍ରମିକମାନଙ୍କୁ ଗଣତାନ୍ତ୍ରିକ ଅଧିକାରରୁ ବଞ୍ଚିତ କରିଛି ।

ଏକଚାଟିଆ ପୁଞ୍ଜିପତିମାନେ କୃଷକମାନଙ୍କର ମଧ୍ୟ ପ୍ରଧାନ ଶତ୍ରୁ । କୃଷିରେ ପ୍ରଭୂତ ବିସ୍ତାର କରି ସେହିମାନେ ହିଁ କେତେ କୋଟି କୃଷକଙ୍କୁ ନିଃସ୍ୱ ସର୍ବସ୍ୱାନ୍ତ କରନ୍ତି । ସବୁ ଜମି ଛାଡ଼ି ଦେବାକୁ କୃଷକମାନଙ୍କୁ ବାଧ୍ୟ କରନ୍ତି । କେବଳ ଅତି କଠିନ ଅବସ୍ଥା ଭିତରେ ଦୁଃଖ ଦାରିଦ୍ର୍ୟ ଓ ଅତ୍ୟଧିକ ପରିଶ୍ରମ ଭିତରେ ହିଁ ଶ୍ରେଷ୍ଠ ଶ୍ରେଷ୍ଠ କୃଷକ ବଞ୍ଚି ରହେ— ବର୍ଦ୍ଧିଷ୍ଣୁ କରଟିକସ ଓ ଋଣଭାରରେ ପେଷିହୋଇ କୃଷକମାନେ ନାକାର ଛାଡ଼ନ୍ତି । କୃଷିସଂକଟ କ୍ରମାଗତ ଭାବେ ଗ୍ରାମାଞ୍ଚଳମାନଙ୍କୁ ନିଃଶେଷ କରି ସର୍ବସ୍ୱାନ୍ତ କରିଦିଏ । ଉପନିବେଶ ଓ ପରାଧୀନ ଦେଶମାନଙ୍କରେ କୃଷକମାନଙ୍କ ଦାରିଦ୍ର୍ୟ ଓ ନିର୍ଯ୍ୟାତନା ବିଶେଷ ଭାବରେ ପ୍ରବଳ ହୁଏ ।

ଏକଚ୍ଛଟିଆ ପୁଞ୍ଜିପତିମାନେ ଗାଉଁର ଓ ସହରର ଅନ୍ୟାନ୍ୟ ସମ୍ପତ୍ତି-ମାଲିକଙ୍କୁ ମଧ୍ୟ ସର୍ବସ୍ୱାନ୍ତ କରନ୍ତି ।

ଏକଚ୍ଛଟିଆ ପୁଞ୍ଜିପତିମାନଙ୍କର ଶୋଷଣର କଠୋର ଶୃଙ୍ଖଳ, ସବୁ ସଂପ୍ରଦାୟର ଲୋକମାନଙ୍କ ପକ୍ଷରେ ଅଧିକରୁ ଅଧିକ ଅସହ୍ୟ ହୋଇପଡ଼େ । ମୁଷ୍ଟିମେୟ ଏକଚ୍ଛଟିଆ ପୁଞ୍ଜିପତି ଓ ଜାତିର ଅବଶିଷ୍ଟ ଲୋକମାନଙ୍କ ମଧ୍ୟରେ ବିରୋଧିତା ବୃଦ୍ଧି ପାଏ । ଏଥିପାଇଁ ଶ୍ରମିକ, କୃଷୀ, ବୁଦ୍ଧିଜୀବୀ ଓ ସହରର ପେଟି-ବୁର୍ଜୁଆ, ମଧ୍ୟବିତ୍ତ ଶ୍ରେଣୀର ସମସ୍ତ, ଏକଚ୍ଛଟିଆ ପୁଞ୍ଜିପତିମାନଙ୍କ ପ୍ରଭୁତ୍ୱ ଲୋପ କରିବାରେ ଆଗ୍ରହୀ ହୋଇଉଠନ୍ତି । ଏହା ଫଳରେ, ଏକଚ୍ଛଟିଆ ପୁଞ୍ଜିପତିମାନଙ୍କୁ ବିରୋଧ କରୁଥିବା ସମସ୍ତ ପ୍ରକାର ଗଣତାନ୍ତ୍ରିକ ଆନ୍ଦୋଳନର ସ୍ରୋତ ଏକମୁଖୀ ହୋଇ ଏକତ୍ର ମିଳିତ ହେବାକୁ ଚେଷ୍ଟା ଆଉ ଉଦ୍ୟମ ଏବଂ ଏକଚ୍ଛଟିଆ ପୁଞ୍ଜିବାଦବିରୋଧୀ ପ୍ରବାହର ସମ୍ଭାବନା ସୃଷ୍ଟି ହୁଏ ।

ଏକଚ୍ଛଟିଆ ପୁଞ୍ଜିପତିମାନଙ୍କ ବିରୁଦ୍ଧରେ ସଙ୍ଗଠିତ ସଂଗ୍ରାମର କାର୍ଯ୍ୟକ୍ରମ, ଶ୍ରମିକଶ୍ରେଣୀର ନଗଦ ଓ ଦୀର୍ଘ କାଳୀନ ସ୍ୱାର୍ଥକୁ ବସ୍ତୁତଃ ନେବ । ଲୋକମାନଙ୍କ ସ୍ୱାର୍ଥ ଓ ସୁଖ ଦୃଷ୍ଟିରୁ ତାହା ବ୍ୟାପକ ଜାତୀୟକରଣକୁ ଅନୁମୋଦନ କରେ; ମୌଳିକ ଭୂସଂସ୍କାର ଲାଗି କୃଷକମାନଙ୍କ ଦାବୀକୁ ସମର୍ଥନ କରେ, ଏବଂ "ଲଙ୍ଗଳ ଯାର, ଜମି ତା'ର" ସ୍ଲୋଗାନକୁ ଶକ୍ତ ଭାବେ ସମର୍ଥନ ଦିଏ ।

ଅନ୍ୟାନ୍ୟ ସଂପ୍ରଦାୟର ଲୋକମାନଙ୍କ ସହିତ ଶ୍ରମିକଶ୍ରେଣୀ ବ୍ୟାପକ ଗଣତନ୍ତ୍ରର ପ୍ରତିଷ୍ଠା ଲାଗି ଦୃଢ଼ଭାବେ ଲଢ଼େ; ଗଣତାନ୍ତ୍ରିକ ସ୍ୱାଧୀନତାକୁ ଲୋପ କରିବା ଦିଗରେ ଏକଚ୍ଛଟିଆ ପୁଞ୍ଜିପତିଙ୍କର ଉଦ୍ୟମକୁ ଓ ଯେ କୌଣସି ରୂପରେ ଫାସିଷ୍ଟବାଦର ପୁନଃପ୍ରତିଷ୍ଠାକୁ ବିରୋଧ କରେ—ଜନସାଧାରଣଙ୍କୁ ସଂଗ୍ରାମ କ୍ଷେତ୍ରରେ ସମବେତ କରାଏ ।

ଶ୍ରମିକଶ୍ରେଣୀ, କୃଷକଶ୍ରେଣୀ, ସହରର ପେଟି ବୁର୍ଜୁଆ, ବାବୁ-ଶ୍ରମିକ (white collar) ଓ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ମିତ୍ରତା ଏହି ସଂଗ୍ରାମରେ ଗଢିଉଠେ । ଏକଚାଟିଆ ପୁଞ୍ଜିବାଦର ଧ୍ୱଂସ ପୂର୍ବରୁ, ସମସ୍ତ ଗଣତାନ୍ତ୍ରିକ ଶକ୍ତିଙ୍କର ଏହି ସଂହତି ଯୋଗେ ବହୁ ଦେଶର ଶ୍ରମିକଶ୍ରେଣୀ ସାଧାରଣ ସଂସ୍କାରମୂଳକ ବ୍ୟବସ୍ଥାଠାରୁ ଅନେକ ଅଧିକ ବ୍ୟବସ୍ଥା ଗ୍ରହଣ କରିବା ଲାଗି ବୁର୍ଜୁଆମାନଙ୍କୁ ବାଧ୍ୟ କରେ । ସେହିସବୁ ସଂସ୍କାରମୂଳକ ବ୍ୟବସ୍ଥା ଜାତିର ଅଧିକାଂଶ ଲୋକ ଲାଗି ଓ ସମାଜବାଦର ସଂଗ୍ରାମ ଲାଗି ଗୁରୁତ୍ୱପୂର୍ଣ୍ଣ । ବ୍ୟାପକ ଭାବରେ ବହୁ ସଂପ୍ରଦାୟର ଜନସାଧାରଣଙ୍କୁ ଏକଜୁଟ ବା ଏକତ୍ରିତ କରିବା ଦ୍ୱାରା ଶ୍ରମିକଶ୍ରେଣୀ ଫାସିଷ୍ଟ ପ୍ରତିକ୍ରିୟାକୁ ପ୍ରତିହତ କରିପାରେ; ଶାନ୍ତି, ଜାତୀୟ ସ୍ୱାଧୀନତା, ଗଣତାନ୍ତ୍ରିକ ଅଧିକାର ଏବଂ ଜନସାଧାରଣଙ୍କ

ଜନସାଧାରଣ ମାନଙ୍କର ଉନ୍ନତି ସାଧନ ଲାଗି ସମଗ୍ର ଦେଶ ବ୍ୟାପୀ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିପାରେ ।

ଏକଚ୍ଛତ୍ରିଆ ପୁଞ୍ଜିପତିମାନଙ୍କ ବିରୁଦ୍ଧରେ ଏହି ସାଧାରଣ ଗଣତାନ୍ତ୍ରିକ ସଂଗ୍ରାମ ହେତୁ ସମାଜବାଦୀ ବିପ୍ଳବ ଘଟିବାରେ ବିଳମ୍ବ ହୁଏ ନାହିଁ, ବରଂ ଅନ୍ୟ ପକ୍ଷରେ ଏହା ତାକୁ ତ୍ୱରାନ୍ୱିତ କରେ । ଗଣତନ୍ତ୍ର ଲାଗି ସଂଗ୍ରାମ, ସମାଜବାଦ ପାଇଁ ସଂଗ୍ରାମର ଏକ ଅଖଣ୍ଡ ଅବିଚ୍ଛେଦ୍ୟ ଅଂଶ ।

ଗଣତାନ୍ତ୍ରିକ ଆନ୍ଦୋଳନ ଯେତେ ଅଧିକ ମାତ୍ରାରେ ବ୍ୟାପକ ହେବ, ଜନସାଧାରଣଙ୍କ ଚେତନା ସେତିକି ଅଧିକ ମାତ୍ରାରେ ଉଚ୍ଚ ସ୍ତରକୁ ଗତି କରିବ । କେବଳ ସମାଜବାଦ ପ୍ରକୃତ ସ୍ୱାଧୀନତା ଓ ସମୃଦ୍ଧିର ମାର୍ଗ ଉନ୍ମୁକ୍ତ କରେ, ଏହା ଅଧିକ ସ୍ପଷ୍ଟ ଓ ପ୍ରାଞ୍ଜଳ ହୋଇ ଉଠିବ । ସଂଗ୍ରାମ ମଧ୍ୟରେ ହିଁ, ଦକ୍ଷିଣପନ୍ଥୀ ସମାଜବାଦୀ ଓ ସଂସ୍କାରବାଦୀ 'ମୋହ'ର ଅବସାନ ଘଟିବ, ସମାଜବାଦୀ ବିପ୍ଳବର ସେନାବାହିନୀ ସଂଗଠିତ ହେବ ।

ମୋଟ ଉପରେ ବିଶ୍ୱ ପୁଞ୍ଜିବାଦୀ ବ୍ୟବସ୍ଥା ସର୍ବତ୍ର ସାମାଜିକ ବିପ୍ଳବ ଲାଗି ପରିପକ୍ୱ ହୋଇ ଉଠିଛି ।

ତେବେ, ଇଚ୍ଛା କଲେ କି କାହାର ଆଦେଶ ଅନୁସାରେ ବିପ୍ଳବ ଆସେ ନାହିଁ, କିମ୍ବା ବାହାରୁ ତାକୁ ଲୋକଙ୍କ ଉପରେ ବାଧ୍ୟତା ସତ୍ତ୍ୱରେ ଲଦି ଦିଆଯାଇପାରେ ନା ! ତାହା ପୁଞ୍ଜିବାଦରେ ବିରୋଧିତାର ଉତ୍କଟ ବୃଦ୍ଧି ଫଳରେ ଘଟେ, ଶ୍ରମିକଶ୍ରେଣୀ ଓ ସମୂହ ସ୍ତରରେ ଜନଶକ୍ତି ଦ୍ୱାରା ତାହା ସଂପନ୍ନ ହୁଏ ।

ବିପ୍ଳବ କିଛି ପଣ୍ୟଦ୍ରବ୍ୟ ନୁହେଁ—ଯାହା ଚାଲାଣ ବା ରପ୍ତାନି ହୋଇପାରିବ । କୃତ୍ରିମ ଉପାୟରେ ସମାଜବାଦକୁ କେଉଁଠି ନେଇ ରୋପଣ କରାଯାଇପାରେ ନା । ଏଣୁ ଏଭଳି କଥାକୁ କମ୍ୟୁନିଷ୍ଟମାନେ ସଦାସର୍ବଦା ବିରୋଧ କରନ୍ତି ।

ସତ୍ୟର ଅପଳାପ କରି ବୁର୍ଜୁଆ ପ୍ରଚାର ଯୋଗେ ଏବେ ମଧ୍ୟ ଅଭିଯୋଗ ଶୁଣାଯାଉଛି — କମ୍ୟୁନିଷ୍ଟମାନେ ଅନ୍ୟାନ୍ୟ ଦେଶର ସମସ୍ୟାରେ ହସ୍ତକ୍ଷେପ କରନ୍ତି, ବାହାରୁ ବିପ୍ଳବକୁ ନେଇ ସେହି ସବୁ ଦେଶ ଉପରେ ଖେଳାଇ ଦିଅନ୍ତି ।

ଶ୍ରମଜୀବୀ ଲୋକେ ଅତ୍ୟାଚାରୀ ଶାସକମାନଙ୍କ ବିରୁଦ୍ଧରେ ଯେକୌଣସି ଆନ୍ଦୋଳନ କଲେ, ତା ପଛରେ "ମସ୍କୋର ହାତ ରହିଛି" ବୋଲି ସାମ୍ରାଜ୍ୟବାଦୀ-ମାନେ ବନେଇ ଚୂନେଇ କଥା କୁହନ୍ତି । ବାହାରୁ ପ୍ରତି-ବିପ୍ଳବକୁ ରପ୍ତାନି କରି ଲୋକମାନଙ୍କ ଉପରେ ଲଦି ଦେବାର ନିଜର ହୀନ ଉଦ୍ୟମକୁ ଯୁକ୍ତିଯୁକ୍ତ ବୋଲି

ପ୍ରମାଣ କରିବାକୁ ଯାଇ ସେମାନେ ଏହି କୁତ୍ସା ରଟନାର ଆଶ୍ରୟ ନିଅନ୍ତି । ସମସ୍ତ ଥର, ଯେତେବେଳେ ବୁର୍ଜୁଆମାନେ ଜନସାଧାରଣଙ୍କ ମୁକ୍ତି ଆନ୍ଦୋଳନକୁ ଦମନ କରି ତାର ଚିଣ୍ଡି ଚିପି ତାକୁ ଖତମ୍ କରି ଦେଉଥିଲେ । ଅକ୍ଟୋବର ବିପ୍ଳବ ପରେ ୧୪ଟି ଦେଶର ସାମ୍ରାଜ୍ୟବାଦୀମାନେ ଅସ୍ତ୍ର ବଳରେ ଶିଶୁ ସୋଭିଏତ୍ ରାଷ୍ଟ୍ରକୁ ଦଳି ଦେବାକୁ ଉଦ୍ୟମ କରିଥିଲେ ।

ସାମ୍ରାଜ୍ୟବାଦୀମାନେ ପ୍ରତି-ବିପ୍ଳବ ରପ୍ତାନି କରିବାରେ ସଫଳତା ହାସଲ କରିବେ—ଏଭଳି ଆଶା କରିବା ସେମାନଙ୍କ ପକ୍ଷରେ ଆଜି ଆଉ ସମ୍ଭବ ନୁହେଁ ।

ପୁଞ୍ଜିବାଦୀ ବ୍ୟବସ୍ଥାକୁ ଲୋପ କରିବା ଲାଗି ଏବଂ ସମାଜବାଦୀ ବିପ୍ଳବକୁ ଜୟଯୁକ୍ତ କରିବା ଲାଗି କମ୍ୟୁନିଷ୍ଟମାନେ ଦେଶ ଦେଶ ମଧ୍ୟରେ ଯୁଦ୍ଧ ଚାହାନ୍ତି, ଏହା ପ୍ରଚାର କରି ସାମ୍ରାଜ୍ୟବାଦୀ ପ୍ରତିକ୍ରିୟା, କମ୍ୟୁନିଷ୍ଟ ମତାଦର୍ଶକୁ ଓ ଆନ୍ଦୋଳନକୁ ବଦନାମ କରିବାକୁ ଚାହେଁ, ସେହି ଦୃଷ୍ଟିରୁ ଉଦ୍ୟମ ଚଳାଏ ।

ମାତ୍ର କମ୍ୟୁନିଷ୍ଟ ପାର୍ଟିଗୁଡ଼ିକର ମତ ହେଉଛି, ପୁଞ୍ଜିବାଦରୁ ସମାଜବାଦକୁ ପରିଗମନର ମାର୍ଗ ବିଭିନ୍ନ ଦେଶ ଲାଗି ବିଭିନ୍ନ ରୂପରେ ପ୍ରକାଶ ପାଇପାରେ । ଶ୍ରମିକଶ୍ରେଣୀ ଓ ତାର ଅଗ୍ରଣୀ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦଳସବୁ ଅନ୍ୟ ପନ୍ଥା ଅପେକ୍ଷା ବିଶେଷ ଭାବେ ପସନ୍ଦ କରନ୍ତି—ସମାଜବାଦୀ ବିପ୍ଳବ ଶାନ୍ତିପୂର୍ଣ୍ଣ ଭାବେ ଅନୁଷ୍ଠିତ ହେଉ ! ଏହା ଶ୍ରମିକଶ୍ରେଣୀ, ସମସ୍ତ ଜନସାଧାରଣ ଓ ସମୁଦାୟ ଜାତିର ସ୍ୱାର୍ଥ ସାଧନ ପ୍ରତି ସର୍ବୋତ୍କୃଷ୍ଟ ଭାବେ ଉପଯୋଗୀ ହେବ । ନୂତନ ଐତିହାସିକ ଅଭିଜ୍ଞତାର ସାରାଂଶକୁ ବିଚାର କରି ମାର୍କସବାଦୀ ଲେନିନ୍‌ବାଦୀ ପାର୍ଟିସବୁ ଏକ ସିଦ୍ଧାନ୍ତରେ ପହଞ୍ଚିଛନ୍ତି—ବର୍ତ୍ତମାନ ଅବସ୍ଥାରେ ସମାଜବାଦୀ ବିପ୍ଳବର ଶାନ୍ତିପୂର୍ଣ୍ଣ ବିକାଶର ସମ୍ଭାବନା ପୂର୍ବ ଅପେକ୍ଷା ଅଧିକ ।

ଏହାର କାରଣ, ବିଶ୍ୱ ସମାଜବାଦର ଶକ୍ତି କଳ୍ପନାତୀତ ଭାବେ ବୃଦ୍ଧି ପାଇଛି, ଶ୍ରମିକଶ୍ରେଣୀ ପକ୍ଷକୁ ଅଧିକାଂଶ ଲୋକଙ୍କୁ ଟାଣି ଆଣିବା ସଭାଶେ ଅବସ୍ଥା ପରିପକ୍ୱ ହେଉଛି ଏବଂ ସାମ୍ରାଜ୍ୟବାଦୀ ବୁର୍ଜୁଆମାନଙ୍କୁ ପୂରାପୂରି ବିଚ୍ଛିନ୍ନ ଓ ନିଃସଙ୍ଗ କରିବାର ଅବସ୍ଥା ଅନୁକୂଳ ହୋଇ ଉଠିଛି । କେତେକ ପୁଞ୍ଜିବାଦୀ ଦେଶରେ, ମାର୍କସ୍‌ବାଦୀ-ଲେନିନବାଦୀ ପାର୍ଟିଗୁଡ଼ିକର ନେତୃତ୍ୱରେ ଶ୍ରମିକମାନଙ୍କ ସାମ୍ମୁଖ୍ୟ ବା ଜନ-ସାମ୍ମୁଖ୍ୟ ଯୋଗେ, କିମ୍ବା, ବିଭିନ୍ନ ଦଳ ଓ ଗଣସଂଗଠନ ସହିତ ଅନ୍ୟ ପ୍ରକାରର ରାଜିନାମା ଓ ସହଯୋଗ ପ୍ରତିଷ୍ଠା ସୂତ୍ରରେ, ଶ୍ରମିକଶ୍ରେଣୀ ଅଧିକାଂଶ ଲୋକଙ୍କ ସହିତ ମିଳିତ ହୋଇ ବିନା ଗୃହ ଯୁଦ୍ଧରେ କ୍ଷମତାକୁ ଆସିବାରେ ସମର୍ଥ ହୋଇଛି ।

ସଂଖ୍ୟାଧିକ ଲୋକଙ୍କ ଉପରେ ନିର୍ଭର କରି ଓ ସୁବିଧାବାଦୀମାନଙ୍କୁ କଠୋର ଭାବେ ବିରୋଧ କରି, ଶ୍ରମିକଶ୍ରେଣୀ ପାର୍ଲିଆମେଣ୍ଟରେ ଦୃଢ଼ ସଂଖ୍ୟାଗରିଷ୍ଠତା ହାସଲ କଲା ପରେ ପାର୍ଲିଆମେଣ୍ଟକୁ ବୁର୍ଜୁଆମାନ ଏକ ହତିଆରରୁ ଶ୍ରମଜୀବୀ ଲୋକମାନଙ୍କ ସେବାରେ

ନିୟୋଜିତ ହତିଆର ରୂପେ ପରିବର୍ତ୍ତନ କରିବା ଦ୍ୱାରା ଜନବିରୋଧୀ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କୁ ପରାସ୍ତ କରିବାକୁ ସମର୍ଥ ହେବ ।

ଏହା ବଡ଼ ବଡ଼ କୋଟିପତି, ଶିଳ୍ପ-ବ୍ୟବସାୟୀ, ବୁର୍ଜୁଆ ଓ ପ୍ରତିକ୍ରିୟା ବିରୁଦ୍ଧରେ କୃଷକ, ମଧ୍ୟବିତ୍ତ ଓ ଶ୍ରମିକମାନଙ୍କ ଶ୍ରେଣୀସଂଗ୍ରାମର କେବଳ ନିରବଚ୍ଛିନ୍ନ କ୍ରମାଗତ ପ୍ରସାରଣ ଯୋଗେ ହିଁ ହାସଲ ହୋଇ ପାରିବ ।

ତେବେ ସମାଜବାଦକୁ ପରିଗମନ ଲାଗି ଶ୍ରମିକଶ୍ରେଣୀକୁ ଅଶାନ୍ତିପୂର୍ଣ୍ଣ ଅବସ୍ଥା ପାଇଁ ପ୍ରସ୍ତୁତ ହେବାକୁ ହେବ । ଶାସକଶ୍ରେଣୀ ନିଜ ଇଚ୍ଛାରେ କେବେହେଲେ କ୍ଷମତା ପରିତ୍ୟାଗ କରେନାହିଁ । ଯଦି ଶୋଷକଶ୍ରେଣୀ ଲୋକଙ୍କ ବିରୁଦ୍ଧରେ ହିଂସାର ଆଶ୍ରୟ ନିଏ, ତେବେ ଶ୍ରମିକଶ୍ରେଣୀ ସେହି ପନ୍ଥାରେ ତାର ଜବାବ ଦେବାକୁ ବାଧ୍ୟ ହେବ । ହିଂସାର ମାତ୍ରା ଓ ଶ୍ରେଣୀସଂଗ୍ରାମର ରୂପ, ସର୍ବହରାଙ୍କ ଉପରେ ସେତେ ନିର୍ଭର ନ କରେ, ସେତେ ନିର୍ଭର କରେ ବିପୁଳ ସଂଖ୍ୟକ ଲୋକଙ୍କ ମତ ବିରୁଦ୍ଧରେ ଶୋଷକ-ମାନଙ୍କ ପ୍ରତିରୋଧର ମାତ୍ରା ଉପରେ; ସମାଜବାଦ ଲାଗି ଜନସାଧାରଣଙ୍କ ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ ପ୍ରତିକ୍ରିୟା ଗୋଷ୍ଠୀ ଯେଉଁଭଳି ବର୍ବର ଅମାନୁଷିକ ଦମନ ଓ ବଳ ପ୍ରୟୋଗର ଆଶ୍ରୟ ନିଅନ୍ତି, ତାହାର ଉପରେ ।

ସମାଜବାଦ ଦିଗରେ ଶାନ୍ତିପୂର୍ଣ୍ଣ ବା ଅଶାନ୍ତିପୂର୍ଣ୍ଣ ପରିଗମନର ସମ୍ଭାବନା ନିର୍ଭର କରେ, ଗୋଟିଏ ଦେଶର ପ୍ରଚଳିତ ନିର୍ଦ୍ଦିଷ୍ଟ ଐତିହାସିକ ପରିସ୍ଥିତିର ସମ୍ଭାବନା ଉପରେ । ଶାନ୍ତିପୂର୍ଣ୍ଣ କି ଅଶାନ୍ତିପୂର୍ଣ୍ଣ ପନ୍ଥା କୌଣସିଟିକୁ ଅଲଂଘ୍ୟ ଏକ ଧର୍ମର ନୀତି-ସୂତ୍ର ଭାବରେ ଧରି ନେବା ଉଚିତ ନୁହେଁ ।

ପୁଞ୍ଜିବାଦୀ ଦେଶରେ ସବୁ ଶ୍ରମିକମାନଙ୍କ ରାଜନୈତିକ ସଂଗ୍ରାମର ସଫଳତା, ଅନେକ କ୍ଷେତ୍ରରେ ଅନେକାଂଶରେ କମ୍ୟୁନିଷ୍ଟମାନଙ୍କ ଦୃଷ୍ଟିରୁ ସମାନ ଭାବେ ଶାନ୍ତିପୂର୍ଣ୍ଣ ଆଉ ଅଶାନ୍ତିପୂର୍ଣ୍ଣ ଢଙ୍ଗରେ ଉଭୟ ଶ୍ରେଣୀସଂଗ୍ରାମ ଚଳାଇବାର ପନ୍ଥାଗୁଡ଼ିକର ଆୟତ୍ତୀକରଣ ଓ ଦକ୍ଷତା ହାସଲ ଉପରେ ନିର୍ଭର କରେ — ଶ୍ରମିକଶ୍ରେଣୀ, ସହର ଓ ମଫସଲର ଶ୍ରମଜୀବୀ ଜନସାଧାରଣ, ଦେଶ ଓ ଜାତିର ସମସ୍ତ ପ୍ରଗତିଶୀଳ ଶକ୍ତିମାନଙ୍କୁ ଏକଜୁଟ କରି ସେମାନଙ୍କୁ ନେତୃତ୍ୱ ଦେବାର, କମ୍ୟୁନିଷ୍ଟମାନଙ୍କ ସାମର୍ଥ୍ୟ ଉପରେ ନିର୍ଭର କରେ ।

ଶ୍ରମଜୀବୀ ଲୋକଙ୍କର ବୈପ୍ଳବିକ ସଂଗ୍ରାମର ଅଗ୍ର ଭାଗରେ ଅଛନ୍ତି କମ୍ୟୁନିଷ୍ଟ, ମାର୍କସବାଦୀ ଲେନିନବାଦୀ ପାର୍ଟିଗୁଡ଼ିକ । କମ୍ୟୁନିଷ୍ଟମାନେ ପ୍ରତ୍ୟେକେ ହେଉଛନ୍ତି, ସେମାନଙ୍କର ନିଜ ନିଜର ଜନସାଧାରଣଙ୍କର ଓ ପ୍ରଗତିଶୀଳ ସମଗ୍ର ମନୁଷ୍ୟଜାତିର ଯାବତୀୟ ଜାତୀୟ ଓ ସାମାଜିକ ଆଦର୍ଶ ପ୍ରତି ଗଭୀର ଅନୁରକ୍ତିର ମୂର୍ତ୍ତି ପ୍ରତୀକ ! ଅର୍ଥାତ୍, ସେମାନେ ହିଁ ହେଉଛନ୍ତି — ଜାତୀୟ ଓ ସାମାଜିକ ସ୍ୱାଧୀନତାର, ସାମ୍ୟ ଓ ଭ୍ରାତୃତ୍ୱର, ଜନସାଧାରଣଙ୍କ ସୁଖ ଓ ଶାନ୍ତିର ଯେଉଁ ମହନୀୟ ଆଦର୍ଶମାନ ଅଛି, ତାହାର ଧାରକ ଓ ବାହକ ।

କମ୍ୟୁନିଷ୍ଟମାନେ ହିଁ ନିଜର ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଦ୍ୱାରା ସମସ୍ତ ଶ୍ରମଜୀବୀ ଲୋକଙ୍କର ଶ୍ରଦ୍ଧା, ସମ୍ମାନ ଓ ସମର୍ଥନର ଅଧିକାରୀ ହୋଇଛନ୍ତି ।

୧୯୩୯ରେ, ଠିକ୍ ବିଶ୍ୱଯୁଦ୍ଧ ପୂର୍ବରୁ ପୃଥିବୀରେ ପ୍ରତିଷ୍ଠିତ ଥିଲା ୪୩ଟି କମ୍ୟୁନିଷ୍ଟ ପାର୍ଟି । ସେଗୁଡ଼ିକର ମୋଟ ସଭ୍ୟ ସଂଖ୍ୟା ଥିଲା ୪ କୋଟି ୨୦ ଲକ୍ଷ । କମ୍ୟୁନିଷ୍ଟ ଆନ୍ଦୋଳନ ପୃଥିବୀର ସବୁ କୋଣରେ, ସବୁ ଦେଶରେ ଆଜି ପ୍ରସାରିତ । କମ୍ୟୁନିଷ୍ଟମାନେ ହିଁ ଶୋଷଣ ଭିତର ବିକଶିତ କରୁଛନ୍ତି ସାହସ, ଧୈର୍ଯ୍ୟ, ବୀରତ୍ୱ ଓ ଲୋକଙ୍କର ସୁଖ ସକାଶେ ସଂଗ୍ରାମ ପ୍ରତି ଅନୁରକ୍ତି ଭଳି ମହାନ୍ ମାନବୀୟ ଗୁଣଗୁଡ଼ିକୁ ।

କମ୍ୟୁନିଷ୍ଟ ଆନ୍ଦୋଳନର ବର୍ତ୍ତମାନ ସ୍ତରରେ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ହେଉଛି ଯେ, ଅଧିକରୁ ଅଧିକ ସଂଖ୍ୟକ କମ୍ୟୁନିଷ୍ଟ ପାର୍ଟି ସର୍ବାଧିକ ସଂଖ୍ୟକ ଶ୍ରମିକ ଜନତାଙ୍କ ନେତୃତ୍ୱ ନେଇ ଗଣ-ସଂଗଠନରେ ପରିଣତ ହେଉଛି । ସମାଜବାଦୀ ଦେଶମାନଙ୍କ କଥା ଛାଡ଼ ! ଫ୍ରାନ୍ସ, ଇଟାଲି, ଇଣ୍ଡୋନେସିଆ, ଭାରତ, ଆର୍ଜେଣ୍ଟିନା ଓ ଅନ୍ୟ ଦେଶମାନଙ୍କରେ କମ୍ୟୁନିଷ୍ଟ ପାର୍ଟିସବୁ ଗଣ ପାର୍ଟି ରୂପରେ ପ୍ରତିଷ୍ଠିତ ହେଲଣି । ବହୁ ଦେଶରେ ଟ୍ରେଡ୍ ୟୁନିୟନ, କୃଷକ, ଯୁବକ ଓ ମହିଳା ସଂଗଠନମାନ କମ୍ୟୁନିଷ୍ଟ ପାର୍ଟିଗୁଡ଼ିକର ପ୍ରଭାବରେ ହିଁ କାର୍ଯ୍ୟ କରୁଛି । ଉଣା ଅଧିକେ ସାଧାରଣ ଅବସ୍ଥାରେ ଯେଉଁଠି କମ୍ୟୁନିଷ୍ଟ ପାର୍ଟିସବୁ ପାର୍ଲିଆମେଣ୍ଟ ନିର୍ବାଚନରେ ଅଂଶ ଗ୍ରହଣ କରିପାରୁଛନ୍ତି, ସେଠି ସେସବୁ ଭୋଟଦାତାମାନଙ୍କ ବିପୁଳ ସମର୍ଥନ ଲାଭ କରୁଛନ୍ତି ।

ଆମ ସମୟରେ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନ, ସବୁଠାରୁ ବଳି ପ୍ରଭାବଶାଳୀ ଶକ୍ତି ହେଲାଣି—ସଂଖ୍ୟକ ପ୍ରଚୁର ଏହା ହିଁ ଏକ ଗୁରୁତ୍ୱପୂର୍ଣ୍ଣ ହେତୁ ଓ ପନ୍ଥା ହେଲଣି । ବର୍ତ୍ତମାନର ଅବସ୍ଥାରେ କମ୍ୟୁନିଷ୍ଟ ପାର୍ଟିସବୁ ଶ୍ରମିକଶ୍ରେଣୀର ଏକତା ଲାଗି ସଂଗ୍ରାମ ଚଳାଇଛନ୍ତି, ସାମ୍ରାଜ୍ୟବାଦବିରୋଧୀ ସଂଗ୍ରାମର ସମସ୍ତ ଧାରାକୁ ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ବିରାଟ ପ୍ରବାହରେ ସମ୍ମିଳିତ କରାଇବାରେ ଲାଗିଛନ୍ତି । ଏହା ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଉଠିଛି । କହିବା ବାହୁଲ୍ୟ ଯେ,—ଶାନ୍ତି ରକ୍ଷା ଲାଗି, ଯୁଦ୍ଧଖୋରଙ୍କ ଦୁଷ୍ଟ ଅପରାଧମୂଳକ ଚକ୍ରାନ୍ତକୁ ବ୍ୟର୍ଥ କରିବା ଲାଗି ଓ ଶ୍ରମଜୀବୀ ଲୋକମାନଙ୍କର ମୁଖ୍ୟ ସ୍ୱାର୍ଥ ହାସଲ ଓ ସମାଜବାଦ ପ୍ରତିଷ୍ଠା ଦିଗରେ, ସଂଗ୍ରାମ ଚଳାଇବା ଲାଗି, ଜାତୀୟ ଓ ଆନ୍ତର୍ଜାତୀୟ ଉଭୟ କ୍ଷେତ୍ରରେ, ଶ୍ରମିକଶ୍ରେଣୀର ଐକ୍ୟ ଏକାନ୍ତ ଆବଶ୍ୟକ ।

ମାର୍କସ୍ କହିଥିଲେ, "ବିଭିନ୍ନ ଦେଶର ଶ୍ରମଜୀବୀ ଲୋକମାନଙ୍କ ମଧ୍ୟରେ ଯେଉଁ ଭ୍ରାତୃତ୍ୱର ବନ୍ଧନ ରହିବା ଉଚିତ ଏବଂ ଯାହା ମୁକ୍ତି ଲାଗି ସେମାନଙ୍କର ସମସ୍ତ

ସଂଗ୍ରାମ ମଧ୍ୟରେ ଯେମିତିକି ପରସ୍ପର ନିକଟରେ ଛୁଡ଼ ହେବା ଲାଗି ଉଦ୍ରେକିତ କରେ, ସେହି ଭ୍ରାତୃତ୍ୱର ବନ୍ଧନ ପ୍ରତି ଉପେକ୍ଷା, ସେମାନଙ୍କର ଅସଂଲଗ୍ନ ଉଦ୍ୟମ ଫଳରେ ଘଟିବା ପରାଜୟ ଦ୍ୱାରା ହିଁ ଦଣ୍ଡିତ ହେବ ।"

ପୁଞ୍ଜିବାଦୀ ଦେଶରେ ଏପରି ସବୁ ଶକ୍ତି ଅଛନ୍ତି, ଯେଉଁମାନେ କି ସମସ୍ତ ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନର ଐକ୍ୟ ଓ ସୁସଂଗଠନକୁ ବିରୋଧ କରନ୍ତି । ଉଦାହରଣ ସ୍ୱରୂପ, ଦକ୍ଷିଣପନ୍ଥୀ ସମାଜବାଦୀ ନେତାମାନେ କମ୍ୟୁନିଷ୍ଟ ପାର୍ଟିମାନଙ୍କ ସହିତ ସହଯୋଗର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରନ୍ତି । ସେମାନଙ୍କର ଏଭଳି ଏକ ନୀତି ଶ୍ରମିକଶ୍ରେଣୀର ସ୍ୱାର୍ଥର ଅନୁକୂଳ ନୁହେଁ । ତେବେ କେତେକ ସମାଜବାଦୀ ପାର୍ଟି ଭିତରେ, ବିଶେଷକରି ସାଧାରଣ ସଭ୍ୟ ଓ କର୍ମୀମାନଙ୍କ ମଧ୍ୟରେ ଅନେକ ଲୋକ, ଶ୍ରମିକ ଆନ୍ଦୋଳନରେ ଏକତା ଲାଗି ଦଣ୍ଡାୟମାନ । ଯେଉଁସବୁ ଦେଶରେ, କମ୍ୟୁନିଷ୍ଟ ଓ ସମାଜବାଦୀମାନେ ଏକଜୁଟ ହୋଇଛନ୍ତି, ସେଠାରେ ଶ୍ରମଜୀବୀ ଜନସାଧାରଣ ସଫଳତା ହାସଲ କରିଛନ୍ତି ।—ଏହା ବର୍ତ୍ତମାନର ଘଟଣାବଳୀ ଦ୍ୱାରା ପୁଣି ଥରେ ପ୍ରତିପାଦିତ ହୋଇଛି ।

ପୁଞ୍ଜିବାଦୀ ଦେଶରେ କମ୍ୟୁନିଷ୍ଟ ପାର୍ଟି, ବିପ୍ଳବୀ ସର୍ବହରା ସଂଗ୍ରାମକୁ ନେତୃତ୍ୱ ଦେଇ ବ୍ୟାପକ ଭାବେ ଶ୍ରମଜୀବୀ ଜନସାଧାରଣଙ୍କୁ ଶିକ୍ଷିତ ଓ ସଂଗଠିତ କରେ । ସେଠାରେ କମ୍ୟୁନିଷ୍ଟମାନଙ୍କୁ କଠିନ ଅବସ୍ଥା ଭିତରେ କାମ କରିବାକୁ ପଡ଼େ । ଭୟଙ୍କର ବାଧା ବିଘ୍ନ ଓ ପୁଲିସ ଦମନ ସତ୍ତ୍ୱେ, ସେମାନେ ଶ୍ରମଜୀବୀ ଲୋକଙ୍କର ସାମାଜିକ ଅଧିକାରକୁ ଦୃଢ଼ ଭାବରେ ରକ୍ଷା କରନ୍ତି । ଶ୍ରମିକଶ୍ରେଣୀର ମୁକ୍ତି ଦିଗରେ ସେମାନେ ଯେକୌଣସି ଉଦ୍ୟମ କରିବାରୁ ବିରତ ହୁଅନ୍ତି ନାହିଁ । ବୁର୍ଜୁଆମାନେ ଯେତେ କ୍ରୋଧୋନ୍ମତ୍ତ ହୋଇ ଆକ୍ରମଣ କରନ୍ତି, କମ୍ୟୁନିଷ୍ଟମାନଙ୍କୁ ଯେତେ ଦମନ କରନ୍ତି ପଛେ, ଏହା ନିଶ୍ଚିତ ଯେ, ଭବିଷ୍ୟତ ହେଉଛି କମ୍ୟୁନିଷ୍ଟଙ୍କର, ଭବିଷ୍ୟତ ହେଉଛି, ଶ୍ରମିକ ଶ୍ରେଣୀର ।

## ଦୁଇଟି ସାମ୍ମୁଖ୍ୟରେ ସଂଗ୍ରାମ

ଦୁଇଟି ରଣକ୍ଷେତ୍ରର ସାଲିସହୀନ ସଂଗ୍ରାମ ମଧ୍ୟରେ, ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନ ବୃଦ୍ଧି ପାଇଛି ଓ ପରିପକ୍ୱ ହୋଇଛି । ଏଥିରୁ ଗୋଟିଏ ହେଉଛି, ଦକ୍ଷିଣପନ୍ଥୀ ସୁବିଧାବାଦ, ସଂଶୋଧନବାଦ ଓ ନାଗରବାଦ ବିରୁଦ୍ଧରେ; ଅନ୍ୟଟି ହେଉଛି, ବାମପନ୍ଥୀ ସୁବିଧାବାଦ-ମତାନ୍ଧତା ଓ ଗୋଷ୍ଠୀବାଦ-ବିରୁଦ୍ଧରେ ସଂଗ୍ରାମର କ୍ଷେତ୍ର ।

ଲେନିନ୍ ଲେଖିଥିଲେ, "ଇତିହାସରେ ପ୍ରତ୍ୟେକ ବିଶେଷଧରଣର ମୋଡ଼ ପରିବର୍ତ୍ତନ ଯେଉଁଟି ବୁର୍ଜୁଆ ଦୋଦୁଲ୍ୟମାନ-ଗୋଷ୍ଠୀରେ କେବଳ ପରିବର୍ତ୍ତନ ଆଣେ—ଯେଉଁ ଦୋଦୁଲ୍ୟମାନ ସ୍ତର, ସର୍ବହରାର ପାଖ ଦେଶରେ

ସଦାସର୍ବଦା ଦେଖାଦେଇଆସେ ଏବଂ ଯାହା ପୁଣି ନ୍ୟୂନାଧିକ ମାତ୍ରାରେ ଏକ ବା ଏକାଧିକ ଭାବରେ ସଦାସର୍ବଦା ସେମାନଙ୍କ ମଧ୍ୟରେ ଅନୁପ୍ରବେଶ କରୁଆସେ ।"

ଏହି ସବୁ ଦୋଦୁଲ୍ୟମାନତା, ଦୁଇଟି 'ଧାରାରେ' ପ୍ରକାଶିତ ହୁଏ । ସେଥିରୁ ଗୋଟିଏ ହେଉଛି, ବୁର୍ଜୁଆ ସୁଧାରବାଦ, ଅର୍ଥାତ ଭାବପ୍ରବଣ ଗଣତାନ୍ତ୍ରିକ ଓ "ସୋସାଲ ଡେମୋକ୍ରାଟିକ"ଶବ୍ଦାବଳୀ ଓ ନିରର୍ଥକ ମଧ୍ୟଶ୍ରେଣୀ କାମନାରେ ଆଚ୍ଛାଦିତ ବୁର୍ଜୁଆଙ୍କ ପାଖରେ ଦାସତ୍ୱଭାବ । ଅନ୍ୟଟି ହେଉଛି, ପେଟି-ବୁର୍ଜୁଆ ବିପ୍ଳବବାଦ—ଧମକପୂର୍ଣ୍ଣ କଥାରେ ତମ୍ବି ତୋଫାନ, କିନ୍ତୁ ଅନୈକ୍ୟର ଏକ ବୁଦ୍‌ବୁଦ୍ କାର୍ଯ୍ୟରେ ବିଭେଦ ଆଉ ବୁଦ୍ଧିହୀନତା । ପୁଞ୍ଜିବାଦର ମୂଳ ରସ-ଗ୍ରନ୍ଥି ନିଶ୍ଚିହ୍ନ ନ ହେଲା ପର୍ଯ୍ୟନ୍ତ ଏହି ଦୋଦୁଲ୍ୟମାନତା ସବୁ ଅନିବାର୍ଯ୍ୟ ଭାବେ ଦେଖାଦେଉଥିବ ।

ଏହି ଦୁଇଟି ରଣକ୍ଷେତ୍ରରେ ସଂଗ୍ରାମ ହେଉଛି, ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ବିକାଶର ନିୟମ । ଏହି ସଂଗ୍ରାମର ଗୁରୁତ୍ୱ ହେଉଛି ମହାନ୍, ବିଶେଷ କରି ପୃଥିବୀ-ବ୍ୟାପୀ କମ୍ୟୁନିଜମର ବିଜୟର ଏହି ଯୁଗରେ—ଏହି ପ୍ରଚଳିତ ଯୁଗରେ, ଯେତେବେଳେ କି କମ୍ୟୁନିଷ୍ଟ ପାର୍ଟିମାନଙ୍କର ଭୂମିକା ଓ ମନୁଷ୍ୟ ସମାଜର ଭାଗ୍ୟ ଘେନି ସେହି ପାର୍ଟିଗୁଡ଼ିକର ଦାୟିତ୍ୱ ବୃଦ୍ଧି ପାଇଛି ଅଭୂତ-ପୂର୍ବ ଭାବରେ । ସବୁ ଦେଶର କମ୍ୟୁନିଷ୍ଟମାନଙ୍କ ଐକ୍ୟକୁ ବଳିଷ୍ଠ କରିବା, ମାର୍କସବାଦ-ଲେନିନ୍‌ବାଦର ତତ୍ତ୍ୱ ଓ କାର୍ଯ୍ୟର ନିର୍ମଳତା ଏବଂ ପବିତ୍ରତାକୁ ରକ୍ଷା କରିବା, ବୈପ୍ଳବିକ ତତ୍ତ୍ୱର ସଂଶୋଧନବାଦୀ ବିକୃତ ଓ ମତାନ୍ଧତାମୟ କ୍ଳୀବତ୍ୱ ବା ଜଡ଼ତ୍ୱ—ଉଭୟଙ୍କୁ ନିର୍ମୂଳ କରିବା ଏବଂ ବୈପ୍ଳବିକ ସଂଗ୍ରାମ କ୍ଷେତ୍ରରେ ସୁଧାରବାଦ ଆଉ ବାମପନ୍ଥୀ ଦୁଃସାହସିକ ଭାଗ୍ୟାନ୍ୱେଷଣର ମୁଖା ଖୋଲିଦେବା ପ୍ରଭୃତି କ୍ରିୟାକର୍ମ ବର୍ତ୍ତମାନ ଯେଉଁଳି ଗୁରୁତ୍ୱପୂର୍ଣ୍ଣ, ଅତୀତରେ କେବେ ସେଉଁଳି ଗୁରୁତ୍ୱପୂର୍ଣ୍ଣ ହୋଇ ନ ଥିଲା ।

୧୯୬୦ ରେ ମସ୍କୋରେ ଅନୁଷ୍ଠିତ କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟିଗୁଡ଼ିକର ପ୍ରତିନିଧି ସମ୍ମିଳନୀ, ନିଜର ଇସ୍ତାହାରରେ ଲିପିବଦ୍ଧ କରିଛି :—

"ସଂଶୋଧନବାଦ, ଦକ୍ଷିଣପନ୍ଥୀ ସୁବିଧାବାଦ, ଯାହା ତତ୍ତ୍ୱ ଓ କର୍ମରେ ବୁର୍ଜୁଆ ମତାଦର୍ଶକୁ ପ୍ରତିଫଳିତ କରେ, ତାହା ମାର୍କସବାଦ-ଲେନିନବାଦକୁ ବିଦଥ ଓ ବିକୃତ କରେ—ତାର ବୈପ୍ଳବିକ ମର୍ମକୁ ଅପହରଣ କରେ, ଏବଂ ତଦ୍ୱାରା ଶ୍ରମିକଶ୍ରେଣୀର ବୈପ୍ଳବିକ ଇଚ୍ଛାଶକ୍ତିକୁ ପଙ୍ଗୁ ଓ ଅଚଳ କରେ । ସାମ୍ରାଜ୍ୟବାଦ ଓ ଶୋଷକମାନଙ୍କ ଅତ୍ୟାଚାର ବିରୁଦ୍ଧରେ ଏବଂ ଶାନ୍ତି, ଗଣତନ୍ତ୍ର, ଜାତୀୟ ମୁକ୍ତି ଓ ସମାଜବାଦର ବିଜୟ ସକାଶେ ଚାଲିଥିବା ସଂଗ୍ରାମରେ ଶ୍ରମିକ ଆଉ ଶ୍ରମଜୀବୀ ଲୋକଙ୍କୁ ନିରସ୍ତ୍ର ଓ ବେସାମରିକ କରିଦିଏ ।

ଯଦି ତତ୍ତ୍ୱ ଓ କର୍ମକ୍ଷେତ୍ରରେ ମତାନ୍ଧତା ଏବଂ ସଂକୀର୍ଣ୍ଣ ଗୋଷ୍ଠୀବାଦ ବିରୁଦ୍ଧରେ ନିର୍ମମ ସଂଗ୍ରାମ ଚଳା ନ ଯାଏ, ତେବେ ଏକକ ଭାବେ ପାର୍ଟିଗୁଡ଼ିକର ବିକାଶର କେତେକ ପର୍ଯ୍ୟାୟରେ ତାହାସବୁ ପ୍ରଧାନ ବିପଦ ରୂପେ ପ୍ରକାଶ ପାଇପାରେ। ବୈଜ୍ଞାନିକ ବିଶ୍ଳେଷଣ ଯୋଗେ ମାର୍କସବାଦ ଲେନିନ୍‌ବାଦର ବିକାଶ ସାଧନ, ନିର୍ଦ୍ଦିଷ୍ଟ ଅବସ୍ଥା ଅନୁଯାୟୀ ତାର ସୃଜନଶୀଳ ପ୍ରୟୋଗ, ଏ ସଂପର୍କରେ ବୈପ୍ଲବିକ ପାର୍ଟିଗୁଡ଼ିକର ସାମର୍ଥ୍ୟକୁ ସେହି ମତାନ୍ଧତା ଓ ସଂକୀର୍ଣ୍ଣ ଗୋଷ୍ଠୀବାଦ, ଅପହରଣ କରେ —ନଷ୍ଟ କରିଦିଏ। ବ୍ୟାପକ ଶ୍ରମଜୀବୀ ଜନସାଧାରଣଙ୍କଠାରୁ କମ୍ୟୁନିଷ୍ଟମାନଙ୍କୁ ବିଚ୍ଛିନ୍ନ କରେ ଓ ସେମାନଙ୍କୁ ନିଷ୍କ୍ରିୟ ଅପେକ୍ଷାଶୀଳତାରେ, କିମ୍ବା ବୈପ୍ଲବିକ ସଂଗ୍ରାମରେ ବାମପନ୍ଥୀ ଦୁଃସାହସିକ ଭାଗ୍ୟାନ୍ୱେଷୀ କର୍ମ ମଧ୍ୟରେ ପକାଇ ଦିଏ। ଠିକ ସମୟାନୁସାରେ ପରିବର୍ତ୍ତନଶୀଳ ପରିସ୍ଥିତି ସମ୍ପର୍କରେ ନୂତନ ଅଭିଜ୍ଞତା ଯେଉଁ ନିର୍ଭୁଲ କଳନା କରାଯିବା ପଥରେ ଏହା କମ୍ୟୁନିଷ୍ଟ ପାର୍ଟିମାନଙ୍କର ପ୍ରତିବନ୍ଧକ ହୁଏ; ସାମ୍ରାଜ୍ୟବାଦ, ପ୍ରତିକ୍ରିୟା ଓ ଯୁଦ୍ଧ-ବିପଦ-ବିରୋଧୀ ସଂଗ୍ରାମରେ ଶ୍ରମିକଶ୍ରେଣୀ ଓ ସମସ୍ତ ଗଣତାନ୍ତ୍ରିକ ଶକ୍ତିଙ୍କର ବିଜୟ ଲାଗି ସମସ୍ତ ସୁବିଧା ସୁଯୋଗର ବ୍ୟବହାର ପଥରେ ବାଧାଦିଏ। ଏହା ଦ୍ୱାରା ନ୍ୟାୟର ସଂଗ୍ରାମରେ ବିଜୟ ହାସଲ କରାଯିବା ପଥରେ ହିଁ ଲୋକଙ୍କ ଆଗରେ ପ୍ରଧାନ ବାଧା ହୁଏ।”

ମାର୍କସବାଦ-ଲେନିନ୍‌ବାଦ, ସଂଶୋଧନବାଦୀ ଓ ମତାନ୍ଧତାବାଦୀ ଉଭୟଙ୍କର ସମାନ ଆକ୍ରମଣର ସମ୍ମୁଖୀନ ହୋଇ ଆସିଛି। ସମୟକ୍ରମେ ସଂଶୋଧନବାଦୀମାନେ, ସମାଜବାଦୀ ଓ ପୁଞ୍ଜିବାଦୀ ଦେଶର କମ୍ୟୁନିଷ୍ଟ ଓ ୱାର୍କର୍ସ ପାର୍ଟିମାନଙ୍କ ଉପରେ ଯେତେବେଳେ ସର୍ବତୋମୁଖୀ ବ୍ୟାପକ ଆକ୍ରମଣ ଚଳାଇଥିଲେ ୧୯୫୭-୫୯ରେ ସେତେବେଳେ ସଂକ୍ଷିପ୍ତ ସଂଶୋଧନବାଦର ଶେଷ ଶିଖା ଜଳି ଉଠିଥିଲା। ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ଓ ଅନ୍ୟ ମାର୍କସବାଦୀ-ଲେନିନବାଦୀ ପାର୍ଟିମାନେ ଦକ୍ଷିଣପନ୍ଥୀ ସୁବିଧାବାଦ ଓ ସଂଶୋଧନବାଦର ଅସଲ ରୂପକୁ ପଦାରେ ପକାଇ ତାକୁ ସବୁ ହଟାଇ ଦେବା ଲାଗି ପ୍ରବଳ ପରିଶ୍ରମର ସହ ଲାଗିପଡ଼ିଥିଲେ।

ଏହା ଫଳରେ ସଂଶୋଧନବାଦର ମତାଦର୍ଶ ଓ ରାଜନୈତିକ ଉଭୟ କ୍ଷେତ୍ରରେ ଚୂଡ଼ାନ୍ତ ପରାଜୟ ଘଟିଥିଲା।

ସଂଶୋଧନବାଦର ପରାଜୟ ପରେ ପରେ, ବିଶେଷକରି ୧୯୬୦ର କମ୍ୟୁନିଷ୍ଟ ଓ ୱାର୍କର୍ସ ପାର୍ଟିଗୁଡ଼ିକର ସମ୍ମିଳନୀ ପରଠାରୁ, ବାମପନ୍ଥୀ ସୁବିଧାବାଦ ଓ ମତାନ୍ଧତାବାଦ, କମ୍ୟୁନିଷ୍ଟ ଆନ୍ଦୋଳନର ମତାଦର୍ଶଗତ ସଂଗ୍ରାମ ମଧ୍ୟରେ ସମ୍ମୁଖକୁ ଆସିଛି ଓ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହୋଇ ଉଠିଛି। କହିବା ଅନାବଶ୍ୟକ—ବର୍ତ୍ତମାନର ବିଶ୍ୱ-ଇତିହାସର ସନ୍ଧିକ୍ଷଣରେ, ଯେତେବେଳେ ସବୁ ସମାଜବାଦୀ ଦେଶ ଲୋକଙ୍କର

ଓ ସବୁଦେଶର କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଅଖଣ୍ଡ ଏକତା ଏବାନ୍ତ ଗୁରୁତ୍ୱପୂର୍ଣ୍ଣ, ଯେତେବେଳେ ସୃଜନଶୀଳ ମାର୍କସବାଦ-ଲେନିନବାଦରୁ ସାମାନ୍ୟ ବିଚ୍ୟୁତ ବିଶ୍ୱ ମୁକ୍ତି ଆନ୍ଦୋଳନ ପ୍ରତି, ଶାନ୍ତି, ଗଣତନ୍ତ୍ର, ଜାତୀୟ ସ୍ୱାଧୀନତା ଓ ସମାଜବାଦ ଲାଗି ସଂଗ୍ରାମ ପ୍ରତି ଘୋର କ୍ଷତିକାରକ, ସେତେବେଳେ ବାମପନ୍ଥୀ ସୁବିଧାବାଦ, ବିଶେଷ ଭାବରେ ଅତି ବିପଦଜନକ ହୋଇ ଉଠିଛି ।

ଦ୍ୱିତୀୟରେ ସଂଶୋଧନବାଦୀମାନେ,ଶ୍ରମିକଶ୍ରେଣୀ ଆନ୍ଦୋଳନକୁ ସୁଧାରବାଦୀ ପଥକୁ ଠେଲି ଦିଅନ୍ତି ଏବଂ ମତାନ୍ଧବାଦୀମାନେ, ତାକୁ ବାମପନ୍ଥୀ ଦୁଃସାହସିକ ଭାଗ୍ୟାନ୍ୱେଷଣ ମାର୍ଗକୁ ଟାଣି ନିଅନ୍ତି । ଦୁହେଁଯାକ ସମାନ ଭାବରେ ମାର୍କସବାଦ-ଲେନିନ୍‌ବାଦରୁ ବିଚ୍ୟୁତ ହୁଅନ୍ତି । ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ୧୯୫୭ର ଘୋଷଣା ଏବଂ ୧୯୬୦ର ଇସ୍ତାହାରରେ ପ୍ରଦର୍ଶିତ ମତକୁ ଏମାନେ ବିରୋଧ କରୁଛନ୍ତି । ତେଣୁ ଏମାନେ ଲୋକଙ୍କ ମୁକ୍ତି ଆନ୍ଦୋଳନର ଘୋର କ୍ଷତି କରୁଛନ୍ତି । ସଂଶୋଧନବାଦୀ ଓ ମତାନ୍ଧବାଦୀ, ଉଭୟେ ବସ୍ତୁଗତ ଭାବେ ବିଶ୍ୱ-ବୈପ୍ଳବିକ ଶକ୍ତିମାନଙ୍କୁ ଦୁର୍ବଳ କରୁଛନ୍ତି । ଏହିଭଳି ଯେଉଁ ଲୋକେ ସବୁ ନୂତନ ଅବସ୍ଥା ସହିତ ଖାପ ଖାଉ ନ ଥିବା ତାତ୍ତ୍ୱିକ ସୂତ୍ରଗୁଡ଼ିକୁ ଆଉଡ଼ାନ୍ତି, ସେହି ସବୁ ଲୋକଙ୍କୁ ସତର୍କ କରାଇ ଲେନିନ୍ କହିଥିଲେ ଯେ, ଏମାନେ "ଜୀବନର ପଛରେ ପଡ଼ିଥାନ୍ତି ଓ ଏହାର ପରିଣାମରେ ଏଣୁ, ସର୍ବହରାର ଶ୍ରେଣୀସଂଗ୍ରାମ ବିରୁଦ୍ଧରେ କାର୍ଯ୍ୟତଃ ପେଟି-ବୁର୍ଜୁଆ-ମାନଙ୍କ ପକ୍ଷରେ ହିଁ ରହି ଆସିଛନ୍ତି ।"

ଏହା ଏବେ ଅଧିକରୁ ଅଧିକ ସ୍ପଷ୍ଟ ହେଲାଣି ଯେ, ଚୀନର ନେତୃତ୍ୱ,ଅତିବାମୀ ବୈପ୍ଳବିକ 'ଶବ୍ଦ' ଓ ସ୍ଲୋଗାନଗୁଡ଼ିକୁ ଧୂଆଁବାଣ ଭଳି ବ୍ୟବହାର କରି ତାର ଆଢୁଆଳରେ ରହି ବିଶ୍ୱ ସମାଜବାଦର ଲାଭ ବା ନୀତିଗୁଡ଼ିକ ବିରୁଦ୍ଧରେ ଭୟାନକ ଆକ୍ରମଣ ଚଳାଉଛନ୍ତି, ସାମ୍ରାଜ୍ୟବାଦ ବିରୁଦ୍ଧରେ ନୁହେଁ, ସୋଭିଏତ ଇଉନିଅନ ଓ ଅନ୍ୟସବୁ କମ୍ୟୁନିଷ୍ଟ ପାର୍ଟି ବିରୁଦ୍ଧରେ ପ୍ରଧାନ ଆକ୍ରମଣକୁ କେନ୍ଦ୍ରୀଭୂତ କରିଛନ୍ତି । କଳୁ ମାର୍କସବାଦ-ଲେନିନବାଦର ପରିପନ୍ଥୀ ଶକ୍ତି ଲୁବାଦନ୍ତି ଦଳ ଓ ଉପଦଳମାନ ଠେକ କରି କମ୍ୟୁନିଷ୍ଟ ପାର୍ଟିଗୁଡ଼ିକୁ ଭାଗ ଭାଗ କରିବା ହେଉଛି,ଚୀନ ନେତାମାନଙ୍କ ଅଭିପ୍ରାୟ ।

ଚୀନ ନେତାମାନଙ୍କର ମୁଖ୍ୟ ସଂଗ୍ରାମଗତ କୌଶଳ ହେଲା ଅନ୍ୟ ସବୁ କମ୍ୟୁନିଷ୍ଟ ପାର୍ଟି,ଶ୍ରମିକଶ୍ରେଣୀ ଓ ଜାତୀୟ ମୁକ୍ତି ଆନ୍ଦୋଳନକୁ ନିଜର ଉଗ୍ରଜାତୀୟତାବାଦୀ ସ୍ୱାର୍ଥ ଓ କ୍ଷମତା ବିସ୍ତାର ତୃଷ୍ଣା ପୂରଣ ଦିଗରେ ବ୍ୟବହାର କରିବା ।

ଏହି କାରଣରୁ ବିଶ୍ୱ-କମ୍ୟୁନିଷ୍ଟ ଆନ୍ଦୋଳନ, ଏକ ଦିଗରେ ଦକ୍ଷିଣପନ୍ଥୀ ସୁବିଧାବାଦ ଓ ସଂଶୋଧନବାଦର ମୁଖା ଖୋଲି ଦେବା ଓ ତାକୁ ସମାଲୋଚନା କରିବାରୁ ବିରତ ନ ହୋଇ ଏବଂ ଅନ୍ୟ ଦିଗରେ ବାମପନ୍ଥୀ ସୁବିଧାବାଦ, ମତାନ୍ଧତା ଗୋଷ୍ଠୀବାଦ ଓ ଗଣନୀତିରେ ଦୁଃସାହସିକ ଭାଗ୍ୟାନ୍ୱେଷଣରେ

ବିରୁଦ୍ଧରେ ଏବେ ନିର୍ମୂଳ ସଂଗ୍ରାମ ଚଳାଉଛୁ—ସେହି ସଂଗ୍ରାମକୁ ଅଧିକ ପ୍ରଖର ଓ ପ୍ରବଳ କରୁଛୁ ।

ମାର୍କ୍ସବାଦୀ ଲେନିନ୍‌ବାଦୀମାନେ, ସର୍ବହରା ଆନ୍ତର୍ଜାତୀୟତାର ନୀତି ଉପରେ ନିଜର କାର୍ଯ୍ୟକର୍ମକୁ ପର୍ଯ୍ୟବସିତ କରନ୍ତି ଓ ବୁର୍ଜୁଆ ଜାତୀୟତାବାଦର ସମସ୍ତ ପ୍ରକାର ପ୍ରକାଶନକୁ ଦୃଢ଼ଭାବେ ପ୍ରତିରୋଧ କରନ୍ତି । ଜାତୀୟତାବାଦୀ ଗଣ୍ଡିବଦ୍ଧ ଓ ପ୍ରବୃତ୍ତିଗୁଡ଼ିକୁ ଯଦି ସାଲିସକାମୀ ଉଦାରତାର ସହ ପ୍ରଶ୍ରୟ ଦିଆ ନଯାଏ, ତେବେ ତାହା ସମଗ୍ର ପୃଥିବୀ ବ୍ୟାପୀ ବିପ୍ଳବ, କମ୍ୟୁନିଷ୍ଟ ଓ ଜାତୀୟ ମୁକ୍ତି ଆନ୍ଦୋଳନକୁ ଆଉ ସମାଜବାଦୀ ଦେଶ ଗୋଷ୍ଠୀକୁ ବିଶେଷ ଭାବରେ କ୍ଷତିଗ୍ରସ୍ତ କରିବା ଅସମ୍ଭବ ହେବ ନାହିଁ । ଲେନିନ୍ ଏଣୁ ଲେଖିଥିଲେ, "ଯିଏ ଜାତୀୟତାବାଦୀ ଦୃଷ୍ଟିକୋଣ ଗ୍ରହଣ କରେ, ସ୍ୱାଭାବିକ ଭାବରେ ସେ ତାର ଜାତି ଓ ତାର ଜାତୀୟ ଶ୍ରମିକଶ୍ରେଣୀ ଆନ୍ଦୋଳନର ଚତୁଃପାର୍ଶ୍ୱରେ ଚୀନ-ପ୍ରାଚୀର ଭଳି ଏକ ପ୍ରକାଣ୍ଡ ପ୍ରାଚୀର ନିର୍ମାଣ କରିବାର ଅଭିଳାଷରେ ଉପନୀତ ହୁଏ । ସେ ତାର ବିଚ୍ଛେଦମୂଳକ ଓ ଭାଗ ଭାଗ କରି ଫାଙ୍କ ଛେଦ କରିବାର କୌଶଳମୂଳକ ଚେଷ୍ଟାରେ, ସବୁ ଦେଶର ସବୁ ଜାତି ଉପଜାତିର ଓ ସବୁ ଖଟାଉଟି ଜନସାଧାରଣମାନଙ୍କ ଐକ୍ୟ ଓ ସମାବେଶର ଆହ୍ୱାନକୁ ଶୂନ୍ୟରେ ପରିଣତ କରେ—ଏହିପରି ଏହା ଦ୍ୱାରା ସେ କେବେହେଲେ ଟିକେ ବିବ୍ରତ ହୁଏ ନାହିଁ ।"

## ୩ । ସାମ୍ୟବାଦ ଓ ବୈଦେଶିକ ନୀତି

ମାନବ ଜାତିର ଇତିହାସ 'ଶ୍ରେଷ୍ଠ' 'ବଡ଼', ଦ୍ୱନ୍ଦ୍ୱ ବିବାଦ, ସମର ସଂଘର୍ଷର ଏକ ଅସୀମ ଧାରାକୁ ପ୍ରକାଶ କରେ ।

ଐତିହାସିକମାନେ କହନ୍ତି ଯେ, ୩୫୦୦ ବର୍ଷର ଇତିହାସ ମଧ୍ୟରୁ ୩୦୦ ବର୍ଷ ମାତ୍ର ଯୁଦ୍ଧ ବିହୀନ ସମୟ । ବିଂଶ ଶତାବ୍ଦୀରେ ପୁଞ୍ଜିବାଦର ସାମ୍ରାଜ୍ୟବାଦ ପର୍ଯ୍ୟାୟକୁ ଉନ୍ନୀତ ହେବା ଫଳରେ ଯୁଦ୍ଧ ସବୁ ବିଶେଷ ଭାବରେ ଅଧିକ ବ୍ୟାପକ ଓ ଅଧିକ ପ୍ରଳୟଙ୍କର ହୋଇଉଠିଛି । ପୂର୍ବରୁ କୁହାଯାଇଛି, ଦୁଇଟି ବିଶ୍ୱ ଯୁଦ୍ଧରେ କୋଟି କୋଟି ଲୋକ ନିହତ ହୋଇଛନ୍ତି । ଯଦି ଏକ ନୂଆ ବିଶ୍ୱଯୁଦ୍ଧ ଲାଗିବା ପାଇଁ ଅବସ୍ଥାକୁ ଅଙ୍କୁରରେ ନଷ୍ଟ କରି ନ ଦିଆଯାଏ, ତେବେ କ୍ଷେପଣାସ୍ତ୍ର ଓ ପରମାଣୁ ଅସ୍ତ୍ର ସାହାଯ୍ୟରେ ସେହି ଯୁଦ୍ଧ ଭୟଙ୍କର ହୋଇଉଠିବ-ଏହା ଫଳରେ କୋଟି କୋଟି ଲୋକ ମୁହୂର୍ତ୍ତକରେ ଲୋପ ପାଇଯିବେ, କେତେ ଦେଶ, କେତେ ମହାଦେଶ ଭସ୍ମ ହୋଇଯିବ । ଏତିକି କହିଲେ ଯଥେଷ୍ଟ ହେବ ଯେ, ଗୋଟିଏ ଶକ୍ତିଶାଳୀ ପରମାଣୁ ବିସ୍ଫୋରଣରେ ଧ୍ୱଂସକାରୀ ପ୍ରଭାବ, ଅଞ୍ଚଳରେ ସମସ୍ତ ଜୀବରେ ବିଧ୍ୱସ୍ତ ହୋଇଯିବ

ସମସ୍ତ ପ୍ରକାର ବିସ୍ଫୋରକ ଦ୍ରବ୍ୟର ମୋଟ ଧ୍ୱଂସକାରୀ ପ୍ରଭାବଠାରୁ ବହୁ ମାତ୍ରାରେ, ବହୁ ଗୁଣରେ ଅଧିକ ।

## ପ୍ରଧାନ ଆନ୍ତର୍ଜାତୀୟ ସମସ୍ୟା

ପୃଥିବୀ ସାରା, ଶାନ୍ତି ଚାହାନ୍ତି ସମସ୍ତେ । ସେମାନଙ୍କର ପ୍ରଶ୍ନ ହେଉଛି—ଯୁଦ୍ଧ ଓ ରକ୍ତପାତ କଣ ମନୁଷ୍ୟ ସ୍ୱଭାବର ଲକ୍ଷଣ ? ପୂର୍ବ ନିର୍ଦ୍ଦେଶିତ ଘଟଣା ? ବିଶ୍ୱବ୍ୟାପୀ ପାରମାଣବିକ ଯୁଦ୍ଧର ପ୍ରଳୟଙ୍କର ଧ୍ୱଂସକୁ କଣ ବନ୍ଦ କରାଯାଇ ନ ପାରେ, ଏଡ଼ା ଦିଆଯାଇ ନ ପାରେ ? ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ବିବାଦୀୟ ବିଷୟଗୁଡ଼ିକ କଣ ସାମରିକ ଉପାୟ ବିନା ସମାଧାନ ହୋଇ ନ ପାରେ ? ସ୍ଥାୟୀ ଶାନ୍ତି କଣ ପ୍ରତିଷ୍ଠିତ ହୋଇ ପାରିବ, ବିଭିନ୍ନ ସାମାଜିକ ପ୍ରଣାଳୀର ରାଷ୍ଟ୍ରଗୁଡ଼ିକ ମଧ୍ୟରେ, ପ୍ରତିଯୋଗିତା ଚାଲିଥିବାର ଅବସ୍ଥାରେ ? ବିଶ୍ୱବ୍ୟାପୀ ଯୁଦ୍ଧର 'ଆଶ୍ରୟ' ନ ନେଇ ସମାଜବାଦ କଣ ପୁଞ୍ଜିବାଦକୁ ହଟାଇ ପ୍ରତିଷ୍ଠିତ ହୋଇପାରିବ ନାହିଁ ?

ଏହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଗୁଡ଼ିକର ବିଭିନ୍ନ ପ୍ରକାର ଉତ୍ତର ମିଳେ ।

ଲୋକଙ୍କୁ ଠକିବା ଉଦ୍ଦେଶ୍ୟରେ ବୁର୍ଜୁଆ ମତାଦର୍ଶବାଦୀମାନେ ଦାବୀ କରନ୍ତି ଯେ, ମନୁଷ୍ୟ ସମାଜର ଚିର ସହଚର ହେଉଛି ଯୁଦ୍ଧ; ଶାନ୍ତି ହେଉଛି, ଯୁଦ୍ଧ ଭିତରେ ଏକ ନିଃଶ୍ୱାସ ନେବାର ମୁହୂର୍ତ୍ତ ମାତ୍ର । ଯୁକ୍ତରାଷ୍ଟ୍ର ଆମେରିକାର ସବୁଠାରୁ ବଳି ଉନ୍ମାଦଗ୍ରସ୍ତ କିଆଁ ଗିଳା ଯୁଦ୍ଧଖୋରମାନେ କହନ୍ତି—"ଗତ ଯୁଦ୍ଧର କେତେକ ଅଭିଯାନ ତୁଳନାରେ ଏକ ସର୍ବବ୍ୟାପୀ ପରମାଣୁ ଆକ୍ରମଣ ଅଧିକ ବିପଦ୍‌ଜନକ ନୁହେଁ ।" ପ୍ରଥମତଃ ସାମ୍ରାଜ୍ୟବାଦ ଓ ଶୋଷକଶ୍ରେଣୀ ଏଭଳି ଦାବୀ କରନ୍ତି—ସେହି ଭୟଙ୍କର ସୃଷ୍ଟି ବିଶ୍ୱ ଯୁଦ୍ଧର ପ୍ରକୃତ କାରଣକୁ ସାଧାରଣ ଲୋକଙ୍କ ପାଖରୁ ଗୁପ୍ତ ରଖିବା ଲାଗି; ଦ୍ୱିତୀୟତଃ, ସେମାନେ ଲୋକଙ୍କ ମନରେ ଭର୍ତ୍ତି କରିବାକୁ ଚେଷ୍ଟା କରନ୍ତି ଯେ, ନୂତନ ଏକ ଯୁଦ୍ଧ ଅନିବାର୍ଯ୍ୟ, ତାକୁ ରୋକିବାର ଯେକୌଣସି ଧରଣର ପ୍ରଚେଷ୍ଟା ଅର୍ଥହୀନ ।

ଯୁଦ୍ଧ ଓ ଶାନ୍ତିର ପ୍ରଶ୍ନ ଘେନ ପ୍ରକୃତ ମାର୍କସ୍‌ବାଦୀ-ଲେନିନବାଦୀମାନେ ହିଁ କେବଳ ସଠିକ ଭାବରେ ଉତ୍ତର ଦିଅନ୍ତି :

—ଜାତି ଜାତି ମଧ୍ୟରେ ଯୁଦ୍ଧ, ମନୁଷ୍ୟ ସମାଜର ସ୍ୱଭାବର ଲକ୍ଷଣ ନୁହେଁ, ପୂର୍ବ ନିର୍ଦ୍ଦେଶିତ ନୁହେଁ ।

—ବିଶ୍ୱବ୍ୟାପୀ ପ୍ରଳୟଙ୍କର ପାରମାଣବିକ ଧ୍ୱଂସକୁ ବନ୍ଦ କରାଯାଇପାରେ, ଏଡ଼ା ଦିଆଯାଇପାରେ । ତାକୁ ବନ୍ଦ କରିବାକୁ ହେବ, ନିଶ୍ଚିତ ରୂପରେ ଏଡ଼ାଇବାକୁ ହେବ ।

— ପୃଥିବୀବ୍ୟାପୀ ସମସ୍ତ ଲୋକଙ୍କର ସ୍ୱାର୍ଥ ଦୃଷ୍ଟିରୁ ବିଭିନ୍ନ ରାଷ୍ଟ୍ର ମଧ୍ୟରେ ବିବାଦୀୟ ବିଷୟଗୁଡ଼ିକର ସମାଧାନ ଆସିପାରେ, ଶାନ୍ତିପୂର୍ଣ୍ଣ ଉପାୟରେ ।

— ବିଭିନ୍ନ ପ୍ରକାରର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ବ୍ୟବସ୍ଥାର ଦେଶମାନଙ୍କ ମଧ୍ୟରେ ଚିରସ୍ଥାୟୀ ଶାନ୍ତି ଓ ସହଯୋଗ ସୁନିଶ୍ଚିତ ହୋଇପାରେ ।

— ଯୁଦ୍ଧର ଆଶ୍ରୟ ନ ନେଇ ସାମ୍ୟବାଦ ବା କମ୍ୟୁନିଜମ୍ ବ୍ୟାପକରୂପେ ସମଗ୍ର ପୃଥିବୀରେ ବିଜୟ ଲାଭ କରିପାରେ ।

ବିଶ୍ୱବ୍ୟାପୀ ପାରମାଣବିକ ଯୁଦ୍ଧ ବିରୁଦ୍ଧରେ, ସୁଦୃଢ଼ ଗ୍ୟାରେଣ୍ଟି ବା ପ୍ରତିଶ୍ରୁତି ହେଉଛି, ଶାନ୍ତି, ପ୍ରଗତି, ଗଣତନ୍ତ୍ର ଓ ସମାଜବାଦର ସମ୍ମିଳିତ ଶକ୍ତି — ସେମାନଙ୍କର ଐକ୍ୟ-ବିଧାନ । ମାର୍କସବାଦୀ-ଲେନିନ୍‌ବାଦୀମାନେ ବିଶ୍ୱାସ କରନ୍ତି— ପୃଥିବୀରେ ଯୁଦ୍ଧର ବିଲୋପ ଓ ଶାନ୍ତିର ବିଜୟ ହେଉଛି, କମ୍ୟୁନିଜମ୍‌ର ଐତିହାସିକ ଲକ୍ଷ୍ୟ ।

ସମାଜବାଦୀ ଦେଶମାନଙ୍କର ବୈଦେଶିକ ନୀତି କିଭଳି ହେବା ଉଚିତ ? ଏହି ଲକ୍ଷ୍ୟ ହାସଲ ଲାଗି ସେମାନେ ଅନ୍ୟ ଶାନ୍ତିପ୍ରିୟ ଦେଶମାନଙ୍କ ସହିତ ମିଳିତ ହୋଇ ସାମ୍ରାଜ୍ୟବାଦୀମାନଙ୍କୁ କି ପ୍ରକାର ନୀତି ଗ୍ରହଣ ଲାଗି ବାଧ୍ୟ କରେଇବା ଉଚିତ ?

ମାର୍କସ୍‌ବାଦୀ-ଲେନିନ୍‌ବାଦୀମାନେ ଦୃଢ଼ ବିଶ୍ୱାସର ସହିତ ଘୋଷଣା କରନ୍ତି— ଏହି ନୀତି ହେଉଛି, ଶାନ୍ତିପୂର୍ଣ୍ଣ ସହାବସ୍ଥାନମୂଳକ ନୀତି ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନ ବା ପାରମାଣବିକ ପ୍ରଳୟ—ବିଜ୍ଞାନୀ ଭାବରେ ଏହି ପ୍ରଶ୍ନ ଆଜି ଉପସ୍ଥାପିତ କରିଛି ଇତିହାସ ! ଯଦି କୌଣସି ଦେଶର କୌଣସି ବ୍ୟକ୍ତିକୁ ପଚରାଯାଏ, ଯୁଦ୍ଧ ଆଉ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ମଧ୍ୟରୁ, ଅର୍ଥାତ୍ ଅକଳନ ଭାବରେ କ୍ଷୟକ୍ଷତିକାରୀ, ବିପୁଳ ଭାବରେ ଧ୍ୱଂସକାରୀ, ଆଉ ସମାଜବାଦର ବିଜୟକୁ ଆହୁରି ଅଧିକ ଦିନ ସ୍ଥଗିତ ଓ ବିଳମ୍ବିତକାରୀ ଯୁଦ୍ଧ ଏବଂ ଯାବତୀୟ ଅନ୍ତର୍ଜାତୀୟ ସାମାଜିକ ସମସ୍ୟାର ସମାଧାନ ଲାଗି ସର୍ବଶ୍ରେଷ୍ଠ ଅନୁକୂଳ ବାତାବରଣ ସୃଷ୍ଟିକାରୀ ଶାନ୍ତିପୂର୍ଣ୍ଣ ସହାବସ୍ଥାନ—ଏ ଦୁଇଟି ମଧ୍ୟରୁ କେଉଁଟିକୁ ସେ ବାଛିବ, କେଉଁଟିକୁ ଗ୍ରହଣ କରିବ, ତେବେ ନିଶ୍ଚୟ ସେ କହିଉଠିବ—"ମୁଁ ଚାହେଁ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଚାହେଁ ।"

## ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଲେନିନ୍‌ବାଦୀ ନୀତି

ବିଭିନ୍ନ ବ୍ୟବସ୍ଥାର ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଗଜଦନ୍ତ ପଲଙ୍କରେ ଶୋଇଥିବା କେଉଁ ଏକ ବୈଜ୍ଞାନିକର ସ୍ୱପ୍ନ ନୁହେଁ, କିମ୍ବା ତାହା କୌଣସି ରାଷ୍ଟ୍ରନାୟକଙ୍କ ବା କୌଣସି ପାର୍ଟିର ଉଦ୍ଦେଶ୍ୟର ପ୍ରକାଶ ନୁହେଁ ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହେଉଛି, ଏକ ଐତିହାସିକ ଅନିବାର୍ଯ୍ୟତା ଓ ବସ୍ତୁଗତ ଆବଶ୍ୟକତା ।

ପୁଞ୍ଜିବାଦୀ ଦେଶମାନଙ୍କରେ ଶାନ୍ତିର ବିରୋଧୀମାନେ, ଶାନ୍ତିପୂର୍ଣ୍ଣ ସହାବସ୍ଥାନର ନୀତିକୁ ବିକୃତ କରିବାକୁ ଚାହାନ୍ତି; ତାର କଦର୍ଥ କରି ବୁଝା ପ୍ରଚାର କରନ୍ତି, ସେଥିରେ କଳଙ୍କ ଆରୋପ କରିବାକୁ ଚାହାନ୍ତି ।

ସେମାନେ ଘୋଷଣା କରନ୍ତି ଯେ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହେଉଛି, ଗୋଟାଏ ପ୍ରକାରର ଯନ୍ତ୍ର ବା ଫାଶ, ପାଶ୍ଚାତ୍ୟ ଦେଶକୁ ସବୁ ଫାନ୍ଦରେ ପକାଇବା ଲାଗି ଚତୁର ଆଉ ସୂକ୍ଷ୍ମ ଏକ କୌଶଳ । ଋଷବାଦର୍ଶ ଷେତ୍ରରେ, ଏହା ଶାନ୍ତି ଓ ଶାନ୍ତିପୂର୍ଣ୍ଣ କଥା କଳ୍ପନା କରେ ନାହିଁ, ତାକୁ ସ୍ୱୀକାର କରେ ନାହିଁ ।

ଦ୍ୱିତୀୟରେ ସେମାନେ କହନ୍ତି,—ସମାଜବାଦୀ ଦେଶସବୁ ପାଶ୍ଚାତ୍ୟ ଦେଶଗୁଡ଼ିକୁ "ନିରପଦତାର ଗୋଟାଏ ସନନ୍ଦ"ବା ପ୍ରତିଶ୍ରୁତିର ଲିପି ପ୍ରଦାନ କରିବା ଉଚିତ୍ । ଏହା ଅନ୍ତତଃ ପୁଞ୍ଜିବାଦୀ ଦେଶଗୁଡ଼ିକର ସାମାଜିକ ବ୍ୟବସ୍ଥାର ସ୍ଥାୟିତ୍ୱ ସମ୍ବନ୍ଧରେ ଗ୍ୟାରେଣ୍ଟି ବା ପ୍ରତିଶ୍ରୁତି ହେବ । ଶାନ୍ତିପୂର୍ଣ୍ଣ ସହବସ୍ଥାନ ସହାଶେ କମ୍ୟୁନିଷ୍ଟଙ୍କର ଆହ୍ୱାନ ଏବଂ ସମଗ୍ର ପୃଥିବୀରେ କମ୍ୟୁନିଜିମର ବିଜୟ ଯେଉଁ ସେମାନଙ୍କର ଦୃଢ଼ ବିଶ୍ୱାସ—ଏହା ମଧ୍ୟରେ ଗୋଟାଏ ପରସ୍ପର ବିରୋଧିତା ଅଛି ବୋଲି ପୁଞ୍ଜିବାଦୀ ଦେଶଗୁଡ଼ିକର ଶାନ୍ତିର ବିରୋଧୀମାନେ ଅନୁମାନ କରନ୍ତି । ସେମାନେ ଏଣୁ କହନ୍ତି—ଯେତେ ଦିନଯାଏ ସମାଜବାଦୀ ଦେଶସବୁ କମ୍ୟୁନିଜିମ ଲାଗି ଲଢ଼ୁଥିବେ, ସେତେ ଦିନଯାଏ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସମ୍ଭବ ହୋଇ ପାରିବ ନାହିଁ ।

ତୃତୀୟରେ, ଏପରିକି କେତେକ ଖ୍ରୀଷ୍ଟ-ନାୟକ ମନେ କରନ୍ତି, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହେଉଛି, ନୂତନ ଓ ପ୍ରଚ୍ଛନ୍ନ ରୂପରେ ଔପନିବେଶିକ ଅଧିକାରକୁ ରକ୍ଷା କରିବାର ଏକ ଉପାୟ ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଏହି ବ୍ୟାଖ୍ୟାର ପ୍ରକୃତ ଘଟଣାର ବାସ୍ତବତା ସହିତ କୌଣସି ସମ୍ବନ୍ଧ ନାହିଁ ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଅର୍ଥ ନୁହେଁ, ମତାଦର୍ଶଗୁଡ଼ିକର ମିଳନ । ଶ୍ରମିକ-କୃଷକମାନେ ଯେମିତି ଏକଚାଟିଆ ପୁଞ୍ଜିପତି ଓ ଜମିଦାରଙ୍କ ଶାସନର କାଳ କାଳ ସ୍ଥାୟିତ୍ୱକୁ ମାନି ନେବା କେବେ ସମ୍ଭବ ନୁହେଁ, ଯେମିତି ଠିକ୍ ପୁଞ୍ଜିବାଦର ମତାଦର୍ଶକୁ ସମାଜବାଦର ମତାଦର୍ଶ, ସ୍ୱୀକାର କରିବା ସମ୍ଭବ ନୁହେଁ ।

ବିଭିନ୍ନ ସାମାଜିକ ବ୍ୟବସ୍ଥାର ରାଷ୍ଟ୍ରମାନଙ୍କ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଅର୍ଥ, ଶ୍ରେଣୀସଂଗ୍ରାମର ପରିସମାପ୍ତି ନୁହେଁ; ବରଂ ଅନ୍ୟ ଦିଗରେ ସେହି ଶାନ୍ତିପୂର୍ଣ୍ଣ



ଲେଲେ ଯା' ଯୁଦ୍ଧାସ୍ତ୍ର

ସହାବସ୍ଥାନ, ପୃଥିବୀର ରଙ୍ଗମଞ୍ଚରେ ବଳସ୍ୱୀ ସମାଜବାଦ ଓ ତାର ଧ୍ୱସ୍ତ ପୁଞ୍ଜିବାଦ ମଧ୍ୟରେ ଶ୍ରେଣୀସଂଗ୍ରାମର ଏକ ନିର୍ଦ୍ଦିଷ୍ଟ ରୂପ, ଏକ ତୀବ୍ର ଆପୋଷହୀନ ସଂଗ୍ରାମ; ପୃଥିବୀବ୍ୟାପୀ କମ୍ୟୁନିଜମର ବିଜୟରେ ହିଁ କେବଳ ସେ ସଂଗ୍ରାମର ଅବସାନ ହେବ ।

ପୁଞ୍ଜିବାଦୀ ଜୀବନପ୍ରଣାଳୀର ବା ଔପନିବେଶିକବାଦର ରକ୍ଷା ଛଳରେ କୌଣସି ଲୋକ ବା କୌଣସି ଦେଶ, ପୁଞ୍ଜିପତି ଓ ଔପନିବେଶିକବାଦୀମାନଙ୍କୁ କେବେହେଲେ ନୈତିକ ଭାବରେ ତାର ପ୍ରତିଶ୍ରୁତି ଦେବ ନାହିଁ, ଅସ୍ତ୍ର ପ୍ରଦାନ କରିବ ନାହିଁ ।

ମହାଦେଶଗତ ସଂଗ୍ରାମ, ପୁଞ୍ଜି ବିରୁଦ୍ଧରେ ଶ୍ରମିକମାନଙ୍କର ଦିନକୁ ଦିନ ପ୍ରସାରି ପାଉଥିବା ଶ୍ରେଣୀ ସଂଘର୍ଷ, ଜାତୀୟ ମୁକ୍ତି ଆନ୍ଦୋଳନର ବିରାଟ ଅଭ୍ୟୁତ୍ଥାନ ଏବଂ ଔପନିବେଶିକ ଶୃଙ୍ଖଳ ଛିନ୍ନ କରିଥିବା ୫୦ ରୁ ଊର୍ଦ୍ଧ୍ୱ ନୂତନ ସ୍ୱାଧୀନ ଦେଶମାନଙ୍କର ଆବିର୍ଭାବ—ଏ ସମସ୍ତ ଘଟଣା ଦୃଢ଼ଭାବରେ ଯେ ପ୍ରତିପାଦନ କରେ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ସ୍ୱାଧୀନତାର ସଂଗ୍ରାମକୁ ବ୍ୟାହତ କରିବା, ବହିର୍ଭୂତ କରି ରଖିବା ତ ଦୂରର କଥା, ଓଲଟି ତାକୁ ହିଁ ସମସ୍ତ ପ୍ରକାରେ ଉତ୍ସାହିତ କରେ ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନର ବିରୋଧୀମାନେ ଯାହା କହନ୍ତୁ ପଛେ, ସମାଜବାଦୀ ଓ ପୁଞ୍ଜିବାଦୀ ଦେଶସବୁ ପରସ୍ପରର ପାଖାପାଖି ହୋଇ ରହିଛନ୍ତି । ସାମ୍ରାଜ୍ୟବାଦୀ ଓ ପ୍ରତିକ୍ରିୟାଶୀଳମାନେ କିନ୍ତୁ ସମାଜବାଦକୁ ଦେଖିପାରନ୍ତି ନାହିଁ, ଚାହାନ୍ତି ନାହିଁ । ସ୍ୱାଭାବିକ ଭାବରେ ସମାଜବାଦୀ ଦେଶର ଲୋକଙ୍କର ଦୃଢ଼ ବିଶ୍ୱାସ ଯେ, ଶୀଘ୍ର ହେଉ ବା ବିଳମ୍ବରେ ହେଉ, ଅଧିକ ପ୍ରଗତିଶୀଳ ସାମାଜିକ ବ୍ୟବସ୍ଥା କମ୍ୟୁନିଜମ ବା ସାମ୍ୟବାଦ, ପୃଥିବୀବ୍ୟାପୀ ଜୟ ଲାଭ କରିବ । ପ୍ରକୃତ ମାର୍କସବାଦୀ-ଲେନିନବାଦୀ—ପ୍ରକୃତ କମ୍ୟୁନିଷ୍ଟମାନେ କିନ୍ତୁ ଚାହାନ୍ତି ନାହିଁ ବଳ ପୂର୍ବକ କମ୍ୟୁନିଜମକୁ ବା ସାମ୍ୟବାଦକୁ କେଉଁଠି ନେଇ ରୋପଣ କରିବେ, ପ୍ରତିଷ୍ଠା କରିବେ ।

ଏଭଳି ଅବସ୍ଥାରେ ଯେଉଁ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ସୋଭିଏତ୍ ଇଉନିଅନ ଓ ଅନ୍ୟ ସମାଜବାଦୀ ଦେଶମାନ ଏବେ ଅଧ୍ୟବସାୟର ସହିତ ଲାଗିପଡ଼ିଛନ୍ତି, ସେହି ଶାନ୍ତିପୂର୍ଣ୍ଣ ସହାବସ୍ଥାନର ନୀତିଟି କଣ ?

ସଂକ୍ଷେପରେ କହିଲେ, ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ବିବେଚନା କରି ପ୍ରସ୍ତାବ କରେ ଯେ, ରାଷ୍ଟ୍ରମାନଙ୍କ ମଧ୍ୟରେ ସଂପର୍କ, ପରମାଣୁ ଯୁଦ୍ଧକୁ ଏଡ଼ିବା ବା ବନ୍ଦ କରିବା ଦିଗରେ ଉଦ୍ଦିଷ୍ଟ ହେଉ; ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ବିବାଦୀୟ ପ୍ରଶ୍ନଗୁଡ଼ିକ ବଳ ପ୍ରୟୋଗ ଦ୍ୱାରା, ଯୁଦ୍ଧ ଦ୍ୱାରା ସମାଧାନ ନ ହେଉ । ବିଭିନ୍ନ ସାମାଜିକ ବ୍ୟବସ୍ଥାର ରାଷ୍ଟ୍ରମାନଙ୍କ ମଧ୍ୟରେ ସଂପର୍କ ପ୍ରତି ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତି ପ୍ରଯୁଜ୍ୟ ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନର ନିହିତାର୍ଥ ହେଉଛି, ଆନ୍ତର୍ଜାତୀୟ ବିବାଦ ସମାଧାନର ଏକ ଉପାୟ ଭାବରେ ଯୁଦ୍ଧକୁ ପରିହାର କରିବା ଓ କଥାବାର୍ତ୍ତା ସୂତ୍ରରେ ତାର ସମାଧାନ ଆଣିବା—ଦେଶମାନଙ୍କ ମଧ୍ୟରେ ସମତା, ପରସ୍ପର ପ୍ରତି ବିଶ୍ୱାସ ଓ ପାରସ୍ପରିକ ବୁଝାମଣା ସୃଷ୍ଟି କରିବା ପ୍ରତ୍ୟେକର ଅନ୍ୟର ସ୍ୱାର୍ଥ ପ୍ରତି ବିଚାରପୂର୍ଣ୍ଣ ଦୃଷ୍ଟିପାତ ଆଣିବା, ଆଭ୍ୟନ୍ତରୀଣ ବ୍ୟାପାରରେ ଅନ୍ୟ କାହାକୁ ହସ୍ତକ୍ଷେପ କରିବାକୁ ନ ଦେବା, ପ୍ରତ୍ୟେକ ଦେଶ ଲୋକମାନଙ୍କର ନିଜ ଦେଶର ସମସ୍ତ ସମସ୍ୟା ସମାଧାନ କରିବାର ଅଧିକାର ଅଛି ଏହାକୁ ସ୍ୱୀକାର କରିନେବା, ସବୁ ଦେଶର ସାର୍ବଭୌମତ୍ୱ

ଓ ଆଞ୍ଚଳିକ ଅଖଣ୍ଡତା ପ୍ରତି ନିଷ୍ଠାର ସହିତ ସମ୍ମାନ ଦେଖାଇବା, ପୂର୍ଣ୍ଣ ସମତା ଓ ପାରସ୍ପରିକ ସୁବିଧାଭିତ୍ତିରେ ଭିତ୍ତିରେ ଅର୍ଥନୈତିକ ଓ ସାଂସ୍କୃତିକ ସହଯୋଗର ବିକାଶ ଘଟାଇବା ।

ଯଦିଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଏକ ଐତିହାସିକ ଅନିବାର୍ଯ୍ୟତା, ତଥାପି ଶାନ୍ତିପୂର୍ଣ୍ଣ ସହାବସ୍ଥାନକୁ ପୁଞ୍ଜିବାଦୀ ଦେଶସବୁ ସ୍ୱେଚ୍ଛାରେ ବ୍ୟବହାର୍ଯ୍ୟ ଆଚରଣଗତ ନୀତି ବୋଲି ଗ୍ରହଣ କରିବେ ନାହିଁ ।

ଏହି ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତି ଅନୁସରଣ କରାଯିବା ଦିଗରେ ସାମ୍ରାଜ୍ୟବାଦୀ ଦେଶସବୁର ଶାସକଶ୍ରେଣୀକୁ ବାଧ୍ୟ କରିବାକୁ ହେବ । ସମାଜବାଦୀ ଦେଶ ଓ ସମସ୍ତ ଶାନ୍ତିକାମୀ ଦେଶର ଲୋକମାନଙ୍କ ଆଉ ଶାନ୍ତିର ସକ୍ରିୟ ସମର୍ଥକମାନଙ୍କୁ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ନୀତି କାର୍ଯ୍ୟକାରୀ କରିବା ସପକ୍ଷେ ଅଟଳ ସଂଗ୍ରାମ ଚଳାଇବାକୁ ହେବ ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ବାଧା ପ୍ରତିବନ୍ଧକ ସୃଷ୍ଟି କରିବା ପରିବର୍ତ୍ତେ ଶ୍ରମିକଶ୍ରେଣୀ ସ୍ୱାର୍ଥର ସୁରକ୍ଷା, ଜାତୀୟ ମୁକ୍ତି, ସ୍ୱାଧୀନତା ଓ ଶାନ୍ତି ଲାଗି ବିବିଧ ଆନ୍ଦୋଳନର ବ୍ୟାପକ କ୍ଷେତ୍ର ଉନ୍ମୁକ୍ତ କରିବ ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଅର୍ଥ ନୁହେଁ ନାହିଁ, କୌଣସି ଦେଶ ତାର ସାମାଜିକ ବ୍ୟବସ୍ଥା ବା ମତବାଦକୁ ପରିହାର କରୁ । ଏହା ବୋଲି ସାମ୍ରାଜ୍ୟବାଦୀମାନଙ୍କୁ ଅନ୍ୟ ସବୁ ଦେଶର ବ୍ୟାପାରରେ ହସ୍ତକ୍ଷେପ କରିବାକୁ ତାହା ସୁଯୋଗ ଦିଏ ନାହିଁ, ଲୋକଙ୍କର ମୁକ୍ତି ଓ ସ୍ୱାଧୀନତା ଉପରେ ସେମାନଙ୍କର ଅନଧିକାର ଜବରଦଖଲକୁ ବା ଆକ୍ରମଣକୁ ବାଧା ଦିଏ । ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଦ୍ୱାରା ସମାଜବାଦୀ ଦୁନିଆର ଅବସ୍ଥା ଦୃଢ଼ୀଭୂତ ହୁଏ । ପୁଞ୍ଜିବାଦୀ ଦେଶମାନଙ୍କରେ ଶ୍ରମିକଶ୍ରେଣୀର ମୁକ୍ତିସଂଗ୍ରାମ ପାଇଁ ଅଧିକ ଅନୁକୂଳ ଅବସ୍ଥାର ସୃଷ୍ଟି ଘଟେ । ଉପନିବେଶ ଓ ପରାଧୀନ ଦେଶର ଲୋକମାନଙ୍କ ପକ୍ଷରେ ଔପନିବେଶିକ ବ୍ୟବସ୍ଥାର ଶୀଘ୍ର ସମ୍ପୂର୍ଣ୍ଣ ବିଲୋପ ଦିଗରେ ସଂଗ୍ରାମ ଚଳାଇବା, ଜାତୀୟ ସ୍ୱାଧୀନତା, ଅର୍ଥନୈତିକ ଓ ସାଂସ୍କୃତିକ ବିକାଶର ସଂହତି ଓ ସଙ୍ଗଠନ ଆଣିବା ଏହା ଦ୍ୱାରା ଆହୁରି ସହଜ ହୋଇ ଉଠେ ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନର ନୀତିକୁ ଯେଉଁ ଦୃଷ୍ଟିକୋଣରୁ ବିଚାର କରାଯାଇ ପାରେ, ଏହା ମନୁଷ୍ୟ ସମାଜର ବିପୁଳ ସଂଖ୍ୟକ ଲୋକଙ୍କ ସ୍ୱାର୍ଥ ସହିତ ସଙ୍ଗତି ରଖେ—ଅର୍ଥାତ ଲୋକଙ୍କ ପ୍ରତି ଅନୁକୂଳ ହୁଏ ।

ସେହି କାରଣରୁ କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟିଗୁଡ଼ିକର ୧୯୬୦ ମସ୍କୋ ସମ୍ମିଳନୀର ଇସ୍ତାହାର ଜୋର ସହିତ କହୁଛି—ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତି,

"ସମାଜବାଦର ଅବସ୍ଥାକୁ ଦୃଢ଼ୀଭୂତ କରେ, ସମାଜବାଦୀ ଦେଶସବୁର ସମ୍ମାନ ଓ ଆନ୍ତର୍ଜାତୀୟ ପ୍ରଭାବକୁ ବୃଦ୍ଧି କରେ ଏବଂ ପୁଞ୍ଜିବାଦୀ ଦେଶମାନଙ୍କରେ କମ୍ୟୁନିଷ୍ଟ ପାର୍ଟିଗୁଡ଼ିକର ମର୍ଯ୍ୟାଦା ଓ ପ୍ରଭାବର ପ୍ରସାର ଓ ଉନ୍ନତି ଆଣେ । ଶାନ୍ତି ହେଉଛି ସମାଜବାଦର ବନ୍ଧୁ, ସମାଜବାଦର ମିତ୍ର—କାରଣ, ସମସ୍ତ ସମାଜବାଦ ସପକ୍ଷରେ, କାର୍ଯ୍ୟ କରୁଛି ପୁଞ୍ଜିବାଦର ବିରୁଦ୍ଧରେ ।"

ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି, ଏହିସବୁ ସିଦ୍ଧାନ୍ତକୁ ପୂର୍ଣ୍ଣ ଭାବରେ ସମର୍ଥନ କରୁଛି ଓ ନିଜର କାର୍ଯ୍ୟ ସାଧନରେ ଏହାର ଦ୍ୱାରା ଅବିଚଳିତ ଭାବରେ ପରିଚାଳିତ ହେଉଛି । ସୋଭିଏତ ଇଉନିଅନ କମ୍ୟୁନିଷ୍ଟ ପାର୍ଟିର ୨୨ଶ କଂଗ୍ରେସ ପୁନରାବୃତ୍ତି କରି ଘୋଷଣା କରିଛି ଯେ, ସୋଭିଏତ ଇଉନିଅନ, ବିଭିନ୍ନ ସାମାଜିକ ବ୍ୟବସ୍ଥାର ରାଷ୍ଟ୍ରମାନଙ୍କ ସହିତ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଲେନିନବାଦୀ ନୀତିକୁ ଦୃଢ଼ତାର ଓ ଅବିଚଳିତ ନିଷ୍ଠାର ସହିତ ଚଳାଇ ଆସିଛି ଓ କ୍ରମାଗତ ଭାବେ ଚଳାଇ ଚାଲିଥିବ ।

ଲେନିନ କେବଳ ସମାଜବାଦ ଓ ପୁଞ୍ଜିବାଦର ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଅନିବାର୍ଯ୍ୟତାକୁ ଦର୍ଶାଇ ନାହାନ୍ତି, ତାର ନୀତିକୁ ମଧ୍ୟ ବିଶଦ ଭାବରେ ବ୍ୟାଖ୍ୟା କରି ବର୍ଣ୍ଣନା କରିଛନ୍ତି । ବିଶେଷକରି ସେ ଦର୍ଶାଇଛନ୍ତି ଯେ, ଅର୍ଥନୈତିକ ଯୋଗାଯୋଗ ଓ ବାଣିଜ୍ୟ ବେପାର, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଲାଗି ଉତ୍କୃଷ୍ଟ ଭିତ୍ତି ଯୋଗାଏ ।

ଯେଉଁ ସବୁ ଦେଶ ପାରସ୍ପରିକ ସୁବିଧା ସୁଯୋଗ ସର୍ତ୍ତରେ ଲେଣଦେଣ ଚଳାଇବାକୁ ଚାହାନ୍ତି, ସୋଭିଏତ ସରକାର ସେମାନଙ୍କ ସହିତ ଅର୍ଥନୈତିକ ସମ୍ବନ୍ଧ ପ୍ରତିଷ୍ଠା କରୁଛି । ଏହା କୌଣସି ପ୍ରକାର ଅସମତା କିମ୍ବା ପକ୍ଷପାତିତାକୁ ପ୍ରଶ୍ରୟ ଦେଇ ନାହିଁ । ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର ଯେଉଁସବୁ ଦେଶର ଲୋକେ ଏପର୍ଯ୍ୟନ୍ତ ସାମ୍ରାଜ୍ୟବାଦୀ ଓ ଔପନିବେଶିକ ଅତ୍ୟାଚାରରେ ସଢ଼ୁଥିଲେ ଏବଂ ଏବେ ସ୍ୱାଧୀନ ଜାତୀୟ ଜୀବନର ନିର୍ମାଣ ଓ ବିକାଶର ମାର୍ଗ ଗ୍ରହଣ କରିଛନ୍ତି ବା କରୁଛନ୍ତି, ସେମାନଙ୍କ ସହିତ ଆର୍ଥନୀତିକ ସମ୍ବନ୍ଧର ପ୍ରସାର ଦିଗରେ ଏହା ବିଶେଷ ଦୃଷ୍ଟି ଦେଉଛି ।

ଅନ୍ୟ ଯେଉଁ ସମାଜବାଦୀ ଦେଶସବୁ, ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଆର୍ଥନୀତିକ ସମ୍ବନ୍ଧକୁ ସ୍ୱାଭାବିକ ସମ୍ପର୍କର ବିକାଶ ଦିଗରେ ଏକ ନିର୍ଭରଯୋଗ୍ୟ ଭିତ୍ତି ବୋଲି ଜ୍ଞାନ କରୁଛନ୍ତି, ସେମାନେ ମଧ୍ୟ ଏହିଭଳି ନୀତି ଅନୁସରଣ କରୁଛନ୍ତି ।

ଦେଶ ଦେଶ ମଧ୍ୟରେ ବୈଜ୍ଞାନିକ, ଥିଏଟର ଦଳ, ବିଭିନ୍ନ ପ୍ରତିନିଧି ଦଳ ଓ ପର୍ଯ୍ୟଟକମାନଙ୍କର ଯାଆଆସ ବା ବିନିମୟ ଭଳି ସାଂସ୍କୃତିକ ସମ୍ବନ୍ଧ,

ଆର୍ଥନୀତିକ ଯୋଗାଯୋଗର ଶ୍ରେଷ୍ଠ ପରମ୍ପରାର ରୂପ କାର୍ଯ୍ୟକାରୀ ହେବ । ହେଲସିଙ୍କିରେ ହେଲେ ମଧ୍ୟ ଏହିଭଳି ସମ୍ପର୍କ ସମାଜବାଦୀ ଓ ଅଣ-ସମାଜବାଦୀ ଦେଶ-ମାନଙ୍କ ମଧ୍ୟରେ ବିଶେଷ ଭାବେ ପ୍ରସାର ଲାଭ କରୁଛି ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତିର ଏକ ପ୍ରଧାନ ବୈଶିଷ୍ଟ୍ୟ ହେଉଛି, ସମାଜବାଦୀ ଦେଶଗୁଡ଼ିକର ଜନନେତା ଓ ଅଣ ସମାଜବାଦୀ ଦେଶର ରାଷ୍ଟ୍ରନାୟକ ଓ ଜନ-ନେତାମାନଙ୍କ ମଧ୍ୟରେ ଆଳାପ ଆଲୋଚନା, ସନ୍ଧିସମିତି ବୈଠକରେ ଦେଖାଭେଟି, ପରସ୍ପରର ଦେଶ ପରିଦର୍ଶନ ପ୍ରଭୃତି । ଏପରିକି ଅତି କଠିନ ସମୟରେ ବି ଲେନିନ, ଆମେରିକା, ବ୍ରିଟେନ୍, ଫ୍ରାନ୍ସ, ଫିନଲାଣ୍ଡ, ଆଫଗାନିସ୍ଥାନ ଓ ଅନ୍ୟ ଦେଶଗୁଡ଼ିକର ଜନନେତାମାନଙ୍କ ସହିତ ସାକ୍ଷାତ କରି କଥାବାର୍ତ୍ତା କରିବା ପାଇଁ ସମୟ ପାଉଥିଲେ । ୧୯୨୨ରେ ସେ ସମୟର ଏକ ଅତି ଗୁରୁତ୍ୱପୂର୍ଣ୍ଣ ଆନ୍ତର୍ଜାତିକ ସମ୍ମିଳନୀ-ଜେନୋଆ ସମ୍ମିଳନୀରେ ସେ ନିଜେ ବ୍ୟକ୍ତିଗତ ଭାବେ ଅଂଶ ଗ୍ରହଣ କରିବାକୁ ସ୍ଥିର କରିଥିଲେ ।

ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି, ଏହି ଚମତ୍କାର ଲେନିନବାଦୀ ପରଂପରାର ବିକାଶ ଆଣୁଛି । ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସଂପର୍କଗତ ଅବିଶ୍ୱାସ, ଭୁଲ ବୁଝାମଣା ଦୂର କରିବାରେ ଓ ମୌଳିକ ଆନ୍ତର୍ଜାତିକ ସମସ୍ୟା ଯେପରି ଅନ୍ୟ ଦେଶର ଲୋକମାନଙ୍କ ଆଗରେ କମ୍ୟୁନିଷ୍ଟମାନଙ୍କ ବିଚାର ଉପସ୍ଥାପିତ କରିବାରେ ଏହି ଲେନିନବାଦୀ ନୀତିକୁ ପ୍ରଧାନ ପନ୍ଥା ରୂପେ ଗ୍ରହଣ କରୁଛି ।

ସୋଭିଏତ ଇଉନିଅନ ଓ ଅନ୍ୟ ସମାଜବାଦୀ ଦେଶଗୁଡ଼ିକର ଦ୍ୱାର ସମସ୍ତ ରାଷ୍ଟ୍ରନାୟକ, ଜନନେତା, ରାଷ୍ଟ୍ରନୀତିଜ୍ଞ, ପୁଞ୍ଜିବାଦ ଦୁନିଆର ଶ୍ରମିକ, କୃଷକ, ଯୁବକ ଓ ମହିଳା ପ୍ରତିନିଧିମାନଙ୍କ ପାଇଁ ସଦାବେଳେ ଏବେ ଉନ୍ମୁକ୍ତ ।

ସୋଭିଏତ ଇଉନିଅନରେ ଅନୁଷ୍ଠିତ, ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ୨୨ଶ କଂଗ୍ରେସର ଅଧିବେଶନ ଓ ବିଶ୍ୱ ଟ୍ରେଡ଼ ଇଉନିଅନ ଫେଡ଼େରେସନର ୫ମ କଂଗ୍ରେସ ଅଧିବେଶନରେ ପୃଥିବୀର ଅଧିକାଂଶ ଦେଶରୁ ଶହ ଶହ ପ୍ରତିନିଧି ଯୋଗ ଦେଇଥିଲେ । ୧୯୬୨ ଜୁଲାଇରେ ଅନୁଷ୍ଠିତ ବିଶ୍ୱ ନିରସ୍ତ୍ରୀକରଣ ଓ ଶାନ୍ତି ସମ୍ମିଳନୀରେ ୧୨୦ଟି ଦେଶର ପ୍ରତିନିଧି ଅଂଶ ଗ୍ରହଣ କରିଥିଲେ । ଏହିଭଳି ସମ୍ମିଳନୀ ସବୁ ଅନୁଷ୍ଠିତ ହେବା ଦ୍ୱାରା ଶ୍ରମଜୀବୀ ଲୋକମାନଙ୍କ ମଧ୍ୟରେ ପାରସ୍ପରିକ ସମ୍ପର୍କ ଆସି ଜାତି ଜାତି ପ୍ରତ୍ୟେକେ ଅନ୍ୟକୁ ଜାଣିବାରେ ସୁବିଧାଜନକ ହେଉଛି ଏବଂ ସୋଭିଏତ ଇଉନିଅନ ଓ ଅନ୍ୟ ସମାଜବାଦୀ ଦେଶର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ବିରୁଦ୍ଧରେ ଶାନ୍ତିର ବିରୋଧୀମାନଙ୍କ କୁତ୍ସା ଓ ମିଥ୍ୟା ପ୍ରଚାର ଦୂର କରିବା ଦିଗରେ ସାହାଯ୍ୟ ମିଳୁଛି ।

ଆନ୍ତର୍ଜାତୀୟ ସହଯୋଗ ଉପରେ ଉଦ୍ୟମ ଚଳାଇବାବେଳେ ସୋଭିଏତ ଇଉନିଅନ ଓ ଅନ୍ୟ ସମାଜବାଦୀ ଦେଶସବୁ ସାମ୍ରାଜ୍ୟବାଦୀମାନଙ୍କର ଅସମାନ ଭିତ୍ତିରେ ଆନ୍ତର୍ଜାତୀୟ ସମ୍ପର୍କ ପରିଚାଳନାର ପ୍ରଚେଷ୍ଟାକୁ ଦୃଢ଼ଭାବେ ପ୍ରତ୍ୟାଖ୍ୟାନ କରୁଛନ୍ତି । ଉତ୍ତେଜିତ କରିବା ଓ ଧମକ ଦେବାର ପନ୍ଥା ସମାଜବାଦୀ ଦେଶମାନଙ୍କ ଆଗରେ ନିରର୍ଥକ । ସମସ୍ତ ଭାବେ ସୋଭିଏତ ଇଉନିଅନ ଓ ସବୁ ସମାଜବାଦୀ ଦେଶ ପାଇଁ ସେମାନଙ୍କର ନିରାପତ୍ତା ଓ ପ୍ରତିରକ୍ଷାକୁ ସୁନିଶ୍ଚିତ କରିବା ସକାଶେ ଏବଂ ଶାନ୍ତିଭଙ୍ଗ ଉପରେ ଉଦ୍ୟମ କରୁଥିବା ଯେକୌଣସି ଆକ୍ରମଣକାରୀକୁ ପ୍ରତିଶୋଧମୂଳକ ଚରମ ଆଘାତ ଦେବା ସକାଶେ ଯାହା କିଛି ଆବଶ୍ୟକ, ତାହାସବୁ ପୂର୍ଣ୍ଣମାତ୍ରାରେ ରହିଛି ।

ଆଧୁନିକ ଅବସ୍ଥାରେ ଯେତେବେଳେ ସମାଜବାଦୀ ଶକ୍ତିମାନଙ୍କର ଏତେଦୂର ଅଭିବୃଦ୍ଧି ଘଟିଛି, ସେତେବେଳେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଲାଗି ପ୍ରକୃତ ସମ୍ଭାବନା, ଦେଖାଦେଇଛି—କାରଣ ପୃଥିବୀକୁ ଭାଗ ଭାଗ କରୁଥିବା ସାମାଜିକ ଓ ରାଜନୈତିକ ସମସ୍ୟାଗୁଡ଼ିକୁ ସମାଧାନ ପାଇଁ ବର୍ତ୍ତମାନର ସମସ୍ତ ସମଯ୍ନର ବିନିଯୋଗ ଆବଶ୍ୟକ ହୋଇଛି ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଅତ୍ୟାଚାରରୁ ମୁକ୍ତ ହେବା ଲାଗି ନ୍ୟାୟସଙ୍ଗତ ବୈପ୍ଳବିକ ସଂଗ୍ରାମ ଚଳାଇବାର ସୁଯୋଗରୁ ଲୋକମାନଙ୍କୁ ବଞ୍ଚିତ କରିବା ତ ଦୂରର କଥା, ତାହା ଓଲଟି ସାମ୍ରାଜ୍ୟବାଦ ଓ ଉପନିବେଶବାଦ ବିରୁଦ୍ଧରେ ଲଢ଼ୁଥିବା ଲୋକମାନଙ୍କ ପ୍ରତି ଦୃଢ଼ ସମର୍ଥନର ସମ୍ଭାବନା ସୃଷ୍ଟି କରିଛି ।

କମ୍ୟୁନିଷ୍ଟ ଓ ଓ୍ୟାର୍କରସ ପାର୍ଟି ଗୁଡ଼ିକର ୧୯୬୦ ମସିହାର ପ୍ରତିନିଧି ସମ୍ମିଳନୀର ଇସ୍ତାହାର ଘୋଷଣା କରିଛି—''ବିଭିନ୍ନ ସାମାଜିକ ବ୍ୟବସ୍ଥାର ରାଷ୍ଟ୍ରମାନଙ୍କ ମଧ୍ୟରେ ସହାବସ୍ଥାନ ହେଉଛି ସମାଜବାଦ ଓ ପୁଞ୍ଜିବାଦ ମଧ୍ୟରେ ଶ୍ରେଣୀ ସଂଗ୍ରାମର ଗୋଟାଏ ରୂପ । ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଅବସ୍ଥାରେ ପୁଞ୍ଜିବାଦୀ ଦେଶମାନଙ୍କରେ ଶ୍ରେଣୀସଂଗ୍ରାମର ବିକାଶ ଲାଗି ଏବଂ ଉପନିବେଶ ଓ ପରାଧୀନ ଦେଶର ଲୋକଙ୍କର ଜାତୀୟ ମୁକ୍ତି ଆନ୍ଦୋଳନ ସକାଶେ ଉପଯୋଗୀ ବା ଅନୁକୂଳ ସୁଯୋଗ ମିଳିବ । ଅନ୍ୟ ପକ୍ଷରେ ପୁଣି ବୈପ୍ଳବିକ ଶ୍ରେଣୀ ଓ ଜାତୀୟ ମୁକ୍ତି ସଂଗ୍ରାମର ସଫଳତା ଶାନ୍ତି-ପୂର୍ଣ୍ଣ ସହାବସ୍ଥାନକୁ ପ୍ରୋତ୍ସାହିତ କରିବ । ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଅଧିକ ବୃଦ୍ଧି ଆଣିବାର ସମ୍ଭାବନାରେ ଲୋକଙ୍କର ବିଶ୍ୱାସକୁ ଦୃଢ଼ୀଭୂତ କରିବା ଏବଂ ବିଶ୍ୱଯୁଦ୍ଧକୁ ବାଧା ଦେବାରେ, ପୂର୍ବରୁ ପ୍ରତିରୋଧ କରି ଘଟେଇ ନ ଦେବାରେ, ସେମାନଙ୍କର ମନୋବଳକୁ ଶକ୍ତ ଓ ସବଳ କରିବା କାର୍ଯ୍ୟକୁ କମ୍ୟୁନିଷ୍ଟମାନେ ନିଜ ନିଜର ପରମ କର୍ତ୍ତବ୍ୟ ବୋଲି ମନେ କରନ୍ତି ।''

ଅନ୍ୟ ସବୁ ସହୋଦର ପାର୍ଟି ସହିତ, ସୋଭିଏତ ଇଉନିଅନର କମ୍ୟୁନିଷ୍ଟ ପାର୍ଟି ତାର ନିଜର ବୈଦେଶିକ ନୀତି କ୍ଷେତ୍ରରେ ଏହି ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତକୁ କଠୋର ଭାବେ ପାଳନ କରୁଛି ।

ଇଉରୋପ, ଏସିଆ, ଆଫ୍ରିକା ଓ ଲାଟିନ ଆମେରିକା—ପ୍ରତ୍ୟେକଠାରେ ଲୋକେ ବେଶ ଭଲରୂପେ ଉପଲବ୍‌ଧି କରୁଛନ୍ତି ଯେ ସୋଭିଏତ ଇଉନିଅନ ଉପରେ ପ୍ରକୃତ ବନ୍ଧୁଭାବରେ ଆସ୍ଥା ଓ ଭରସା ରଖା ଯାଇପାରେ, ଜାତିଜାତି ମଧ୍ୟରେ ଶାନ୍ତି ଓ ମୈତ୍ରୀ ପାଇଁ, ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରେ ବିଶ୍ୱବ୍ୟାପୀ ପାରମାଣବିକ ଯୁଦ୍ଧକୁ ପୂର୍ବରୁ ବାଧାଦେଇ ପ୍ରତିରୋଧ କରିବାପାଇଁ, ଏହା ହିଁ ହେଉଛି ସେମାନଙ୍କର ପ୍ରକୃତ ବନ୍ଧୁତ୍ୱର ଓ ପ୍ରତିକ୍ଷୋପଣର ନିଦର୍ଶନ ।

## ଶାନ୍ତି ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଲାଗି ସଂଗ୍ରାମ

ଯଦିବା କିଷ୍ଟ୍ରୋଜନ, ଆନ୍ତର୍ଜାତିକ ଉତ୍ତେଜନାକୁ କମାଇ ଉଣ୍ଟା କରିଦେବା ଦିଗରେ ଯଦି ଉଚିତ ପଦକ୍ଷେପ ନିଆ ନ ଯାଏ ଏବଂ ଯୁଦ୍ଧଅସ୍ତ୍ରକୁ ଅବାଧରେ ଭାସିଯିବାର ଗତିକୁ ଯେଉଁ ଚୁକ୍ତିନାମାସବୁ ରୋଧ କରିପାରେ, ସେହି ଚୁକ୍ତିନାମା ସମ୍ପନ୍ନ ହେବା ଦିଗରେ ପନ୍ଥା ବାହାର କରି ନ ଯାଏ, ତେବେ ସାମ୍ରାଜ୍ୟବାଦୀମାନଙ୍କୁ ଓ ସାମରିକ ଅସ୍ତ୍ରଶସ୍ତ୍ର ପ୍ରସ୍ତୁତିରେ ପ୍ରତିଯୋଗିତାକୁ ଯେତେ ଇଚ୍ଛା ସେତେ ପରିମାଣରେ ତୀବ୍ରରେ ନିନ୍ଦା କରାଯାଉ ପଛେ, ତାହା ତଳେ ହେଲେ ଫଳପ୍ରଦ ହେବ ନାହିଁ ।

କମ୍ୟୁନିଷ୍ଟମାନେ, ମାର୍କସବାଦୀ ଲେନିନବାଦୀମାନେ, ବିଶ୍ୱବନ୍ତ ଯେ ଯେତେବେଳେ ଅଭୂତପୂର୍ବ ଭାବରେ ଅସ୍ତ୍ରଶସ୍ତ୍ର ଯୋଗ ପ୍ରତିଦ୍ୱନ୍ଦ୍ୱିତା ଚାଲିଛି, ଏବଂ ମନୁଷ୍ୟଜାତି ପ୍ରତିନିୟତ ଆପେ ବିଶ୍ୱ ପାରମାଣବିକ ଧ୍ୱଂସଲୀଳାର ଆତଙ୍କରେ ଶିହରି ଉଠୁଛି, ସେତେବେଳେ କେହି କେବେ ନୀରବ ଦର୍ଶକ ହୋଇ ଆଳସ୍ୟରେ ରହି ନ ପାରେ ।

ଏହି କାରଣରୁ ସୋଭିଏତ ଇଉନିଅନ, ଦ୍ୱିତୀୟ ବିଶ୍ୱଯୁଦ୍ଧର ସମାପ୍ତି ମୁହୂର୍ତ୍ତରୁ ଠିକ୍, ସମଗ୍ର ପୃଥିବୀର ଶାନ୍ତିକାମୀ ଶକ୍ତିମାନଙ୍କର ସମର୍ଥନରେ ନୂତନ ଏକ ଯୁଦ୍ଧର ପଥରେ ବାଧାର ପ୍ରାଚୀର ନିର୍ମାଣ କରିବା ଲାଗି ଉଦ୍ୟମ କରି ଆସିଛି ।

ସୋଭିଏତର କମ୍ୟୁନିଷ୍ଟ ପାର୍ଟି ଓ ଅନ୍ୟ ସହୋଦର ପାର୍ଟିସବୁ ସ୍ପଷ୍ଟ ଉପଲବ୍‌ଧି କରିଛନ୍ତି—କଠୋର ଆନ୍ତର୍ଜାତିକ କଣ୍ଟ୍ରୋଲ ଜରିଆରେ ସାଧାରଣ ନିରସ୍ତ୍ରୀକରଣ ସଙ୍ଘଟିତ ହେଲେ ସାର୍ଥକଭାବେ ହାସଲ ହୋଇପାରିବ ।

ଯୁଦ୍ଧର ଠିକ ପରେ ପରେ ସୋଭିଏତ ଇଉନିଅନ ପ୍ରସ୍ତାବ କରିଥିଲା ଯେ, ବୃହତ ଶକ୍ତିମାନେ ଅସ୍ତ୍ରଶସ୍ତ୍ରକୁ ସୀମିତ କରିବା, ସଶସ୍ତ୍ର ବାହିନୀ ଓ ସାମରିକ ବଂଯ୍ବକୁ ହ୍ରାସ କରିବା, ଏବଂ ପରମାଣୁ ଅସ୍ତ୍ରକୁ ନିଷେଧ କରିବା ଲାଗି ଏକ ଚୁକ୍ତି ସ୍ୱାକ୍ଷରିତ କରନ୍ତୁ । କୌଣସି ରାଷ୍ଟ୍ର ଏହି ଚୁକ୍ତିକୁ ଯେପରି ଲଙ୍ଘନ ନ କରେ ସେଥିଲାଗି ଏକ ଫଳପ୍ରଦ ଆନ୍ତର୍ଜାତିକ କଣ୍ଟ୍ରୋଲ ରହିବା ଆବଶ୍ୟକ ବୋଲି ମଧ୍ୟ ଏହା ଆଉ ଏକ ପ୍ରସ୍ତାବ ଦେଇଥିଲା ।

ସୋଭିଏତ ଇଉନିଅନର ପଥ ଓ କର୍ମରେ ଫରକ ନାହିଁ, ତାର କଥା କାମର ବିରୋଧୀ ନୁହେଁ ।

ଯୁଦ୍ଧ ଶେଷ ହେଲାକ୍ଷଣି ଚୀନ, କୋରିଆ, ଚେକସ୍ଲୋଭାକିଆ, ବୁଲଗେରିଆ, ରୁମାନିଆ, ନରୱେ, ଯୁଗସ୍ଲୋଭିଆ ପ୍ରଭୃତି ଯେଉଁ ସବୁ ଦେଶରେ ଜର୍ମାନ ଓ ଜାପାନୀ ସୈନ୍ୟବାହିନୀଙ୍କର ପଶ୍ଚାଦ୍ଧାବନ କରି ସୋଭିଏତ ସୈନ୍ୟବାହିନୀ ପ୍ରବେଶ କରିଥିଲେ, ସେହିସବୁ ଦେଶରୁ ସୋଭିଏତ ୟୁନିଅନ ସେମାନଙ୍କୁ ଅତି ଶୀଘ୍ର ପ୍ରତ୍ୟାହାର କରି ଆଣିଥିଲା । ସୋଭିଏତ ଇଉନିଅନ ଯୁଦ୍ଧ ପ୍ରଚାର ବିରୁଦ୍ଧରେ ତାର ଆନ୍ଦୋଳନ ଦ୍ୱାରା ଅନ୍ୟ ଦେଶମାନଙ୍କ ଆଗରେ ଏକ ମହାନ ଆଦର୍ଶ ଉପସ୍ଥାପିତ କରିଥିଲା । ୧୯୫୧ ମାର୍ଚ୍ଚ ମାସ ୧୨ ତାରିଖରେ ସୋଭିଏତ ଇଉନିଅନର ସୁପ୍ରିମ୍ ସୋଭିଏତ ଶାନ୍ତି ପ୍ରତିରକ୍ଷା ଆଇନ ଗ୍ରହଣ କରି ଯୁଦ୍ଧ ପ୍ରଚାର ମାନବସମାଜ ବିରୁଦ୍ଧରେ ଏକ ଗୁରୁତର ଅପରାଧ ବୋଲି ଘୋଷଣା କରିଥିଲା ।

ଯୁଦ୍ଧ ପରଠାରୁ ସୋଭିଏତ ଇଉନିଅନ କମ୍ୟୁନିଷ୍ଟପାର୍ଟି, ଅନ୍ୟ ସହୋଦର ପାର୍ଟି ଓ ଶାନ୍ତି-କାମୀ ଶକ୍ତିମାନଙ୍କର ମତ ହୋଇ ଆସିଛି—ସାଧାରଣ ନିରସ୍ତ୍ରୀକରଣ ହାସଲ ହେବା ଓ ଏକ ଧ୍ୱଂସକାରୀ କ୍ଷେପଣାସ୍ତ୍ର ଓ ପରମାଣୁ ଯୁଦ୍ଧର ଆତଙ୍କକୁ ଲୋପ କରିବା ଦିଗରେ କୌଣସି ଉଦ୍ୟମକୁ ଛାଡ଼ି ନ ଦେବା, କୌଣସି ପ୍ରକାର ଚେଷ୍ଟାରେ ହେଳା ନ କରିବା ।

ସାଧାରଣ ନିରସ୍ତ୍ରୀକରଣ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହେଉଛି, ଆନ୍ତର୍ଜାତୀୟ ସମସ୍ୟାଗୁଡ଼ିକର ଅସଲ ମର୍ମ ବା ମୂଳପ୍ରଶ୍ନ । ନିରସ୍ତ୍ରୀକରଣ ସଂପର୍କରେ—ପରମାଣୁ ଅସ୍ତ୍ରସବୁ ନିଷେଧ କରି ଦିଆଯିବା ଘୋଷଣା କରିବା ସଂପର୍କରେ,—ସୈନ୍ୟବାହିନୀ ଓ ପୂର୍ବରୁ ପ୍ରଚଳିତ ଥିବା ସାଧାରଣ ଅସ୍ତ୍ରଶସ୍ତ୍ର କମାଇ ଦେବା, ସାମରିକ ଗୋଷ୍ଠୀ ଓ ମେଣ୍ଟକୁ ସବୁ ଭାଙ୍ଗି ଦେବା, ଅନ୍ୟ ବିଦେଶୀ ରାଜ୍ୟରୁ ସାମରିକ ଘାଟିଗୁଡ଼ିକୁ ଉଠାଇ ଦେବା ଏବଂ ସୈନ୍ୟବାହିନୀକୁ ପ୍ରତ୍ୟାହାର କରି ଆଣିବା ସଂପର୍କରେ— ସୋଭିଏତ ଇଉନିଅନ ଜାତିସଂଘ ଆଗରେ ବାରମ୍ବାର ପ୍ରସ୍ତାବମାନ ଉପସ୍ଥାପିତ କରିଛି ।



## ପରମାଣୁ ଯୁଦ୍ଧ ବନ୍ଦକର

କିନ୍ତୁ ପାଶ୍ଚାତ୍ୟ ଶକ୍ତିମାନେ ଏହି ସବୁ ପ୍ରସ୍ତାବକୁ ସମର୍ଥନ ନ କରିବା ଯୋଗୁଁ ଏପରିକି ସେମାନଙ୍କର ସୈନ୍ୟବାହିନୀ ଓ ସାମରିକ ବ୍ୟୟର ବୃଦ୍ଧି ଘଟାଇବା ସଙ୍ଗେ ସଙ୍ଗେ ସମାଜବାଦୀ ଦେଶମାନଙ୍କ ବିରୁଦ୍ଧରେ ଆକ୍ରମଣର ଆତଙ୍କକୁ ଆହୁରି ତେଜେଇ ଦେବା ହେତୁରୁ ସୋଭିଏତ ସରକାର, ସୋଭିଏତର ପ୍ରତିରକ୍ଷା ଶକ୍ତିର ବୃଦ୍ଧି ସକାଶେ ବ୍ୟବସ୍ଥା ଗ୍ରହଣ କରିବାକୁ ବାଧ୍ୟ ହୋଇଛି । ସେଥି ସଙ୍ଗେ ସଙ୍ଗେ ସାଧାରଣ ଓ ପୂର୍ଣ୍ଣ ନିରସ୍ତ୍ରୀକରଣ ସମସ୍ୟାର ସମାଧାନକୁ ସାହାଯ୍ୟ କରିବା ଲାଗି, ବିଶ୍ୱଜନୀନ ନିରାପତ୍ତା ଦିଗରେ ପ୍ରଥମ ପଦକ୍ଷେପ ସ୍ୱରୂପ ଅବିଳମ୍ବେ ଏକ ପରମାଣୁ ଅସ୍ତ୍ର ପରୀକ୍ଷା ନିଷେଧ ଚୁକ୍ତି କରିବା ଲାଗି ପ୍ରସ୍ତାବ ଦେଇ ଆସିଛି ।

ପାଶ୍ଚାତ୍ୟ ଦେଶମାନେ ସେହି ପରମାଣୁ ଅସ୍ତ୍ର ପରୀକ୍ଷା ନିଷେଧକୁ ଆନ୍ତର୍ଜାତିକ ତତ୍ତ୍ୱାବଧାନରେ ରଖାଯିବା ନାମରେ ନୂତନ ପ୍ରତିବନ୍ଧକମାନ ସୃଷ୍ଟି କରିଛନ୍ତି ।

ପାଶ୍ଚାତ୍ୟ ସମ୍ବାଦପତ୍ର ଓ ଆମେରିକାର ଭେତେକ ନେତାପତ୍ର ନିଜ ପ୍ରକାଶ୍ୟରେ ସ୍ୱୀକାର କରିଛନ୍ତି ଯେ, ଏକ ସାଧାରଣ ଓ ପୂର୍ଣ୍ଣ ନିରସ୍ତ୍ରୀକରଣ ସମ୍ଭବ ହେଉ ନ ଥିବା ବେଳେ ଅବାଧ ଆନ୍ତର୍ଜାତିକ ତତ୍ତ୍ୱାବଧାନ ବା ପରିଦର୍ଶନର ଅର୍ଥ ହେବ— ସୋଭିଏତ ଇଉନିଅନରେ ଆନ୍ତର୍ଜାତୀ କାର୍ଯ୍ୟକୁ କେବଳ ଆଇନ ସଙ୍ଗତ କରିବା । ଉକ୍ତ କଣ୍ଟ୍ରୋଲ ବ୍ୟବସ୍ଥା ଗ୍ରହଣ କରାଯିବା ଅର୍ଥ ହେବ—କେବଳ ଆକ୍ରମଣକାରୀମାନଙ୍କୁ ହସ୍ତ ଦୃଢ଼ କରିବା । ଏହା ହେଲେ ସେମାନେ ସୋଭିଏତର ପ୍ରତିରକ୍ଷା ସମ୍ବନ୍ଧରେ ବିବରଣୀମାନ ସଂଗ୍ରହ କରି ଆସିଲା ପରେ, ଉପଯୁକ୍ତ ସ୍ଥାନ ଓ ସମସ୍ତ ହିଁ ସମାଜବାଦୀ ଦେଶମାନଙ୍କୁ ଆକ୍ରମଣ କରିବାର ସୁବିଧା ପାଇ ପାରିବେ ।

କିନ୍ତୁ ପ୍ରତ୍ୟେକ ଦେଶ ନିକଟରେ ଥିବା ଅନ୍ୟାନ୍ୟ ଉପାୟରେ କଣ ଏହି ଅବଶ୍ୟମ୍ଭାବୀ କଣ୍ଟ୍ରୋଲ ବ୍ୟବସ୍ଥାକୁ ନିଶ୍ଚୟତା ଦିଆଯାଇପାରେ ? ହଁ, ତାହା ହୋଇପାରେ । ବିଭିନ୍ନ ଦେଶର ବୈଜ୍ଞାନିକମାନେ ନିଃସନ୍ଦେହ ଭାବେ ପ୍ରମାଣ କରିଛନ୍ତି ଯେ, ପ୍ରତ୍ୟେକ ଦେଶ, ନିଜର ଜାତୀୟ ଉପାୟ ଓ ପନ୍ଥା ଦ୍ୱାରା ଏହି ପରମାଣୁ ଅସ୍ତ୍ର-ପରୀକ୍ଷା-ନିଷେଧ ଚୁକ୍ତିର ପ୍ରୟୋଗକୁ ସୁନିଶ୍ଚିତ ଭାବେ କଣ୍ଟ୍ରୋଲ କରି ପାରିବ ।

କିନ୍ତୁ ଆମେରିକା ଓ ବ୍ରିଟିଶ ସରକାର ସୋଭିଏତ ପ୍ରସ୍ତାବକୁ ଦୃଢ଼ଭାବେ ପ୍ରତ୍ୟାଖ୍ୟାନ କରିଛନ୍ତି ।

୧୯୬୩ରେ ପରମାଣୁ ଅସ୍ତ୍ର-ପରୀକ୍ଷା-ନିଷେଧ-କଥାବାର୍ତ୍ତା ଯେଉଁ ଅଚଳ ଅବସ୍ଥା ଭାଙ୍ଗିବା ଦିଗରେ ସୋଭିଏତ ଇଉନିଅନ ଏକ ନୂତନ ଉଦ୍ୟମ କରିଥିଲା । ଶେଷରେ ସେହି ବର୍ଷ ଜୁଲାଇ ମାସରେ ସୋଭିଏତ ଇଉନିଅନ, ଆମେରିକା ଓ ବ୍ରିଟେନ ଏକ ଚୁକ୍ତି ସ୍ୱାକ୍ଷର କରିଥିଲେ । ସେହି ଚୁକ୍ତିର ସର୍ତ୍ତ ଅନୁସାରେ ସ୍ୱାକ୍ଷରକାରୀ ଶକ୍ତିମାନେ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି ଯେ, ସେମାନେ ମହାକାଶରେ, ଆବହମଣ୍ଡଳରେ ଏବଂ ଜଳ ଭିତରେ ପରମାଣୁ ଅସ୍ତ୍ରର ପରୀକ୍ଷା ଚଳାଇବାରୁ କିମ୍ବା ଅନ୍ୟ କୌଣସି ପ୍ରକାରର ପରମାଣୁ ବିସ୍ଫୋରଣ ଘଟାଇବାରୁ ବିରତ ହେବେ, ସେଭଳି କାର୍ଯ୍ୟକୁ ବାଧା ଦେବେ ଓ ନିଷେଧ କରିବେ । କାରଣ, ଏହିସବୁ କ୍ଷେତ୍ରରେ ବିସ୍ଫୋରଣ ବର୍ତ୍ତମାନର ଓ ଭବିଷ୍ୟତର ବଂଶଧରଙ୍କ ସ୍ୱାସ୍ଥ୍ୟ ପାଇଁ ଅତି ବିପଦଜନକ । ଅଧିକାଂଶ ଦେଶ ଏହି ଚୁକ୍ତିରେ ସ୍ୱାକ୍ଷର କରିବା ଦ୍ୱାରା ଅନ୍ୟ ଦେଶମାନଙ୍କୁ ପରମାଣୁ ଅସ୍ତ୍ରର ପ୍ରସାର ରୋକିବାରେ ସାହାଯ୍ୟ କରିଛନ୍ତି ।

ସାରା ପୃଥିବୀରେ ଏହି ଚୁକ୍ତି 'ଶାନ୍ତି ଶକ୍ତିମାନଙ୍କର' ଏକ ବିରାଟ କୃତିତ୍ୱ ବୋଲି ପ୍ରଶଂସିତ ହୋଇଛି । ଏହି "ଶାନ୍ତିର ଶକ୍ତି" ଅର୍ଥାତ୍ ଶାନ୍ତିକାମୀ ଜନସାଧାରଣ,ଭଲରୂପେ ଜାଣନ୍ତି ଯେ,ଏହା କେବଳ ପ୍ରଥମ ପଦକ୍ଷେପ—ବିଶ୍ୱ ଶାନ୍ତି ନିର୍ଭର କରୁଥିବା ଅନ୍ୟାନ୍ୟ ସମସ୍ୟାର ସମାଧାନ ସକାଶେ ସେମାନଙ୍କୁ ତାଙ୍କର ଉଦ୍ୟମ ଅବ୍ୟାହତ ରଖିବାକୁ ହେବ ।

ସୋଭିଏତ ଇଉନିଅନ ତା'ର ଶାନ୍ତିକାମୀ ଲେନିନ୍‌ବାଦୀ ନୀତି ପ୍ରତି ଅନୁରକ୍ତ । ସାଧାରଣ ଓ ପୂର୍ଣ୍ଣ ନିରସ୍ତ୍ରୀକରଣ ଅଭିମୁଖୀ ସଂଗ୍ରାମକୁ ଏହା କେବେହେଲେ ପରିତ୍ୟାଗ କରିବ ନାହିଁ । ସୋଭିଏତର ଦୃଢ଼ ମତ ଯେ, ପରମାଣୁ ଯୁଦ୍ଧ ବିପଦରୁ ପୃଥିବୀର ଗତିକୁ ରୋକି ଦିଆଯାଇପାରେ । "ମଣିଷ ବଦଳରେ ବନ୍ଧୁକ" ପୁର୍ବର ଆକ୍ରମଣକାରୀମାନଙ୍କର ଏହି ସ୍ଲୋଗାନ ପରିବର୍ତ୍ତେ "ବିଶ୍ୱ ଲାଗି ଶାନ୍ତି"ର ସ୍ଲୋଗାନ ଗ୍ରହଣ କରିବା ଦିଗରେ ଲୋକେ ସେମାନଙ୍କର ସରକାରମାନଙ୍କୁ ବାଧ୍ୟ କରିବାପାଇଁ ବେଶ ସମର୍ଥ । ଶାନ୍ତିପୂର୍ଣ୍ଣ ସହାବସ୍ଥାନର ମାର୍ଗ ଗ୍ରହଣ କରିବାରେ, ଅସ୍ତ୍ରଶସ୍ତ୍ର ବୃଦ୍ଧି ବନ୍ଦ କରିବା ଏକମାତ୍ର ପନ୍ଥା । ଅନ୍ତର୍ଜାତୀୟ ବିବାଦଗୁଡ଼ିକୁ ଶାନ୍ତିପୂର୍ଣ୍ଣଭାବେ ସମାଧାନ କରିବାରେ ଲୋକେ ପୁଞ୍ଜିପତି ଦେଶର ସରକାରମାନଙ୍କୁ ମଧ୍ୟ ବାଧ୍ୟ କରି ପାରିବେ ।

ଯୁଦ୍ଧ ପ୍ରତି ଭୟ ନୁହେଁ, ପରମାଣୁ ଯୁଦ୍ଧ ହେଲେ ଲୋକେ ଅନିବାର୍ଯ୍ୟ ଭାବେ ଯେଉଁ ପ୍ରଳୟଙ୍କରୀ ଧ୍ୱଂସଲୀଳାର ସମ୍ମୁଖୀନ ହେବେ ତାର ଉପଲବ୍ଧି ହିଁ, ସୋଭିଏତ ଶାନ୍ତି ନୀତିର ମୂଳଭିତ୍ତି ।

ପରମାଣୁ ଯୁଦ୍ଧର ବିପଦ ସଂପର୍କରେ ସୋଭିଏତ ୟୁନିଅନ ଯାହା ପ୍ରଚାର କରୁଛି, ତାହା କୌଣସି ଲୋକଙ୍କୁ ଭୟଭୀତ କରିବା ଲାଗି କରୁ ନାହିଁ । ତାର ଉଦ୍ଦେଶ୍ୟ ହେଉଛି, ଶାନ୍ତିକାମୀ ଶକ୍ତିମାନଙ୍କୁ ସଂହତ, ସଂଘବଦ୍ଧ ଓ ସୁଗଠିତ କରିବା, ସାମରିକ ଧ୍ୱଂସକାଣ୍ଡ ବିରୁଦ୍ଧରେ ସୁଦୃଢ଼ ସଂଗ୍ରାମରେ ଲୋକଙ୍କୁ ସମବେତ କରିବା ଏବଂ ସମାଜବାଦ ଦିଗରେ ସେମାନଙ୍କର ମାର୍ଗକୁ ସହଜ ଓ ସୁଗମ କରିବା ।

୧୯୫୯ରେ ସୋଭିଏତ ସରକାର ଜାତିସଂଘ ନିକଟରେ ନିରସ୍ତ୍ରୀକରଣ ସମ୍ପର୍କରେ ଏକ ବ୍ୟାପକ କାର୍ଯ୍ୟକ୍ରମ ଉପସ୍ଥାପିତ କରିଥିଲା ।

ସୋଭିଏତ ସରକାରର ବିଶ୍ୱାସରେ ଶାନ୍ତିର ନିର୍ଭରଯୋଗ୍ୟ ସର୍ବଶ୍ରେଷ୍ଠ ଗ୍ୟାରେଣ୍ଟି ପ୍ରତେ୍ୟକଦେଶ ନିଜ ହାତରେ ଯାହାକୁ ରଖିବାକୁ ଚେଷ୍ଟାକରୁଛି ସେହି ତଥାକଥିତ "ଅସ୍ତ୍ରଶସ୍ତ୍ରର ଭାରସାମ୍ୟ" ନୁହେଁ, ତାର ସର୍ବଶ୍ରେଷ୍ଠ ଗ୍ୟାରେଣ୍ଟି ହେଉଛି ଯୁଦ୍ଧ ପରିଚାଳନାର ଭୌତିକ ବା ବୈଷୟିକ ଉପାୟଗୁଡ଼ିକୁ ନଷ୍ଟ କରିଦେବା ।

ସଂକ୍ଷେପରେ କହିଲେ, ସାଧାରଣ ଓ ପୂର୍ଣ୍ଣ ନିରସ୍ତ୍ରୀକରଣ ସମ୍ପର୍କରେ ସୋଭିଏତ ପ୍ରସ୍ତାବ ହେଉଛି—ସବୁ ରାଷ୍ଟ୍ର ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତା ଛାଡ଼ନ୍ତୁ, ସେମାନଙ୍କର ସଶସ୍ତ୍ର ସୈନ୍ୟ ବାହିନୀକୁ ଭାଙ୍ଗି ଦିଅନ୍ତୁ । କେବଳ ଛୋଟ ଛୋଟ ଅସ୍ତ୍ର ସାହାଯ୍ୟରେ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସାଧାରଣ ଶାନ୍ତି ଶୃଙ୍ଖଳା ରକ୍ଷା ଲାଗି ପୋଲିସ ଯୁନିଟ୍ ଛଡ଼ା ସମସ୍ତ ଅସ୍ତ୍ରଶସ୍ତ୍ରକୁ ଧ୍ୱଂସ କରି ଦିଆଯାଉ—ଅବଶ୍ୟ, ପରମାଣୁ ଅସ୍ତ୍ର ଜୀବାଣୁ ଅସ୍ତ୍ର, ରାସାୟନିକ ଅସ୍ତ୍ରଶସ୍ତ୍ର ଓ କ୍ଷେପଣାସ୍ତ୍ର ସମେତ ସମସ୍ତ ପ୍ରକାରର ଅସ୍ତ୍ରଶସ୍ତ୍ର ନିର୍ମାଣକୁ ବନ୍ଦ କରାଯାଉ ।

ଏଭଳି ପନ୍ଥା ଧରାଗଲେ ବଡ଼ ହେଉ ବା ଛୋଟ ହେଉ କୌଣସି ଗୋଟିଏ ଦେଶ ଅନ୍ୟ କୌଣସି ଦେଶ ଅପେକ୍ଷା ଅଧିକ ସୁବିଧା ଲାଭ କରି ପାରିବ ନାହିଁ । ସୁତରାଂ ସମସ୍ତ ପ୍ରକାର ଅସମତା ବହିର୍ଭୂତ ହୋଇ ରହିବ । ଆନ୍ତର୍ଜାତୀୟ ଜୀବନରୁ ଯୁଦ୍ଧ ଓ ଆକ୍ରମଣର ଆଶଙ୍କା ଦୂରୀଭୂତ ହେବ ।

ଅଯଥା ଯୁଦ୍ଧରେ ନଷ୍ଟ ହେଉଥିବା ସମ୍ବଳଗୁଡ଼ିକ ଶାନ୍ତିପୂର୍ଣ୍ଣ ନିରସ୍ତ୍ରୀକରଣ ଫଳରେ ଉଦ୍ଦେଶ୍ୟରେ ବ୍ୟବହୃତ ହେବ । ସ୍ୱାସ୍ଥ୍ୟ ଓ ଚିକିତ୍ସାର ବିକାଶ ସାଧନ, ରୋଗବ୍ୟାଧିର ନିରାକରଣ, ଶିକ୍ଷାର ପ୍ରସାର, ଜୀବନ ଧାରଣ ମାନର ଉନ୍ନତିବିଧାନ, ନୂତନ ସ୍ୱାଧୀନ ଦେଶମାନଙ୍କୁ ସାହାଯ୍ୟ ପ୍ରଦାନ ଓ ପ୍ରକୃତିର ଗୋପନ ତଥ୍ୟ ଉଦ୍‌ଘାଟନ, ଏସବୁ ଦିଗରେ ମିଳିତ ଯୋଜନା ଗ୍ରହଣ ଆଦି କାର୍ଯ୍ୟରେ ସେହି ସମ୍ବଳର ପ୍ରକୃତ ବିନିଯୋଗ ଘଟିବ ।

ଏହା ଅତି ସ୍ୱାଭାବିକ, ଯେ ପୂର୍ଣ୍ଣ ନିରସ୍ତ୍ରୀକରଣ ପରେ ବି ବିଭିନ୍ନ ସାମାଜିକ ବ୍ୟବସ୍ଥାର ରାଷ୍ଟ୍ରମାନଙ୍କ ମଧ୍ୟରେ ବିରୋଧିତା ଲୋପ ପାଇବ ନାହିଁ । ତେବେ ସେହି ସବୁ ବିରୋଧିତାର ସମାଧାନ ରଣକ୍ଷେତ୍ରରେ ନୁହେଁ, ଶାନ୍ତିପୂର୍ଣ୍ଣ ଅର୍ଥନୈତିକ ପ୍ରତିଯୋଗିତା ଓ 'ବିଚାରଧାରାର ସଂଗ୍ରାମ'ରେ ହିଁ ଘଟିବ ।

ସୋଭିଏତ ଇଉନିଅନ ଓ ଯୁକ୍ତରାଷ୍ଟ୍ର ଆମେରିକା ମଧ୍ୟରେ ରାଜିନାମା ଅନୁଯାୟୀ ନିରସ୍ତ୍ରୀକରଣ କଥାବାର୍ତ୍ତା ଚାଲିବାର ନୀତିକୁ ଜାତିସଂଘର ୬ଷ୍ଠ ସାଧାରଣ ଅଧିବେଶନ ଅନୁମୋଦନ କରିଛି; ସାଧାରଣ ଓ ପୂର୍ଣ୍ଣ ନିରସ୍ତ୍ରୀକରଣ ସମ୍ବନ୍ଧରେ କଥାବାର୍ତ୍ତା ଚଳାଇବା ଲାଗି ୧୮ ରାଷ୍ଟ୍ର କମିଟି ଗଠନ, ମଧ୍ୟ ସ୍ଥିର କରିଛି । ସୋଭିଏତର ଦୃଢ଼ ଦାବୀ ଫଳରେ ଗୋଷ୍ଠୀ ନିରପେକ୍ଷ ଦେଶମାନଙ୍କର ପ୍ରତିନିଧିମାନଙ୍କୁ ମଧ୍ୟ ସମାନସ୍ତର ଭାବେ ଏଥିରେ ଗ୍ରହଣ କରାଯାଇଛି ।

ବିଶ୍ୱଜନୀନ ଶାନ୍ତି ଅଭିଯାନର ସଫଳତା, ପୂର୍ବ ତୁଳନାରେ ଆଜି ଅଧିକ; ଏହା ଲୋକଙ୍କର ଦୃଢ଼ତା ଓ ନିରସ୍ତ୍ରୀକରଣ ସଂଗ୍ରାମରେ ସେମାନଙ୍କ କଠୋର ସଂକଳ୍ପର ଅଧ୍ୟବସାୟ ଉପରେ ନିର୍ଭର କରେ ।

ସୋଭିଏତ ଇଉନିଅନ ତା'ର ଲେନିନବାଦୀ 'ଶାନ୍ତି ଓ ଆନ୍ତର୍ଜାତୀୟ ସହଯୋଗର ନୀତିକୁ' କ୍ରମାଗତ ଅନୁସରଣ କରିବ । ଏଥି ସଙ୍ଗେ ସଙ୍ଗେ, ଲୋକମାନଙ୍କୁ ମଧ୍ୟ ଘଟଣାବଳୀ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିବାକୁ ହେବ । କାରଣ ଶାନ୍ତିର ସଂହତି ଓ ଆନ୍ତର୍ଜାତିକ ଉତ୍ତେଜନା ହ୍ରାସ ଦିଗରେ ବାଧା ସୃଷ୍ଟି କରିବା ଲାଗି ସାମ୍ରାଜ୍ୟବାଦୀ ଶକ୍ତିମାନେ ଏବେ ମଧ୍ୟ ବେଶ ସକ୍ରିୟ, ସେମାନେ ଯେକୌଣସି ସମୟରେ ଆକ୍ରମଣ ଆରମ୍ଭ କରି ପାରନ୍ତି, ନୂତନ ଯୁଦ୍ଧ ସୃଷ୍ଟି କରି ପାରନ୍ତି ।

ଜଳ, ସ୍ଥଳ ଓ ଆକାଶରେ ପରମାଣୁ ଅସ୍ତ୍ର ପରୀକ୍ଷା ନିଷିଦ୍ଧ ହେବା ଫଳରେ ଅନ୍ୟାନ୍ୟ ବିବାଦୀୟ ବିଷୟର ସମାଧାନ ଏବଂ ଆନ୍ତର୍ଜାତିକ ଉତ୍ତେଜନା ହ୍ରାସ ଉଦ୍ଦେଶ୍ୟରେ ନୂଆ ନୂଆ ଚୁକ୍ତି ସମ୍ପାଦନ ସକାଶେ ଆନ୍ତର୍ଜାତିକ ପରିସ୍ଥିତି, ଅଧିକ ଅନୁକୂଳ ହୋଇଛି ।

ଇଉରୋପ ଓ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରେ ଏକ ଦୃଢ଼ ଶାନ୍ତି ପ୍ରତିଷ୍ଠାକୁ ସୁନିଶ୍ଚିତ କରିବାରେ ସୋଭିଏତ ଇଉନିଅନ କୌଣସି ଉଦ୍ୟମ ବାଦ ଦେଉ-ନାହିଁ ।

ବିଶ୍ୱଶାନ୍ତିର ସୁରକ୍ଷା ଲାଗି ଇଉରୋପର ନିରାପତ୍ତା ଗୁରୁତ୍ୱପୂର୍ଣ୍ଣ, ସବୁଠାରୁ ରକ୍ତାକ୍ତ ଧ୍ୱଂସଲୀଳାର ସୃଷ୍ଟି ଇଉରୋପରୁ ହିଁ ଆରମ୍ଭ ହୁଏ । ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ସୂତ୍ରପାତ ୟୁରୋପରେ ହିଁ ଘଟିଛି ।

ୟୁରୋପର ନିରାପତ୍ତାକୁ ସୁନିଶ୍ଚିତ କରିବା ଦିଗରେ ଏକ ନିର୍ଭରଯୋଗ୍ୟ ଉପାୟ ହେବ, 'ନାଟୋ' ଉତ୍ତର ଆଟଲାଣ୍ଟିକ ମୈତ୍ରୀ ସଙ୍ଗଠନ ଓ 'ୱାରସ ମେଣ୍ଟ'ର ସଭ୍ୟ ଦେଶମାନଙ୍କ ମଧ୍ୟରେ ଏକ ଅନାକ୍ରମଣ ଚୁକ୍ତି ସମ୍ପାଦନ, ଏହା-ହେଲେ ଦୁଇ ସାମରିକ ଦଳର ସଭ୍ୟ ଦେଶମାନେ ଚୁକ୍ତିବଦ୍ଧ ହେବେ ଯେ ସେମାନେ ପରସ୍ପର ବିରୁଦ୍ଧରେ ବଳ ପ୍ରୟୋଗର ଆଶ୍ରୟ ନେବେ ନାହିଁ କି ଯୁଦ୍ଧର ଧମକ ଦେବେ ନାହିଁ ।

ସୋଭିଏତ ମତରେ ଅନ୍ୟାନ୍ୟ ବ୍ୟବସ୍ଥା ସୂତ୍ରରେ ପାରସ୍ପରିକ ରାଜିନାମା ସକାଶେ, ଉଦ୍ୟମ ହେବା ଉଚିତ । ସାମରିକ ବଜେଟକୁ ଅଟଳ କରିବା ଓ କମାଇ ଦେବା, ଅତର୍କିତ ଆକ୍ରମଣକୁ ରୋକିବା ଲାଗି ବ୍ୟବସ୍ଥା ଗ୍ରହଣ କରିବା, ପଶ୍ଚିମ ଓ ପୂର୍ବ ଜର୍ମାନୀରେ ସୈନ୍ୟ ସଂଖ୍ୟା ହ୍ରାସ କରିବା, ପଶ୍ଚିମ ଜର୍ମାନୀ ଏଫ. ଆର୍. ଜି. ରେ ପାଶ୍ଚାତ୍ୟ ସୈନ୍ୟବାହିନୀ ମଧ୍ୟରେ ସୋଭିଏତ ପ୍ରତିନିଧି ଆଉ ପୂର୍ବଜର୍ମାନୀ ବା ଜର୍ମାନ ଗଣତାନ୍ତ୍ରିକ ପ୍ରଜାତନ୍ତ୍ରରେ ସୋଭିଏତ ସୈନ୍ୟବାହିନୀ ମଧ୍ୟରେ ପାଶ୍ଚାତ୍ୟ ଶକ୍ତିମାନଙ୍କ ପ୍ରତିନିଧିଙ୍କୁ ରଖିବା ପ୍ରଭୃତି ସେହି ବ୍ୟବସ୍ଥାର ଅନ୍ତର୍ଭୁକ୍ତ ।

ୟୁରୋପରେ, ସୁଦୂର ପ୍ରାଚ୍ୟ, ଆଫ୍ରିକା ଏବଂ ଲାଟିନ ଆମେରିକାରେ ପରମାଣୁ-ମୁକ୍ତ ଅଞ୍ଚଳମାନ ପ୍ରତିଷ୍ଠା କରିବା ସମସ୍ୟା ପ୍ରତି ସୋଭିଏତ ଇଉନିଅନ ବିଶେଷ ଗୁରୁତ୍ୱ ଦେଉଛି ।

ପୃଥିବୀର ବିଭିନ୍ନ ଅଞ୍ଚଳରେ ଉତ୍ତେଜନାହ୍ରାସକୁ ସୁଗମ କରିବା, ଉପସ୍ଥିତ ସାମରିକ ସଂଘର୍ଷର ମୂଳ, ବିପଦଜନକ ଘାଟିକୁ ସବୁ ଲୋପ କରିବା, ଓ

ସେହି ସେହି ଅଞ୍ଚଳରେ ପ୍ରକୃତ ନିରାପତ୍ତା ସୃଷ୍ଟି କରିବା-ଏସବୁ ଦିଗରେ କାର୍ଯ୍ୟାନୁଷ୍ଠାନ ପାଇଁ ସମାଜବାଦୀ ରାଷ୍ଟ୍ରମାନେ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବମାନ ଦେଇଛନ୍ତି । ପୋଲଣ୍ଡର ଜନ-ଗଣତନ୍ତ୍ର ସରକାର; କେନ୍ଦ୍ର ୟୁରୋପ, ସୋଭିଏତ ୟୁନିଅନ ଓ ଅନ୍ୟ ସମାଜବାଦୀ ଦେଶମାନଙ୍କରେ 'ପରମାଣୁ-ଅସ୍ତ୍ର ଓ କ୍ଷେପଣାସ୍ତ୍ର ମୁକ୍ତ' ଅଞ୍ଚଳ ସୃଷ୍ଟି କରିବା ଲାଗି ଏକ ଯୋଜନା ଦେଇଛି ଏବଂ ଏହି ଯୋଜନାକୁ ସୋଭିଏତ ୟୁନିଅନ ଓ ଅନ୍ୟ ୟୁରୋପୀୟ ସମାଜବାଦୀ ଦେଶମାନେ ସମର୍ଥନ କରିଛନ୍ତି ।

୧୯୫୯ରେ ସୋଭିଏତ ସରକାର ପ୍ରସ୍ତାବ ଦେଇଥିଲେ ଯେ ବଲକାନ ଉପଦ୍ୱୀପ ଓ ଆଡ୍ରିଆଟିକ୍ ସାଗର ଅଞ୍ଚଳରୁ ପରମାଣୁଅସ୍ତ୍ର ଓ କ୍ଷେପଣାସ୍ତ୍ର ଘାଟି ସବୁ ହଟାଇ ଦିଆଯାଇ ତାକୁ ସବୁ ମୁକ୍ତ ଅଞ୍ଚଳ ବୋଲି ଘୋଷଣା କରାଯାଉ ।

ଜର୍ମାନ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର, ସହିତ ମିଶି ସୋଭିଏତ୍ ୟୁନିଅନ ଆହୁରି ଏକ ପ୍ରସ୍ତାବ ଦେଇଥିଲେ ଯେ—ବାଲ୍‌ଟିକ ସାଗର ଓ ସ୍କାଣ୍ଡିନେଭିଆକୁ ମଧ୍ୟ ପରମାଣୁ ଅସ୍ତ୍ର, କ୍ଷେପଣାସ୍ତ୍ର ଓ ବୈଦେଶିକ ସାମରିକ ଘାଟି ହଟାଇ ଦିଆହୋଇ ମୁକ୍ତ ଅଞ୍ଚଳ କରାଯାଉ ।

ଯଦି ଏହି ସବୁ ବ୍ୟବସ୍ଥା କାର୍ଯ୍ୟକାରୀ ହୁଏ ତେବେ, ଏହାହିଁ ଅନ୍ତର୍ଜାତିକ ଉତ୍ତେଜନା-ହ୍ରାସ ଦିଗକୁ ପରିସ୍ଥିତିକୁ ଆଗେଇନେବ ।

ଜର୍ମାନ ଓ ଅନ୍ୟାନ୍ୟ ୟୁରୋପୀୟ ଦେଶରେ ରହିଥିବା ବିଦେଶୀ ସୈନ୍ୟ-ବାହିନୀ ସଂଖ୍ୟା କମାଇ ଦିଆଯିବା ଓ ବିଦେଶୀ ରାଜ୍ୟରେ ରହିଥିବା ସାମରିକ ଘାଟିଗୁଡ଼ିକୁ ଲୋପ କରାଯିବା ସପକ୍ଷରେ ସୋଭିଏତ୍‌ର ପ୍ରସ୍ତାବ ସବୁ, ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଭିତ୍ତିରେ ଯୁଦ୍ଧ ଆତଙ୍କ ହ୍ରାସ କରିବା ଓ ସ୍ଥାୟୀ ଶାନ୍ତିକୁ ସୁନିଶ୍ଚିତ କରିବା ଦିଗରେ ତାର ନିରବଚ୍ଛିନ୍ନ ଅକ୍ଳାନ୍ତ ଉଦ୍ୟମର ହିଁ ପ୍ରମାଣ ଦିଏ ।

ଆହୁରି ମଧ୍ୟ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବଶେଷକୁ ମୂଳପୋଛ କରିବା ଲାଗି ସୋଭିଏତ୍ ୟୁନିଅନ୍ କେବଳ ୟୁରୋପ ନାହିଁକି ସମଗ୍ର ପୃଥିବୀର 'ଶାନ୍ତିର ସ୍ୱାର୍ଥ' ଦୃଷ୍ଟିରୁ ସୁଦୂର-ପ୍ରସାରୀ ପ୍ରସ୍ତାବମାନ ଦେଇଛି ।

ଜର୍ମାନ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର (ପୂର୍ବ ଜର୍ମାନ) ଓ ଜର୍ମାନ ମିଳିତ ପ୍ରଜାତନ୍ତ୍ର (ପଶ୍ଚିମ ଜର୍ମାନ), ଏ ଦୁଇ ଜର୍ମାନ ରାଷ୍ଟ୍ର ସହିତ ସନ୍ଧି ଚୁକ୍ତି ସମ୍ପାଦନ କରିବା ଲାଗି, ଜର୍ମାନ ବିରୁଦ୍ଧରେ ଯୁଦ୍ଧରେ ଯେଉଁସବୁ ଦେଶ ଅଂଶ ଗ୍ରହଣ କରିଥିଲେ ସେହି ସବୁ ଦେଶର ଏକ ଶାନ୍ତି ସମ୍ମିଳନୀ ସୋଭିଏତ୍ ସରକାରଙ୍କ ପକ୍ଷରୁ ଡକା ଯାଇଥିଲା । ସେହି ଶାନ୍ତି ସମ୍ମିଳନୀ ଠୋ ଚୁକ୍ତି ପ୍ରସ୍ତୁତ କରି ଅନ୍ୟ ଯେକୌଣସି ପ୍ରସ୍ତାବ ବିଚାର କରିବାକୁ ପ୍ରସ୍ତୁତ ଅଛି ବୋଲି ଘୋଷଣା କରିଥିଲା । ସନ୍ଧି ଥିଲା ଯେ

ସେହି ଚୁକ୍ତିଯୋଗେ ପଶ୍ଚିମ ବର୍ଲିନରେ ସାଧାରଣ ଅବସ୍ଥା ପ୍ରତିଷ୍ଠିତ ହେବ, ତାହା ଆଉ ଅଧିକୃତ ଅଞ୍ଚଳ ହୋଇ ରହିବ ନାହିଁ, ଏକ ସ୍ୱାଧୀନ ଅସାମରିକ ନଗର ବୋଲି ଘୋଷିତ ହେବ ।

ସୋଭିଏତ ୟୁନିଅନର ମତ ଯେ ଶାନ୍ତିପୂର୍ଣ୍ଣ ସମାଧାନ ଫଳରେ ଉଭୟ ଜର୍ମାନୀ ରାଷ୍ଟ୍ର ଜାତିସଂଘରେ ସ୍ଥାନ ଗ୍ରହଣ କରିବେ, ସଭ୍ୟ ହେବେ ।

ଏ ଭଳି ଶାନ୍ତିପୂର୍ଣ୍ଣ ସମାଧାନ, କୌଣସି ଶକ୍ତିର ନ୍ୟାଯ୍ୟସଙ୍ଗତ ସ୍ୱାର୍ଥ ପ୍ରତି ଆଘାତ ନ ଆଣି ଆନ୍ତର୍ଜାତିକ ବିରୋଧିତାର ବିପଦ୍‌ଜନକ ସମସ୍ୟା-ଗ୍ରନ୍ଥିଗୁଡ଼ିକୁ କାଟି ପାରିଥାନ୍ତା, କେନ୍ଦ୍ର ୟୁରୋପରେ ବର୍ତ୍ତମାନର ପ୍ରଚଳିତ ସୀମାରେଖାକୁ ସବୁ ଆଇନସିଦ୍ଧ କରିଥାନ୍ତା ଏବଂ ପଶ୍ଚିମ ଜର୍ମାନୀର ପ୍ରତିଶୋଧକାମୀମାନଙ୍କର ହାତକୁ ସବୁ ବାନ୍ଧି ଦେଇ ଅଚଳ ଓ ଅକାମୀ କରି ଦେଇଥାନ୍ତା ।

ସୁଦୂର ପ୍ରାଚ୍ୟରେ ଶାନ୍ତିକୁ ଦୃଢ଼ୀଭୂତ କରିବାରେ ସୋଭିଏତ୍ ୟୁନିଅନ କ୍ରମାଗତ ଭାବେ ଉଦ୍‌ବେଗ ପ୍ରକାଶ କରିଛି । ସୋଭିଏତ-ଜାପାନ ସମ୍ପର୍କରେ ସାଧାରଣ ଅବସ୍ଥା ଫେରି ଆସିବା ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ହୋଇଛି ଓ ସୋଭିଏତର ପ୍ରସ୍ତାବ ସତ୍ତ୍ୱେ ଏ ଉଭୟ ଦେଶ ମଧ୍ୟରେ ଏପର୍ଯ୍ୟନ୍ତ କୌଣସି ଶାନ୍ତି ସନ୍ଧି ସ୍ୱାକ୍ଷରିତ ହୋଇନାହିଁ । ଶାନ୍ତି ସନ୍ଧି ସମ୍ପାଦିତ ହେଲେ ଏ କ୍ଷେତ୍ରରେ ଅବସ୍ଥା ଅଧିକ ଉନ୍ନତ ଦିଗରେ ଗତି କରିବ ।

## —ଶାନ୍ତି, ଗଣତନ୍ତ୍ର ଓ ସମାଜବାଦର ଦିନକୁ ଦିନ ବଳବୃଦ୍ଧି

କମ୍ୟୁନିଷ୍ଟମାନେ ପ୍ରତ୍ୟେକଟି ଲୁଣ୍ଠନକାରୀ ଯୁଦ୍ଧକୁ ସଦାସର୍ବଦା ଦୃଢ଼ ଭାବେ ବିରୋଧ କରିଛନ୍ତି । ସେଥିରେ ଲୋକଙ୍କର କୌଣସି ଲାଭ ନାହିଁ, ଏକଚାଟିଆ ପୁଞ୍ଜିପତି ଓ ସାମ୍ରାଜ୍ୟବାଦୀମାନଙ୍କର କେବଳ ସେଥିରେ ସ୍ୱାର୍ଥ ଓ ଆଗ୍ରହ ରହିଛି— ଲେନିନ ଏହା ସୁନ୍ଦର ରୂପେ ଦର୍ଶାଇ କହିଛନ୍ତି—"ଜାତି ଜାତି ମଧ୍ୟରେ ଯୁଦ୍ଧ ଗୋଟାଏ ଅତି ବର୍ବର ଜଘନ୍ୟ ପାଶବିକ କାର୍ଯ୍ୟ । ସମାଜବାଦୀମାନେ ଏହାକୁ ସର୍ବଦା ନିନ୍ଦା କରନ୍ତି ।"

ସାମ୍ରାଜ୍ୟବାଦୀ ଯୁଗରେ ଯୁଦ୍ଧ ଅନିବାର୍ଯ୍ୟ, ଏ ସମ୍ପର୍କୀୟ ମାର୍କସବାଦୀ-ଲେନିନ୍‌ବାଦୀ ତତ୍ତ୍ୱ ଏକ ନିର୍ଦ୍ଦିଷ୍ଟ ଐତିହାସିକ ପର୍ଯ୍ୟାୟ ପାଇଁ ଯଥାର୍ଥ ଥିଲା । ପ୍ରଥମତଃ ଏହା ବିଶେଷ ଭାବରେ ସେହି ସମୟରେ ଅବତାରଣା କରାଯାଇଥିଲା, ଯେଉଁ ସମୟରେ ପୁଞ୍ଜିବାଦୀ ବ୍ୟବସ୍ଥା ପୃଥିବୀବ୍ୟାପୀ ବିସ୍ତାର ଲାଭ କରିଥିଲା, ଦ୍ୱିତୀୟତଃ ଯେଉଁ ସମୟରେ ଯୁଦ୍ଧ ବିଷୟରେ ଆଗ୍ରହୀ ଓ ଉତ୍ସାହୀ ନ ଥିବା ଶ୍ରମଜୀବୀ ଶ୍ରେଣୀ ଓ ସାମାଜିକ-ରାଜନୈତିକ ଶକ୍ତିସବୁ ଦୁର୍ବଳ ଥିଲେ, ଯଥେଷ୍ଟ ପରିମାଣରେ ସଂଗଠିତ

ହୋଇ ନ ଥିଲେ ଏବଂ ଆନ୍ତର୍ଜାତିକ ବିବାଦ ନିଷ୍ପତ୍ତି ଲାଗି ଯୁଦ୍ଧ ଏକ ଉପାୟ, ଏହା ପରିହାର କରିବା ଦିଗରେ ସାମ୍ରାଜ୍ୟବାଦୀମାନଙ୍କୁ ବାଧ୍ୟ କରିବାକୁ ଅସମର୍ଥ ଥିଲେ ।

ସେଭଳି ଅବସ୍ଥାରେ ଶାନ୍ତି ବା ଯୁଦ୍ଧର ପ୍ରଶ୍ନ ସାମ୍ରାଜ୍ୟବାଦୀମାନେ 'ମୀମାଂସା' କରୁଥିଲେ । ଲୋକେ ସାମ୍ରାଜ୍ୟବାଦୀଙ୍କ ମତଲବକୁ ପଣ୍ଡ କରିବା ଦିଗରେ ଅକ୍ଷମ ଥିଲେ । ଯୁଦ୍ଧର ପ୍ରସ୍ତୁତି ଗୋପନରେ, ଲୋକଙ୍କ ଅଜ୍ଞାତରେ ଓ ଅନ୍ତରାଳରେ ଚାଲିଥିଲା । ଅଧିକାଂଶ ସମୟରେ ଲୋକଙ୍କ ଭାଗ୍ୟର ନିଷ୍ପତ୍ତି ରୂପେ ପୂର୍ବରୁ ସ୍ଥିରୀକୃତ କଥାର ସମ୍ମୁଖୀନ ହେବାକୁ ପଡୁଥିଲା; ସାମ୍ରାଜ୍ୟବାଦୀମାନଙ୍କ କୁକର୍ମ ଲାଗି ଲକ୍ଷ ଲକ୍ଷ ଲୋକଙ୍କୁ ଜୀବନ ଦେବାକୁ ପଡୁଥିଲା ।

ଏହା ବୋଲି, ଅବଶ୍ୟ, ସେ ସମୟରେ ମଧ୍ୟ ଲୋକେ ଘଟଣାବଳୀର ନୀରବ ନିଷ୍କ୍ରିୟ ଦର୍ଶକ ହୋଇ ରହି ନ ଥିଲେ । ପ୍ରଥମ ବିଶ୍ୱ ଯୁଦ୍ଧ ସମୟରେ, 'ସାମ୍ରାଜ୍ୟବାଦୀ ଯୁଦ୍ଧକୁ ଗୃହଯୁଦ୍ଧରେ ପରିଣତ କର' ଏହି ମହାନ ଶକ୍ତିଶାଳୀ ସ୍ଲୋଗାନ ଜନ୍ମ ହୋଇଥିଲା । କାର୍ଯ୍ୟତଃ ଏହି ସ୍ଲୋଗାନ୍‌ର ମର୍ମ ହେଉଛି—ଲୋକଙ୍କର କ୍ଷମତା ପ୍ରତିଷ୍ଠା କରିବା ସକାଶେ ପରିସ୍ଥିତିର ସୁଯୋଗ ନେଇ ଶ୍ରମିକ ଓ କୃଷକମାନଙ୍କ ହାତରେ ଥିବା ଅସ୍ତ୍ରକୁ ସେମାନଙ୍କର ନିଜ ବୁର୍ଜୁଆମାନଙ୍କ ବିରୁଦ୍ଧରେ, ସାମ୍ରାଜ୍ୟବାଦୀମାନଙ୍କ ବିରୁଦ୍ଧରେ, ପ୍ରୟୋଗ କରିବା ।

ଠିକ ଏହା ହିଁ ୧୯୧୭ ଅକ୍‌ଟୋବର ମାସରେ ରୁଷର ଶ୍ରମଜୀବୀ ଲୋକେ ବଲ୍‌ଶେଭିକ ପାର୍ଟି ଓ ଲେନିନଙ୍କ ନେତୃତ୍ୱରେ ସଂପନ୍ନ କରିଥିଲେ ।

ପୃଥିବୀର ପ୍ରଥମ ସମାଜବାଦୀ ରାଷ୍ଟ୍ରର ଆବିର୍ଭାବ ପରେ ଆନ୍ତର୍ଜାତୀୟ ଶ୍ରମିକ ଆନ୍ଦୋଳନର ଶକ୍ତି ବିପୁଳ ଭାବରେ ବୃଦ୍ଧି ପାଇଥିଲା । ମୁକ୍ତି ଓ ସ୍ୱାଧୀନତା ଲାଗି ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ ଚଳାଇବାରେ ପ୍ରଗତିଶୀଳ ଜନସମାଜ ସକାଶେ ନିର୍ଭରଯୋଗ୍ୟ ଦୁର୍ଗର ପ୍ରାଚୀର ଭଳି ସାହାଯ୍ୟକାରୀ ଶକ୍ତିରୂପେ ପ୍ରକାଶ ପାଇଥିଲା ସୋଭିଏତ ୟୁନିଅନ । ସୋଭିଏତର ଅବିରାମ ଶାନ୍ତିର ଉଦ୍ୟମ ହିଁ ପ୍ରଶଂସନୀୟ । ସାରା ପୃଥିବୀର ଶ୍ରମିକଶ୍ରେଣୀର ସମର୍ଥନରେ ତାହାର ଯୋଗୁଁ ହିଁ ମନୁଷ୍ୟସମାଜ ୨୦ ବର୍ଷ କାଳ ଶାନ୍ତିର ନିଃଶ୍ୱାସ ମାରି ପାରିଥିଲା । କିନ୍ତୁ ସେତେବେଳେ ସୋଭିଏତ ୟୁନିଅନ ଥିଲା ଏକମାତ୍ର ରାଷ୍ଟ୍ର, ଯାହା ନିର୍ଭୟରେ ବିରୋଧ କରୁଥିଲା ସାମ୍ରାଜ୍ୟବାଦୀ-ମାନଙ୍କ ସାମରିକ ଯୋଜନାକୁ । ଫାସିଷ୍ଟ ଓ ସାମ୍ରାଜ୍ୟବାଦୀମାନେ କୌଶଳରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସୃଷ୍ଟି କରିଦେଲେ । ଯାହାହେଉ ତାହା ଜର୍ମାନ ନାଜୀ ଓ ଜାପାନର ସମରବାଦୀ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ହିଁ ଓଲଟିଲା; ଯୁଦ୍ଧର ଗତି-ଫେରିଲା, ଭୀଷଣ ପରାଜୟ ଘଟିଲା ସେମାନଙ୍କର ହିଁ ।

ଯୁଦ୍ଧ ପରଠାରୁ ପୃଥିବୀରେ ବହୁ ପରିବର୍ତ୍ତନମାନ ଘଟି ଗଲାଣି । ପୁଞ୍ଜିବାଦୀ ବ୍ୟବସ୍ଥା ପାଖକୁ ସମାଜବାଦୀ ରାଷ୍ଟ୍ର-ଗୋଷ୍ଠୀର ଅଭ୍ୟୁଦୟ ହୋଇଛି । ଆଜି ତାହା ଅପରାଜେୟ, ସାମ୍ରାଜ୍ୟବାଦକୁ ପ୍ରତିରୋଧ କରିବାରେ ଓ ଏକ ନୂତନ ଯୁଦ୍ଧକୁ ବାଧାଦେଇ ପ୍ରତିହତ କରିବାରେ ଶକ୍ତିଶାଳୀ ଉପାୟଉପକରଣର ଅଧିକାରୀ ।

ଏହା ଅତି ସ୍ୱାଭାବିକ ଯେ, ଆମ ସମୟରେ ମଧ୍ୟ ଅନ୍ୟକୁ ବଳି ଦେଇ, ଅନ୍ୟର କ୍ଷୟ କ୍ଷତି ଘଟାଇ ନିଜେ ନିଜେ ମୁନାଫା ମାରିବାକୁ ସାମ୍ରାଜ୍ୟବାଦୀମାନଙ୍କର ତଳେ ହେଲେ ଭ୍ରୂକ୍ଷେପ ନାହିଁ । କିନ୍ତୁ ସେମାନେ ଜାଣନ୍ତି, ସୋଭିଏତ ୟୁନିଅନ ଓ ଅନ୍ୟ ସମାଜବାଦୀ ଦେଶସବୁ ନିଜକୁ ରକ୍ଷା ପକ୍ଷେ ସେମାନଙ୍କ ସହିତ ସମାନ ସାମରିକ ଶକ୍ତି ଓ ସୁବିଧା ସୁଯୋଗର ଅଧିକାରୀ । ସେମାନଙ୍କ ଏହି ଦେଶ-ଗୋଷ୍ଠୀ ସହିତ ମୁକାବିଲା କରିବାକୁ ପଡ଼ିବ । ଏଣୁ ଏଇଥିରୁ ବୁଝି ହୁଏ, ଗତ କେତେ ବର୍ଷ ହେଲା ପୃଥିବୀର ବିଭିନ୍ନ ଅଞ୍ଚଳରେ ସାମରିକ ବହ୍ନି ପ୍ରଜ୍ୱଳିତ ହୋଇ ଉଠୁଥିଲେ ବି ତାର ଲେଲିହାନ ଶିଖାକୁ ନିର୍ବାପିତ କରିବା କାହିଁକି ସମ୍ଭବପର ହୋଇଛି ।

ପୂର୍ବେ କେବେ ନାହିଁ ନଥିଲା ଭଳି, ଆଜି ଶାନ୍ତିର ଶକ୍ତି ବ୍ୟାପକ ଓ ପ୍ରବଳ ହୋଇ ଉଠୁଛି । 'ସାମ୍ରାଜ୍ୟବାଦୀ ଅଧିକ ଶାନ୍ତିପୂର୍ଣ୍ଣ ହୋଇଗଲେଣି' ବିଶ୍ୱଯୁଦ୍ଧକୁ ଏଡ଼ିଦେବା ବା ପ୍ରତିହତ କରିବାର ସମ୍ଭାବନା ସଂପର୍କରେ କମ୍ୟୁନିଷ୍ଟ ପାର୍ଟିର ବିଶ୍ୱାସ ଯେ ଏହି ଧାରଣା ଉପରେ ପର୍ଯ୍ୟବସିତ ହୋଇଛି, ଏହା ନୁହେଁ । 'ଶାନ୍ତିର ଶକ୍ତି ଯେ ବେଳକୁ ବେଳ ପ୍ରବଳ ହେଉଛି' ଏହି ଉପଲବ୍ଧି ଉପରେ ହିଁ ତାର ଏହି ବିଶ୍ୱାସ ଦୃଢ଼ ହୋଇ ଉଠିଛି ।

ବିଶ୍ୱଯୁଦ୍ଧ ଲଗାଇ ଦେବାରୁ ଏହି ସବୁ ଶକ୍ତି ହିଁ ସାମ୍ରାଜ୍ୟବାଦକୁ ଅଟକାଇ ଦେଇଛି—ଶାନ୍ତ କରିଛି । ଯୁଦ୍ଧକୁ ରୋକିବାର ସମ୍ଭାବନା, ସମାଜବାଦୀ ବ୍ୟବସ୍ଥାର ତେଜ ଓ ବଳର ଉତ୍ତରୋତ୍ତର ବୃଦ୍ଧି ସହିତ ଓ ସମସ୍ତ ଶାନ୍ତିକାମୀ ଶକ୍ତିଙ୍କର ବୃଦ୍ଧି ସହିତ ବୃଦ୍ଧି ପାଉଛି ।

ଯେଣୁ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ଅବସ୍ଥିତି ହେତୁ ଜନ୍ମିଥିବା ଯୁଦ୍ଧର ଆତଙ୍କ ଯଦିଓ ଦୂରୀଭୂତ ହୋଇନାହିଁ, ତଥାପି ଶାନ୍ତିକାମୀ ଶକ୍ତିସବୁ ଶାନ୍ତିକୁ ସୁନିଶ୍ଚିତ କରିବା ଦିଗରେ ସମର୍ଥ ହେବେ, ଯଦି ସେମାନେ ସତର୍କ ରହନ୍ତି, ଶାନ୍ତିପାଇଁ ସଂଗ୍ରାମରେ ଦୃଢ଼ ଭାବେ ଦୃଢ଼ପଦ ହୁଅନ୍ତି ଓ ସକ୍ରିୟ ହୁଅନ୍ତି । ଯୁଦ୍ଧକୁ ଦୂର କରିବା ଓ ପୃଥିବୀ ବକ୍ଷରେ ସ୍ଥାୟୀ ଶାନ୍ତି କାଏମ କରିବା, କମ୍ୟୁନିଜମର ଏହି ଐତିହାସିକ ଲକ୍ଷ୍ୟ କାର୍ଯ୍ୟକାରୀ ହେବା ନିଶ୍ଚିତ । ମାର୍କସଙ୍କ ମହାନ ଭବିଷ୍ୟତ ବାଣୀ ସତ୍ୟ ହୋଇ ଆସୁଛି: "ସବୁ ଦେଶର ଶ୍ରମିକମାନଙ୍କର ମିତ୍ରତା ହିଁ ଶେଷରେ ଯୁଦ୍ଧକୁ ଲୋପ କରିବ ।"

'ଶାନ୍ତିର ଶକ୍ତି' ଦ୍ୱାରା ଯୁଦ୍ଧଖୋରଙ୍କ ମତଲବକୁ ପଣ୍ଡ କରାଯାଇପାରେ । ଏହି ଶକ୍ତିର ପୁରୋଭାଗରେ ରହିଛି, ସୋଭିଏତ ଇଉନିଅନ,—ରହିଛି ଚୀନ ଓ




ନ୍ୟୁୟର୍କରେ ଶାନ୍ତିର ସମର୍ଥକମାନଙ୍କ ଶୋଭାଯାତ୍ରା

ଟେକନୋଲଜି ବା କାରିଗରି ବିଦ୍ୟା ପ୍ରଭୃତି, ଇଣ୍ଡଷ୍ଟ୍ରିଆଲ କ୍ଷେତ୍ରରେ ସବୁଠାରୁ ବଳି ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କଠାରୁ ସର୍ବବାଦୀ ସ୍ୱୀକୃତ ଅଧିକ ସୁବିଧା ସୁଯୋଗ ଦେଇ—ସାମ୍ରାଜ୍ୟବାଦୀ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ସୋଭିଏତ ଇଉନିଅନ ସହିତ ଏକତ୍ର ଭଲ ହୋଇଛନ୍ତି ବିରାଟ ଏକ ଶକ୍ତିଶାଳୀ ବିଶ୍ୱବ୍ୟାପୀ 'ସମାଜବାଦୀ' ଗୋଷ୍ଠୀ; ସମାଜବାଦୀ ସମାଜ।

ଏସିଆ, ଆଫ୍ରିକା, ଲାଟିନ୍ ଆମେରିକାର ବହୁଦେଶ—ଯେଉଁମାନେ ସାମ୍ରାଜ୍ୟବାଦୀ ଓ ଔପନିବେଶିକ ଶୃଙ୍ଖଳକୁ ଛିନ୍ନ କରି ସ୍ୱାଧୀନ ଜାତୀୟ ନୀତି ଅନୁସରଣ କରୁଛନ୍ତି ସେମାନେ ମଧ୍ୟ—ଶାନ୍ତି ଲାଗି ଆଗଭର ହୋଇଛନ୍ତି।

ସାମ୍ରାଜ୍ୟବାଦୀଙ୍କର ଆଧିପତ୍ୟ ପୃଥିବୀର ଅଧିକ ସଂଖ୍ୟକ ଲୋକଙ୍କ ଉପରେ ଆଉ ବିସ୍ତୃତ ନୁହେଁ। ଆଜି ୧୦୦କୋଟି ଲୋକ ସମାଜବାଦୀ ଦେଶସବୁର ଅଧିବାସୀ। ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର ଲୋକମାନଙ୍କ ସହିତ ମିଶି ସେମାନେ ହେଉଛନ୍ତି ମନୁଷ୍ୟ ସମାଜର ସଂଖ୍ୟାଧିକ ଲୋକ। ସମାଜବାଦୀ ଓ ଅସମାଜବାଦୀ, ଉଭୟ ଧରଣର ରାଷ୍ଟ୍ରଗୁଡ଼ିକୁ ନେଇ ବିଶାଳ ଏକ ଶାନ୍ତି ଅଞ୍ଚଳର ପ୍ରକାଶ ଘଟିଛି।

ସାମ୍ରାଜ୍ୟବାଦୀ ଦେଶମାନଙ୍କରେ ମଧ୍ୟ ଶ୍ରମଜୀବୀ ଜନସାଧାରଣ ପୁଞ୍ଜିର ବିରୁଦ୍ଧରେ,—ଶାନ୍ତି ଚାହାନ୍ତି ସେମାନେ। ଛାପଖାନାମାନଙ୍କ ଯୁଦ୍ଧର ଘୋର ଆତଙ୍କ-

ପ୍ରଦ ସମ୍ଭାବନା ଆଗରେ ମଧ୍ୟ, ବିପୁଳ ଏକ ସାମରିକ ପ୍ରଳୟାନଳ ଭଳି ବିପଦରୁ ମାନବ ସମାଜକୁ ଉଦ୍ଧାର କରିବାର ସମସ୍ତଙ୍କର ସମ୍ମିଳିତ ମହାନ ଅଭିଳାଷ ଯୋଗେ ଶାନ୍ତିର ସୁରକ୍ଷା ଲାଗି ଏକ ଅଭୂତପୂର୍ବ ଗଣଆନ୍ଦୋଳନ ପୃଥିବୀର ରଙ୍ଗମଞ୍ଚରେ ଦେଖାଦେଇଛି ।

କମ୍ୟୁନିଷ୍ଟ ଓ ୱାର୍କର୍ସ ପାର୍ଟିର ପ୍ରତିନିଧି ସମ୍ମିଳନୀର ୧୯୬୦ର ଇସ୍ତାହାର ଘୋଷଣା କରେ, "ନୂତନ ବିଶ୍ୱଯୁଦ୍ଧର ଆତଙ୍କ ବିରୁଦ୍ଧରେ ବର୍ତ୍ତମାନ ହିଁ ସଂଗ୍ରାମ ଚଳାଇବାକୁ ହେବ—ପରମାଣୁ ବୋମା, ହାଇଡ୍ରୋଜେନ ବୋମାର ବୃଷ୍ଟି ଆରମ୍ଭ ହୋଇଯିବା ପରେ ନୁହେଁ । ଦିନକୁ ଦିନ ପୂର୍ବଠାରୁ ସେହି ସଂଗ୍ରାମକୁ ବଳଶାଳୀ କରିବାକୁ ପଡ଼ିବ । ସୃଷ୍ଟି ହେବାକୁ ଛାଡ଼ି ଦିଆଯାଇ ଯୁଦ୍ଧକୁ ବନ୍ଦ କରିବାକୁ ହେଲେ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହେଉଛି, ସମସ୍ତ ଥାଉଁ ଥାଉଁ ଆକ୍ରମଣକାରୀଙ୍କୁ ଖର୍ବ କରିବାକୁ ହେବ, ନିବୃତ୍ତ କରିବାକୁ ହେବ ।

'ଚିରକାଳ ପାଇଁ ସମାଜର ଜୀବନରୁ ଯୁଦ୍ଧ ଦୂରୀକରଣ', ଏହାକୁ ସୋଭିଏତ କମ୍ୟୁନିଷ୍ଟ ପାର୍ଟି ଓ ସରକାର ସେମାନଙ୍କ ବୈଦେଶିକ ନୀତିର ପ୍ରଧାନ ଲକ୍ଷ୍ୟ ରୂପେ ଗ୍ରହଣ କରିଛନ୍ତି—ବିଶ୍ୱବ୍ୟାପୀ ଧ୍ୱଂସର ନିରୋଧ ନୁହେଁ କେବଳ, ସମାଜର ଜୀବନରୁ ଚିରକାଳପାଇଁ ଯୁଦ୍ଧର ମୂଳୋତ୍ପାଟନ । ଏହା ହେଉଛି ସେମାନଙ୍କ ବୈଦେଶିକ ନୀତିର ମର୍ମ !

ସୋଭିଏତ କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକ୍ରମ ସ୍ପଷ୍ଟ ଭାବରେ କହୁଛି—"ସୋଭିଏତ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ଓ ସମଗ୍ର ଭାବରେ ସୋଭିଏତର ଜନସାଧାରଣ, ପୁଞ୍ଜିବାଦୀ ଦେଶଗୁଡ଼ିକ ମଧ୍ୟରେ ସଙ୍ଗଠିତ ଯୁଦ୍ଧ ଏବଂ ଲୋକଙ୍କର ସ୍ୱାଧୀନତା ଓ ମୁକ୍ତିର ଆନ୍ଦୋଳନକୁ ଖତମ୍ କରିଦେବା ଲାଗି ଅଭିପ୍ରେତ ସମସ୍ତ ସ୍ଥାନୀୟ ଯୁଦ୍ଧ ସମେତ ଯାବତୀୟ ପ୍ରକାରର ଆକ୍ରମଣାତ୍ମକ ଦେଶଜୟ ଓ ଲୋକଜୟମୂଳକ ଯୁଦ୍ଧକୁ ବିରୋଧ କରନ୍ତି ଓ କ୍ରମାଗତ ଭାବେ ବିରୋଧ କରୁଥିବେ—ଅତ୍ୟାଚାରିତ ଜନସାଧାରଣଙ୍କର ପବିତ୍ରତମ ସଂଗ୍ରାମ ହେଉଛି, ସେମାନଙ୍କର ନ୍ୟାୟସଙ୍ଗତ ସାମ୍ରାଜ୍ୟବାଦ ବିରୋଧୀ ମୁକ୍ତିସଂଗ୍ରାମ—ଏହି ସଂଗ୍ରାମକୁ ସାହାଯ୍ୟ ଓ ସମର୍ଥନ ଦେବାକୁ ସେମାନେ ନିଜର ପରମ କର୍ତ୍ତବ୍ୟ ବୋଲି ଗ୍ରହଣ କରନ୍ତି ଓ କରୁଥିବେ ।"

ସାମ୍ୟବାଦ ବା କମ୍ୟୁନିଜିମ ନିର୍ମାଣରେ କାର୍ଯ୍ୟକ୍ରମ ହେଉଛି, ଶାନ୍ତି ଆଉ ଆନ୍ତର୍ଜାତିକ ନିରାପତ୍ତାର ସଂହତି ବିଧାନ ଲାଗି ଇତିହାସ ସୃଜନକାରୀ କାର୍ଯ୍ୟକ୍ରମ—ଶାନ୍ତି ଆଉ ସାମ୍ୟବାଦ ବା କମ୍ୟୁନିଜିମ ଅବିଚ୍ଛେଦ୍ୟ, ଅଭିନ୍ନ !

ମାର୍କସ୍ ଲେଖିଥିଲେ, "ଅର୍ଥନୈତିକ ଦୁର୍ଦ୍ଦଶାମୟ ଓ ରାଜନୈତିକ ପ୍ରଳାପମୟ ପୁରାତନ ସମାଜର ସମକ୍ଷରେ ତୁଳନାତ୍ମକ ବୈପରୀତ୍ୟରେ ନୂତନ ଏକ ସମାଜର ଉଦ୍‌ଭବ ଘଟୁଛି—ଏହାର ଆନ୍ତର୍ଜାତିକ ବିଧାନ ହେବ ଶାନ୍ତି:—କାରଣ ଏହାର ଜାତୀୟ ବିଧାନ ହେବ ପ୍ରତ୍ୟେକ କ୍ଷେତ୍ରରେ ସମାନ—ଶ୍ରମ ।"

ତେଣୁ ଏବେ ଅବଶ୍ୟ ଭୁଲିଯିବା ଉଚିତ ନୁହେଁ—ସାମ୍ରାଜ୍ୟବାଦ ଥିବା ପର୍ଯ୍ୟନ୍ତ ଯୁଦ୍ଧର ଆଶଙ୍କା ଅଛି ଓ ଥିବ । ସାମ୍ରାଜ୍ୟବାଦୀମାନେ ସମାଜବାଦୀ ଦେଶର ଜନସାଧାରଣଙ୍କ ବିରୁଦ୍ଧରେ ନିଜର ସାମରିକ ଚକ୍ରାନ୍ତ, ସାମରିକ ଅସ୍ତ୍ରପ୍ରସ୍ତୁତି, କ୍ଷାନ୍ତ ନାହାନ୍ତି । କିନ୍ତୁ ସାମ୍ରାଜ୍ୟବାଦ ଆଜି ଏକମାତ୍ର ବଳର ଅଧିକାରୀ ନୁହେଁ—ତାର ପାଖରେ ଆଉ ବଳର ସୁଯୋଗ ନାହିଁ, ଶାନ୍ତି ବା ଯୁଦ୍ଧର ପ୍ରଶ୍ନ ଆଉ ସାମ୍ରାଜ୍ୟବାଦୀଙ୍କ ହାତର ପ୍ରଶ୍ନ ନୁହେଁ । ତାର ଯେତେ ·ଆକ୍ରମଣାତ୍ମକ ପ୍ରକୃତି ଥାଉ ପଛକେ, ଏହା ନିଶ୍ଚିତ ଯେ, ନିଜର ପୁରାତନ ଶକ୍ତିରୁ ତାହା ବଂଚିତ ହେଉଛି ।

ତେବେ 'ଯୁଦ୍ଧର ଶକ୍ତି' ଉପରେ ପ୍ରତିଷ୍ଠିତ ହୋଇ ଉଠିଥିବା ଶାନ୍ତିଶକ୍ତିର ଉତ୍କର୍ଷ ଓ ପ୍ରାଧାନ୍ୟ ସତ୍ତ୍ୱେ, ପାଶ୍ଚାତ୍ୟଦେଶଗୁଡ଼ିକର କେତେକ ସାମ୍ରାଜ୍ୟବାଦୀ ପାଗଳ ପରି ସ୍ଥିର ଆଉ ସଂଯତ ବିଚାରବୁଦ୍ଧି ଓ ଜ୍ଞାନର ଶେଷ ସନ୍ତୁଳନ ହରାଇ ଦେଇ ଆକ୍ରମଣ ଆରମ୍ଭ କରିବାକୁ ଉଦ୍ୟମ କରନ୍ତି, ତେବେ ପ୍ରତିଶୋଧମୂଳକ ଏପରି ମୁହଁମାଡ଼ ଖାଇବେ ସେମାନେ, ଯେଉଁଥିରେ ଯୁଦ୍ଧର ସୂତ୍ରପାତ ହିଁ ହେବ ଲୋକ-ବିରୋଧୀ ସାମ୍ରାଜ୍ୟବାଦୀ ବ୍ୟବସ୍ଥାର ସମାପ୍ତି ।

ପ୍ରତ୍ୟେକ ଲୋକ ଚାହେଁ ଶାନ୍ତି, କାଳକାଳ ଶାନ୍ତି ଚାହିଁ ଆସିଛନ୍ତି ସମସ୍ତେ । କିନ୍ତୁ ଆଜି ଭଳି କେବେହେଲେ ପୂର୍ବେ ଶାନ୍ତି ଲାଗି ସଂଗ୍ରାମ ଏତେଦୂର ବିଶେଷଭାବେ ଗୁରୁତ୍ୱପୂର୍ଣ୍ଣ ହୋଇ ନ ଥିଲା, ଆଜି ଭଳି ଏତେଦୂର ବ୍ୟାପକ, ଏତେ ଦୂର ସଙ୍ଗଠିତ ନ ଥିଲା । ଇତିହାସରେ ପ୍ରଥମ ଥର ପାଇଁ ଦେଖା ଦେଇଛନ୍ତି ଏକ ଶକ୍ତିଶାଳୀ ଆନ୍ତର୍ଜାତିକ ଶାନ୍ତି ସାମୁଖ୍ୟର ସମର୍ଥକ ସବୁ, ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଭିତ୍ତିରେ ଆନ୍ତର୍ଜାତିକ ସହଯୋଗକୁ ସୁନିଶ୍ଚିତ କରି ମନୁଷ୍ୟ ସମାଜକୁ ବିଶ୍ୱବ୍ୟାପୀ ପରମାଣୁ ଯୁଦ୍ଧର ପ୍ରଳୟଙ୍କର ଧ୍ୱଂସଲୀଳାରୁ ରକ୍ଷା କରିବାର ଲକ୍ଷ୍ୟ ଘେନି, ସେହି ବ୍ରତରେ ବ୍ରତୀ ସେମାନେ । ବିଶେଷକରି ସେମାନଙ୍କର ଏହି ବିରାଟ ଆନ୍ଦୋଳନର ପୁରୋଭାଗରେ ରହିଛି, ପୃଥିବୀର ପ୍ରତ୍ୟେକ ଦେଶର ପ୍ରତିନିଧିମାନଙ୍କୁ ନେଇ ଗଠିତ 'ବିଶ୍ୱଶାନ୍ତି'ପରିଷଦ' ।

ଶାନ୍ତି ଲାଗି, ସାଧାରଣ ଓ ପୂର୍ଣ୍ଣ ନିରସ୍ତ୍ରୀକରଣ ଲାଗି ଆନ୍ଦୋଳନ, ସମଗ୍ର ପୃଥିବୀରେ ଆଜି ବ୍ୟାପ୍ତ । ଯୁକ୍ତିବାଦର ବିଲୋପ, ଏହାର ଉଦ୍ଦେଶ୍ୟ ନୁହେଁ—ନୂତନ ଏକ ବିଶ୍ୱଯୁଦ୍ଧ ନିରୋଧ କରିବା ପଥରେ ଉଦ୍‌ବିଗ୍ନ ଅତି ଅଧିକ ବିଭିନ୍ନ ରାଜନୈତିକମତର ଧର୍ମ ଓ ଆଚାର, ·ଶ୍ରେଣୀ ଓ ସମ୍ପ୍ରଦାୟର, କୋଟି କୋଟି ଲୋକଙ୍କର ଏହା ହେଉଛି ଗଣତାନ୍ତ୍ରିକ ଆନ୍ଦୋଳନ । ଶାନ୍ତି ଲାଗି ଏହି ଆନ୍ଦୋଳନରେ, ଏହି ସଂଗ୍ରାମରେ ଅଂଶ ଗ୍ରହଣ କରୁଛନ୍ତି ଟ୍ରେଡ଼ ୟୁନିୟନ, ଛାତ୍ର, ଯୁବକ, ମହିଳା ଓ କୋ-ଅପରେଟିଭ ସଙ୍ଗଠନ ବ୍ୟତୀତ ଗଣ-ଅନୁଷ୍ଠାନଗୁଡ଼ିକ, ଆଉ ମଧ୍ୟ, ପୂର୍ବେ ରାଜନୀତିଠାରୁ ଦୂରେଇ ରହୁଥିଲେ ଏପରି ଅନେକ ଧର୍ମ, ଶିକ୍ଷା ଓ ଅନ୍ୟାନ୍ୟ ବିଷୟକ ପ୍ରତିଷ୍ଠାନ ସବୁ ।

ଶାନ୍ତି ଲାଗି ସଂଗ୍ରାମ ଓ ଲୋକଙ୍କର ଜାତୀୟ ମୁକ୍ତି ଆନ୍ଦୋଳନ ହେଉଛି, ପରସ୍ପର ଉପରେ ନିର୍ଭରଶୀଳ ଆନ୍ଦୋଳନ । ସ୍ୱାଧୀନତାର ଆନ୍ଦୋଳନ ଯୁଦ୍ଧର ଶକ୍ତିକୁ ଦୁର୍ବଳ କରେ, ଶାନ୍ତିର ଶକ୍ତିକୁ ବହୁଗୁଣିତ କରେ । ଯୁଦ୍ଧ ଓ ସମରବାଦ ବିରୁଦ୍ଧରେ ମିଳିତ ସାମ୍ମୁଖ୍ୟ ଗଠନ କରି, ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ବିଭିନ୍ନ ଦେଶର ଲୋକଙ୍କୁ ଯୁଦ୍ଧ ପ୍ରସ୍ତୁତିରେ ନିୟୋଜିତ କରିବାରେ ସାମ୍ରାଜ୍ୟବାଦୀମାନଙ୍କୁ ବାଧା ଦେଇ, ଶାନ୍ତି ଆନ୍ଦୋଳନ ଜାତୀୟ ମୁକ୍ତି ସଂଗ୍ରାମର ସହାୟ ହୁଏ ।

ସାଧାରଣ ଓ ପୂର୍ଣ୍ଣ ନିରସ୍ତ୍ରୀକରଣ ସମସ୍ୟାର ସମାଧାନକୁ ଶାନ୍ତି ଆନ୍ଦୋଳନ ନିଜର ପ୍ରଧାନ କର୍ତ୍ତବ୍ୟ ବୋଲି ବିଚାରେ । କାରଣ, ଏହା ହିଁ ଅର୍ଥାତ୍ ପୂର୍ଣ୍ଣ ନିରସ୍ତ୍ରୀକରଣ ହିଁ ନୂତନ ବିଶ୍ୱଯୁଦ୍ଧ ବିରୁଦ୍ଧରେ ଏକମାତ୍ର ଦୃଢ଼ ପ୍ରତିଶ୍ରୁତି ବା ଗ୍ୟାରେଣ୍ଟି ହେବ ।

୧୯୫୭ ନଭେମ୍ବର ମାସରେ ଅନୁଷ୍ଠିତ ୬୪ଟି ଦେଶର କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟିର ପ୍ରତିନିଧି ସମ୍ମିଳନୀରେ ଗୃହୀତ "ଶାନ୍ତି ଇସ୍ତାହାର" ଏବଂ ୧୯୬୦ ନଭେମ୍ବରର ୮୧ଟି କମ୍ୟୁନିଷ୍ଟ ଓ ଓ୍ୱାର୍କର୍ସ ପାର୍ଟି ସମ୍ମିଳନୀର ମସ୍କୋ ଅଧିବେଶନରେ ଗୃହୀତ ପୃଥିବୀର ଜନସାଧାରଣଙ୍କ ପ୍ରତି ନିବେଦନ ହେଉଛି, ଶାନ୍ତି ଆନ୍ଦୋଳନ ପ୍ରତି ସାଧାରଣ ଭାବରେ ଗୁରୁତ୍ୱପୂର୍ଣ୍ଣ ।

ସାମ୍ରାଜ୍ୟବାଦ ଓ ଯୁଦ୍ଧ ବିରୁଦ୍ଧରେ ଶାନ୍ତି, ସ୍ୱାଧୀନତା ଓ ସମଗ୍ର ମନୁଷ୍ୟ ଜାତିର ଉଜ୍ଜ୍ୱଳମୟ ଭବିଷ୍ୟତ ଲାଗି ଲଢ଼ୁଥିବା ଜନସାଧାରଣଙ୍କ ହାତରେ ସୋଭିଏତ କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକ୍ରମ ହେଉଛି, ଆଉ ଏକ ଶକ୍ତିଶାଳୀ ଅମୋଘ ଅସ୍ତ୍ର ।

ଯେତେବେଳେ ସାମ୍ରାଜ୍ୟବାଦୀ ଯୁଦ୍ଧଖୋରମାନେ ପ୍ରଚୁର ପରିମାଣରେ ଅସ୍ତ୍ରଶସ୍ତ୍ର ଜମେଇ ରଖୁଛନ୍ତି, ଜର୍ମାନ ସମରବାଦକୁ ପୁନର୍ଗଠିତ କରୁଛନ୍ତି ଓ ଯୁଦ୍ଧର ଆତଙ୍କକୁ ବୃଦ୍ଧି କରିବାରେ ଲାଗିଛନ୍ତି, ସେତେବେଳେ ଆମର ଏହି ସମୟରେ, ଶାନ୍ତିର ସବୁ ଅଭିଯାତ୍ରୀ ଦଳର ମିଳିତ ଆନ୍ଦୋଳନ ହିଁ ବିଶେଷ ଭାବରେ ଅତି ଜରୁରୀ ଓ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଛି । ଯେଉଁ ଶୁଭେଚ୍ଛୁ ଲୋକମାନେ ଶାନ୍ତି ଚାହାନ୍ତି, ଏହାର ଆବଶ୍ୟକତା କାମନା କରନ୍ତି, କେବଳ କଥାରେ ସେମାନେ ତାଙ୍କର ସିଦ୍ଧା-କର୍ମକୁ ସୀମାବଦ୍ଧ କରି ରଖିପାରିବେ ନାହିଁ । ଯୁଦ୍ଧର ଅନିଷ୍ଟ ଓ ଶାନ୍ତିର କଲ୍ୟାଣ ସମ୍ବନ୍ଧରେ ଗୁଡ଼ାଏ ଗପିବା ଦ୍ୱାରା ପାଶ୍ଚାତ୍ୟ ଦେଶର ପ୍ରତିଶୋଧବାଦୀ ଓ ସମରବାଦୀଙ୍କର ସାମରିକ ରଥଚକ୍ରର ଗତିକୁ ରୋକା ଯାଇ ନ ପାରେ ।

"କଥାର ହାଓ୍ୱାରେ ହାଓ୍ୱାକଳ ବୁଲେ ନାହିଁ । ସାମ୍ରାଜ୍ୟବାଦୀଙ୍କ ସୃଷ୍ଟ-କରିଷ୍ଟ ଯୁଦ୍ଧ ବିପଦ ପ୍ରତି କ୍ରୋଧ ପ୍ରକାଶ କେବଳ ଯଥେଷ୍ଟ ନୁହେଁ । ପ୍ରଧାନ କଥା

ହେଉଛୁ, ଯୁଦ୍ଧଖୋରଙ୍କ ଅପରାଧ-ଚକ୍ରାନ୍ତକୁ ହାତକୁ ବନ୍ଦ କରିବାକୁ ହେବ । ଶାନ୍ତି ଓ ନୂତନ ଏକ ବିଶ୍ୱବ୍ୟାପୀ ଯୁଦ୍ଧର ଧ୍ୱଂସ-ବିଭୀଷିକା, ଏହି ଦୁଇଟି ବିକଳ୍ପ ପନ୍ଥା ମଧ୍ୟରୁ ଗୋଟିକୁ ବାଛିନେବା ଏବେ ନିର୍ଭର କରୁଛି ଲୋକଙ୍କ ଉପରେ, ସେମାନଙ୍କର ଦୃଢ଼ ମନୋବଳ ଓ ଦୃଢ଼ ସଂକଳ୍ପ ଉପରେ—ପୂର୍ବେ କେବେହେଲେ ଏଭଳି ଏତେ ଦୂର ନିର୍ଭର କରିନାହିଁ ।

ଶାନ୍ତି, ନିରସ୍ତ୍ରୀକରଣ ଓ ବିବାଦୀୟ ସମସ୍ୟାର ସବୁ ଶାନ୍ତିପୂର୍ଣ୍ଣ ସମାଧାନ ସକାଶେ ସଂଗ୍ରାମ ଚଳାଇବାରେ ସମସ୍ତ ଉଦ୍ୟମ, ସମସ୍ତ ଉପାୟ ପ୍ରୟୋଗ କରିବାକୁ ଦୃଢ଼ ସଂକଳ୍ପ ଧରିବା ସଙ୍ଗେ ସଙ୍ଗେ ସାମ୍ରାଜ୍ୟବାଦ ପ୍ରତି ସଦାସର୍ବଦା ସତର୍କ ରହିବା ଦ୍ୱାରା ହିଁ ଲୋକେ ନୂତନ ଯୁଦ୍ଧ-ଯୋଜନାକାରୀଙ୍କର ଘୃଣ୍ୟ ମତଲବକୁ ବ୍ୟର୍ଥ କରି ପାରିବେ ।

ଆମ ଏ ଯୁଗର ସଂଗ୍ରାମକ-ଶକ୍ତି ଶ୍ରମିକଶ୍ରେଣୀ; ତା' ଉପରେ ଇତିହାସ ନ୍ୟସ୍ତ କରିଛି ସମଗ୍ର ବିଶ୍ୱର ଭାଗ୍ୟର ଭାର, ମନୁଷ୍ୟ ସମାଜର ଭବିଷ୍ୟତ ଦାୟିତ୍ୱ । ପ୍ରତିକ୍ରିୟାର ଜଘନ୍ୟ ଅମଙ୍ଗଳମୟ ଶକ୍ତି ସାମରିକବାଦ ଓ ଯୁଦ୍ଧକୁ ପ୍ରତିହତ ଓ ପରା-ଜିତ କରିବା ହେଉଛି, ଆମର ଏହି ଯୁଗର ଐତିହାସିକ କର୍ତ୍ତବ୍ୟ—ଏହାର ସାଧନ ଓ ସମାଧାନ ନିର୍ଭର କରୁଛି, ଶ୍ରମିକଶ୍ରେଣୀର ଐକ୍ୟ ସଂହତି ଓ ସତର୍କତା ଉପରେ ; ସାମ୍ରାଜ୍ୟବାଦ ଓ ଏଜେଣ୍ଟ ସୃଷ୍ଟି ପଥିକ ବିରୁଦ୍ଧରେ ସଂଗ୍ରାମ ଚଳାଇବା ସ୍ତରରେ ଶ୍ରମିକଶ୍ରେଣୀର ପ୍ରବଳ ଉଦ୍ୟମ, ଦୃଢ଼ତା ଓ କଠୋର ଅଧ୍ୟବସାୟ ଉପରେ ।

ଶାନ୍ତି, ଗଣତନ୍ତ୍ର ଓ ଶ୍ରମଜୀବୀ ଜନସାଧାରଣଙ୍କର ଅର୍ଥନୈତିକ ଓ ସାମାଜିକ ଅଧିକାର ହାସଲ ଲାଗି ସେହି ସମସ୍ତ ଶ୍ରମିକ ଜନସାଧାରଣଙ୍କ ସଂଗ୍ରାମର ପୁରୋ-ଭାଗରେ ଅଛନ୍ତି କମ୍ୟୁନିଷ୍ଟ ଓ ଓ୍ୟାକର୍ସ ପାର୍ଟି ସବୁ !

କମ୍ୟୁନିଷ୍ଟ ଓ ଓ୍ୟାର୍କର୍ସ ପାର୍ଟି ପ୍ରତିନିଧି ସମ୍ମିଳନୀର ୧୯୬୦ ମସିହାର ଇସ୍ତାହାର ଘୋଷଣା କରେ—ଯୁଦ୍ଧ ବିପଦ ବିରୁଦ୍ଧରେ ଶ୍ରମିକ ଶ୍ରେଣୀର ସମସ୍ତ ଶକ୍ତିକୁ ଏକତ୍ରିତ କରିବାରେ କୌଣସି ରାଜନୈତିକ, ଧର୍ମଗତ ବା ଅନ୍ୟ କିଛି ପ୍ରଭେଦ ବା ପାର୍ଥକ୍ୟ ପ୍ରତିବନ୍ଧକ ହେବା ଉଚିତ ନୁହେଁ । ସମୟର ସଙ୍କେତ ଆସିଛି, ବିଶ୍ୱବ୍ୟାପୀ ସର୍ବହରାଶ୍ରେଣୀର ସମସ୍ତ ସଙ୍ଘବଦ୍ଧ ସୈନ୍ୟବାହିନୀ ସଂଘ ଓ ସଙ୍ଗଠନ-ଗୁଡ଼ିକର ବିପୁଳ ଶକ୍ତିଶାଳୀ ସଂକଳ୍ପ ଓ ସମ୍ମିଳିତ କାର୍ଯ୍ୟ ଦ୍ୱାରା ଯୁଦ୍ଧର ଶକ୍ତିକୁ ପ୍ରତିହତ କରିବା ସକାଶେ, ବିଶ୍ୱଯୁଦ୍ଧକୁ ବ୍ୟର୍ଥ ଓ ବ୍ୟାହତ କରି ଶାନ୍ତିର ସୁରକ୍ଷା ସ୍ତରରେ ତାର ସମସ୍ତ ଶକ୍ତିକୁ ଏକତ୍ରିତ କରିବା ସକାଶେ ।

ସମାଜବାଦ ଓ ସାମ୍ୟବାଦ ବା କମ୍ୟୁନିଜମ ପାଇଁ, ଶାନ୍ତି ପାଇଁ ସାମ୍ରାଜ୍ୟବାଦ ବିରୁଦ୍ଧରେ ଚରମ ପର୍ଯ୍ୟାୟ ଭବ ପକ୍ଷରେ ସବୁଠୁ ବଳି ଅନୁକୂଳ ସୁଯୋଗ ଏବଂ ପ୍ରଗତିବାଦୀ ଓ ସମାଜବାଦୀ ରାଷ୍ଟ୍ରମାନଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହିଁ ସୃଷ୍ଟି କରିବ ।



# ଉପସଂହାର

ଆମର ଆଲୋଚନା ଶେଷ ହେଲା ।

ମନୁଷ୍ୟ ସମାଜ, ତାର ବିକାଶର ନିୟମ, ସମାଜବାଦୀ ବିପ୍ଳବ ଓ ସର୍ବହରା ଏକଛତ୍ର ଶାସନ, ସମାଜବାଦ ଓ କମ୍ୟୁନିଜମ ବା ସାମ୍ୟବାଦର ନିର୍ମାଣ, କମ୍ୟୁନିଷ୍ଟ ପାର୍ଟିର ଐତିହାସିକ ଭୂମିକା – ଏସବୁ ସମ୍ପର୍କରେ ମାର୍କସବାଦ-ଲେନିନବାଦର ମୌଳିକ ନୀତିସୂତ୍ର ଯେନି ଆମେ ଆଲୋଚନା କଲୁଁ –

ଏବେ ମୋଟ ଉପରେ କହିଲେ – ମାର୍କସବାଦ-ଲେନିନବାଦ ଶିକ୍ଷା ଦିଏ ଯେ ଗୋଟିଏ ବ୍ୟବସ୍ଥା ପରିବର୍ତ୍ତେ ଆଉ ଗୋଟିଏ ବ୍ୟବସ୍ଥାର ପ୍ରବର୍ତ୍ତନ, ବିଶେଷରେ ପୁଞ୍ଜିବାଦ ପରିବର୍ତ୍ତେ ସମାଜବାଦର ପ୍ରଚଳନ ଓ ପ୍ରତିଷ୍ଠା, ଏକ ଦୈବୀଘଟଣା କି ଆକସ୍ମିକ ଘଟଣା ନୁହେଁ କିମ୍ବା କୌଣସି ବ୍ୟକ୍ତିବିଶେଷର ଇଚ୍ଛା, ଅଭିପ୍ରାୟ ବା ଖିଆଲର ଫଳାଫଳ ନୁହେଁ । ଏହା ସେହି ସାମାଜିକ ନିୟମ ଅନୁସାରେ ଘଟିଥାଏ ଯାହାକୁ କୌଣସି ଲୋକ ପରିବର୍ତ୍ତନ କି ପ୍ରତ୍ୟାହାର ବା ରଦ୍ଦ କରି ନ ପାରେ । ରୀତିଗୁଡ଼ିକର ପରିବର୍ତ୍ତନ ଭଲ, ଦିନ ପରେ ଗତି ଭଲ, ପ୍ରତ୍ୟେକ ଦେଶ, ପ୍ରତ୍ୟେକ ଜାତି ନିଶ୍ଚିତ ଭାବେ ପହଞ୍ଚିବେ କମ୍ୟୁନିଜମ ବା ସାମ୍ୟବାଦରେ ।

କିନ୍ତୁ ସ୍ୱତଃ ଉଦ୍‌ଭବ ଘଟେ ନାହିଁ ଏହି ନୂତନ ଦୁନିଆର ! ଏହା ପୁରାତନ ବ୍ୟବସ୍ଥାର 'ଶକ୍ତିଗୁଡ଼ିକ ବିରୁଦ୍ଧରେ ଅବିରତ ସଂଗ୍ରାମ' ଚଳାଇ ସେହି ସଂଗ୍ରାମ ଆଉ ଶ୍ରମ ମଧ୍ୟରେ ହିଁ ଜନ୍ମଲାଭ କରେ । ବୁର୍ଜୁଆଶ୍ରେଣୀ କିମ୍ବା ଶ୍ରମିକ ଶ୍ରେଣୀ ବିରୁଦ୍ଧରେ, ଅତ୍ୟାଚାରିତ ଜନସାଧାରଣଙ୍କର ଜାତୀୟ ମୁକ୍ତି ଆନ୍ଦୋଳନ ଓ କମ୍ୟୁନିଷ୍ଟ ମତବାଦର ପ୍ରସାର ବିରୁଦ୍ଧରେ ମାର୍କସବାଦୀ-ଲେନିନବାଦୀ ପାର୍ଟି ବିରୁଦ୍ଧରେ, କ୍ରୋଧାନ୍ଧ ହୋଇ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇବାକୁ ଯେ ସହଜରେ ବିରତ ହୁଏ, ଏହା ନୁହେ

ଏ ସମ୍ପର୍କରେ ଜାର-ଶାସିତ ଋଷରେ ବୁର୍ଜୁଆ ଓ ଜମିମାଲିକ ଜମିଦାରଙ୍କ ସରକାର ଦ୍ୱାରା ବଲସେଭିକ ପାର୍ଟି କପରି ଦଣ୍ଡିତ ଓ ନର୍ଯ୍ୟାତିତ ହୋଇଥିଲା ତାହା ସ୍ମରଣ କରାଯାଇ ପାରେ ।

ଜେଲ, ଓ ବ୍ୟକ୍ତିକ ପ୍ରହାର, ଫାସି, ନର୍ବାସନ ଓ କଠୋର ଶ୍ରମ, ନାନାପ୍ରକାର ଉପାୟ ପ୍ରୟୋଗ କରା ଯାଇଥିଲା । ଶ୍ରମିକ ଆନ୍ଦୋଳନ ନର୍ମୂଳ କରିବା ଉଦ୍ଦେଶ୍ୟରେ ଆଉ ବୁର୍ଜୁଆ ବ୍ୟବସ୍ଥାକୁ ସୁରକ୍ଷିତ ରଖିବା ଅଭିପ୍ରାୟରେ । ଋଷରେ ଅକ୍ଟୋବର ବିପ୍ଳବର ବିଜୟ ପରେ, ପରାସ୍ତ ସିଂହାସନରୁ ବିତାଡ଼ିତ, କ୍ଷମତାଚ୍ୟୁତ ଶୋଷକଶ୍ରେଣୀ ସବୁ ପ୍ରଧାନ ପ୍ରଧାନ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ସାହାଯ୍ୟ ସମର୍ଥନରେ ଗୃହଯୁଦ୍ଧ ଆରମ୍ଭ କରି ଅଭିଯାନ ଚଳାଇଥିଲେ ନୂତନ ସମାଜବାଦୀ ଦୁନିଆକୁ ରକ୍ତର ସାଗରରେ ଭସାଇ ଦେବାପାଇଁ ।

ସେହିପରି ଠିକ ସମାନ ଦୁରାଶାରେ ନୈରାଶ୍ୟର ସାମ୍ରାଜ୍ୟବାଦୀ ବୁର୍ଜୁଆମାନେ ଉଦ୍ୟମ କରି ଆସିଛନ୍ତି ଓ କରୁଛନ୍ତି, ଅନ୍ୟାନ୍ୟ ଦେଶର ଶ୍ରମଜୀବୀ ଜନସାଧାରଣ ଯେପରି ସମାଜବାଦର ପଥ ଗ୍ରହଣ ନ କରନ୍ତି, ସେଥିପାଇଁ ସେମାନଙ୍କୁ ବିରୋଧ କରି ବାଧା ଦେବା ସକାଶେ ।

କିନ୍ତୁ କମ୍ୟୁନିଜମର ଶତ୍ରୁମାନଙ୍କ ଉଦ୍ୟମ ନିଷ୍ଫଳ, ନିରର୍ଥକ ହୋଇଛି ।

ବିପ୍ଳବ ପୂର୍ବରୁ ଋଷରେ କମ୍ୟୁନିଷ୍ଟଙ୍କ ସଂଖ୍ୟା ବେଶୀ ନ ଥିଲା, ଥିଲେ କେତେକ ହଜାର ମାତ୍ର । ତଥାପି ସେମାନେ ଜୟଲାଭ କଲେ, କାରଣ ସେମାନେ ଯେଉଁ ଶିକ୍ଷାଲାଭ କରିଥିଲେ—ସେହି କମ୍ୟୁନିଷ୍ଟ ଶିକ୍ଷା, ମାର୍କସବାଦ-ଲେନିନବାଦ ସାମାଜିକ ବିକାଶର ନିୟମକୁ ଓ ଜନସାଧାରଣଙ୍କ ମୁଖ୍ୟ ସ୍ୱାର୍ଥଗୁଡ଼ିକୁ ନିର୍ଭୁଲ ଭାବେ ପ୍ରତିଫଳିତ କରୁଛି । ଆଜି ପ୍ରାୟ ପୃଥିବୀର ସମସ୍ତ ଦେଶରେ ମାର୍କସବାଦୀ-ଲେନିନବାଦୀ ପାର୍ଟି ରହିଛି । ସେହି ପାର୍ଟି ସବୁର ସଭ୍ୟ ସଂଖ୍ୟା ୪୬୦ ଲକ୍ଷରୁ ଊର୍ଦ୍ଧ୍ୱ ହେବ । ମନୁଷ୍ୟ ଜାତିର ଏକ ତୃତୀୟାଂଶରୁ ଅଧିକ ଲୋକ ଏବେ କମ୍ୟୁନିଜମ ବା ସାମ୍ୟବାଦର ପତାକା ତଳେ ନୂତନ ଏକ ଜୀବନ ନିର୍ମାଣ କରିବାରେ ବ୍ରତୀ ।

ପୁଞ୍ଜିବାଦୀମାନେ ଯେତେ ଇଚ୍ଛା ଉଦ୍ୟମ କରନ୍ତୁ ପଛକେ, ସାମାଜିକ ବିକାଶର ସ୍ୱାଭାବିକ ଧାରାକୁ ରୋଧ କରି ପାରିବେ ନାହିଁ କିମ୍ବା ଇତିହାସର ରଥ-ଚକ୍ରକୁ ପଶ୍ଚାତମୁଖୀ କରି ଫେରାଇ ପାରିବେ ନାହିଁ । 'ପୁରୁଣା', 'ପଙ୍ଗୁ' ଓ 'ମୁମୂର୍ଷୁ' ପୁଞ୍ଜିବାଦୀ ଦୁନିଆର ଦେହ ଯୋଡ଼ାଯୋଡ଼ି ସ୍ଥାନରେ ଠିକ୍ ଫାଟି ଭାଙ୍ଗି ଭାଙ୍ଗି ପଡ଼ୁଛି । ପୁଞ୍ଜିବାଦର ସ୍ଥାନ ନେଉଛି ଏକ ନୂତନ ପ୍ରସାରଣଶୀଳ ବିଶ୍ୱ-ସମାଜ-ବାଦୀ ଓ କମ୍ୟୁନିଜମ ବା ସାମ୍ୟବାଦୀ ବ୍ୟବସ୍ଥା । କମ୍ୟୁନିଜମ ବା ସାମ୍ୟବାଦ ଆଜି ବିପୁଳ ଆଉ ବିଶାଳ ମହାନ ଏକ ଶକ୍ତି ; ପୃଥିବୀର ବିସ୍ତୃତ ଅଞ୍ଚଳରେ ଏବେ ନିର୍ମିତ ହେଉଛି ପ୍ରକୃତରେ ଜୀବନ୍ତ ଏକ ରକ୍ତମାଂସର ସମାଜ । ଏହାର ଜୀବଧାରା

ଏହାର ଅର୍ଥ, ପ୍ରତ୍ୟେକ ମହାଦେଶର କୋଟି କୋଟି ଲୋକଙ୍କୁ ନିଜ ପାଖକୁ ଆକର୍ଷଣ କରୁଛି । କମ୍ୟୁନିଜିମ ବା ସାମ୍ୟବାଦର ବିଜୟସମ୍ବନ୍ଧରେ ମାର୍କସବାଦୀ—ଲେନିନବାଦୀ ଶିକ୍ଷାର ସତ୍ୟତା ଏଣୁ ଖୋଦ ଜୀବନ ଦ୍ୱାରାହିଁ ପ୍ରତିପାଦିତ ହେଉଛି ।

ମୁମୂର୍ଷୁ ଶ୍ରେଣୀ ଗୁଡ଼ିକ ଶେଷରେ ଏବେ ଉପଲବ୍ଧି କରୁଛନ୍ତି, ସେମାନଙ୍କ ମୃତ୍ୟୁ ଅବଶ୍ୟମ୍ଭାବୀ, ଅନିବାର୍ଯ୍ୟ ।

ଯେଉଁ ଦେଶରେ ସବୁ ପୁଞ୍ଜିବାଦୀ ସାମାଜିକ ବ୍ୟବସ୍ଥା ରହିଛି, ସେହି ଦେଶର ବୁର୍ଜୁଆମାନେ ଗଭୀର ହତାଶାରେ ସେହି ସାମାଜିକ ବ୍ୟବସ୍ଥାକୁ ପ୍ରାଣ-ପଣେ ଜାକି ଜାବୁଡ଼ି ଧରି ବସିଛନ୍ତି—ନିଜର ଶାସନକୁ ଚିରସ୍ଥାୟୀ କରିବା ଲାଗି ସମସ୍ତ ଶକ୍ତି ଲଗାଇ ଲଢ଼ୁଛନ୍ତି, ଶ୍ରମିକମାନଙ୍କ ଆନ୍ଦୋଳନକୁ ଦମନ କରୁଛନ୍ତି, ଉତ୍ପୀଡ଼ନ କରୁଛନ୍ତି ; ଦକ୍ଷିଣପନ୍ଥୀ ସମାଜବାଦୀ ଓ ସବୁ ପ୍ରକାରର ସୁବିଧାବାଦୀଙ୍କର ସାହାଯ୍ୟରେ ଶ୍ରମିକଶ୍ରେଣୀକୁ ଦୁର୍ବଳ ଓ ଭାଗ ଭାଗ କରିବାର ଚେଷ୍ଟା କରୁଛନ୍ତି, ପୁଞ୍ଜିବାଦୀ ରାଷ୍ଟ୍ରର ସମସ୍ତ ଶକ୍ତି ଖଟାଇ କମ୍ୟୁନିଷ୍ଟମାନଙ୍କ ଉପରେ ଚଢ଼ାଉ କରି ସେମାନଙ୍କୁ ଚିପିବାରେ ଲାଗିଛନ୍ତି ।

ବୁର୍ଜୁଆ ପ୍ରଚାରକମାନେ ପୁଞ୍ଜିବାଦୀ ବ୍ୟବସ୍ଥାର ଗୁଣଗାନ କରି ତାକୁ ଆକାଶକୁ ଟେକନ୍ତି । ସେମାନେ ପ୍ରମାଣ କରିବାକୁ ଚାହାନ୍ତି ଯେ ମନୁଷ୍ୟର ପ୍ରକୃତିରେ ଯେ ସ୍ୱାଭାବିକ ଭାବେ ନିହିତ ହୋଇ ରହିଛି ପୁଞ୍ଜିବାଦ ଅର୍ଥାତ୍ ଏହା ସହଜାତ ମନୁଷ୍ୟ ପ୍ରକୃତିର ; ଆଉ ସମାଜବାଦ ହେଉଛି ଗୋଟାଏ ଉଦ୍ଭଟ ସୃଷ୍ଟି ପ୍ରକୃତିରେ ବ୍ୟତିକ୍ରମ, ଆକସ୍ମିକ ଘଟନା, ଇତିହାସର ବକ୍ର ବା କୁଟିଳ ଗତିର ପରିଚାୟକ । ପୁଞ୍ଜିବାଦକୁ ପଟ ଦେଇ ସେମାନେ ତାକୁ ସୌନ୍ଦର୍ଯ୍ୟ ମଣ୍ଡିତ କରିବା ଲାଗି ଆଖ୍ୟା ଦେଇଛନ୍ତି, "ଜନତାର ପୁଞ୍ଜିବାଦ !" ପ୍ରକୃତିର ସମ୍ପୂର୍ଣ୍ଣ ପରିପନ୍ଥୀ ପୁଞ୍ଜିବାଦକୁ "ଜନତାର ପୁଞ୍ଜିବାଦ" କହିବା—ବାଘ ଏକ ଗୃହପାଳିତ ପଶୁ, କହିବା ସଙ୍ଗେ ସମାନ ।

କେହି କେବେ ପୁଞ୍ଜିବାଦର ରକ୍ଷକମାନଙ୍କୁ ସାହାଯ୍ୟ କରି ନ ପାରେ । ସେମାନଙ୍କର 'ସମୟ' ଅତୀତ ହେବା ଉପରେ ! ନୈତିକ, ରାଜନୈତିକ ଓ ଅର୍ଥନୈତିକ ଭାବରେ ପୁଞ୍ଜିବାଦ ନିଜର ନିର୍ଦ୍ଦିଷ୍ଟ ବଞ୍ଚିବା ଦିନ ଠାରୁ ଅଧିକ ଦିନ ନିଜକୁ ବଞ୍ଚାଇ ପାରିଛି—ଏହା ସମଗ୍ର ପୃଥିବୀର ଲୋକଚକ୍ଷୁରେ ଅଧିକରୁ ଅଧିକ ଘୃଣ୍ୟ ହୋଇ ଉଠୁଛି । ପୁଞ୍ଜିବାଦର "ମାଧୁର୍ଯ୍ୟ" ବିଷୟରେ କାଳ୍ପନିକ ପରୀ ମହଲ କାହାଣୀ ଦ୍ୱାରା କେତେ ଲୋକଙ୍କୁ ବା କେତେ ଦିନ ଠକି ଦିଆ ଯାଇପାରେ—ଏଣିକି କମରୁ କମ ଲୋକ ସେଥିରେ ଭୁଲୁଛନ୍ତି !

ପୃଥିବୀର ସବୁ ଅଞ୍ଚଳର ଲୋକେ ପ୍ରଶ୍ନ କରନ୍ତି—ପୁଞ୍ଜିବାଦ ଦିନକୁ ଦିନ ଦୁର୍ବଳ ହୋଇ ଭାଙ୍ଗି ପଡ଼ୁଥିବା ବେଳେ ଏବଂ ତାର 'ଅନ୍ତର୍ବିରୋଧ' ଉତ୍କଟ

ଆକାର ଧାରଣ କରୁଥିଲା ବେଳେ, ସମାଜବାଦ ବା ସୋଭିଏତ ରୁଷିଆ ଏପରି ବିସ୍ମୟକର କୃତିତ୍ୱମାନ ହାସଲ କରୁଛି, ତାହା ପୁଣି ବିକାଶ ପାଇ ସମୃଦ୍ଧିଶାଳୀ ହୋଇ ଉଠୁଛି ?

ବୁର୍ଜୁଆ ମତବାଦ ଅଶେଷ ସଙ୍କଟରେ ପଡ଼ି ଅନାରୋଗ୍ୟ କ୍ଷୟରୋଗର ଯନ୍ତ୍ରଣାରେ କାତର ହେଲା ବେଳେ, ରୁଷିଆ ବା ସମାଜବାଦର, ମାର୍କସବାଦ-ଲେନିନବାଦର, ଅଦଣ ଓ ସ୍ୱତଃସ୍ଫୂର୍ତ୍ତ ଦିନକୁ ଦିନ ଅଧିକରୁ ଅଧିକ ସମର୍ଥକଙ୍କୁ ଆକୃଷ୍ଟ କରୁଛି, ଅଧିକରୁ ଅଧିକ ଲୋକଙ୍କୁ ଅନୁରକ୍ତ କରି ପାରୁଛି ?

ଏପରି କି, ବହୁ ଦେଶର କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ ବା ନିଷିଦ୍ଧ କରି ଦିଆଯିବା ପରେ ଓ ନିର୍ମମ ଭାବରେ ସମାଜବାଦର ପ୍ରବକ୍ତାମାନଙ୍କୁ ଦଣ୍ଡିତ କରାଯିବା ପରେ ବି ବୁର୍ଜୁଆମାନେ ଶ୍ରମିକ ଆନ୍ଦୋଳନକୁ ଦମନ କରିବାରେ ଅସମର୍ଥ କାହିଁକି ? କାହିଁକି ବା ଲୋକେ ଅଧିକରୁ ଅଧିକ ଆକର୍ଷିତ ହେଉଛନ୍ତି—କେଉଁ ମହାକର୍ଷଣ ଶକ୍ତି ବଳରେ—ସମାଜବାଦ ଆଡ଼କୁ ?

ପ୍ରତ୍ୟେକ ଶ୍ରମଜୀବୀ, ଯେଉଁଠି ବସବାସ କରୁ, ରହୁଥାଉ ପଛେ, ଅଧିକରୁ ଅଧିକ ସ୍ପଷ୍ଟ ଭାବରେ ଆଜି ବୁଝୁଛି—ପୁଞ୍ଜିବାଦ ହିଁ ଯୁଦ୍ଧ ଓ ଧ୍ୱଂସ ଡାକି ଆଣେ, ଦୁର୍ବିପାକ ଘଟାଏ; ମନୁଷ୍ୟ ପ୍ରତି ମନୁଷ୍ୟ ହେଉଛି ବ୍ୟାଘ୍ର—ମନୁଷ୍ୟ ହେଉଛି ମନୁଷ୍ୟର ଭକ୍ଷକ । ପୁଞ୍ଜିବାଦର ଏହି ଜଙ୍ଗଲ ଆଇନର ବ୍ୟବସ୍ଥା କୋଟି କୋଟି ଲୋକଙ୍କୁ ବେକାର, ଅନାହାର ଓ ଦାରିଦ୍ର୍ୟ ମଧ୍ୟକୁ ନିକ୍ଷେପ କରେ । ଆଉ ଶ୍ରମିକ, କୃଷକ ଓ ଉପନିବେଶର ଲୋକଙ୍କର ଝାଳ ଓ ରକ୍ତରେ ପୁଞ୍ଜିବାଦ ସତେଜ ଓ ସଜୀବ ରହି ସମୃଦ୍ଧ ହୁଏ ।

ପ୍ରତ୍ୟେକ ଦେଶର ଶ୍ରମଜୀବୀ ଜନସାଧାରଣ ଜାଣେ ; ଏକ ଦିଗରେ ସମାଜବାଦ ଓ କମ୍ୟୁନିଜମ ବା ସାମ୍ୟବାଦ, ଅନ୍ୟ ଦିଗରେ ପୁଞ୍ଜିବାଦ—ଏହି ଦୁଇଟି ସାମାଜିକ ବ୍ୟବସ୍ଥା ବା ପ୍ରଣାଳୀ ମଧ୍ୟରେ ବ୍ୟବଧାନ ହେଉଛି ସ୍ୱର୍ଗ ଆଉ ନର୍କର ବ୍ୟବଧାନ ଭଳି । ସମାଜବାଦ ଓ ସାମ୍ୟବାଦ ପ୍ରକୃତରେ ଯାହା ସବୁଠାରୁ ନ୍ୟାୟସଙ୍ଗତ, କରୁଣାର୍ଦ୍ର, ମାନବିକ, ଜନପ୍ରିୟ ବ୍ୟବସ୍ଥା, ତାହାକୁ ହିଁ ପ୍ରକାଶ କରେ । ଯେଉଁଥିରେ ପ୍ରତ୍ୟେକ ବସ୍ତୁ ମନୁଷ୍ୟର, ମନୁଷ୍ୟ ପାଇଁ, ମନୁଷ୍ୟର ସୁଖ ଓ କଲ୍ୟାଣ ସକାଶେ, ଯେଉଁଥିରେ ମନୁଷ୍ୟ ହେଉଛି ନିଜର ଜୀବନର ମାଲିକ ବା ପ୍ରଭୁ, ନିଜର ଭାଗ୍ୟର, ସ୍ରଷ୍ଟା ଓ ନିୟନ୍ତା । ସମାଜବାଦ ଓ ସାମ୍ୟବାଦ (ବା କମ୍ୟୁନିଜମ) ଆପୋଷହୀନ ଭାବେ ବିରୋଧ କରେ ଲୁଣ୍ଠନକାରୀ ଯୁଦ୍ଧକୁ ଓ ମନୁଷ୍ୟ ଦ୍ୱାରା ମନୁଷ୍ୟର ଶୋଷଣକୁ—ତାହା ଲୋକଙ୍କୁ ମୁକ୍ତ କରେ—ସାମାଜିକ ଅସମତାରୁ, ସମସ୍ତ ପ୍ରକାର ଶୋଷଣ ଓ ଅତ୍ୟାଚାରରୁ ଏବଂ ଯୁଦ୍ଧର ବିଭୀଷିକାରୁ ।

କମ୍ୟୁନିଜମ୍ (ବା ସାମ୍ୟବାଦ) ଦୁନିଆର ସବୁ ସାବ୍ୟସ୍ତ କରେ, ପ୍ରତିଷ୍ଠିତ କରେ—ଶାନ୍ତି, ଶ୍ରମ, ସ୍ୱାଧୀନତା ସମତା, ଭ୍ରାତୃତ୍ୱ ଓ ସମସ୍ତ ଲୋକଙ୍କ ଲାଗି ସୁଖ, ଆନନ୍ଦ ।

ପ୍ରତ୍ୟେକ ଦେଶର ଅଧିକରୁ ଅଧିକ ବ୍ୟାପକ ଭାବରେ 'ଶ୍ରମଜୀବୀ ଲୋକଙ୍କ ପାଖରେ ପରିଷ୍କାର ହୋଇ ଉଠୁଛି ଯେ, ପୁଞ୍ଜିବାଦର ପତନ ଏକ ଆକସ୍ମିକ ଘଟଣା ନୁହେଁ, ଏହା ହେଉଛି ସାମାଜିକ ବିକାଶର ମୌଳିକ ନୀତିସୂତ୍ରର ଫଳ । ଇତିହାସରେ ଯାହା ନୂତନ ଓ ପ୍ରଗତିଶୀଳ ତାହା ପୁରାତନ ଓ ଗତାୟୁକୁ ସର୍ବଦା ନିର୍ଭୀକ ଭାବେ ଓ ବାଇ ବାଟ କରି ଆସିଛି ନିଜର ପଥ ଦେଖାଇ ।

ମନୁଷ୍ୟ ଜାତିର 'କାଲି,' 'ଗତ କାଲି' ହେଉଛି—ପୁଞ୍ଜିବାଦ । ସମାଜବାଦ ଓ ସାମ୍ୟବାଦ ବା କମ୍ୟୁନିଜମ୍ ହେଉଛି, ବର୍ତ୍ତମାନ ଅଧିକାଂଶଙ୍କ ଲାଗି ; ଭବିଷ୍ୟତ ସମସ୍ତ ମନୁଷ୍ୟ ଜାତିର !

ତିନୋଟି ବୈପ୍ଳବିକ ଯୁଗରେ ଗତି କରିଛି ଶ୍ରମିକଶ୍ରେଣୀ ଓ ଶ୍ରମଜୀବୀ ଜନସାଧାରଣଙ୍କ ସଂଗ୍ରାମ—ଶୋଷକ ଭୂମିର ଶାସନର ଧ୍ୱଂସ ଓ ସର୍ବହରାର ଏକଛତ୍ର ଶାସନର ପ୍ରତିଷ୍ଠା, ସମାଜବାଦର ନିର୍ମାଣ ଓ ସାମ୍ୟବାଦୀ କମ୍ୟୁନିଷ୍ଟ ସମାଜର ସୃଷ୍ଟି ।

ପ୍ରଥମ ଦୁଇଟି ସ୍ତର, ସୋଭିଏତ ୟୁନିଅନ ଦୃଢ଼ଭାବେ ଅତିକ୍ରମ କରି ସାରିଛି । ଇତିହାସର ଦୃଷ୍ଟିରୁ ଖୁବ ଅଳ୍ପ ସମୟ ମଧ୍ୟରେ ଏହା ବହୁଟ ଏକ ଲକ୍ଷ୍ୟରେ ଅଗ୍ରଗତି କରି ସାମାଜିକ ଅର୍ଥନୀତିକ ଓ ଟେକ୍ନିକାଲ ପ୍ରଗତିର ଶୀର୍ଷସ୍ଥାନ ଅଧିକାର କରିଛି । ସମାଜବାଦ ସମ୍ପୂର୍ଣ୍ଣ ଓ ଚରମ ଭାବେ ବିଜୟ ଲାଭ କରିଛି । ସୋଭିଏତ ୟୁନିଅନ ପରିଣତ ହୋଇଛି—ଏକ ପ୍ରଥମ ଶ୍ରେଣୀର ଶିଳ୍ପ ଉନ୍ନତ ଦେଶରେ, ଭାରି କୃଷି, ଉଚ୍ଚ ଧରଣର ମେଶିନ୍-ସଜ୍ଜିତ ଅତ୍ୟାଧୁନିକ ସମବାୟ କୃଷିର ରାଜ୍ୟରେ, ଅଗ୍ର ସମସ୍ତ ପୃଥିବୀରେ ବୈଜ୍ଞାନିକ ଓ ଟେକ୍ନୋଲୋଜିକାଲ ପ୍ରଗତିରେ ଅଗ୍ରଗାମୀ ଭାବରେ ।

ସୋଭିଏତର ବୈଜ୍ଞାନିକ ଓ ସୋଭିଏତ୍‌ର ଜନସାଧାରଣଙ୍କର ବିଶେଷଭାବେ ଚମତ୍କାର ଏକ ଐତିହାସିକ କୃତିତ୍ୱ ହେଉଛି, ପୃଥିବୀର ସର୍ବପ୍ରଥମ କୃତ୍ରିମ ଉପଗ୍ରହ ଓ ଅନ୍ତରୀକ୍ଷ ଯାନର ସଫଳ ନିକ୍ଷେପଣ । ସୋଭିଏତର ଲୋକେ ନିଜ ଦେଶର ଅନ୍ତରୀକ୍ଷ ଅଭିଯାନ ଓ ନିଜର ମହାକାଶଯାତ୍ରୀଙ୍କ ଆଚରଣ ପାଇଁ ଭାବେ ଗର୍ବିତ । ସେଇ ମହାକାଶଯାତ୍ରୀ ହେଉଛନ୍ତି—ୟୁରି ଗାଗାରିନ୍, ଘେରମାନ ଟିଟଭ୍, ଆନ୍ଦ୍ରିଆନ୍ ନିକୋଲାୟେଭ୍, ପାଭେଲ ପୋପୋଭିଚ୍, ଭାଲେରି ବାଇକୋଭସ୍କି, ଭାଲେନ୍ତିନା

ଭଚୋଲେସ୍ଲୋଭ ତେରେସ୍କୋଭା, ଭ୍ଲାଦିମିର କୋମାରୋଭ, କନଷ୍ଟାନ୍‌ଟିନ୍ ଫିଓକ୍ଟିସଭ୍, ବୋରିସ୍ ୟେଗୋରୋଭ, ପାଭେଲ୍ ବେଲ୍ୟେଭ, ଏବଂ ଅଲେକ୍ସି ଲିଓନୋଭ ।

ସୋଭିଏତ୍ ଲୋକଙ୍କର ବିଜୟ ଫଳରେ ସମାଜବାଦ ପରିପକ୍ୱ ହୋଇଛି, ସୋଭିଏତ୍ ୟୁନିଅନ ବର୍ତ୍ତମାନ ଏକ ନୂତନ ପର୍ଯ୍ୟାୟରେ କମ୍ୟୁନିଷ୍ଟ ସମାଜର ସର୍ବତୋମୁଖୀ ପର୍ଯ୍ୟାୟରେ ପଦାର୍ପଣ କରିଛି ।

ସୋଭିଏତ୍ ୟୁନିଅନ ଓ ସମଗ୍ର କମ୍ୟୁନିଷ୍ଟ ଆନ୍ଦୋଳନର ଜୀବନରେ ଏକ ଐତିହାସିକ ବୈଶିଷ୍ଟ୍ୟ ହୋଇଛି— ସୋଭିଏତ୍ ୟୁନିଅନ କମ୍ୟୁନିଷ୍ଟ ପାର୍ଟି କଂଗ୍ରେସର ୨୨ ଶ ଅଧିବେଶନ । ଏହି କଂଗ୍ରେସ, ଏକ ନୂତନ କାର୍ଯ୍ୟକ୍ରମ ଗ୍ରହଣ କରି ଦୁଇଟି ଦଶକ ମଧ୍ୟରେ ସୋଭିଏତ୍ ୟୁନିଅନରେ କମ୍ୟୁନିଷ୍ଟ ସମାଜର ଭିତ୍ତି ସ୍ଥାପନ ଲାଗି ବାସ୍ତବରେ କାର୍ଯ୍ୟକାରୀ ଏକ ଅର୍ଥନୈତିକ ଢଙ୍ଗରେ ନିର୍ଦ୍ଧାରିତ ଯୋଜନାକୁ ରୂପ ଦେଇଛି ।

ଯେଉଁ କମ୍ୟୁନିଜମ୍ ବା ସାମ୍ୟବାଦ ଦିନେ ଭବିଷ୍ୟତର ସ୍ୱପ୍ନ ହିଁ ଥିଲା, ଏକ ବୈଜ୍ଞାନିକ କଳ୍ପନା ବା ଦୂର-ଦର୍ଶନ ହିଁ ଥିଲା, ତାହା ଆଜି ସଦ୍ୟ ଏକ କାର୍ଯ୍ୟକାରୀ 'କର୍ତ୍ତବ୍ୟ' ହୋଇ ଉଠିଛି ଏବଂ ସୋଭିଏତ୍ ଲୋକଙ୍କର ଦୈନନ୍ଦିନ ଜୀବନ ଓ କାର୍ଯ୍ୟ ରୂପରେ ପ୍ରତିଫଳିତ ହୋଇଛି । ସେମାନେ ଆଜି ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର କମ୍ୟୁନିଷ୍ଟ ବା ସାମ୍ୟବାଦୀ ଭବିଷ୍ୟତର ପଥରେ ଗଭୀର ପ୍ରତ୍ୟୟର ସହିତ ଅଗ୍ରସର ହେଉଛନ୍ତି, ଅଗ୍ରସର ହେଉଛନ୍ତି— ପାର୍ଟି କାର୍ଯ୍ୟକ୍ରମର ସେହି କଥା ଚେତନାରେ ଅନୁପ୍ରାଣିତ ହୋଇ—।

"ଏହି ପୁରୁଷରେ ସୋଭିଏତ ଜନସାଧାରଣ, ଜୀବନଧାରଣ କରି ଚଳପ୍ରଚଳ ହେବେ କମ୍ୟୁନିଜମ୍ ବା ସାମ୍ୟବାଦରେ"; ଅର୍ଥାତ୍ ଏହି ପୁରୁଷର ସୋଭିଏତ୍ ଜନସାଧାରଣ ଉପଭୋଗ କରିବେ ସାମ୍ୟବାଦ । ଯେତେବେଳେ କମ୍ୟୁନିଜମ୍ ବା ସାମ୍ୟବାଦର ଭୌତିକ ଓ ଟେକ୍ନିକାଲ୍ ଭିତ୍ତି ସୃଷ୍ଟି କରି ପାରିବ ସୋଭିଏତ ୟୁନିଅନ, ସେତେବେଳେ ତାହା ପ୍ରକାଶ ପାଇବ ପୃଥିବୀରେ ସବୁଠାରୁ ବଳି ଶ୍ରେଷ୍ଠ ଉତ୍ପାଦନକ୍ଷେତ୍ର, ସବୁଠାରୁ ବଳି ବୃହତ୍ତମ ଓ ଅଧୁନାତମ ଶିଳ୍ପର, ସବୁଠାରୁ ବଳି ଉତ୍କୃଷ୍ଟ, ଉନ୍ନତ କୃଷିର ଅଧିକାରୀ ରୂପରେ । ବେଶ୍, ତାହା ଅଦୂରରେ ଅତିକ୍ରମ କରିଯିବ ପ୍ରଧାନ ପ୍ରଧାନ ପୁଞ୍ଜିବାଦୀ ଦେଶମାନଙ୍କୁ, କାହିଁ କେଉଁ ପଛରେ ତାର ପଡ଼ି ରହିବେ, ସେହି ପୁଞ୍ଜିବାଦୀ ଦେଶସବୁ । ଭୌତିକ ଉତ୍ପାଦନ—ମାନବୀୟ ପ୍ରଚେଷ୍ଟାର ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ, ପୁଞ୍ଜିବାଦ ଉପରେ ସର୍ବୋତଭାବେ ବିଜୟ ହାସଲ କରିବ ସୋଭିଏତ୍ ୟୁନିଅନ ।

ପୁଞ୍ଜିବାଦ ତୁଳନାରେ ସମାଜବାଦରେ ସୁବିଧା ସୁଯୋଗ ଅନେକ, ଏ ପ୍ରଶ୍ନର ଉତ୍ତର ମିଳିବ, ଅସ୍ତ୍ରଶସ୍ତ୍ର ବୃଦ୍ଧି ଯେଉଁ ପ୍ରତିଯୋଗିତାରେ ନୁହେଁ, ଶାନ୍ତିପୂର୍ଣ୍ଣ ଅର୍ଥନୈତିକ ପ୍ରତିଯୋଗିତାରେ ।

ପାର୍ଟି ପ୍ରୋଗ୍ରାମକୁ କାର୍ଯ୍ୟକାରୀ କରିବା ଅର୍ଥ, ବିଶ୍ୱରେ ଜୀବନଧାରଣର ସର୍ବୋଚ୍ଚ ମାନ ବା ସ୍ତର ଲାଗି କାର୍ଯ୍ୟ କରିବା ।

ପାର୍ଟି ପ୍ରୋଗ୍ରାମକୁ କାର୍ଯ୍ୟକାରୀ କରିବା ଲାଗି—କରିବା ଅର୍ଥ, ବିଶ୍ୱଶାନ୍ତି ଲାଗି କାର୍ଯ୍ୟ କରିବା । ସୋଭିଏତର ଅର୍ଥନୈତିକ ଶକ୍ତିର ବୃଦ୍ଧି ଓ ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ସଂହତି ହେଉଛି ସାମ୍ରାଜ୍ୟବାଦୀ ପ୍ରତିକ୍ରିୟାର ଦୁରଭିସନ୍ଧି ବିରୁଦ୍ଧରେ ସୁଦୃଢ଼ ପ୍ରତିଶ୍ରୁତି ବା ଗ୍ୟାରେଣ୍ଟି, ସମସ୍ତ ଜନସାଧାରଣଙ୍କ ସକାଶେ ଶାନ୍ତି ଓ ନିରାପତ୍ତାର ନିଶ୍ଚିତତା ।

ଅନ୍ୟସବୁ ସମାଜବାଦୀ ଦେଶରେ ଶ୍ରମଜୀବୀ ଲୋକେ, ସୋଭିଏତ ଇଉନିଅନର ଲୋକମାନଙ୍କ ସହିତ ପାଖେ ପାଖେ ରହି ସମାଜବାଦ ଓ କମ୍ୟୁନିଜମ୍ (ବା ସାମ୍ୟବାଦ) ଅଭିମୁଖେ ଅଗ୍ରସର ହେଉଛନ୍ତି । ସେମାନେ ଅଳ୍ପ ସମୟ ମଧ୍ୟରେ ଅର୍ଥନୀତି, ସଂସ୍କୃତିର ବିକାଶ ସାଧନରେ ଓ ଜୀବନଧାରଣ ମାନର ଉନ୍ନତି ବିଧାନରେ ବିଶେଷଭାବରେ ଉଲ୍ଲେଖଯୋଗ୍ୟ ସଫଳତାମାନ ହାସଲ କରିଛନ୍ତି ।

ସମାଜବାଦୀ ଜାତିସବୁ ବିଶ୍ୱର ଗୋଟାଏ ପରିବାର ଭଳି ଶାନ୍ତି, ଗଣତନ୍ତ୍ର ଓ ସମାଜବାଦର ଶକ୍ତିଶାଳୀ ସୁଦୃଢ଼ ଦୁର୍ଗ ରୂପରେ ଆଜି ପ୍ରତିଷ୍ଠିତ ହୋଇଛନ୍ତି ସେହି ଦେଶସବୁ ଯେଉଁ ବିପୁଳ କୃତିତ୍ୱ ହାସଲ କରିଛନ୍ତି, ସେହି କୃତିତ୍ୱ ଫଳରେ ପୃଥିବୀର ରଙ୍ଗମଞ୍ଚରେ ସମାଜବାଦ ସପକ୍ଷରେ ଶକ୍ତିସାମ୍ୟର ମୌଳିକ ପରିବର୍ତ୍ତନ ଆସିଛି । ସାଧାରଣ ଜୀବନର ସକଳ କ୍ଷେତ୍ରରେ—ଅର୍ଥନୀତି, ସଂସ୍କୃତି ଓ ମତାଦର୍ଶରେ ସମାଜବାଦ, ପୁଞ୍ଜିବାଦ ଉପରେ ତାର ପୂର୍ଣ୍ଣ ପ୍ରାଧାନ୍ୟ ଓ ଉତ୍କର୍ଷକୁ ଗଭୀର ବିଶ୍ୱାସ ଜନ୍ମାଇ ପ୍ରମାଣିତ କରିଛି ।

କମ୍ୟୁନିଜମ ପ୍ରକୃତରେ ମନୁଷ୍ୟର ମନକୁ ପ୍ରଭାବିତ କରିଛି, ଆସ୍ଥିର କରିଛି । ଏହାର ସବ ଓ ଆଦର୍ଶ କୋଟି କୋଟି ଲୋକଙ୍କୁ ଆକୃଷ୍ଟ ଓ ଏକତାବଦ୍ଧ କରୁଛି, କାରଣ ଏହିମାନେ ହିଁ ସାମ୍ରାଜ୍ୟବାଦର ମିଥ୍ୟା କପଟତାକୁ ପ୍ରତ୍ୟାଖାନ କରନ୍ତି ଓ ସାମ୍ୟବାଦ ବା କମ୍ୟୁନିଜମର ସତ୍ୟକୁ ଉପଲବ୍ଧି କରନ୍ତି, ଗ୍ରହଣ କରନ୍ତି ।

ମାର୍କସବାଦ-ଲେନିନବାଦଠାରୁ ଦୂରରେ ଥିବା ଫ୍ରାନ୍ସର ପାଦ୍ରୀ ତୁଲସ୍ୱର ବହୁ ଲୋକଙ୍କର ମନୋଭାବକୁ ଯଥାର୍ଥରେ କଳନା କରି, ରୂପ ଦେଇ ପ୍ରଶ୍ନଚ୍ଛଳରେ କହିଛନ୍ତି— "ଯେଉଁ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ କୋଟି କୋଟି ଲୋକ ଅଛନ୍ତି ଓ ଯେଉଁମାନେ ଲେନିନ୍‌ଙ୍କ ଶିକ୍ଷାକୁ ଅନୁସରଣ କରନ୍ତି, ସେମାନଙ୍କ ପ୍ରତି ସମ୍ମାନ ଦେଖାଇଲେ,

ସେମାନଙ୍କର 'ବିଶ୍ୱାସକୁ' ଶ୍ରଦ୍ଧା ଚକ୍ଷୁରେ ଦେଖିଲେ, ସେମାନଙ୍କର ବିପୁଳ ଆଉ ବିସ୍ମୟକର କାର୍ଯ୍ୟକୁ ପ୍ରଶଂସା କଲେ କେହି ଜଣେ କେବେ ନୈଷ୍ଠିକ ଖ୍ରୀଷ୍ଟିଆନଙ୍କୁ ନିନ୍ଦା, ଭର୍ତ୍ସନା କରିପାରେ ? ଯଦି ସେମାନେ ପୃଥିବୀକୁ ରକ୍ଷା କରିବାକୁ, ଶୀତଳ ଯୁଦ୍ଧ ବନ୍ଦ କରିବାକୁ ଚାହାନ୍ତି, ଯଦି ସେମାନେ ନିରସ୍ତ୍ରୀକରଣ ଦାବୀ କରନ୍ତି ଏବଂ ବିଭିନ୍ନ ସାମାଜିକ ବ୍ୟବସ୍ଥାର ଦେଶମାନଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଲାଗି ଅହ୍ୱାନ ଦିଅନ୍ତି, ତେବେ କେହି ଜଣ ତାଙ୍କ ସହିତ ସହଯୋଗ କରିବାକୁ ନାସ୍ତି କରିପାରେ ? ଯଦି ଏହାର ଅର୍ଥ, "କମ୍ୟୁନିଜମ୍‌ର ସପକ୍ଷ ହୁଏ, ତାହାହେଲେ ମୁଁ ସଦା ସର୍ବଦା "କମ୍ୟୁନିଷ୍ଟ ସପକ୍ଷ" ହୋଇ ରହିବି ।"

ବିଶ୍ୱ ସମାଜବାଦୀ ବ୍ୟବସ୍ଥା ହେଉଛି ଶାନ୍ତି ଓ ଲୋକଙ୍କ ନିରାପତ୍ତାର ଏକ ବିରାଟ ଦୁର୍ଗ । ସମାଜବାଦୀ ଦେଶ ମାନଙ୍କର ଅର୍ଥନୈତିକ ଓ ସାମରିକ ଶକ୍ତି, ସାମ୍ରାଜ୍ୟବାଦୀ-ମାନଙ୍କ ମଧ୍ୟରେ ସବୁଠାରୁ ରକ୍ତମୁଖା ଯୁଦ୍ଧଖୋରମାନଙ୍କୁ ମଧ୍ୟ ତାଙ୍କର ଆକ୍ରମଣାତ୍ମକ ଉଗ୍ର ପନ୍ଥାସବୁ ନିବାରିତ ହେବା ଦିଗରେ ବାଧ୍ୟ କରେ । ସୋଭିଏତ ଇଉନିୟନ ଓ ସମଗ୍ର ସମାଜବାଦୀ ଶିବିରର ବିରାଟ ଶକ୍ତି ଆକ୍ରମଣକାରୀମାନଙ୍କୁ ବହୁ ଯୁଦ୍ଧ—ଉତ୍ତେଜନା ଯେପରି ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଆଦ୍ୟରୁ ଲୋପ ପାଇଯାଏ, ତାହା ସମ୍ଭବ କରିଦେଇଛି ଏବଂ ସମାଜବାଦୀ ଶିବିରର ସେହି ଶକ୍ତି ହିଁ ବିଶ୍ୱ ଯୁଦ୍ଧକୁ ପ୍ରତିହତ କରୁଛି ।

ସେ ସମୟ ଆଉ ଦୂରରେ ନାହିଁ, ଯେତେବେଳେ କି ସମାଜବାଦୀ ଗୋଷ୍ଠୀ ଏତେଦୂର ଶକ୍ତିଶାଳୀ ହୋଇ ଉଠିବେ ଯେ, ଶାନ୍ତି କାମୀ ଲୋକେ ସାମ୍ରାଜ୍ୟ-ବାଦୀଙ୍କ ଯୁଦ୍ଧଂଦେହିର ପରିପୋଷକ ରକ୍ତମୁଖା ଯୁଦ୍ଧଖୋର ଗୋଷ୍ଠୀର ନୂତନ ଏକ ଯୁଦ୍ଧ ପରିକଳ୍ପନାକୁ ଚିରଦିନ ଲାଗି ପରିତ୍ୟାଗ କରାଇବାକୁ ସମର୍ଥ ହେବେ, ଏବଂ ଆନ୍ତର୍ଜାତୀୟ ସମସ୍ୟା ସମାଧାନର ଉପାୟ ଭାବରେ ବିଶ୍ୱଯୁଦ୍ଧର ବିଲୋପ ଆଣିବେ ।

ସମାଜର ଜୀବନରୁ ଯୁଦ୍ଧର ବହିଷ୍କାର, ଯୁଦ୍ଧର ବିଲୋପ ମାନବ ସମାଜର ଏକ ଚିରପୋଷିତ ସ୍ୱପ୍ନ, ଆଉ ଏହା ହିଁ ହେବ, ସଭ୍ୟତା ପ୍ରତି ସାମ୍ୟବାଦର ଅମୂଲ୍ୟ ଅବଦାନ ।

ବିଶ୍ୱବ୍ୟାପୀ କମ୍ୟୁନିଜମ ବା ସାମ୍ୟବାଦର ବିଜୟ ଭଳି, ଜାତି ଜାତି ମଧ୍ୟରେ ଶାନ୍ତି ଓ ବନ୍ଧୁତାର ପ୍ରତିଷ୍ଠା, ଏହି ଆଦର୍ଶର ବିଜୟ ମଧ୍ୟ ଅନିବାର୍ଯ୍ୟ, ଅବଶ୍ୟମ୍ଭାବୀ । ପୂର୍ବର ଶୋଷଣକାରୀ ସାମାଜିକ ବ୍ୟବସ୍ଥା ସବୁ ଇତିହାସ ପରିତ୍ୟାଗ କଲା ପରି ପୁଞ୍ଜିବାଦ ମଧ୍ୟ ଐତିହାସିକ ମଞ୍ଚ ତ୍ୟାଗ କରିବ, ଅପସୃତ ହେବ । ମୁଖମୁଖୀ ସାମ୍ରାଜ୍ୟବାଦ, ମନୁଷ୍ୟ ସମାଜ ଲାଗି ଯେପରି ଆତଙ୍କ

ଅଧିକ ଦୁଃଖ ଯନ୍ତ୍ରଣା ସୃଷ୍ଟି ନ କରେ, ନିର୍ଯ୍ୟାତନା ନ ଆଣେ, ସେଥିପ୍ରତି ସଜାଗ ରହି ତାକୁ ହିଁ ପୂର୍ବରୁ ନିରୋଧ କରିବା ଲାଗି ଲୋକେ ନିଶ୍ଚୟ ପ୍ରାଣପଣେ ତାଙ୍କର ସମସ୍ତ ଶକ୍ତି ନିୟୋଗ କରିବେ ।

ନାହିଁ—କମ୍ୟୁନିଜିମ ବା ସାମ୍ୟବାଦର ପରାଜୟ ନାହିଁ, ତାହା ଅଜେୟ, ଅପରାଜେୟ । ବଳିଷ୍ଠ ପଦକ୍ଷେପରେ ତାହା ଅଗ୍ରସର ହେଉଛି । ତାହାର ଗୌରବମୟ ଧ୍ୱଜା ବହନ କରୁଛି—ମାର୍କସବାଦୀ-ଲେନିନବାଦୀ ପାର୍ଟି—ମନୁଷ୍ୟର ସୁଖ ସ୍ୱଚ୍ଛନ୍ଦ୍ୟ ଓ ଆନନ୍ଦ ସୃଜନ ପଥରେ ନିତ୍ୟ ନିୟୁତ ସଂଗ୍ରାମରତ ନିଃସ୍ୱାର୍ଥପର ବୀର ଯୋଦ୍ଧା ଦଳର ପାର୍ଟି । ପ୍ରତ୍ୟେକ ଦେଶର ପ୍ରଗତିଶୀଳ ଲୋକେ, ନିଜର ସର୍ବୋତ୍କୃଷ୍ଟ ଆଶା ଓ ଆକାଂକ୍ଷାକୁ ସମ୍ମିଳିତ କରିଛନ୍ତି, ସଂଶ୍ଳିଷ୍ଟ କରିଛନ୍ତି କମ୍ୟୁନିଜିମ ସହିତ; ଯାହାର ଶକ୍ତି ହେଉଛି କଳ୍ପନାତୀତ, ସେହି କମ୍ୟୁନିଜିମ ବା ସାମ୍ୟବାଦର ପକ୍ଷରେ ଜୀବନର ସତ୍ୟ, ଇତିହାସର ସତ୍ୟ—ଜୟଯୁକ୍ତ ହେବ ହିଁ ହେବ, କମ୍ୟୁନିଜିମ ବା ସାମ୍ୟବାଦ ।